# ଜଣେ ବଣା ବାଟୋଇର କାହାଣୀ

(ଆତ୍ମଜୀବନୀ)

ଲେଖକ : ବୈଷ୍ଣବ ଚରଣ ସାମଲ
(ଅବସରପ୍ରାପ୍ତ ପ୍ରଫେସର, ବିଶ୍ୱଭାରତୀ, ଶାନ୍ତିନିକେତନ)
ଚାଉଳିଆଗଞ୍ଜ, ନୟାବଜାର, କଟକ - ୭୫୩ ୦୦୪

ପ୍ରକାଶକ : ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ, କଟକ - ୭୫୩ ୦୧୨

ପ୍ରଥମ ପ୍ରକାଶ : ୨୦୧୩

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ପରମା ପ୍ରିଣ୍ଟର୍ସ, କଟକ

---

# Jane Bana Batoira Kahani

(An Autobiography)

Author : **Prof. Baishnab Charan Samal**
(Retd. Prof, Viswa Bharati, Santiniketan)
Chauliaganj, Naya Bazar, Cuttack - 753 004

Publisher : **Bijayinee Publications**
Shankarpur, Arunodaya Market
Cuttack - 753 012, Ph.: 0671-2328723

1st Edition : 2013

Cover Art : Bijay Pradhan

Printed at : Parama Printers, Cuttack

---

Price : ₹ 280 ISBN : 978-93-82360-73-5

# ମୋ ତରଫରୁ ପଦେ

ମୋ ଜୀବନ ତ ସେମିତି କିଛି ଛାପ ରଖିଦେବା ଘଟଣାବଳୀର କାହାଣୀ ନୁହେଁ; ତଥାପି କାହିଁକି ଲେଖିଲି ମୋ ଅସାର ଜୀବନ କାହାଣୀ ? ମୁଁ ତ ବାଟ ଚାଲୁ ଚାଲୁ ବାରମ୍ବାର ବଣା ହୋଇଯାଉଥିବା ଅକିଞ୍ଚନ ମଣିଷଟିଏ, ଥରକୁ ଥର ଝୁଣ୍ଟିପଡ଼ି ଲହୁଲୁହାଣ ହେଉଥିବା ସାଧାରଣ ବ୍ୟକ୍ତିଟିଏ, ତଥାପି କେତେଜଣ ବନ୍ଧୁ ଓ ହିତାକାଂକ୍ଷୀଙ୍କ ତାଗିଦାରେ ମୁଁ ଲେଖିଲି ମୋ ଜୀବନର କାହାଣୀ । ମୋ କାହାଣୀ ଭିତରେ କ'ଣ ଅଛି ବା ନାହିଁ, ସତ ଅଛି କି ମିଛ ଅଛି ତାହା ତ ପାଠକେ ବିଚାର କରିବେ । ତେବେ ମୋର ସ୍ମୃତି କାରୁଣ୍ୟଭରା ଜୀବନର କାହାଣୀ ଲେଖିସାରି ମୁଁ ନିଜକୁ ନିଜେ ସାନ୍ତ୍ୱନା ଦେଉଛି ଓ ତାହାରି ଭିତରୁ ଗୋଟାଏ ଦିବ୍ୟାନନ୍ଦ ପ୍ରକାଶ ପାଇ ମୋତେ ଯେମିତି ଶିହରିତ କରିଦେଉଛି । ଏଇ ଆନନ୍ଦକୁ ମୁଁ ଟିକେ ବାଣ୍ଟିଦେବାକୁ ଚାହୁଁଛି ପାଠକମାନଙ୍କ ଭିତରେ ।

ଏ କାହାଣୀ ମୋ ଅହଙ୍କାରର କାହାଣୀ ନୁହେଁ ଆଦୌ । ମୁଁ ଘୃଣା କରେ ଅହଙ୍କାରକୁ । ମୁଁ ଭାବେ ମଣିଷ ମଣିଷ ଭିତରେ ଯେଉଁ ଭେଦ ସୃଷ୍ଟି ହେଉଛି, ଯେଉଁ ସଂଘର୍ଷ ଦେଖା ଦେଉଛି ତାହା କେବଳ ଏହି ଭ୍ରାନ୍ତ ଅହଙ୍କାର ଯୋଗୁ । ସତତ ମୋ ବିବେକକୁ ଆଘାତ ଦିଏ ଏଇ 'ମୁଁ' ପଣିଆ । ମୁଁ ଚିନ୍ତା କରେ ଆମେ କ'ଣ ଏଇ ଅହମିକାକୁ ଉଜେଇ ଦେଇ ପରସ୍ପରକୁ କୋଳେଇ ନେଇପାରିବା ନାହିଁ ? ଆମେ କ'ଣ ଯାବତ ବୈଷମ୍ୟ ସତ୍ତ୍ୱେ ଏକ ଭାବ ବିନ୍ଦୁରେ

ମିଳିଯାଇପାରିବା ନାହିଁ ? ନା’ ଏହା ହେଉ ନାହିଁ । ହେବା ମଧ୍ୟ ସହଜ ନୁହେଁ । କ୍ଷମତା-ତୃଷ୍ଣା, ଅର୍ଥ-ତୃଷ୍ଣା, ଉପଭୋଗ-ତୃଷ୍ଣା, ପଦ-ତୃଷ୍ଣା ଆମକୁ କବଳିତ କରିଦେଇଛି । କ’ଣ ଟିକେ ପାଇ ନିଜକୁ ଖୁବ୍ ବଡ଼ ମନେକରୁଛି ମଣିଷ । ଏଇଟାକୁ ମୁଁ ପସନ୍ଦ କରେ ନାହିଁ । ହଁ, ଏଇଟା ହୁଏତ ଆଜିର ରାଜନୀତିରେ କାୟାବିସ୍ତାର କରିଯାଇଛି, ଶିଳ୍ପ ବ୍ୟବସାୟରେ ହୁଏତ ଆକାଶ ଛୁଇଁଯାଇଛି, ହେଲେ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏଇସବୁ ତୃଷ୍ଣାର ମୂଲ୍ୟ କ’ଣ ? ସାହିତ୍ୟ ଏମିତି ଗୋଟାଏ ରାଜ୍ୟ ଯେଉଁଠି ସମସ୍ତେ ସମାନ । ସେଠି ରାଜା-ପ୍ରଜା, ଧନୀ-ଦରିଦ୍ର, ଜାତି-ଅଜାତି ସବୁ ସମାନ । ଗୋଟାଏ ଅନାବିଳ ସହାନୁଭୂତି ସେଠି ଫଲ୍‌ଗୁ ପରି ଝରିଯାଇଥାଏ । ସାହିତ୍ୟର ବାହୁ ସଦା ପ୍ରସାରିତ ସମସ୍ତଙ୍କୁ ଆପଣେଇ ନେବା ପାଇଁ । ଯେଉଁଠି ସାହିତ୍ୟ ନାଁରେ ବାହାଦୁରୀ ଦେଖାଇବାର ପ୍ରବଣତାଟିଏ ପ୍ରକାଶ ପାଏ ସେଇଠି ଭେଦ ଆସିଯାଏ । ସଚ୍ଚା ସାହିତ୍ୟ ଓ ସାହିତ୍ୟିକ ସକଳ ଭେଦରୁ ଉର୍ଦ୍ଧ୍ୱରେ । ତା’ର ଲକ୍ଷ୍ୟ ଭେଦରେ ଅଭେଦ, ଅନେକରେ ଐକ୍ୟ, ଯାବତୀୟ ବିଭକ୍ତ ସତ୍ତା ଭିତରେ ଏକ ଅବିଭକ୍ତ ସତ୍ତାର ପ୍ରତିଷ୍ଠା । ଏଇ କାରଣରୁ ମୁଁ ଭଲପାଏ ସାହିତ୍ୟକୁ ଓ ଲେଖେ ମଧ୍ୟ କିଛି । ସିଏ କ’ଣ ହେଲା ନ ହେଲା- ମୁଁ ଭାବେ ନାହିଁ । ମୁଁ ଆନନ୍ଦ ପାଏ ଯେ ମୋ ଭିତରର ଉବୁଟୁବୁ ହେଉଥବା ଭାବନାରାଜି ଭିତରୁ କିଛିଟା ହୁଏତ ପ୍ରକାଶ ପାଇଯାଉଛି । ଯେଉଁ ସାହିତ୍ୟିକମାନେ ଏଇଆ କରନ୍ତି ମୁଁ ସେମାନଙ୍କୁ ଭଲପାଏ । ମୁଁ ଜାଣେ ଯେ ସାହିତ୍ୟିକ ଝଣ୍ଡା ଧରି ପ୍ରଚାର କରେ ନାହିଁ । ସେ ଶବ୍ଦମାନଙ୍କୁ ଶ୍ରଦ୍ଧା ଜଣେଇ ସେଇମାନଙ୍କ ମାଧ୍ୟମରେ ସର୍ବକାଳୀନ ମାନବୀୟ ଚେତନାକୁ ପ୍ରକାଶ କରିଦିଏ । ସୁଦୂର ଅତୀତରୁ ସାଉଁଟି ଆଣେ କେତେ କେତେ ପ୍ରସଙ୍ଗ, ବର୍ତ୍ତମାନ ସହିତ ମିଶେଇ ଦେଇ ନୂଆ ରୂପରେ ପ୍ରକାଶ କରିଦିଏ । ଏଇଥିପାଇଁ ଲେଖକ କାଳର ହୋଇବି ସବୁ କାଳର ହୋଇଯାଏ । ନିଜ କଥା କହୁ କହୁ ସିଏ ଜଗତ କଥା କହିଯାଏ । ଯିଏ ଅହଙ୍କାରୀ ସିଏ ବିମୂଢ଼ ହୋଇଯାଏ- ‘ଅହଙ୍କାର ବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ ।’

ଏସବୁ କାହିଁକି ଲେଖୁଛି ? ଇଏତ ମୋ କାହାଣୀରେ ଯତ୍ରତତ୍ର ଅଛି । ଏଇଥିପାଇଁ ମୁଁ ନିଜକୁ ବଣା ବାଟୋଇ କହିଛି । ମୋର କେହି ତଳେ ବା ଉପରେ, ବାଆଁରେ ବା ଡାହାଣରେ ନାହାନ୍ତି, ନ ଥିଲେ । ଖୁବ୍ ପିଲାଦିନେ ବାପାଙ୍କୁ ହରାଇ ଚାଷବାସ, ଗାଈ ରଖା ଇତ୍ୟାଦି ଭିତର ଦେଇ ପାଠ ପଢ଼ି, କେତେ କେତେ ସ୍ତର ଦେଇ ଏବେ ଏଇ ସ୍ଥାନରେ ପହଞ୍ଚିଛି । ଏବେ ମଧ୍ୟ ଅନୁଭବ କରୁଛି ମୋର କେହି ନାହାନ୍ତି । ସତରେ, ମୁହଁରେ କେତେ ପ୍ରଶଂସା ! ସତେ ଯେମିତି ଶବ୍ଦ-ସମୁଦ୍ର ନିଅଣ୍ଟ ପଡ଼ିଯାଉଛି ! ଅଥଚ ଭିତରେ କେତେ କୂଟ କପଟତା, କେତେ ହିଂସ୍ରତା ! ଯାହାକୁ ଯେମିତି ବିଧାତା ଗଢ଼ିଛି । କ’ଣ ବା କରାଯାଇପାରେ ? ଆମ ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ କେତେ କ’ଣ ଏ

ବିଷୟରେ ଲେଖିଯାଇଛନ୍ତି, ହେଲେ କ'ଣ କୁଟିଳତା ଚାଲିଗଲା କି ? ନା ଯିବ ନାହିଁ । ଇଏ ମଣିଷ ସହିତ ତା'ର ରକ୍ତ ପରି ପ୍ରବାହିତ ।

ମୋ 'ବଣା ବାଟୋଇର କାହାଣୀ' ମୋ ଚଳନ୍ତି ସମୟର ଆତ୍ମଲିପି । ମୋ ଆଖି ପାହାନ୍ତା ସମୟର ରାଜନୀତି, ପ୍ରଶାସନ, ସାହିତ୍ୟ, ସଂସ୍କୃତି, ଶିକ୍ଷା, ଧର୍ମ, ସମାଜ, ଗାଁ, ନଗର, କଳକାରଖାନା, ଅଭିଜାତ ବର୍ଗ, ସର୍ବହରା ଶ୍ରେଣୀ ସବୁ କିଛି ମୋ କାହାଣୀ ଭିତରକୁ ପଶିଆସିଛନ୍ତି; ଆସିଛନ୍ତି ମଧ୍ୟ ମୋ ବାପା, ବୋଉ, ଭାଇଭଉଣୀ, ସାଙ୍ଗସାଥି, ବନ୍ଧୁବାନ୍ଧବ, ହିତାକାଂକ୍ଷୀ, ଅହିତାକାଂକ୍ଷୀ, କପଟୀ, ଅକପଟୀ ଇମିତି କେତେ କେତେ ମଣିଷ । ସର୍ବୋପରି ଆସିଛନ୍ତି କବି ଓ ଲେଖକ । ସମସ୍ତଙ୍କ ପ୍ରତି ମୋ ଅନ୍ତରର ଶ୍ରଦ୍ଧା ଝରି ପଡ଼ିଛି । ବେଳେବେଳେ ଅସୂୟା ପରି ମନେହେଲେ ହେଁ ତାହା ଅସୂୟା ନୁହେଁ; ଗଭୀର ପ୍ରେମ ଓ ସହାନୁଭୂତିର ଅଶରୀରୀ ଫଲ୍‌ଗୁ ।

ମୁଁ ଚାହେ, ସାହିତ୍ୟିକମାନେ ବିବେକବନ୍ତ ହୁଅନ୍ତୁ । ରାଷ୍ଟ୍ରକୁ ଓ ସମାଜକୁ ଦିଗ୍‌ଦର୍ଶନ ପ୍ରଦାନ କରନ୍ତୁ । ବିଶ୍ୱ ଦୃଷ୍ଟିରେ ଭାସ୍ୱର ହୁଅନ୍ତୁ, ଏକାକୀତ୍ୱରେ ବିଭୋର ନ ହୋଇ ସମଗ୍ର ପ୍ରତି ଶ୍ରଦ୍ଧାଶୀଳ ହୁଅନ୍ତୁ, ବୈଦିକ ଋଷିଙ୍କ ସେଇ ଉଦାତ୍ତ ବାଣୀ 'ସର୍ବେ ଭବନ୍ତୁ ସୁଖିନଃ/ ସର୍ବେ ସନ୍ତୁ ନିରାମୟା/ ସର୍ବେ ଭଦ୍ରାଣି ପଶ୍ୟନ୍ତୁ/ ମା କଶ୍ଚିତ୍ ଦୁଃଖଭାଗ ଭବେଂତ'ରେ ଉଦ୍‌ବୁଦ୍ଧ ହୁଅନ୍ତୁ । ଏହା କିନ୍ତୁ ହେଉ ନାହିଁ । ସ୍ୱାଧୀନତା ପୂର୍ବର କର୍ତ୍ତବ୍ୟ ଓ କରୁଣା, ମାତୃଭାଷା ପ୍ରତି ଆଦର ଓ ମମତା, ସଂସ୍କୃତିର ଅନ୍ୱେଷା ଓ ଦାୟବଦ୍ଧତା ସ୍ୱାଧୀନତା ପରେ ବଦଳି ଯାଇଛି । ଏସବୁ ସ୍ଥାନରେ ଦେଖାଦେଇଛି ପ୍ରତାରଣା ଓ ପ୍ରବଞ୍ଚନା, ଛଳନା ଓ ଆତ୍ମମ୍ଭରିତା । ଏପରି ଅବସ୍ଥାରେ କିଏ ଏହି ମହାଜାତିକୁ ବାଟ ଦେଖାଇବ ? କେବଳ ହିଁ ସାହିତ୍ୟ, ମାଟି ଓ ମଣିଷକୁ ଭଲ ପାଉଥିବା ସାହିତ୍ୟ । ନିଜ ସଂସ୍କୃତିକୁ, ପରଂପରାକୁ ଉଜେଇ ଦେଇ ନୁହେଁ; ତାକୁ ଧରି ତାହାରି ଉପରେ ନୂଆ ସାହିତ୍ୟ-ସୌଧ ନିର୍ମାଣ କରି ମହାଜାତିକୁ ସେହି ଦିଗରେ ମୁହାଇଁ ନେବାକୁ ହେବ ।

ମୋତେ ମୋ ଜୀବନର କାହାଣୀ ଲେଖିବାକୁ ଯେଉଁ ବନ୍ଧୁମାନେ ପ୍ରେରଣା ଦେଇଛନ୍ତି ସେମାନଙ୍କୁ ମୋର ଅନ୍ତରର କୃତଜ୍ଞତା ଜଣାଉଅଛି । ଇଂଜିନିୟର ପ୍ରଭାକର ସ୍ୱାଇଁ, ଯିଏ ସାରଳା ଦାସ ଓ ସାରଳା ସାହିତ୍ୟକୁ ଓଡ଼ିଆ ସଂସ୍କୃତିର କେନ୍ଦ୍ରରେ ଅବସ୍ଥାପନ କରି ଜଣେ ସାରସ୍ୱତ ସଂଗଠକ ଭାବରେ ନବ ବିଶ୍ୱକର୍ମା ସାଜିଛନ୍ତି, ତାଙ୍କର ପ୍ରେରଣା ଓ ଉତ୍ସାହ, ଡକ୍ଟର ବାବାଜି ଚରଣ ପଟ୍ଟନାୟକ, ଯିଏ ମୋର ସ୍ନେହଧନ୍ୟ ଛାତ୍ର, ଜ୍ଞାନତପସ୍ୱୀ ଓ ମନସ୍ୱୀ ସମାଲୋଚକ ସେମାନଙ୍କ ବାରମ୍ବାର ତାଗିଦା ମୋତେ ମୋର ଆତ୍ମଚରିତ ଲେଖିବାକୁ ଅନୁପ୍ରେରିତ କରିଥିବାରୁ ସେମାନଙ୍କୁ ମୋର ଅନ୍ତରର ଶ୍ରଦ୍ଧା ନିବେଦନ କରୁଛି । ସ୍ନେହର ବିଜୟାନନ୍ଦ ସିଂହ ମୋତେ ଏକରକମ ବାଧ୍ୟ କରିଥିଲେ ମୋ ସଂଘର୍ଷମୟ

ଆତ୍ମଚରିତ ଲେଖିବା ପାଇଁ । ତାଙ୍କୁ ମଧ୍ୟ ଶ୍ରଦ୍ଧା ନିବେଦନ କରୁଛି । ଶ୍ରଦ୍ଧେୟ ଦିଲୀପ କୁମାର ବେଉରା, ଜଣେ ସାହିତ୍ୟିକ, ସଂପାଦକ ଓ ଶ୍ରଦ୍ଧାଶୀଳ ବ୍ୟକ୍ତିଙ୍କର ନିଷ୍ଠା ଓ ସତ୍ ଆନ୍ତରିକତା ଯୋଗୁ ଏ ପୁସ୍ତକ ଆଜି ଆଲୋକକୁ ଆସୁଛି । ସମସ୍ତ ପ୍ରଶଂସାର ପାତ୍ର ଦିଲୀପ । ଅନ୍ତରର ଶ୍ରଦ୍ଧା ଜଣାଉଛି ସୁଦୂର ଜର୍ମାନରେ ଅବସ୍ଥାନ କରୁଥିବା ଓ ଅନବରତ ଓଡ଼ିଶା ସଂପର୍କରେ ଚିନ୍ତା କରୁଥିବା ସାହିତ୍ୟିକ ଇଂଜିନିୟର ଅନୁଜ ପ୍ରତିମ ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସଙ୍କୁ । ଶ୍ରଦ୍ଧା ମଧ୍ୟ ନିବେଦନ କରୁଛି ମୋର ସାନଭାଇ ପରି ଜ୍ଞାନୀଗୁଣୀ ପ୍ରଫେସର ବାଉରୀବନ୍ଧୁ କରଙ୍କୁ, ମୋର ଶ୍ରଦ୍ଧାଶୀଳ ପ୍ରଫେସର ନାଟ୍ୟକାର ବିଜୟ କୁମାର ଶତପଥୀଙ୍କୁ ଓ ଆଶିଷ ଭିକ୍ଷା କରୁଛି ମୋତେ ଭଲ ପାଉଥିବା ପ୍ରଫେସର ମହାପାତ୍ର ନୀଳମଣି ସାହୁ, ପ୍ରଫେସର ପଠାଣି ପଟ୍ଟନାୟକ, ପ୍ରଫେସର ଚନ୍ଦ୍ରଶେଖର ରଥ, ପ୍ରଫେସର ଶାନ୍ତନୁ କୁମାର ଆଚାର୍ଯ୍ୟ, ପ୍ରଫେସର କୃଷ୍ଣଚରଣ ବେହେରା, ପ୍ରଫେସର ଧନେଶ୍ୱର ମହାପାତ୍ର ପ୍ରମୁଖଙ୍କ ନିକଟରେ । ଏଥିସହିତ ମୁଁ ସ୍ମରଣ କରୁଛି ପୁରୀର ପୂର୍ବତନ ଜିଲ୍ଲାପାଳ ଶ୍ରୀଯୁକ୍ତ ପଦ୍ମନାଭ ସାମଲ, ଉଚ୍ଚମାଧ୍ୟମିକ ବୋର୍ଡ ହାଇସ୍କୁଲର ପୂର୍ବତନ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ବିଷ୍ଣୁଚରଣ ଜେନା, ଅବସରପ୍ରାପ୍ତ ପ୍ରାଶାସନିକ ଅଧିକାରୀ କବି ଶ୍ରୀ ଶଶିଭୂଷଣ ଦାସ, ଶ୍ରଦ୍ଧାଧନ୍ୟ ଡକ୍ଟର ହୁସେନ୍ ରବି ଗାନ୍ଧୀ, କବି ଅମରେଶ ପଟ୍ଟନାୟକ, ଡକ୍ଟର ପ୍ରକାଶ କୁମାର ପରିଡ଼ା ଓ ଡକ୍ଟର ଆର୍ଯ୍ୟପ୍ରଜ୍ଞା ସାହୁଙ୍କୁ ସେମାନଙ୍କର ଶ୍ରଦ୍ଧାମୟ ପରାମର୍ଶ ପାଇଁ ।

କୃତଜ୍ଞତାରେ ନଇଁପଡୁଛି ମୋ ବାପା–ବୋଉଙ୍କ ଅଶରୀରୀ ଆତ୍ମା ନିକଟରେ ।

ଅଳମତି ବିସ୍ତରେଣ,

ଲେଖକ

# ସୂଚୀ

●

# ଜଣେ ବଣା ବାଟୋଇର କାହାଣୀ

## ମୋ ପଥ : ସ୍ମୃତି ଓ ପ୍ରେରଣା

ଜୀବନର ବାଟ ଭାରି ଜଟିଳ । ଏଇଟା ଆଦୌ ସରଳ ନୁହେଁ । କେଉଁଠି ଇଏ ବଙ୍କା ତ ଅନ୍ୟ କେଉଁଠି ତେଢ଼ା, ମେଢ଼ା । କେଉଁଠି ଜଟିଳ ତ ଅନ୍ୟ କେଉଁଠି ଖାଲ, ଢିପ, ଉଠପଡ଼ ଦେଇ ଗତି କରୁଥାଏ । ଜମା ବୁଝିହୁଏ ନାଇଁ କି ଚିହ୍ନିହୁଏ ନାଇଁ । ଏଇ ଜୀବନ ଯେଉଁ ମଣିଷମାନଙ୍କୁ ନେଇ ଗତି କରୁଥାଏ, ସେଇ ମଣିଷମାନେ ବାହାରକୁ ସୁଠାମ ସୁନ୍ଦର ଦିଶୁଥିଲେ ହେଁ, ଭିତରଟା ଯେ ପୋଡ଼ା ଅଙ୍ଗାର ତାହାକୁ କେହି ଦେଖିପାରନ୍ତି ନାହିଁ । ତେଣୁ ଜୀବନକୁ ନେଇ ବଣା ହେବା ସ୍ୱାଭାବିକ । ଏଇ ଜୀବନକୁ ଜାଣିବା ପାଇଁ ବେଦଯୁଗରୁ ଏଯାବତ୍ କେତେ କେତେ ମୁନିଋଷି ଓ ବିଜ୍ଞଜନେ କେତେ କେତେ ଉଦ୍ୟମ କରିଆସିଅଛନ୍ତି । ପ୍ରାଚ୍ୟ ଜଗତଠାରୁ ଆରମ୍ଭ କରି ପାଶ୍ଚାତ୍ୟ ଜଗତ ପର୍ଯ୍ୟନ୍ତ ସବୁଠି ଜୀବନକୁ ଜାଣିବା ପାଇଁ, ଚିହ୍ନିବା ପାଇଁ ଓ ଜୀବନର ରହସ୍ୟକୁ ହେଜିବା ପାଇଁ ପ୍ରୟାସ ଜାରି ରହିଛି । ତଥାପି ଜୀବନକୁ ଜାଣି ହେଉ ନାହିଁ କି ଚିହ୍ନି ହେଉ ନାହିଁ । ଜୀବନକୁ ଯଦି ଜାଣି ହୋଇଯାଆନ୍ତା, ଚିହ୍ନି ହୋଇଯାଆନ୍ତା ତାହା ହେଲେ ଏତେ ବାଦବିବାଦ, ଏତେ 'ମୁଁ' 'ମୁଁ'କାର, ଏତେ ଫୁଟାଣି, ଏତେ ବାହାଦୁରି, ଏତେ ନାରକୀୟତା, ନିଜକୁ ଫୁଲେଇ ହୋଇ ଦେଖେଇ ହେବାର ଏତେ କଳା କୌଶଳ ରୁହନ୍ତା କି ? ଏଇ ଯେଉଁ ମଣିଷମାନେ ଭିତରକୁ ଯାହା ବାହାରକୁ ତାହା ନୁହନ୍ତି । ଦୀନକୃଷ୍ଣଙ୍କ ଭାଷାରେ–

'କରନ୍ତି ଅଙ୍ଗେ ଅନେକ ଛାପ
କେହି ନ ଜାଣେ ଭିତର ପାପ
ଚିତ୍ରକାରକ ପଙ୍କ ପରାଏ ପ୍ରତ୍ୟକ୍ଷ ଦିଶେ ଯେ ।'

ବିଶିଷ୍ଟ ଔପନ୍ୟାସିକା ଭର୍ଜିନିଆ ଉଲ୍‌ଫଙ୍କ ଭାଷାରେ ଏଇ ଜୀବନଟା ସୁନ୍ଦର ଆଲୋକମାଳାରେ ସଜ୍ଜା ହୋଇଥିବା ରମଣୀୟ ଦୃଶ୍ୟ ନୁହେଁ । ଇଏ ଗୋଟାଏ ଅଧା

ମୁଦା ଲଫାଫା ପରି, କିଛି ଦେଖି ହେଉଛି; ଅନେକ କିଛି ଦେଖିହେଉ ନାହିଁ । ସମୁଦ୍ର ଭିତରେ ବୁଡ଼ି ରହିଥିବା ପାହାଡ଼ର ଅଳ୍ପ କିଛି ଅଂଶ ଜଳ ଉପରକୁ ଦେଖାଯାଉଥାଏ । ବିପୁଳ ଅଂଶ ବୁଡ଼ି ରହିଥାଏ । ତା'ରି ଦେହରେ ଜାହାଜ ବାଡ଼େଇ ହୋଇ ଭାଙ୍ଗିଯାଏ । ବିପଦ ଘନେଇ ଆସେ । ଏକଥା କ'ଣ କେହି ବୁଝେ ?

ମଣିଷମାନେ ବିଜ୍ଞ ଓ ଅଭିଜ୍ଞମାନଙ୍କ କଥା ବୁଝନ୍ତି ନାହିଁ କିମ୍ୱା ଶୁଣନ୍ତି ନାହିଁ । ସେମାନେ ଭାବନ୍ତି ଯେ ସେମାନେ ତ ସବୁ ଜାଣନ୍ତି, କାହା କଥା ଶୁଣିବେ କାହିଁକି ? ସାଧାରଣ ଲୋକେ ଜୀବନ ବଞ୍ଚନ୍ତି, ଜୀବନକୁ କେନ୍ଦ୍ର କରି କେତେ କେତେ ଅଭିଜ୍ଞତା ଅର୍ଜନ କରନ୍ତି । କେତେ କେତେ ବାଧାବିଘ୍ନ, କେତେ ସୁବିଧା ଅସୁବିଧା, ଉତ୍ଥାନ ପତନ, ସୁଖ ଦୁଃଖ, ମାନ ଅପମାନ ଭିତର ଦେଇ ବାଟ ଚାଲୁଥାନ୍ତି । ସେଇ ବାଟରୁ ସାଉଁଟି ଆଣନ୍ତି କେତେ କେତେ ଅଭିଜ୍ଞତା । କାହାର ସ୍ୱଭାବ କ'ଣ, କାହାର ଭେକ ତଳେ କି ସଇତାନୀ ଭାବ ଲୁଚି ରହିଥାଏ, ଗାଈଗୋରୁ ବଳଦର ଲକ୍ଷଣ ଓ ସ୍ତ୍ରୀର ଲକ୍ଷଣ କ'ଣ, ରୋଗ ବ୍ୟାଧି ସଂପର୍କରେ ଧାରଣା ଓ ଚିକିତ୍ସାର ବିଧି, ପାଣିପାଗ ସଂପର୍କରେ ପୂର୍ବାନୁମାନ ଇତ୍ୟାଦି ନାନା ବିଷୟରେ ସେମାନେ ଯାହା ଅନୁଭବ କରନ୍ତି ତାହାକୁ ସେଇମାନଙ୍କ ଭାଷାରେ ପ୍ରକାଶ କରିଦିଅନ୍ତି । ସେମାନଙ୍କର କିଛି କ'ଣ ପୋତା ଧନ ପାଇଯିବେ ବା କାହାକୁ ଦଳିଚକଟି ଉପରକୁ ଉଠିଯିବେ, ଏପରି କାମନା ନ ଥାଏ । ସେମାନେ ଜୀବନ ବଞ୍ଚିବାକୁ ସତ୍ୟ ମନେକରନ୍ତି । କାହାର ଥିଲା ନ ଥିଲାରେ ସହଯୋଗର ହାତ ବଢ଼େଇ ଦିଅନ୍ତି । ସେମାନଙ୍କର ଥାଏ ଗୋଟାଏ ସମଗ୍ର ଭାବନା । ଯେତେ ଦୁର୍ବିପାକ ଆସୁନା କାହିଁକି ସବୁକୁ ମୁକାବିଲା କରି ବାଟ ଚାଲନ୍ତି । ଏବେ କିନ୍ତୁ ସମୟ ବଦଳିଯାଇଛି । ସେଇ ସରଳ ମଣିଷମାନେ ଅଲଗା ଅଲଗା ହୋଇଯାଉଛନ୍ତି । ନିଜ ନିଜ ଭିତରେ ସଂଘର୍ଷ କରୁଛନ୍ତି । ମାଲି ମୋକଦ୍ଦମା କରୁଛନ୍ତି । ଉପରଥାକର ସୁବିଧାବାଦୀ ମଣିଷମାନେ; ବିଶେଷତଃ ରାଜନୀତି କରୁଥିବା ଚତୁରମାନେ ସେମାନଙ୍କୁ ଯେ ଖଣ୍ଡ ଖଣ୍ଡ କରି ଦେଉଛନ୍ତି, ତାହା ସେମାନେ ବୁଝିପାରନ୍ତି ନାହିଁ । ତଥାପି ମଣିଷ ଚାଲିଛି ଓ ଚାଲିଆସୁଛି । ଭବିଷ୍ୟତରେ ମଧ୍ୟ ଚାଲିବ । ଚାଲିବା ହିଁ ସତ୍ୟ । ଆସୁ ଯେତେ ବିପଦ । ତଥାପି ତାକୁ ଲୁଦୁଲୁଦୁ ହୋଇ ଚାଲିବାକୁ ହୁଏ । ବାଟୋଇଟି ସିଆଡ଼କୁ ନିଘା କରେ ନାହିଁ । ସେ ବାଟ ଚାଲୁଥାଏ । ତା'ର ଆଦର୍ଶ ଚରୈବେତି, ଚରୈବେତି । ତା'ର ଲକ୍ଷ୍ୟ ସେ ପହଞ୍ଚିବ କେଉଁ ଏକ ନିର୍ଦ୍ଦିଷ୍ଟ ଜାଗାରେ । ହୁଏତ ପହଞ୍ଚିପାରେ ଅବା ନାହିଁ । ତଥାପି ସେ ଚାଲୁଥାଏ । ସେଇ ଚାଲିବା ବାଟରେ କେତେ କେତେ ଅଭିଜ୍ଞତାକୁ ସାଉଁଟି ନେଉଥାଏ । କିଏ କିଏ ହୁଏତ ଦ୍ରୌପଦୀ, ନକୁଳ, ସହଦେବ, ଅର୍ଜୁନ ଓ ଭୀମଙ୍କ ପରି ପାହାଡ଼ରୁ ଗଡ଼ିପଡ଼ି ଶେଷ ହୋଇଯାଆନ୍ତି । ଯୁଧିଷ୍ଠିରଙ୍କ ପରି ଏକାଗ୍ର ଦୃଷ୍ଟିରେ ଗତି କରୁଥିବା ବ୍ୟକ୍ତି ହୁଏତ ଯାଇ

ସ୍ୱର୍ଗରେ ପହଞ୍ଚିଯାଆନ୍ତି । ଯୁଧିଷ୍ଠିରଙ୍କ ପରି ଯିଏ ମୋହମୁକ୍ତ ହୋଇ ଗତି କରେ ସେ ଲକ୍ଷ୍ୟ ସ୍ଥାନରେ ପହଞ୍ଚେ ।

ଏଇପରି ଜଣେ ମଣିଷ ମୁଁ । ପ୍ରକୃତରେ ମୁଁ ମଣିଷ ହୋଇପାରିଛି କି ନାହିଁ କହିପାରିବି ନାହିଁ । ଗାଁ ପରିବେଶରେ ମୋର ଜନ୍ମ । ଏବେ ରହୁଛି ନଗର ପରିବେଶରେ । ତେବେ ଗାଁ ସହିତ ଯେ ମୋର ଯୋଗସୂତ୍ର ଛିଣ୍ଡିଯାଇଛି; ନୁହେଁ । ଦୁଇପଟରେ ମୁଁ ଗୋଡ଼ ଦେଇଛି । ତେବେ ଏଇଟା ମୋର ଦୋନାବୁଡ଼ିଆ ନୀତି ନୁହେଁ । ଗାଁ ମୋତେ ଧରି ରଖିପାରୁ ନାହିଁ । ମୁଁ ମଧ୍ୟ ଗାଁ ମାଟି, ଗାଁ ମଣିଷ ଓ ଗାଁର ସଂସ୍କୃତିକୁ ଛାଡ଼ିପାରୁ ନାହିଁ । ଏଣେ ନଗରରେ ମୋର ଅବସ୍ଥାନ । ନଗର ଲୋକଙ୍କ ସହିତ ସଂପର୍କ । ମୋର ଯାହା କିଛି ହୋଇଛି ବା ନ ହୋଇଛି ତାହା ଏଇ ନଗର ଯୋଗୁଁ । ତଥାପି ନଗର ମୋତେ ବାନ୍ଧି ରଖିପାରୁ ନାହିଁ । ଗାଁର ସେଇ ଚାଲିଚଳଣି, ସେଇ ସରଳ ଜୀବନ, ସେଇ ଶ୍ରଦ୍ଧା, ସହାନୁଭୂତି ମୋ ଭିତରେ ଦାନା ବାନ୍ଧି ରହିଛି । ସେଇ ମଣିଷଟି– 'ମୁଁ'... ବୈଷ୍ଣବ ଚରଣ ସାମଲ । ଏଇ ନାଁଟି କେମିତି ମୋର ହେଲା ଓ ଏଇ ନାଁରେ ପରିଚିତ ହୋଇ ପିଲାଦିନର ନାଁକୁ କେମିତି ସମାଧି ଦେଇଦେଲି– ଏକଥା ଭାବିଲେ ମୋତେ ଭାରି କୌତୂହଳ ଲାଗେ । ଏବେ ସେ କଥା କହୁ ନାହିଁ । ପରେ କହିବି ପ୍ରସଙ୍ଗକ୍ରମେ ।

ହଁ, ମୁଁ ଚାଲୁଛି ମୋ ବାଟରେ । ଚାଲୁ ଚାଲୁ ପାଦରେ କଣ୍ଟା ଫୁଟୁଛି । ଉଃ କହି କଣ୍ଟା କାଢୁଛି । ପୁଣି ଚାଲୁଛି । ଚାଲୁ ଚାଲୁ ମୁଁ ସଚେତନ ହୋଇଯାଉଛି– ମୋ ଭିତରେ ଏଇ 'ମୁଁ'ଟି କିଏ ? କେଉଁଠି ଅଛି ଏଇ 'ମୁଁ' ? ବାରମ୍ବାର ମୁଁ ଜାଣିବାକୁ ଚାହୁଁଛି; ଜାଣିପାରୁ ନାହିଁ । ଭାଗବତରେ ପାଲିଙ୍କି କାନ୍ଧେଇଥିବା ଜଡ଼ଭରତ ଅହଂଦୃପ୍ତ କ୍ଷମତାଶୀଳ ରାଜା ସୌବୀରଙ୍କୁ ତା'ର 'ମୁଁ'ଟି କେଉଁଠି ଅଛି ପଚାରିଲା ପରି ମୁଁ ବାରମ୍ବାର ପଚାରୁଛି ଏଇ 'ମୁଁ'ଟି ମୋ ଭିତରେ କେଉଁଠି ଅଛି ? ଇଏ କ'ଣ ବାହାରକୁ 'ମୁଁ' 'ମୁଁ' ହେଉଥିବା ସାଂସାରିକ 'ମୁଁ' ନା ମୋ ଭିତରେ ଥିବା ସେଇ ପରମ ସତ୍ତା 'ମୁଁ' ? ଇଏ କ'ଣ ମୋ ଦେହ ନା କୌଣସି ଅଙ୍ଗପ୍ରତ୍ୟଙ୍ଗ ନା ମୋର ଏଇ ନାମବାଚକ ଶବ୍ଦ 'ବୈଷ୍ଣବ' ! ନା ଇଏ ସବୁ କିଛି ନୁହେଁ । ସିଏ ମୋ ଭିତରେ ଯେମିତି ଅଛି ଅନ୍ୟମାନଙ୍କ ଭିତରେ ବି ସେମିତି ଅଛି । ତାକୁ ଯିଏ ଜାଣିଛି ବା ଚିହ୍ନିଛି ସିଏ ଆଉ ନିଜର କ୍ଷୁଦ୍ର 'ମୁଁ' ଭିତରେ ବାନ୍ଧି ହୋଇଯାଏ ନାହିଁ । ସିଏ ମୁକ୍ତ । ଆପଣାର 'ମୁଁ'କୁ ସିଏ ଦେଖେ ସଭିଙ୍କଠାରେ ଓ ସଭିଙ୍କୁ ନିଜର 'ମୁଁ' ଭିତରେ ଦେଖେ । ସେତିକିବେଳେ ସିଏ ପ୍ରସାରିତ ହୋଇଯାଏ, ବିଶ୍ୱବ୍ୟାପୀ ହୋଇଯାଏ । ତାକୁ ଆଉ କ୍ଷୁଦ୍ରତା ସ୍ପର୍ଶ କରେ ନାହିଁ । କ'ଣ ଟିକେ ପାଇବା ପାଇଁ, ନାଁ କମେଇବା ପାଇଁ କାହାର ପଦଲେହନ କରେ ନାହିଁ । ସକଳ ବିଭକ୍ତ ସତ୍ତାରେ ସେ ଦେଖେ ଏକ ଅବିଭକ୍ତ ସତ୍ତାକୁ । ଏପରି ଅବସ୍ଥାରେ ସିଏ ଜାତି, ଧର୍ମ, ଭାଷା ଓ

ଆଞ୍ଚଳିକତାର ମୋହ ଭିତରୁ ମୁକ୍ତ ହୋଇଯାଏ । ଗୋଟାଏ ଅମୃତ ଭାବନା ତାକୁ ଅଭିଭୂତ କରିଦିଏ । ତେଣୁ ସିଏ ହୁଏ ଉଦାର, ସହିଷ୍ଣୁ, ସତ୍ୟନିଷ୍ଠ, ପରଦୁଃଖକାତର ଓ ବିଶ୍ୱତୋମୁଖୀ । ସେଇ ଲୋକଟି ବାଛି ନିଏ ତା'ର ବାଟ– ସୁରୁଚି ମାର୍ଗରେ ଯିବ ନା ସୁନୀତି ମାର୍ଗରେ ଯିବ ? ସୁରୁଚି ମାର୍ଗରେ ଗଲେ ହୁଏତ ସେ ପାଇଯିବ ରାଜପଦ, ଐଶ୍ୱର୍ଯ୍ୟ, କବଚକୁଣ୍ଡଳ, ପାଟଯୋଡ଼ । 'ଉତ୍ତମ'କୁ ଲାଭ କରିବ ମଧ୍ୟ । ମାତ୍ର ଏସବୁ କ୍ଷଣସ୍ଥାୟୀ । ଆଜି ଅଛି କାଲି ନାହିଁ । ସୁନୀତି ମାର୍ଗରେ ଦୁଃଖ ଅଛି, ଯନ୍ତ୍ରଣା ଅଛି; ହୁଏତ ଦଣ୍ଡ ଭୋଗିପାର ମାତ୍ର ପାଇଯିବ ଧ୍ରୁବ ପଦ, ଯାହା ଚିରନ୍ତନ । ଆଜିର ମଣିଷ କିନ୍ତୁ ବାଛି ନେଉଛି ସୁରୁଚିର ମାର୍ଗ । ଉତ୍ତାନପାଦ ମଣିଷ ସୁରୁଚି ମାର୍ଗରେ ଯାଇ ପଦେ ପଦେ ଦୁଃଖ ପାଇଛି, ଅନୁତାପ କରିଛି । ଫେରିଛି ପୁଣି ସୁନୀତି ମାର୍ଗକୁ । ମଣିଷ ଏକଥା ବୁଝୁ ନାହିଁ । ନିଜର ସୁଖସୁବିଧା ପାଇଁ ବ୍ୟସ୍ତ ରହି ସୁରୁଚିକୁ ଆପଣାର କରୁଛି; ଦୂରେଇଯାଉଛି ସୁନୀତି ମାର୍ଗରୁ ।

ମୁଁ ଚାଲିଛି ମୋ ବାଟରେ । ମୁଁ ଧରିପାରି ନାହିଁ ସୁରୁଚି ମାର୍ଗକୁ । ଥରେ ରେଭେନ୍ସା କଲେଜରେ ମୋର ଜଣେ ପ୍ରାକ୍ତନ ଏମ.ଏ. ଛାତ୍ର ଅଧ୍ୟାପକ ହୋଇଥାଏ, ମୋତେ ସିଗାରେଟ ଦେଇ ତା' ସିଗାରେଟରୁ ଅଗ୍ନି ସଂଯୋଗ କରିବାକୁ କହିବାରୁ ମୁଁ ମନା କଲି ଓ କହିଲି ମୁଁ ଆଉ ସିଗାରେଟ ଖାଉ ନାହିଁ । ସିଏ ମୋତେ କହିଲା– ସାର୍ ! ଆପଣ 'ମଫ' ହୋଇ ରହିଗଲେ । ପ୍ରକୃତରେ ମୁଁ ସେଇ 'ମଫ' ହୋଇ ରହିଯାଇଛି । ମୁଁ ଚାଲୁଛି ସୁନୀତି ମାର୍ଗରେ । ଭେଟୁଛି ବିପଦ ପରେ ବିପଦ, ସଂଘର୍ଷ ପରେ ସଂଘର୍ଷ; ତଥାପି ଚାଲୁଛି । ଗାଁର ସମସ୍ତ ସଂପତ୍ତି ହରେଇ ଦେଇଛି । ନଗରରେ ବି ମୋର ବିଶ୍ୱାଏ ଜାଗା ନାହିଁ । ମୋ ସ୍ତ୍ରୀ ତା' ବାପଘରୁ ଆଣିଥିବା ଅର୍ଥରେ କେଇ ଡିସିମିଲ ଜାଗାରେ ଘର କରିଛି । ସେଇଠି ମୁଁ ମୁଣ୍ଡ ଗୁଞ୍ଜିଛି । ମୋ ଭିତରେ ବେଳେବେଳେ ସୁରୁଚି ମାର୍ଗରେ ଯିବାକୁ ଯେ ଇଚ୍ଛା ହୋଇ ନାହିଁ; ତୁହେଁ । ଯାଇପାରି ନାହିଁ ସେଇ ମାର୍ଗରେ । ଚାଲୁଛି ସୁନୀତି ମାର୍ଗରେ । ଭାରି କଠୋର ଏ ମାର୍ଗ । ମୁଁ ତ ସଂସାରୀ ମଣିଷଟିଏ । ଏବେ ମୁଁ ଚଉସ୍ତରୀ ବର୍ଷରେ ପହଞ୍ଚିଗଲିଣି । ଏ ଶରୀରଟାକୁ ନାନା ବ୍ୟାଧି ଗ୍ରାସିଗଲାଣି । ମୁଁ କିନ୍ତୁ ସେଥି ପ୍ରତି ନଜର ନ ଦେଇ ବାଟ ଚାଲୁଛି– ସାରା ଓଡ଼ିଶାର ବିଭିନ୍ନ ସ୍ଥାନକୁ, କେଉଁଠି କେଉଁ ସାହିତ୍ୟ ସଭାକୁ, ଧର୍ମସଭା ବା ଅନ୍ୟ କେଉଁ ସଭାକୁ । କାହାରି କଥା ଭାଙ୍ଗିହେଉ ନାହିଁ । ଅନ୍ୟମାନଙ୍କର ସ୍ନେହ ମମତାରେ ଟାଣି ହୋଇଯାଉଛି । ଯାଉଛି ମଧ୍ୟ ଭାରତର କେତେକ ସ୍ଥାନକୁ । କେତେ କେତେ ସେମିନାରରେ ଯୋଗ ଦେଉଛି, କେତେ ପ୍ରବନ୍ଧ ଲେଖୁଛି । ଭାବୁଛି; ଆଉ ଅବା କେତେଟା ବର୍ଷ ! କାହିଁକି କାହାକୁ ମନା କରିବି ? ମୋ ସ୍ତ୍ରୀ ବିରକ୍ତ ହେଉଛି ମୋ ଉପରେ । ଘରେ ଥିଲେ ବି ସବୁବେଳେ ଗହଳି ।

ବାଟୋଇଟିଏ ମୁଁ । ଆଗକୁ ବଡ଼ କୁହୁଡ଼ିଆ ଦିଶୁଛି । କେଉଁଠି ଯେ ଦିନେ ଠପ୍ ହୋଇଯିବ କିଏ ଜାଣେ ? ସେଇ ଅନିର୍ବଚନୀୟ ଅଦୃଶ୍ୟ ଶକ୍ତି ହିଁ ଜାଣେ ସବୁ କଥା । ମୁଁ ସିଆଡ଼କୁ ମନ ନ ଦେଇ ମୋ ବାଟରେ ଚାଲୁଛି– ଏକଲା । କେତେ କେତେ ଲୋକ ଭେଟ ହେଉଛନ୍ତି– କିଏ ପ୍ରଶଂସା କରୁଛନ୍ତି ତ କିଏ ନିନ୍ଦା କରୁଛନ୍ତି, କିଏ ଆଳାପ କରୁଛି ତ କିଏ ମୁହଁ ମୋଡୁଛି, କିଏ ଆଗରେ ପ୍ରଶଂସା କରି ପଛରେ ଛୁରୀ ମାରୁଛି । ଏବେ ମୋ ବିଗତ ତେଷ୍ଠରୀ ବର୍ଷର ଜୀବନଟା ଝାପ୍‌ସା ଦିଶୁଛି । ପିଲାଦିନରୁ ଏଯାବତ୍ କେତେ କେତେ ଘଟଣା ମନେ ପଡ଼ିଯାଉଛି । କେଉଁ ଘଟଣା ମନେପଡ଼ିଗଲେ ଆଖିରୁ ଲୁହ ଝରିପଡୁଛି ନୀରବରେ । ଅନ୍ୟ କେଉଁ ଘଟଣା ମନେପଡ଼ିଲେ ଆନନ୍ଦ ଲାଗୁଛି, ହୃଦୟଟା ବିସ୍ତାରିତ ହୋଇଯାଉଛି । ସେଇ ସବୁ ଘଟଣାକୁ ମନେପକାଇ ତାହାକୁ ଲେଖିଦେବାକୁ ମୋ ଭିତରେ ବାସନାଟିଏ କଅଁଳି ଉଠୁଛି । ପୁଣି ଚିନ୍ତା କରୁଛି କାହିଁକି ଲେଖିବି ? କିଏ ପଢ଼ିବ ଇଏ ଅକିଞ୍ଚନର ଆତ୍ମଚରିତ ? କ'ଣ ବା ଅଛି ମୋ ଜୀବନରେ ? ମୁଁ ତ କେଉଁ ବଡ଼ ମଣିଷ ନୁହେଁ, ଉଚ୍ଚ ପଦବୀଧାରୀ ନୁହେଁ, ରାଜନେତା ବି ନୁହେଁ– ମୋ ଆତ୍ମଚରିତକୁ କିଏ ପଢ଼ିବ କାହିଁକି ? କ'ଣ ମିଳିବ ଏଥିରୁ ? ତଥାପି ଲେଖୁଛି ମୋ ସଂଘର୍ଷମୟ ଜୀବନର କାହାଣୀ । ପିଲାଦିନରୁ ମୁଁ ଲୋକଙ୍କ ସହିତ ମିଶିଆସିଛି । ଭଲ ପାଇଛି ସେମାନଙ୍କୁ । ସେମାନଙ୍କ ସୁଖଦୁଃଖରେ ଭାଗୀଦାର ହୋଇଛି । ହୁଏତ ସେଇମାନଙ୍କ ଭିତରୁ କେହି କେହି ପଢ଼ିପାରନ୍ତି । ସେଇମାନେ ହିଁ ଜାଣିବେ ମୁଁ କ'ଣ ? ଅନ୍ୟମାନେ ହୁଏତ ନିଜ ନିଜର 'ମୁଁ' ପଣିଆକୁ ପାଥେୟ କରି ନାନା କଥା କହିପାରନ୍ତି, ହୁଏତ କହିପାରନ୍ତି ମୁଁ ମିଛ କହୁଛି ବା ବାହାଦୁରି ଦେଖାଉଛି । ତଥାପି ମୁଁ ଲେଖୁଛି ମୋ ଅସାର ଜୀବନର କାହାଣୀ ।

ପ୍ରକୃତରେ ମୁଁ ଜଣେ ବଣା ବାଟୋଇ । ବାରମ୍ବାର ଚାଲୁ ଚାଲୁ ବାଟ ହୁଡ଼ି ଯାଉଛି । ଜଙ୍ଗଲ ଭିତରେ ପଶି ବାଟବଣା ହୋଇଯାଉଛି । କିଏ କେତେ ବାଗରେ ମୋତେ ଭୁଲାଇ ବାଟ ହୁଡ଼େଇ ଦେଉଛନ୍ତି । ମୁଁ କିନ୍ତୁ ସରଳରେ ବିଶ୍ୱାସ କରିଯାଉଛି । ଭରସା ଗୋଟିଏ ଅଦୃଶ୍ୟ ଶକ୍ତି ଉପରେ । ବାଟ ହୁଡ଼ିଗଲେ ସେ ଉଦ୍ଧାର କରିନେବେ । ତେବେ ବାଟ ହୁଡ଼ି ବାଟ ଖୋଜିବାରେ ଆନନ୍ଦ ଅଛି । ମୁଁ ଖୋଜୁଛି ମୋ ବାଟ । କିଏ କହୁଛି ବୋକା, କିଏ କହୁଚି ଚତୁର । ସବୁ ଶୁଣୁଚି । ନୀରବ ରହୁଚି । ମୁଁ ଚାଲୁଚି ମୋ ବାଟରେ । ଚିହ୍ନୁଚି କେତେ ମଣିଷଙ୍କୁ, ଜାଣୁଚି ଚତୁରମାନଙ୍କ ଅହଙ୍କାରକୁ, କ୍ଷୁଦ୍ରତାକୁ, ଆତ୍ମମ୍ଭରିତାକୁ, ଦେଖୁଚି ଆତ୍ମପ୍ରଚାରମୁଖୀ ଲୋକଙ୍କୁ । ତା'ରି ଭିତରେ ମୁଁ ବଣା ବାଟୋଇଟିଏ ଚାଲୁଚି ।

ଜର୍ମାନରେ ଅବସ୍ଥାନ କରୁଥିବା ଇଂଜିନିୟର ଓ ଓଡ଼ିଆ ପ୍ରାଣ ସୁସାହିତ୍ୟିକ ମୋର ଅନୁଜ ପ୍ରତିମ ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସଙ୍କ ବାରମ୍ବାର ତାଗିଦାରୁ ମୁଁ ଲେଖନୀ

ଧରୁଛି ଲେଖିବା ପାଇଁ ମୋ ଜୀବନର କାହାଣୀ । ତାଙ୍କର ପ୍ରୋତ୍ସାହନ ପାଇଁ ମୁଁ କେଉଁ ଭାଷାରେ ତାଙ୍କୁ ଧନ୍ୟବାଦ ଦେବି ? ଆଉ ଯେଉଁମାନେ ମୋତେ ଜାଣିଛନ୍ତି ଓ ମୋତେ ଭଲପାଇଛନ୍ତି ସେମାନଙ୍କ ଭିତରେ ମୋର ଛାତ୍ର ଡକ୍ଟର ବିଜୟାନନ୍ଦ ସିଂହ ମୋତେ ଏକରକମ ବାଧ କରୁଛନ୍ତି ଆତ୍ମଚରିତ ଲେଖିବାପାଇଁ । କାରଣ ସେ ମୋ ଜୀବନର କଥା ପ୍ରାୟ ସବୁ ଜାଣିଛନ୍ତି । ସେ କହନ୍ତି– ଆପଣଙ୍କର ଏତେ ସଂଘର୍ଷମୟ ଓ ଲୋକାଭିମୁଖୀ ଜୀବନ ଆଉ କାହାର ଅଛି ? ଆପଣ ଲେଖନ୍ତୁ, କାହାରି କଥାରେ କିଛି ନାହିଁ । ବାଣୀବିହାରର ଓଡ଼ିଆ ବିଭାଗର ଅବସରପ୍ରାପ୍ତ ପ୍ରଫେସର ମୋର ଅତ୍ୟନ୍ତ ଶ୍ରଦ୍ଧାସ୍ପଦ ଡକ୍ଟର ବିଜୟ କୁମାର ଶତପଥୀ, 'ଜନସୁଧା'ର ସଂପାଦକ ଦିଲୀପ କୁମାର ବେଉରା, ଅଧ୍ୟାପକ ଡକ୍ଟର ପ୍ରକାଶ କୁମାର ପରିଡ଼ା, 'ଗୋଲା ଗାଁରୁ ଗୋଲ ଗମ୍ବୁଜ'ର ଲେଖକ ମୋର ପରମ ସୁହୃଦ ପୂର୍ବତନ ଆଇ.ଜି. ଓ ସାଂସଦ ବିଶିଷ୍ଟ ଔପନ୍ୟାସିକ ଶ୍ରୀଯୁକ୍ତ ଅନାଦି ସାହୁ, ବିଶ୍ୱଭାରତୀ, ଶାନ୍ତିନିକେତନର ପ୍ରଫେସର ଡକ୍ଟର ଆନନ୍ଦ କୁମାର ସାହୁ, ଡକ୍ଟର ମନୋରଂଜନ ପ୍ରଧାନ, ମୋର ପୂର୍ବତନ ଛାତ୍ର ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ ଆଉ ଅନୁଜପ୍ରତିମ ଜ୍ଞାନଦୀପ୍ତ ପ୍ରଫେସର ବାଉରୀବନ୍ଧୁ କର ଓ ଡକ୍ଟର ଗିରୀଶ ଚନ୍ଦ୍ର ସାହୁ ପ୍ରମୁଖ ମୋତେ ବହୁ ଭାବରେ ପ୍ରେରଣା ଦେଇଥିବାରୁ ସେମାନଙ୍କ ନିକଟରେ ମୁଁ ଋଣୀ । କେତେ କେତେ ନରନାରୀ, ବିଦ୍ୱାନ୍ ବିଦୂଷୀ, ଧର୍ମାତ୍ମା ପୁରୁଷ ଓ ସାଧାରଣ ଲୋକ, କେତେ ଛାତ୍ରଛାତ୍ରୀଙ୍କ ସଂପର୍କରେ ଆସି ଅନେକ ଅନୁଭୂତି ଅର୍ଜନ କରିଛି । ସାରା ଓଡ଼ିଶାର, ଉପାନ୍ତ ଅଞ୍ଚଳ ଓ ବିଚ୍ଛିନ୍ନ ଅଞ୍ଚଳର ଲୋକଙ୍କ ସଂପର୍କରେ ଆସିଛି । ଅନୁଭବିଛି ଲୁହ ଓ ଆନନ୍ଦର କଥା । ସବୁକୁ ନେଇ ମୁଁ ଲେଖୁଛି ମୋ ଅଲୋଡ଼ା ଜୀବନର କାହାଣୀ ।

ସମସ୍ତଙ୍କ ଅନୁରୋଧକ୍ରମେ ଲେଖୁଛି ଅନିଚ୍ଛାସତ୍ତ୍ୱେ ମୋ ଜୀବନର କାହାଣୀ । କେହି ନ ପଢ଼ିଲେ ବି ଅନ୍ତତଃପକ୍ଷେ ମୋ ପୁଅ, ଝିଅ, ଜ୍ୱାଇଁ, ନାତିନାତୁଣୀ ତ ପଢ଼ିବେ; ପଢ଼ିବେ ମଧ୍ୟ ମୋତେ ଭଲପାଉଥିବା ଆତ୍ମୀୟମାନେ । ଅନାଗତ ଭବିଷ୍ୟତର ଦାୟାଦମାନେ ଜାଣିବେ ଯେ ଜଣେ କି ସଂଘର୍ଷ ସଂଘାତ ଓ ସଂକଟ ଭିତରେ ଜୀବନ କଟାଇଛି । ମୁଁ ମଧ୍ୟ ଅତୀତକୁ ରୋମନ୍ଥନ କଲାବେଳେ ଜାଣିଯିବି ମୋର ତ୍ରୁଟି କେଉଁଠି । ଅନ୍ତତଃ ମୁଁ ହିସାବ ନିକାଶ କରିପାରିବି ମୋ ଅତୀତର, ବିତାଇଥିବା ମୋ ଜୀବନର ଦିନଗୁଡ଼ିକ । ସେକାଳ ଏକାଳ ମଧ୍ୟରେ ତଫାଡ଼୍‌ଟା କ'ଣ ହୁଏତ ମୁଁ ଜାଣିପାରିବି । ବାଟ ଚାଲୁ ଚାଲୁ ହୁଏତ ଥକ୍କା ହୋଇପଡ଼ି ରାସ୍ତାକଡ଼ର କେଉଁ ଗଛ ଛାଇତଳେ ବସିପଡ଼ି ଦୀର୍ଘଶ୍ୱାସଟିଏ ଛାଡ଼ି ଦେଇ କ୍ଳାନ୍ତି ମେଣ୍ଟାଇବା ସଙ୍ଗେ ସଙ୍ଗେ କ'ଣ କ'ଣ ମୁଁ ଛାଡ଼ିଆସିଲି ମୋ ପଛରେ, ତାହା ମନେପକାଇବି । ଏଇ କାହାଣୀଟି ଠିକ୍ ମୋର ନୁହେଁ; ମୋ

ସମୟର, ମୋ ଗାଁର, ମୋ ପରିବେଶର କାହାଣୀଟିଏ । ମୁଁ ଭଲପାଏ ମୋ ମାଟିକୁ, ମଣିଷଙ୍କୁ ଓ ମୋର ସଂସ୍କୃତିକୁ । ତେଣୁ ମୁଁ ମିଶେ ଅତି ତଳିଆ ବର୍ଗର ମଣିଷମାନଙ୍କ ସହିତ । ସେଇମାନଙ୍କ ସହିତ ବସେ, ଆଳାପ କରେ; ଶୁଣେ ସେମାନଙ୍କ ଦୁଃଖସୁଖର କାହାଣୀ । ମୋ ଲେଖା ଭିତରେ ସେଇମାନେ କେମିତି କେଉଁ ବାଟେ ପଶିଆସନ୍ତି । ମୋତେ କୁତୁକୁତୁ କରନ୍ତି । ସେମାନଙ୍କୁ ମୁଁ ହୃଦୟ ଖୋଲା ଅଭିନନ୍ଦନ ଜଣାଉଅଛି । ମୁଁ ମୋ ଗାଁଠାରୁ ଆରମ୍ଭ କରି ନଗର ପର୍ଯ୍ୟନ୍ତ, ମୋ ପ୍ରଦେଶଠାରୁ ଆରମ୍ଭ କରି ଅନ୍ୟ ପ୍ରଦେଶ ପର୍ଯ୍ୟନ୍ତ ପାଇଛି ଅମାପ ସ୍ନେହ ଓ ଶ୍ରଦ୍ଧା । ଅନେକଙ୍କଠାରୁ ମଧ ପାଇଛି ପ୍ରେରଣା । ଆଜି ମୋ ଆତ୍ମକାହାଣୀ ଲେଖିବାକୁ ଗଲାବେଳେ ସେସବୁ ମନେପଡ଼ିଯାଉଛି । କାଳେ ଲମ୍ବିଯିବ ମୋ କାହାଣୀ; ସେଥିପାଇଁ ଯଥାସମ୍ଭବ ସଂକ୍ଷିପ୍ତ କରୁଛି । କାଳେ ଲେଖୁ ଲେଖୁ ବଣା ହୋଇଯିବି, ସେଥିପାଇଁ ସତର୍କ ହୋଇଯାଉଛି ।

## ମୋ ବଂଶ ପରିଚୟ ଓ ମୋ ଗାଁ

ଆତ୍ମଚରିତଟିଏ ଲେଖିବାକୁ ଗଲାବେଳେ କ'ଣ ପରିଚୟଟିଏ ଦେବାକୁ ହେବ ବୋଲି, ଯାହା ଜାଣିଛି, ଶୁଣିଛି ପିଲାଦିନେ ମୋ ଜେଜେ, ମୋ ବାପା ଓ ଦାଦାଙ୍କଠାରୁ, ତାହାର ସୂଚନା ଦେଉଛି ମାତ୍ର । ଶୁଣିଛି ଆମ ପୂର୍ବପୁରୁଷ କୁଆଡ଼େ ଖୋର୍ଦ୍ଧା କଟକରୁ ଉଠିଆସିଲେ ଯାଜପୁରକୁ, ବସତି ସ୍ଥାପନ କରିଥିଲେ ବିଂଝାରପୁରର ଦକ୍ଷିଣପଟେ ଖରସ୍ରୋତା ନଦୀକୂଳବର୍ତ୍ତୀ ଏକ ଗାଁ ରଣପୁରରେ । ଏଇ ପୂର୍ବପୁରୁଷମାନେ ଥିଲେ ପାଇକ କୁଳର । ଗଜପତିଙ୍କ ପାଇକ ବାହିନୀରେ ସେମାନେ ଯୁଦ୍ଧ କରୁଥିଲେ । ନିଷ୍କର ଜମି ଭୋଗ କରୁଥିଲେ । ସେଇ ବଂଶର ବିଦ୍ୟାଧର ଖେଣ୍ଡୁଆଡ଼ ସିଂହ ସପରିବାର ଆସି ରଣପୁରରେ ବସବାସ କଲେ । ସେମାନଙ୍କ ସଂଖ୍ୟା ବଢ଼ିଲା । ସହଜେ ଖରସ୍ରୋତାର ବନ୍ୟାରେ ସେଇ ଗାଁ ପ୍ରତିବର୍ଷ ବର୍ଷାଋତୁରେ ଜଳ ଭିତରେ ବୁଡ଼ି ରହିଲା । କିଛିଦିନ ପରେ ସେଇ ଗାଁରୁ କାର୍ତ୍ତିକ ସାମଲ ଓ ତାଙ୍କର ଆଉ କେତେଜଣ ଭାଇ ଉଠିଆସିଲେ ବ୍ରାହ୍ମଣୀ ନଦୀପାର ହୋଇ ଚାରିଗାଁକୁ । ସେତେବେଳେ ବନ୍ଧବାଡ଼ କିଛି ନ ଥିଲା । ସେମାନେ ପ୍ରଥମେ ଆସି ଏବେ ଯାହାକୁ ଦଶମାଣିଆ କୁହାଯାଉଛି, ସେଇଠି ରହିଲେ । ବ୍ରାହ୍ମଣୀ ବନ୍ୟାରେ ସେଇ ଗାଁ ଭାସିଯିବାରୁ ସେଠାରୁ ସେମାନେ ଉଠି ଆସିଲେ ଆହୁରି ଦକ୍ଷିଣପଟକୁ । ୧୮୬୬ ମସିହା ନ'ଅଙ୍କ ଦୁର୍ଭିକ୍ଷ ବେଳେ ହଜାର ହଜାର ଲୋକ ଖାଇବା ବିନା ମଲେ । ସେତିକିବେଳେ ଆମ ରାଜ୍ୟର କମିଶନର ରେଭେନ୍ସା ସାହେବଙ୍କର ଚେତା ପଶିଲା । ଲୋକଙ୍କ ମରଣର ପାପକୁ ସେ ନିଜ ମୁଣ୍ଡକୁ ନେଇଗଲେ । ପ୍ରାୟଶ୍ଚିତ୍ତ ପାଇଁ ସେ କେତେ

ହିତକର କାମ କଲେ । ମହାନଦୀରେ କଟକଠାରେ ଆନିକଟ କରି ସେଠାରୁ କେନାଲ ଖୋଳାଇ ଜଗତ୍‌ସିଂହପୁର, କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇ ଆଦି ଅଞ୍ଚଳକୁ ଜଳ ଯୋଗାଇ କୃଷିର ଉନ୍ନତି ବିଧାନ କଲେ । ସେଇ ଜଗତପୁରଠାରୁ ପଟ୍ଟାମୁଣ୍ଡାଇ କେନାଲ ବିରୂପା ନଦୀବନ୍ଧ କଡ଼େ କଡ଼େ ଇନ୍ଦୁପୁର ପର୍ଯ୍ୟନ୍ତ ଯାଇ ସେଠାରୁ ବ୍ରାହ୍ମଣୀ ନଦୀ ବନ୍ଧ ପାଖେ ପାଖେ ଅଳଭା ପର୍ଯ୍ୟନ୍ତ ଯାଇଅଛି । ଏଇ ପଟ୍ଟାମୁଣ୍ଡାଇ କେନାଲ ଓ ବ୍ରାହ୍ମଣୀ ନଦୀ ବନ୍ଧ ମୋ ଗାଁକୁ ଦି'ଭାଗ କରି ଦେଇଛି । ଉତ୍ତରପଟେ ନିରୋଳା ଖଣ୍ଡାୟତ ବସ୍ତି । ଅଳ୍ପ କିଛି ଗୋପାଳ, ବାରିକ ଓ ପାଣ ଅଛନ୍ତି । କେନାଲର ଦକ୍ଷିଣପଟେ ବିରାଟ ବସ୍ତି । ମୋଟ ଚାରୋଟି ସାହି– ମଠସାହି, ବାଲିସାହି, କଦଳୀଗୋରଡ଼ା ଓ ଗଣ୍ଡସାହି । ମଠସାହିରେ ପ୍ରଭୁ ଜଗନ୍ନାଥଙ୍କ ମନ୍ଦିର । ସିଏ ଆମ ଗାଁର ଇଷ୍ଟଦେବତା । ସମସ୍ତେ ତାଙ୍କୁ ମାନନ୍ତି । ବାରମାସରେ ସେଠି ତେରପର୍ବ ହୁଏ । ମୁଖ୍ୟ ପର୍ବ ଦୋଳ ଉତ୍ସବ, ଜ୍ୟେଷ୍ଠପୂର୍ଣ୍ଣିମା ।

ଚାରିସାହି ମିଶି ଗୋଟିଏ ଗାଁ ହୋଇଥିବାରୁ ମୋ ଗାଁକୁ ଚାରିଗାଁ କୁହାଯାଏ । ପିଲାଦିନେ ଆମ ଗାଁର ଧରଣୀ ମାଷ୍ଟ୍ରେ କହୁଥିଲେ କୁଆଡ଼େ ଚାରୁ ନାମରେ ଗୋଟିଏ ଝିଅ ଆମ ଗାଁରେ ଥିଲା । ତାରି ନାଁ ଅନୁସାରେ ଆମ ଗାଁ ଚାରୁଗାଁରୁ କ୍ରମେ ଚାରିଗାଁ ହୋଇଗଲା । ବାଲିସାହି ତା'ର ସୁବିସ୍ତୃତ ଛକ ପାଇଁ ଚାରିସାହି ମଧ୍ୟରେ ପ୍ରସିଦ୍ଧ । ଏହି ଛକରେ ଥିଲା ଗୋଟାଏ ବିରାଟ ବିସ୍ତୃତ ପୁରାତନ ବରଗଛ । ମୋ ପିଲାଦିନେ ସେଇ ବରଗଛର ବୟସ କେତେ ପଚାରିଲେ, କେହି କହିପାରୁ ନ ଥିଲେ । ସେହି ଗଛକୁ ଛାଡ଼ି ଥିଲା ଆଉ ଗୋଟିଏ ବିରାଟ ଚାକୁଣ୍ଡା ଗଛ । ଆଉ ଟିକେ ଦୂରରେ ଅନ୍ୟ ଏକ ଚାକୁଣ୍ଡା ଗଛ ଥିଲା । ଛକଟି ବାଲୁକାମୟ । ସମଗ୍ର ଛକକୁ ବର ଓ ଚାକୁଣ୍ଡା ଗଛ ଢାଙ୍କି ରଖିଥିଲା ଏକ ବିରାଟ ଛତା ପରି । ଖରା ପଡୁନଥିଲା । ବରଗଛ ମୂଳେ ଗ୍ରାମଦେବତୀ ପଞ୍ଚୁରାଇଙ୍କର ଆସ୍ଥାନ । ମାଟିର ଗମ୍ଭୀରା ଭିତରେ ସେ ଥାଆନ୍ତି । ପାଖକୁ ଲାଗି ପୋଡ଼ା ମାଟିରେ ତିଆରି ଘୋଡ଼ା, ହାତୀ, ବାଘ ଆଦି କାହିଁରେ କ'ଣ ରହିଥିଲା । ଲୋକଙ୍କର ଭାରି ବିଶ୍ୱାସ ଥିଲା ଠାକୁରାଣୀଙ୍କ ଉପରେ । ବାହାଘର, ବ୍ରତଘରବେଳେ ମାଳୀ ଆସି ଠାକୁରାଣୀଙ୍କୁ ଗାଧୋଇ ଦିଏ, ତେଲ ହଳଦୀ ଲଗାଏ, ସିନ୍ଦୂର ଲଗାଏ, ଧୂପ ଦୀପ ଦେଇ ପୂଜା କରେ । ହଇଜା ଓ ବସନ୍ତ ବେଳେ ଠାକୁରାଣୀଙ୍କ ପୂଜାର୍ଚ୍ଚନା ଲାଗି ରହେ । ସେଇଠି ଲୋକେ ସନ୍ଧ୍ୟାବେଳେ କୀର୍ତ୍ତନ କରନ୍ତି । ଚଇତ୍ର ମାସରେ ସେଇଠି ପିଠାପଣା ହୁଏ । ଚଇତି ମଙ୍ଗଳବାର ଓଷା ହୁଏ । ଖରାଦିନେ ଶହ ଶହ ଶଗଡ଼ ଗାଡ଼ି ଆସି ରାତିରେ ସେଠି ରହେ । ଶଗଡ଼ିଆମାନେ ରାତିରେ ରୋଷେଇବାସ କରି ଖାଇପିଇ ବିଶ୍ରାମ ନିଅନ୍ତି । ସକାଳୁ ସକାଳୁ ଚାଲିଯାଆନ୍ତି ।

ବାଲିସାହି ଓ ମଠସାହି ମଧ୍ୟ ଦେଇ ଇନ୍ଦ୍ରପୁର/ପଚାମୁଣ୍ଡାଇ ରାସ୍ତା ଯାଇଛି । ସେଇ ରାସ୍ତାଟି ବହୁଦିନ ଧରି ମାଟି ରାସ୍ତା ଥିଲା । ରାସ୍ତାର ଦୁଇପଟେ ଜାମୁ, କରଂଜ, ଆମ୍ବ, ଖଜୁର, ଚାକୁଣ୍ଡା, ଓସ୍ତ, ବର ଆଦି ନାନା ଗଛ ଥିଲା । ସେତେବେଳେ ଗାଡ଼ି ଘୋଡ଼ା ନ ଥିଲା । ଲୋକେ ଚାଲି ଚାଲି ଯିବାଆସିବା କରୁଥିଲେ । ଏଇସବୁ ଗଛ ଛାଇ ସେମାନଙ୍କୁ ଖରା ଦାଉରୁ ରକ୍ଷା କରୁଥିଲା । ଏବେ ଆଉ ସେ ରାସ୍ତା ନାହିଁ । ପକ୍କା ହୋଇଗଲାଣି । ଗଛଗୁଡ଼ିକ କଟା ହୋଇଗଲାଣି । ଖାଁ ଖାଁ ଲାଗୁଛି ।

ମୋ ଗାଁର ଚାରିସାହି । ବାଲିସାହି– ବଡ଼ସାହି । ଲୋକସଂଖ୍ୟା ମଧ୍ୟ ବେଶି । ଏହି ବାଲିସାହିରେ ମୋ ଘର । ଏହି ସାହିରେ ମୋ ପୂର୍ବପୁରୁଷମାନେ ଚାରି/ପାଞ୍ଚ ପିଢ଼ି ଧରି ରହିଆସିଲେଣି । ଏହି ସାହିରେ ସାମଲସାହି ଦୁଇ ଭାଗରେ ବିଭକ୍ତ । ଗୋଟିଏ ହାତୀମଡ଼ା ଗୋବିନ୍ଦପୁରିଆ ସାମଲ ବସ୍ତି– ସେହି ସାହିକୁ ବଳିୟାରା ସାହି କୁହାଯାଏ । ଆଉ ଗୋଟିଏ ରଣପୁରିଆ ସାମଲ ସାହି– ଖେତ୍ରୁଆଡ଼ସିଂହ ସାହି କୁହାଯାଏ । ଆଉ ଅଛି ପାତ୍ର ସାହି, ପରିଡ଼ା ସାହି, ବ୍ରାହ୍ମଣ ସାହି । ପଚାମୁଣ୍ଡାଇ କେନାଲକୁ ଲାଗି ହରିଜନ ସାହି । ବାଲିସାହିକୁ ଲାଗି କଦଳୀ ଗୋରଡ଼ା । ଆରମ୍ଭରେ ମହାପୁରୁଷ ମଠ । ଭାରି ଡାକ ଥିଲା ଆଗେ । ଏହି ମଠର ଉତ୍ତରାଧିକାରୀ ସବୁ ମରିଗଲା ପରେ ବାଲ୍ୟବିଧବା ଚମ୍ପାନାନୀ ମଠକୁ ଚଳାଉଥିଲେ । ଦାମୋଦର ପଣ୍ଡା ନାମକ ଜନୈକ ବ୍ରାହ୍ମଣକୁ ଆଣି ମଠରେ ରଖି ଠାକୁରମାନଙ୍କର ପୂଜାର୍ଚ୍ଚନା କରାଉଥିଲେ । ଚମ୍ପାନାନୀର ଗୋରା ଟକଟକ ଚେହେରା । ମଠରେ ଥାଏ ଅନେକ ନଡ଼ିଆଗଛ, ଓଉଗଛ ଓ ତେନ୍ତୁଳିଗଛ । ଦାମୋଦର ପଣ୍ଡା ପଶାଖେଳରେ ପୋଖତ । ଛକ ଉପରେ କମ୍ବଳ ବିଛାଯାଇ ବଡ଼ ବଡ଼ ଲୋକେ ପଶା ଖେଳନ୍ତି । ସେତେବେଳେ ପଶା ଖେଳ ଥିଲା ସାଆନ୍ତିଆ ଖେଳ । ଦାମୋଦର ପଣ୍ଡାଙ୍କୁ ପଶା ଖେଳରେ ଶକୁନି କୁହାଯାଉଥିଲା । ଥରେ ପଶାଖେଳରେ ଇମିତି ଗଣ୍ଡଗୋଳ ହେଲା ଯେ ସେଇ ଦିନରୁ ପଶାଖେଳ ବନ୍ଦ ହୋଇଗଲା । ତଥାପି ଆମେ ପିଲାଦିନେ ସେଇ ଛକରେ ପଶା ଖେଳୁଥିଲୁ । ଆମ ଘରେ ପଶାମୁଠି ଥାଏ । ମୁଁ ନେଇକି ଯାଏ । ଆମେ ସାଙ୍ଗମାନେ ଖେଳୁ । ଛକରେ ଚାରିସାହିରୁ ଲୋକେ ଆସି ଜମା ହୁଅନ୍ତି । ପଶା, ତାସ, ବାଘଛେଳି ଖେଳ ହୁଏ । ବାଗୁଡ଼ି ଖେଳ ହୁଏ । ବିଶେଷତଃ ରଜ ତିନି ଦିନ ହୁଏ ବାଗୁଡ଼ି ଖେଳ ପ୍ରତିଯୋଗିତା । ଢୋଲ ମହୁରୀର ତାଳେ ତାଳେ ବାଗୁଡ଼ି ଖେଳ ଜମିଯାଏ । କେବଳ ଆମ ଗାଁର ଯୁବକମାନେ ଯେ ବାଗୁଡ଼ି ଖେଳନ୍ତି ତାହା ନୁହେଁ; ଆଖପାଖ ଗାଁରୁ ଯୁବକମାନେ ଆସନ୍ତି । ଗାଁ ଗାଁ ମଧ୍ୟରେ ହୁଏ ବାଗୁଡ଼ି ଖେଳ ପ୍ରତିଯୋଗିତା । ବ୍ରାହ୍ମଣୀ ନଦୀ ଆରପଟେ ଅଳପୁଆ ଆମ୍ବତୋଟା । ସେଠି ମଧ୍ୟ ପ୍ରତିବର୍ଷ ରଜବେଳକୁ ହୁଏ ବାଗୁଡ଼ି ପ୍ରତିଯୋଗିତା । ବାଗୁଡ଼ି ଖେଳକୁ ନେଇ ଗାଁ ଜାତୀୟତା ଫୁଟି ଉଠେ ଫଳରେ

ଗାଁ ଗାଁ ମଧ୍ୟରେ ଗଣ୍ଡଗୋଳ ହୁଏ ମାତ୍ର ମୁରବିମାନେ ବସି ତାକୁ ମିଳାଇ ଦିଅନ୍ତି । ଆଜି ଆଉ ସେ କାଳ ନାହିଁ, ସେ ଛକ ନାହିଁ, ବରଗଛ ନାହିଁ କି ଚାକୁଣ୍ଡାଗଛ ନାହିଁ । ସେଠି ଗଢ଼ି ଉଠିଛି ମନ୍ଦିର- ଶ୍ରୀରାମ ମନ୍ଦିର, ହନୁମାନ୍ ମନ୍ଦିର, ପଞ୍ଚୁରାଇ ମନ୍ଦିର, ଭାଗବତ ଘର । ମାତ୍ର ଅତୀତର ସେ ଐଶ୍ୱର୍ଯ୍ୟ ନାହିଁ, ଶ୍ରଦ୍ଧା ନାହିଁ, ଗାଁର ଏକତା ନାହିଁ, ଠାକୁରାଣୀଙ୍କ ପ୍ରତି ଭକ୍ତି ମଧ୍ୟ ନାହିଁ ।

ସେଇ ଛକରେ ଗଛ ଛାଇରେ ଚାନ୍ଦୁଆ ଟଙ୍ଗାଯାଇ ବାଦୀ ପାଲା ହୁଏ । ମୋର ମନେଅଛି ମୋ ବାପା କହୁଥିବା ପାଲାର ଇତିହାସ ସଂପର୍କରେ । ମୁଁ ପିଲା ହୋଇଥାଏ । ଧୂମାତ୍ ଭକ୍ତ ବିଳାସମଠ ପାଖରେ ବାଦୀପାଲା ହେଉଥାଏ- ସେକାଳର ଗାୟକରତ୍ନ ହରିନାଥ ଓ ଗାୟକଶେଖର ଜଗନ୍ନାଥ ବେହେରାଙ୍କ ମଧ୍ୟରେ । ଜଗନ୍ନାଥ ବେହେରା ହରିନାଥଙ୍କର ବେଶପୋଷାକ ଓ ଆଉ କେତୋଟି ଭୁଲ ଧରିଥିଲେ । ମୋ ବାପା ଭାରି ପାଲାପ୍ରେମୀ । ସେ ଜଗନ୍ନାଥ ବେହେରାଙ୍କୁ ପାଞ୍ଚ ଟଙ୍କା ଦେଇ ପୁରସ୍କୃତ କରିଥିଲେ । ସେ ବୋଧେ ସ୍ୱାଧୀନତାର ଠିକ୍ ପରବର୍ତ୍ତୀ ୧୯୪୮ ବା ୧୯୪୯ ମସିହା କଥା । ଆଉଥରେ ଆମ ଗ୍ରାମରେ କାଳିନ୍ଦୀଚରଣ ଜେନା, ନିରାକାର ଉଦଣ୍ଡ ରାୟ, ମୋ ବାପା ଶ୍ରୀବତ୍ସ ସାମଲ, ଭଗବାନ ଜେନା ଓ ଆଉ କେତେଜଣ ଯାଇଥିଲେ ବାଦୀପାଲା ଦେଖିବାକୁ ଧୂମାତ୍ ଗ୍ରାମକୁ । କ'ଣ ବସିବାରେ ଅପମାନିତ ହେଲେ । ସେଠୁ ଫେରିଆସି ଆମ ଗାଁ ଛକ ଉପରେ ସଭା କଲେ ଓ ଆମ ଗ୍ରାମରେ ପ୍ରତିବର୍ଷ ବାଦୀପାଲା ହେବ ବୋଲି ସିଦ୍ଧାନ୍ତ ଗ୍ରହଣ କଲେ । ପ୍ରତିବର୍ଷ ପ୍ରଥମାଷ୍ଟମୀକୁ ଲଗାଇ ଚାରିରାତି/ପାଞ୍ଚରାତି ବାଦୀପାଲା ହେଲା । ବେଶ୍ କିଛି ବର୍ଷ ଚାଲିଲା ପରେ ଗାଁ ଦୋମେଳିଆ ହେତୁ ବନ୍ଦ ହୋଇଗଲା । ଆମେ ଯୁବକମାନେ ପୁଣି ଆରମ୍ଭ କଲୁ ୧୯୫୯/୬୦ ମସିହାରୁ । ଏବେ ମଧ୍ୟ ସେହି ବାଦୀପାଲା ଚାଲିଛି ଶ୍ରଦ୍ଧେୟ ଅଧ୍ୟାପକ ହରିଶ୍ଚନ୍ଦ୍ର ପରିଡ଼ାଙ୍କ ଉଦ୍ୟମରେ । ମଣିନାଥ, ନରିନାଥ, ହରିନାଥ, ଧରଣୀନାଥ, କେଶବ କର, ନିରଂଜନ କର, ଜଗନ୍ନାଥ ବେହେରା, ବୈଷ୍ଣବ ଚରଣ ପ୍ରଧାନ, ପରମାନନ୍ଦ ସରଣ, କ୍ଷେତ୍ରମୋହନ ମିଶ୍ର, ତ୍ରିଲୋଚନ ଶତପଥୀ, ଅର୍ଜ୍ଜୁନ ଶତପଥୀ, ଅନନ୍ତ ମହାରଣା, ଧର୍ମାନନ୍ଦ ଦୀକ୍ଷିତ, ମାର୍କଣ୍ଡେୟ ବାହିନୀପତି, ଲକ୍ଷ୍ମଣ କୁମାର ରାଉତ, ନିରଞ୍ଜନ ପଣ୍ଡା ପ୍ରମୁଖ କେତେ କେତେ ସ୍ୱନାମଧନ୍ୟ ଗାୟକ ଆମ ଗ୍ରାମକୁ ଆସିଛନ୍ତି, ପାଲା ପ୍ରଦର୍ଶନ କରିଛନ୍ତି । ସେ କାଳରେ ଆଖପାଖ ଗାଁମାନଙ୍କରୁ ନରନାରୀ ଯୁବକଯୁବତୀ ପିଲାମାନେ ଆସୁଥିଲେ । ସାରା ରାତି ବାଦୀପାଲା ଦେଖୁଥିଲେ । ଏବେ ଆଉ ପାଲା ପ୍ରତି ଲୋକଙ୍କର ଆଗ୍ରହ ନାହିଁ । ପାଲାର ଗାମ୍ଭୀର୍ଯ୍ୟ ମଧ୍ୟ ହ୍ରାସ ପାଇଗଲାଣି । ତା'ର କାରଣ ଅନେକ । ଘରେ ଘରେ ଟିଭି । ସେଥିରେ ପୁଣି ଅପେରା ପାର୍ଟିମାନଙ୍କର ଗହଳ ଚହଳ । କିଏ କାହିଁକି ମାଗଣାରେ ପାଲା ଦେଖିବ ? ଶହେ/

ଦୁଇଶହ ଟଙ୍କା ଦେଇ ଅପେରା ଦେଖିବାରେ ଯେଉଁ ଆନନ୍ଦ ସେହି ଆନନ୍ଦ କ'ଣ ପାଲାରେ ମିଳିବ ? ହେଲେ ଅପେରା ଅପେରା, ପାଲା ପାଲା । ପାଲା ଆମ ସଂସ୍କୃତିର, ଆଚାର ବିଚାରର, ରୁଚିର, ସାହିତ୍ୟ ପ୍ରତି ଅନୁରାଗର ବାହକ । ତାହା ନୀତି ନୈତିକତା, ଧର୍ମ ଭାବନା ଓ ସହାବସ୍ଥାନର ମାର୍ମିକ ସନ୍ଦେଶ । ମୁଁ ପିଲାଦିନେ ଓ ମୋର ଯୁବକ ଅବସ୍ଥାରେ ଯେଉଁ ପାଲା ଦେଖିଥିଲି ସେ ପାଲା ଆଜି ନାହିଁ । କର୍ପୂର ଉଡ଼ିଗଲାଣି କନା ପଡ଼ିଛି । ଏ ଚାହିକଚିତା ଯୁଗରେ ପାଲାକୁ ପଚାରେ କିଏ ? ଏବେ କିଛି ଦିନ ତଳେ ଗାୟକ ଶେଖର ଜଗନ୍ନାଥ ବେହେରା ମୋ କଟକ ଘରକୁ ଆସିଥିଲେ । ବୟସ ଅନେକ ହୋଇଗଲାଣି । ମାତ୍ର ଅତୀତର ସ୍ମୃତି ସେଇମିତି ଅଛି । ସେ ଯେତେବେଳେ ମୋ ବାପା ତାଙ୍କୁ ପୁରସ୍କାର ଦେଇଥିବା କଥା କହିଲେ, ୧୯୬୨ ମସିହାରେ ଚୀନ ଭାରତକୁ ଆକ୍ରମଣ କରିଥିବା ସମୟରେ ଆମ ଗ୍ରାମରେ ପାଲା କରୁଥିଲାବେଳେ ଜାତୀୟ ସଙ୍ଗୀତ ଗାଇ ହଜାର ହଜାର ଲୋକଙ୍କୁ ଉଦ୍‌ବୁଦ୍ଧ କରି ଯୁଦ୍ଧ ପାଣ୍ଠି ପାଇଁ ଲୋକଙ୍କୁ ସାହାଯ୍ୟ ପାଇଁ ଆହ୍ୱାନ ଦେଲେ ଓ ଲୋକେ ସ୍ୱତଃ ସାହାଯ୍ୟର ହାତ ବଢ଼େଇ ଦେଲେ, ସେ କଥାକୁ ସେହି ମୋତେ ଅଭିଭୂତ କରିଦେଲେ ।

ଆମ ଗାଁରେ ବି ସ୍ୱାଧୀନତା ପୂର୍ବରୁ ଯାତ୍ରାଦଳଟିଏ ଥିଲା । ନୀଳମଣି କବି, ବିଦ୍ୟାଧର ସାମଲ, ମାନଗୋବିନ୍ଦ ଜେନା ଏହି ଯାତ୍ରାଦଳ ଗଠନ କରିଥିଲେ । କଦଳୀଗୋରଡ଼ାର ଗ୍ରାମଦେବତୀ ମାନିଆ ମଙ୍ଗଳାଙ୍କ ନାମରେ ଏହି ଯାତ୍ରାଦଳ ନାମିତ ହୋଇଥିଲା– 'ଚାରିଗାଁ ମାନିଆ ମଙ୍ଗଳା ଯାତ୍ରାପାର୍ଟି ।' ଆମ ଗ୍ରାମର କେତେ ଯୁବକ ଏହି ଦଳରେ ସାମିଲ ହୋଇ ଯାତ୍ରା କରୁଥିଲେ । ବେଶ୍ ପ୍ରଭାବଶାଳୀ ଥିଲା ଏ ଯାତ୍ରାଦଳ । ପ୍ରାୟ କୋଡ଼ିଏ ବର୍ଷ ଧରି ଓଡ଼ିଶାର ବିଭିନ୍ନ ସ୍ଥାନରେ ଯାତ୍ରାଭିନୟ ଦେଖାଇ ବେଶ୍ ପ୍ରଶଂସିତ ହୋଇଥିଲେ । ଆମ ଛକରେ ପ୍ରତିବର୍ଷ ଦୁଇ/ତିନି ରାତି ଯାତ୍ରା କରୁଥିଲେ । ସେତେବେଳେ ପଳସିଙ୍ଗାର ଗୋପାଳ ଦାଶଙ୍କ ଯାତ୍ରାପାର୍ଟି ଓଡ଼ିଶାରେ କେବଳ ନୁହେଁ; କଲିକତା, ଟାଟାନଗର ଆଦି ଅଞ୍ଚଳରେ ମଧ୍ୟ ଅତ୍ୟନ୍ତ ଆଦର ଲାଭ କରିଥିଲା । ଆମ ଗାଁ ଛକରେ ତାଙ୍କ ଯାତ୍ରାଦଳ ପ୍ରତିବର୍ଷ ଯାତ୍ରା କରୁଥିଲେ । ତାଙ୍କର ମୃତ୍ୟୁ ୧୯୩୯ ମସିହାରେ ହୋଇଯିବା ପରେ ତାଙ୍କ ପୁତ୍ର କୁଳମଣି କିଛିଦିନ ଯାତ୍ରାଦଳକୁ ବଞ୍ଚେଇ ରଖିଥିଲେ । ତା'ପରେ ସେହି ଦଳ ଭାଙ୍ଗିଗଲା । ଆମ ଗାଁ ଯାତ୍ରା ଓ ପାଲା ପ୍ରିୟ ଗାଁ । ସେତେବେଳେ ମୋ ବାପା ଆମ ଗାଁ ଯାତ୍ରାଦଳକୁ ପ୍ରୋତ୍ସାହନ ଦେଉଥିଲେ । ଯେତେବେଳେ ଛକ ଉପରେ ଯାତ୍ରା ହୁଏ ଲୋକେ ଥାଟପଟାଳି ଭାଙ୍ଗନ୍ତି । ମୋ ପିଲାଦିନେ ମୁଁ ଦେଖିଛି ଆମ ଗାଁ ଯାତ୍ରା । ସୁଦର୍ଶନ କାଣ୍ଡି ରାକ୍ଷସ ହୋଇ ବିକଟାଳ ମୂର୍ତ୍ତି ଧରି ଯେତେବେଳେ ଗୋଟାଏ ଖଡ୍‌ଗଧରି 'ମୁଁ ଖାଇବି ମୁଁ ଖାଇବି' କହି ଗର୍ଜନ କରେ, ପିଲାମାନେ କାନ୍ଦି

ଉଠନ୍ତି । ଏତିକିବେଳେ ଗିରିଧାରୀ କବି ବିଦୂଷକ ହୋଇ, ପେଟରେ କ'ଣ ଗୋଟାଏ ଉଚ୍ଚା କରି ବାନ୍ଧି, ବିଚିତ୍ର ବେଶରେ ବରଗଛର ଓହଳ ଧରି ମଞ୍ଚ ଉପରକୁ ଡେଇଁପଡ଼ି କହେ 'ମୁଁ ଦେବି ନାହିଁ, ମୁଁ ଦେବି ନାହିଁ;' ହସର ରୋଳ ଛୁଟେ ଦର୍ଶକଙ୍କ ଭିତରେ । ଯେତେବେଳେ ରଘୁନାଥ ପଣ୍ଡା ଭୀମ ହୋଇ ଗଦା ବୁଲେଇ ବୁଲେଇ ଆସେ, ବାବାଜୀ ମହାରଣା ଅର୍ଜୁନ ହୋଇ ଧନୁ ଧରି ଆସେ, ଗୋବିନ୍ଦ ପଣ୍ଡା ରାଜା ହୋଇ ମଞ୍ଚକୁ ଆସେ, ସେତେବେଳେ ମଞ୍ଚଟା ଚମକି ଉଠେ । ହେଲେ ଆମ ଗାଁ ଯାତ୍ରାଦଳ ସ୍ୱାଧୀନତା ପରେ ପରେ ଭାଙ୍ଗିଗଲା ।

ଆମ ଗାଁର ଉତ୍ତରପଟେ ଘେରିବନ୍ଧ ମଧ୍ୟରେ ଗଣ୍ଡସାହି । ସେଇଠି ବନ୍ଧ ଭାଙ୍ଗି ଗଣ୍ଡଟିଏ ହୋଇଥିଲା । ତେଣୁ ତାହାକୁ ଗଣ୍ଡସାହି କୁହାଯାଏ । ହାଲକୁ ତାକୁ ସାମନ୍ତ ସାହି କହୁଛନ୍ତି । ସେହି ସାହିରେ ଗଣ୍ଡକୁ ଲାଗି ଘେରିବନ୍ଧ ପାଖରେ ଚନ୍ଦ୍ରଶେଖର ଶିବମନ୍ଦିର ବିଦ୍ୟମାନ । ଆଗେ ଚାଳଘର ଥିଲା । ତାହାକୁ ଭାଙ୍ଗି ମନ୍ଦିର କରିବା ପାଇଁ ମେଘନାଦ ଜେନା, ବାନାମ୍ବର ଜେନା, ସୀତାନାଥ ପରିଡ଼ା, ଶ୍ୟାମସୁନ୍ଦର ପରିଡ଼ା ପ୍ରମୁଖ ଉଦ୍ୟମ କଲେ । ମୁଁ ସେତେବେଳେ ବିଶ୍ୱଭାରତୀରେ ଥାଏ । ମୁଁ ବହୁ ଲୋକଙ୍କଠାରୁ ଟଙ୍କା ଆଣି ପଠାଇଲି । ମୁଁ ମଧ୍ୟ କିଛି ଦେଲି । ଗଣ୍ଡରୁ ମାଛଧରା ଯାଇ ମନ୍ଦିର କାର୍ଯ୍ୟରେ ଲାଗିଲା । ମନ୍ଦିର ହୋଇଗଲା । ସେହି ଶିବଲିଙ୍ଗ ପାଖରେ ଜାଗର ମହାଦୀପ ଉଠେ । ନରନାରୀ ଯୁବକଯୁବତୀ ଜାଗର ବ୍ରତ ପାଳନ କରନ୍ତି । ଶିବଲିଙ୍ଗ ଉପରେ ସୋଲରେ ତିଆରି ଛତା ଟଙ୍ଗାଯାଏ । ଆଗେ ଯେପରି ଜାଗର ପର୍ବ ପାଳନ କରାଯାଉଥିଲା ଏବେ ଆଉ ସେପରି ନାହିଁ, ସବୁଥିରେ ଆଜିକାଲି ରାଜନୀତି । କୁଆଡ଼େ ଗଲା ସେକାଳ ? ଆଉ ସେ ଧର୍ମଭାବ, ସରଳ ବିଶ୍ୱାସ ନାହିଁ । ସବୁ କଥାରେ ବିରୋଧ । ଏବେ ସେକାଳକୁ ଖୋଜି ହେଲେ କ'ଣ ତାହା ଆଉ ଫେରିଆସିବ ? ଏ ରାଜନୀତି ନିଶାଟା ଗ୍ରାମ ଲୋକଙ୍କ ମନରୁ ନ ଖସିଲା ଯାଏ ସେ ସଂହତି, ସେ ସରଳତା ଆଉ ଆସିବ କି ?

## ମୋ ପିଲାଦିନ

ଏବେ ମୁଁ ଅଣ୍ଡାଳି ହେଉଛି ମୋ ପିଲାଦିନକୁ । ଆହାଃ ! ଥରେ ଫେରିଆସନ୍ତା କି ? ନା, ଯେତେ ମୁଣ୍ଡ ପିଟିଲେ ବି ସେ ଆଉ ଫେରିବ ନାହିଁ । ଥରେ କୃଷ୍ଣଚନ୍ଦ୍ର ଗୋପପୁରରୁ ଚାଲିଗଲେ ମଥୁରା, ସେଇଠୁ ଦ୍ୱାରକା । ତା'ପରେ ତ ହସ୍ତିନା–କୁରୁକ୍ଷେତ୍ର ମହାସମର–ରକ୍ତନଦୀ– ପୁଣି ଦ୍ୱାରକା–ଯଦୁବଂଶ ଧ୍ୱଂସ ଓ ଶେଷରେ ଜାରାଶବର ତୀରରେ ମୃତ୍ୟୁ । ସେଇମିତି ଏଇ ପିଲାଦିନ । ଗଲା ଯେ ଗଲା । ତଥାପି କାହିଁକି ବାରମ୍ବାର ମନେପଡ଼ିଯାଉଛି

ସେହି ହଜିଲା ଦିନ । ଯେତିକି ଭାବୁଛି ସେତିକି ରୋମାଞ୍ଚିତ ହେଉଛି । ମନେପକାଉଛି ମୋ ଅତୀତକୁ– ମୋ ବାପାମା'ଙ୍କୁ... ଗାଁକୁ... ଗାଁର ସାଙ୍ଗମାନଙ୍କୁ... ଖେଳ କୌତୁକକୁ... ପର୍ବପର୍ବାଣିକୁ... ଗାଁ ଠାକୁରାଣୀଙ୍କ ପାଖରେ ନିଶାପକୁ... ସବୁଜ ଧାନକ୍ଷେତକୁ... ପାଟଖଳାକୁ... ମାଳ ସାତଭଉଣୀ ବଣକୁ... ପାଳ ଅଞ୍ଚଳର ମୁଗ ବିରି ଧନିଆ ସୋରିଷ ଫେଣି କ୍ଷେତକୁ... ବନ୍ୟା ସମୟର ଦୃଶ୍ୟକୁ... ରାତିରେ ଡିହ ଉପରେ ହେଁସ ବିଛେଇ ଶୋଇ ଶୋଇ ଅପା, ଭଉଣୀ ଓ ମାଆମାନଙ୍କଠାରୁ ଅସୁର ଅସୁରୁଣୀ, ରାଜାପୁଅ, ରାଜାଝିଅ କଥା ଶୁଣିବାକୁ... ସବୁ କଥା ଗୋଟି ଗୋଟି କରି ମନେପଡ଼ିଯାଉଛି । ମନେପଡ଼ିଯାଉଛି ଗାଁ ଗୋଟାକର ସ୍ତ୍ରୀ ପୁରୁଷ–ବୁଢ଼ାବୁଢ଼ୀଙ୍କର ମୋ ପ୍ରତି ଥିବା ଭଲପାଇବା । ବିଶେଷତଃ ହରିଜନ ସାହିର ହୃଦୟଖୋଲା ମମତା ମୋତେ ବିହ୍ୱଳ କରି ଦେଉଛି । କେମିତି ଲେଖିବି ସେ କାହାଣୀ ?

ମୋ ବାପା, ମୋ ବୋଉ କହୁଥିଲେ ମୋ ଜନ୍ମ କାହାଣୀ । ମୋ ବାପାଙ୍କ ବାପା, ମୋ ଜେଜେ କୃତ୍ତିବାସ ସାମଲ ଥିଲେ ଜଣେ ମହତ ବ୍ୟକ୍ତି । ଚାଷବନ୍ଧୀ ପରିବାର ହେଲେ ମଧ୍ୟ ସେ ଥିଲେ ହୃଦୟବାନ୍ ମଣିଷ । ଲୋକେ ତାଙ୍କୁ ମାନୁଥିଲେ । ତାଙ୍କ ବାପା କାର୍ତ୍ତିକ ସାମଲ । ସିଏ ଯେମିତି ଶକ୍ତିଶାଳୀ ଥିଲେ ସେମିତି ବି ବଡ଼ ନିଶାପୀ ଥିଲେ । ସେକାଳରେ ଖାନଦାନୀ ବୁନିୟାଦୀ ଲୋକେ ପତିଆରା ଦେଖାଇ ଦୁଇ ତିନୋଟି ସ୍ତ୍ରୀଙ୍କୁ ବିବାହ କରୁଥିଲେ । ତାଙ୍କର ମଧ୍ୟ ଥିଲା ଦୁଇଟି ସ୍ତ୍ରୀ । ପ୍ରଥମ ସ୍ତ୍ରୀ ଗର୍ଭରୁ ମୋ ଜେଜେ କୃତ୍ତିବାସଙ୍କର ଜନ୍ମ । କୃତ୍ତିବାସଙ୍କର ଦୁଇ ଝିଅ– ରାଧାମଣୀ ବଡ଼, ସିଏ ଆମ ଗାଁରେ ବିବାହ କରିଥିଲେ ନିଶାମଣି ପରିଡ଼ାଙ୍କୁ । ସାନଝିଅ ଯୁତି ବାହା ହୋଇଥିଲା ତୁଳସୀଡିଆର ମାନଗୋବିନ୍ଦ ବିଶ୍ୱାଳଙ୍କୁ । ଶେଷକୁ ଦୁଇପୁଅ– ଶ୍ରୀବତ୍ସ ଓ ଦୁର୍ଗାଚରଣ । ଶ୍ରୀବତ୍ସ ବାହ ହୋଇଥିଲେ ଜୟକୃଷ୍ଣପୁରର ମଣିରାଉତଙ୍କ କନ୍ୟାକୁ; ମାତ୍ର ସେ ଅଳ୍ପଦିନ ମଧ୍ୟରେ ମରିଯିବାରୁ ତାଙ୍କର ସାନଭଉଣୀ ଜେମାମଣୀଙ୍କୁ ବାହା ହେଲେ । ତାଙ୍କର ପାଞ୍ଚ/ଛ'ଅ ଝିଅ ହେଲେ ଓ ସମସ୍ତଙ୍କର ଅଳ୍ପ ବୟସରେ ମୃତ୍ୟୁ ହୋଇଗଲା । ତା'ପରେ ଆଉ ଗୋଟିଏ ଝିଅ ହେଲା– ନାଁ ଅନ୍ନପୂର୍ଣ୍ଣା । ସାକ୍ଷାତ୍ ସେ ଅନ୍ନପୂର୍ଣ୍ଣା ପରି । ଭଲ ପଢୁଥିଲା ଗାଁ ଚାଟଶାଳୀରେ । ସେ ମଧ୍ୟ ମରିଗଲା । ପୁଅ ନାହିଁ । ବାପାଙ୍କ ମନ ଦୁଃଖ । ବୋଉର ଦୁଃଖ କାହିଁରେ କ'ଣ । ସେତେବେଳେ ଝିଅ ପ୍ରତି ଏତେ ଗୁରୁତ୍ୱ ନ ଥିଲା; ଥିଲା ପୁଅ ପ୍ରତି । ଏବେ ମଧ୍ୟ ସେଇ ମନୋଭାବ ଯେ ଚାଲିଯାଇଛି, ନୁହେଁ । ବୋଉ ମଙ୍ଗଳା ଓଷା କଲା, କୁଡିଆ ଓଷା କଲା । ବାପା କେବଳ ଶିବବ୍ରତ କରନ୍ତି ଜାଗରଦିନ । ପୁଅଟିଏ ପାଇଁ କେତେ ମାନସିକ । ବାପା ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥାନ୍ତି । ସେଥିରେ ପୁଣି ଛୁଆଁଅଛୁଆଁ ଭେଦଭାବକୁ ଉଠାଇବା ପାଇଁ ହରିଜନ ଆନ୍ଦୋଳନ କରୁଥାନ୍ତି ।

ମହାତ୍ମାଗାନ୍ଧୀ ଆମ ଅଞ୍ଚଳକୁ ୧୯୩୪ ମସିହାରେ ପଦବ୍ରଜରେ ଆସି ଧୂମାତ୍ର ଭକ୍ତବିଳାସ ମଠ ପାଖରେ ଗୋଟିଏ ଦିନ ରହିଥିଲେ । ରାତ୍ରିଯାପନ କରି ସେ ପୁଣି ସେଠାରୁ ବରୀ ଅଭିମୁଖେ ଯାତ୍ରା କଲେ । ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀ, ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ଆଚାର୍ଯ୍ୟ ହରିହର ପ୍ରମୁଖ ତାଙ୍କ ସହ ଯାତ୍ରା କରୁଥିଲେ । ଛୁଆଁଅଛୁଆଁ ଭେଦଭାବ ମଣିଷକୃତ । ଏପରି ପାପକୁ ଉଠାଇ ଦେବାକୁ ସେ ସମସ୍ତଙ୍କୁ ଉଦ୍‌ବୋଧନ ଦେଲେ । ତାଙ୍କର ବକ୍ତବ୍ୟ ଲୋକମାନଙ୍କୁ ଗଭୀର ଭାବରେ ପ୍ରଭାବିତ କଲା । ମୋ ବାପା ସେହି ଦିନରୁ ହରିଜନମାନଙ୍କ ସହିତ ମିଶିଲେ, ସେମାନଙ୍କର କଲ୍ୟାଣ ପାଇଁ କାର୍ଯ୍ୟ କଲେ । ସେମାନଙ୍କୁ ସଂଗଠିତ କଲେ । ଏହି ଘଟଣାରେ ଆମ ଗ୍ରାମରେ ସବର୍ଣ୍ଣମାନେ ବାପାଙ୍କ ବିରୋଧରେ ଗଲେ । ଆମ ଘରକୁ ସାମାଜିକ ବାଛନ୍ଦ କରାଗଲା । ସେତେବେଳେ ଏହା ଥିଲା ଗାଁର ଏକପ୍ରକାର ଶାସ୍ତି । ବାପା କିନ୍ତୁ ତାଙ୍କ ଆଦର୍ଶରେ ଅବିଚଳ । ସେ କାହାରିକୁ କିଛି କହିଲେ ନାହିଁ । ଅପରପକ୍ଷରେ ହରିଜନମାନେ ଏକତ୍ର ହୋଇ ଗାଁସାରା ଲୋକଙ୍କ ଚାଷବାସ କାର୍ଯ୍ୟ ବନ୍ଦ କରିଦେଲେ । ଧୋବା କାହାର ଲୁଗା କାଚିଲା ନାହିଁ । ବାରିକ କାହାକୁ ଖିଅର କଲା ନାହିଁ । ତନ୍ତୀ ଲୁଗା ଦେଲା ନାହିଁ । ବଢ଼େଇ କାହାର ଘରକାମ ବା ଲଙ୍ଗଳ ତିଆରି କଲା ନାହିଁ । ଗୁଡ଼ିଆ ମୁଢ଼ି ଦେଲା ନାହିଁ । ଗଉଡ଼ ମଧ୍ୟ ଦୁଧ ଦେଲା ନାହିଁ । ସମସ୍ତେ ବାପାଙ୍କୁ ସାହାଯ୍ୟ କଲେ । ଫଳରେ ଆପେ ଆପେ ଆମ ଘର ଉପରୁ ସମାଜ-ବାଛନ୍ଦ ଉଠିଗଲା । ଏ ଘଟଣା ମୋ ଜନ୍ମର ଚାରି/ପାଞ୍ଚ ବର୍ଷ ଭିତରେ ଘଟିଥିଲା । ବାପା ହୋଇଗଲେ ହରିଜନ ନେତା । ତାଙ୍କୁ ଆମ ଗ୍ରାମରେ ହରିଜନ ବେହେରା ବୋଲି କହୁଥିଲେ । କୌଣସି କୌଣସି ପର୍ବପର୍ବାଣିରେ ହରିଜନମାନଙ୍କୁ ନିମନ୍ତ୍ରଣ କରି ଆମ ଘରେ ଖାଇବାକୁ ଦେଉଥିଲେ । ସେମାନେ ବାପାଙ୍କୁ ଭାରି ମାନୁଥିଲେ । ସେମାନଙ୍କ ସାହିରେ କୌଣସି ଗଣ୍ଡଗୋଳ ହେଲେ, ଭାଇ-ଭାଇ, ସ୍ୱାମୀ-ସ୍ତ୍ରୀ ଭିତରେ ଝଗଡ଼ା ହେଲେ ବାପା ସେଠାକୁ ଯାଇ ନିଷ୍ପତ୍ତି କରି ଦେଉଥିଲେ । ସେତେବେଳେ ହରିଜନ ସାହିର ନେତା ଥାଆନ୍ତି ଧନେଶ୍ୱର ମଳିକ । ସେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥାଆନ୍ତି । ବାପା ତାଙ୍କୁ ଦାଦା ସମ୍ବୋଧନ କରନ୍ତି । ଉଭୟଙ୍କ ମଧ୍ୟରେ ଥିଲା ଘନିଷ୍ଠ ସଂପର୍କ । କଳା ମଚମଚ ଲୋକଟିଏ । ବାପାଙ୍କ ମୃତ୍ୟୁ ପରେ ସେ ଆମ ଗ୍ରାମର ଭଲମନ୍ଦ ସହିତ ସଂପୃକ୍ତ ହୋଇଗଲେ । ମୋତେ ନାତି ନାତି କହି କୁଣ୍ଢେଇ ପକାଉଥିଲେ । ବସ୍ତୁତଃ ଗାଁର ସ୍ୱାଧୀନତା ପରେ ଯେତେ ସବୁ କାର୍ଯ୍ୟ ହେଲା ସେଥିରେ ସେ ମୋତେ ଅକୁଣ୍ଠ ସାହାଯ୍ୟ କରିଛନ୍ତି । ମୁଁ ଯେତେବେଳେ କଟକରେ ଚାକିରି କଲି ସେ ମୋ ବସାକୁ ଆସନ୍ତି, ମୋ ସ୍ତ୍ରୀକୁ ନାତୁଣୀବୋହୂ ଡାକି ଭାରି ଶ୍ରଦ୍ଧା କରନ୍ତି । ତାଙ୍କ ପରି ପରୋପକାରୀ, ସ୍ପଷ୍ଟବାଦୀ ମଣିଷ ମୁଁ କ୍ୱଚିତ୍ ଦେଖିଛି ।

ହଁ, ଅସଲ କଥା କହୁଥିଲି– ମୋ ଜନ୍ମ କଥା । ପୁଅଟିଏ ପାଇଁ ମୋ ବୋଉର କେତେ ଓଷାବ୍ରତ । ସେ ବଡ଼ କାଷ୍ଟାରେ ନିଶାମଙ୍ଗଳବାର ଓଷା ଆଶ୍ୱିନ ମାସରେ ପାଞ୍ଚପାଳି କରେ । ଥରେ ରାତିରେ ମା'ମଙ୍ଗଳା କୁଆଡ଼େ ମୋ ବୋଉକୁ ସ୍ୱପ୍ନରେ କହିଲେ– ଏଇ ଗର୍ଭରେ ତୋର ଦୁଇଟି ଯାଆଁଳା ପୁଅ ହେବ । ସେତେବେଳେ ବାପା ଯାଇଥାନ୍ତି କୌଣସି କାର୍ଯ୍ୟରେ କଲିକତା । ସେଠାରୁ ସେ ଟ୍ରେନ୍‌ରେ ଘରକୁ ଫେରୁଥାଆନ୍ତି । ସେହି ଟ୍ରେନ୍‌ରେ କୌଣସି ଏକ ପଶ୍ଚିମା ସାଧୁ ଆସୁଥାନ୍ତି । ସେ ବାପାଙ୍କୁ କହିଲେ ତାଙ୍କର ଏଥର ଦୁଇଟି ଯାଆଁଳା ପୁଅ ଜନ୍ମ ହେବ । ତାଙ୍କର ନାଁ ଦେବ ରାମଦାସ ଓ ତୁଳସୀ ଦାସ । ବାପା ଘରକୁ ଆସିଲେ । ବୋଉ ବାପାଙ୍କୁ ଓ ବାପା ବୋଉଙ୍କୁ ନିଜ ନିଜ କଥା କହିଲେ । କଥା ସତ ହେଲା । ଆମେ ଯାଆଁଳା ଭାଇ ଜନ୍ମ ହେଲୁ । ଜାତକରେ ମୋ ନାଁ ହେଲା ତ୍ରୈଲୋକ୍ୟନାଥ ଓ ସାନଭାଇର ନାଁ ହେଲା ତ୍ରିଲୋଚନ । ମାତ୍ର ମୋତେ ସମସ୍ତେ ଡାକିଲେ ବାବାଜୀ, ବାଆଜୀ ସାନଭାଇକୁ ଗୋଲୋକ । ମୋତେ ଯେ କାହିଁକି ବାବାଜୀ ଡାକିଲେ ମୁଁ ଜାଣୁ ନ ଥାଏ । ବାପା କିନ୍ତୁ ମୋତେ ଡାକନ୍ତି ବାବନା । ମୋ ପରେ ଆଉ ଗୋଟିଏ ଝିଅ ସରୋଜିନୀ ଓ ଅନ୍ୟ ଗୋଟିଏ ପୁଅ ବାନାମ୍ବର ଜନ୍ମ ହେଲେ ।

ମୋର ଜନ୍ମ ହେଲା ୧୯୩୯ ମସିହା ଫେବୃୟାରୀ ମାସ ୨୭ ତାରିଖରେ । ଏଇଆ ମୋ ସ୍କୁଲ ସାର୍ଟିଫିକେଟରେ ରହିଲା । ମୋ ବାପା ଓ ବୋଉ କହୁଥିଲେ ସେହି ମସିହାରେ ଇନ୍ଦୁପୁର/ଧୂମାତ୍ ବନ୍ଧ ଭାଙ୍ଗି ବିରାଟ ଘାଇ ହୋଇଗଲା । ଆମ ଗାଁ ବନ୍ୟା ଜଳରେ ଉବୁଟୁବୁ ହୋଇଗଲା ଓ ମୋ ଜନ୍ମ ହେଲା ସେହି ବନ୍ୟାର କରାଳ ତାଣ୍ଡବ ଭିତରେ । ମୋତେ ଓ ମୋ ସାନଭାଇକୁ ଆମ ଉଚ୍ଚା ଡିହ ଉପରେ ବୋଉ ରଖି ଗୋଟିଏ ବେତାରେ ପୂରାଇ ଝୁଲାଇ ରଖିଥିଲେ । ସେହି ବନ୍ୟା ଫଳରେ ଇନ୍ଦୁପୁର/ଧୂମାତ୍ ଅଞ୍ଚଳରେ ଭୟଙ୍କର ମେଲେରିଆ ରୋଗ ବ୍ୟାପିଗଲା । ହଜାର ହଜାର ଲୋକ ମଲେ । ସେତେବେଳେ ଡାକ୍ତର ନ ଥିଲେ । ହଳଧର ଶତପଥୀ ଓ ମୁକୁନ୍ଦ ମଜୁମଦାର ହୋମିଓପାଥି ଔଷଧ ଦେଇ ରୋଗୀଙ୍କୁ ଭଲ କରୁଥିଲେ । ପରେ ପରେ ସ୍ୱାଧୀନତା ସଂଗ୍ରାମୀ ସମାଜସେବୀ ଜଗଦ୍ଦେବ ଓ ନାରାୟଣ ଚନ୍ଦ୍ର ଦାଶଙ୍କ ଉଦ୍ୟମକ୍ରମେ ଇନ୍ଦୁପୁର/ଧୂମାତ୍, କଅଁରପୁର, ପୂର୍ବଧୂମାତ୍ ଓ ଚାରିଗାଁର ଗଣ୍ଡସାହି ଦେଇ ବିରୂପାର ବ୍ରାହ୍ମଣୀ ନଦୀ ପାର୍ଶ୍ୱରେ ଘେରିବନ୍ଧ ହୋଇଗଲା । ଆଉ ଏହି ଗ୍ରାମମାନଙ୍କୁ ବନ୍ୟା ଆସିଲା ନାହିଁ । ସେତେବେଳେ ଆମ ଗାଁରେ ଥିଲା ମାଟିବଂଶ ଅବଧାନଙ୍କ ଚାଟଶାଳୀ । ସେଇଠି ଗାଁର ପିଲାମାନେ ପଢୁଥିଲେ । ଅତି ଛୋଟ ପିଲା ହୋଇଥାଏ ମୁଁ । ଚାଟଶାଳୀକୁ ଗଲି । ଦେଖିଲି ଜଣେ ଗୋରା ତକତକ ଅବଧାନ– ନାଁ କପିଳ ମାଷ୍ଟ୍ରେ । ତାଙ୍କର ଗୋଟିଏ ହାତ କେମ୍ପା । ସେ ମୋତେ କୋଳରେ ବସାଇ ଗେଲ କଲେ । ସେତେବେଳେ ଆମ ଛକ ଉପରେ ଭଗବାନ

ଜେନାଙ୍କର ଗୋଟିଏ ଚାଳଛପର ଲମ୍ବା ଘର ଥିଲା । ସେହି ଘରେ ଗାଁ ସାରା ପିଲା ପଢ଼ନ୍ତି । ବାପାଙ୍କ ଉଦ୍ୟମରେ ସେହି ଘରେ ପ୍ରାଥମିକ ବିଦ୍ୟାଳୟଟିଏ ଖୋଲିଲା । ସେଇଠି ମୋର ନାଁ ଲେଖାହେଲା ପ୍ରଥମ ଶ୍ରେଣୀରେ । ବାରିମୂଳ ଗ୍ରାମର କୀର୍ତ୍ତନାନନ୍ଦ ଘୋଷ ପୂର୍ବରୁ ସେଇଠି ଚାଟଶାଳୀ କରିଥିଲେ । ତେଣୁ ଗାଁସାରା ତାଙ୍କୁ ମାଷ୍ଟ୍ରେ ବୋଲି ଡାକୁଥିଲେ । ସିଏ ମୋ ନାଁ ବାବାଜୀରୁ ବୈଷ୍ଣବ କରିଦେଲେ ଓ ସ୍କୁଲ ଖାତାରେ ମୋର ଏଇ ନାଁ ଦରଜ ହୋଇଗଲା । ବାପା ସ୍କୁଲର ସେକ୍ରେଟାରୀ । ଗାଁ ଲୋକେ ବର୍ଷକୁ ଥରେ ଛଣ ବାଉଁଶ ଆଦାୟ କରି ଘର ଛାଇ ଦେଉଥିଲେ । ମାଷ୍ଟ୍ରଙ୍କ ପାଇଁ ପିଲାମାନେ ଚାଉଳ, ପନିପରିବା ଓ କିଛି ପଇସା ସିଦା ଦେଉଥିଲେ । ସେଇଥିରେ ମାଷ୍ଟ୍ରେ ହାତରେ ରୋଷେଇ କରି ଚଳୁଥିଲେ । କ୍ରମେ ମୁଁ ତୃତୀୟ ଶ୍ରେଣୀକୁ ଗଲି । ସେତେବେଳେ ସ୍କୁଲରେ ମାଣକଷା, ଢରିବିନଳ, କାଣୀନଳ, ଓଡ଼ାଙ୍କ, ଫେଡ଼ାଙ୍କ ଆଦି ପଢ଼ାଯାଉଥିଲା । ଭାଗବତ, ମଥୁରାମଙ୍ଗଳ, ମନବୋଧ ଚଉତିଶା ଆଦି ସହିତ ବର୍ଣ୍ଣବୋଧ ପଢ଼ା ହେଉଥିଲା । ନୂଆକରି ଐକିକ ଅଙ୍କ ପଢ଼ା ହେଉଥିଲା । ଆମେ କେତେଜଣ ପିଲା କୀର୍ତ୍ତନ ମାଷ୍ଟ୍ରେଙ୍କ ବସାରେ ରୋଷେଇ କରୁଥିଲୁ । ତାଙ୍କର ବାସନ ମାଜୁଥିଲୁ । ମାଷ୍ଟ୍ରେ ମଧ୍ୟ ଆମକୁ ତାଙ୍କ ବସାରେ ପଢ଼ାଉଥିଲେ । ମୁଁ ତୃତୀୟ ଶ୍ରେଣୀ ପାସ୍ କଲାବେଳକୁ ବାପା ଆଳିରାଜାଙ୍କ ପାଖରୁ ତାଙ୍କ କଚେରି ପଡ଼ିଆରେ କିଛି ଜମି ପଟା ଆଣି ସେଠାରେ ଇଟା ପୋଡ଼ାଇ ଗୋଟିଏ ବଡ଼ ଘର ତିଆରି କରାଇଲେ । ସ୍କୁଲ ସେଇଠିକୁ ଉଠିଆସିଲା ଓ ପରେ ପଞ୍ଚମଶ୍ରେଣୀ ପର୍ଯ୍ୟନ୍ତ ଖୋଲିଲା ।

ସେତେବେଳେ ସ୍କୁଲ ବିଭାଗର ସବ୍‌ଇନ୍‌ସପେକ୍ଟର ପରିଦର୍ଶନରେ ଆସୁଥିଲେ । ଖାକି ହାପ୍‌ପ୍ୟାଣ୍ଟ, ଜୋତା, ଜାମା ଓ ମୁଣ୍ଡରେ ଗୋଟିଏ ଟୋପି । ତାଙ୍କୁ ଗାଁଲୋକେ ବାବୁ ଡାକୁଥିଲେ । ସ୍କୁଲକୁ ବାବୁ ଯେଉଁଦିନ ଆସନ୍ତି ଗାଁରେ ହୁଲସ୍ଥୁଲ ପଡ଼ିଯାଏ । ବାବୁ ମଧ୍ୟ ଶ୍ରେଣୀରେ ଶିକ୍ଷକଙ୍କ ଉପସ୍ଥିତିରେ ଆମକୁ ପ୍ରଶ୍ନ କରନ୍ତି । ଆମେ ଉତ୍ତର ଦେଉଁ । କୀର୍ତ୍ତନ ମାଷ୍ଟ୍ରେଙ୍କ ସହିତ ଆଉ ଦୁଇଜଣ ଶିକ୍ଷକ ନିଯୁକ୍ତ ହେଲେ– ଜଣେ ପରମାନନ୍ଦ ଦାସ, ଅନ୍ୟ ଜଣେ ଆମ ଗ୍ରାମର ଧରଣୀଧର କବି । ସେ ତାଙ୍କ ଯୁବକ ଅବସ୍ଥାରେ ବାନରସେନାରେ ଯୋଗ ଦେଇଥାନ୍ତି । ବାପାଙ୍କୁ ଭାରି ମାନନ୍ତି । ସେ ଆମକୁ ପଢ଼ାଇଲାବେଳେ କହନ୍ତି– ପିଲାଏ ତମେ ଯେତେବେଳେ ଭାତ ଖାଇବ ସେତେବେଳେ ପାଣି ପିଇବ ନାହିଁ । ଭାତ ଗୁଣ୍ଡାଟିଏ ଭଲ କରି ଚୋବେଇ ଗିଳିସାରିଲା ପରେ, ଡାଲି ଖାଇବ, ପରେ ମାଛ ବା ମାଂସ ଖାଇବ । କାରଣ ପେଟ ଭିତରେ କୁଆଡ଼େ ନାନା ଖୋପ ଅଛି । ଭାତ ତା' ଖୋପକୁ, ତରକାରି ଆଦି ନିଜ ନିଜ ଖୋପକୁ ଯାଏ । ବଡ଼ ହେଲା ପରେ ଏହି କଥା ମନେପଡ଼ିଗଲେ ହସ ଲାଗେ । ଥରେ ସେ ଆମ ଘରକୁ

ଆସିଥାନ୍ତି । ସେତେବେଳେ ଗୋଟିଏ ଅଙ୍କ ମୁଁ କରୁଥାଏ । ମାଷ୍ଟ୍ରେ ପହଞ୍ଚିଯିବାରୁ ବାପା ତାଙ୍କୁ କହିଲେ- ଧରଣୀ, ବାବନାକୁ ଅଙ୍କଟା ବୁଝାଇଦେ । ତା'ପରେ ବାପା ବାହାରକୁ ଚାଲିଗଲେ । ମାଷ୍ଟ୍ରେ ଦୀର୍ଘ ସମୟ ଖଡ଼ି ଘଷି ଘଷି ଅଙ୍କଟି କରିପାରିଲେ ନାହିଁ । ସେ ଘରକୁ ଚାଲିଗଲେ ଓ କହିଗଲେ କାଲି ଆସି ବୁଝାଇଦେବେ । ବାପା ଘରକୁ ଆସି ମୋତେ ସେହି ଅଙ୍କ କଥା କହିଲେ । ମୁଁ କହିଲି ମାଷ୍ଟ୍ରେ କାଲି ଆସି ବୁଝାଇ ଦେବାକୁ କହିଯାଇଛନ୍ତି । ସଙ୍ଗେ ସଙ୍ଗେ ବାପା ସେହି ଅଙ୍କଟାକୁ ମାତ୍ର ଦୁଇଟି ଧାଡ଼ିରେ କରିଦେଇ ମୋତେ ବୁଝାଇ ଦେଲେ । ମାଷ୍ଟ୍ରେ ପରଦିନ ଆସି ମୋତେ ସେଇ ଅଙ୍କ କଥା ପଚାରିଲେ । ମୁଁ କହିଲି ବାପା ମୋତେ ବୁଝାଇ ଦେଇଛନ୍ତି । ମାଷ୍ଟ୍ରେ ସେହି ଅଙ୍କ ଦେଖି କହିଲେ- ମୁଁ ପରା ସେଇଆ ଭାବୁଥିଲି । ଏବେ କରିଦେଇଥାନ୍ତି । ହଉ ଭଲ ହେଲା । ଆଉଥରେ ମୁଁ ସାଙ୍ଗମାନଙ୍କ ସହିତ ପଡ଼ି କଙ୍କଡ଼ା ଗାତରେ ହାତ ପୂରେଇ ଘରକୁ ଆସିଲି । ମୋ ବାହା ପର୍ଯ୍ୟନ୍ତ କାଦୁଅ ଲାଗିଥାଏ । ବାପା ମୋତେ ଦେଖି ଏପରି ଗୋଟାଏ ଗର୍ଜନ କଲେ ଯେ ମୁଁ ଛାନିଆରେ ଚର୍‌ଚର୍ ମୂତି ପକାଇଲି । ମୋ ବୋଉ ମୋତେ କାଖେଇ ନେଇଗଲା ପରେ ମୁଁ ସ୍ଥିର ହେଲି । ସେହି ଦିନରୁ ମୁଁ ଆଉ କଙ୍କଡ଼ା ଗାତରେ ହାତ ପୂରେଇ ନାହିଁ ।

ଏବେ ଅତିକ୍ରାନ୍ତ ବୟସରେ ମୋ ପିଲାଦିନର କେତେ କେତେ ସ୍ମୃତି ମନେପଡ଼ି ଯାଉଛି । ମନେପଡୁଛି ସେ କାଳରେ ସ୍କୁଲରେ ଗଣେଶ ଓ ସରସ୍ୱତୀ ପୂଜା କଥା । ମନେପଡ଼ିଯାଉଛି ଅଗଷ୍ଟ ପନ୍ଦର ତାରିଖରେ ସକାଳୁ ସକାଳୁ ଗାଁରେ ବୁଲି ପ୍ରଭାତ ଫେରି କରିବା କଥା । ଗଣେଶ ପୂଜା ଓ ସରସ୍ୱତୀ ପୂଜା ଦିନ ଗାଁ ଲୋକେ ସ୍କୁଲକୁ ଆସି ବାହାରେ ବସନ୍ତି । ପୂଜା ସରିଲା ପରେ ଭୋଗ ଖାଆନ୍ତି । ଆମେ ପିଲାମାନେ ଭୋରୁ ଭୋରୁ କଇଁଫୁଲ, ଗେଣ୍ଡୁଫୁଲ ଇତ୍ୟାଦି ତୋଳି ଆଣୁ । ସ୍କୁଲ ଘରକୁ ସଜାଉ । ଭାରି ସୁନ୍ଦର ଦେଖାଯାଏ । ସରସ୍ୱତୀ ପୂଜାରେ ସେକାଳରେ ମୂର୍ତ୍ତି ନ ଥିଲା । ଗୋଟିଏ ନଡ଼ିଆକୁ ରଙ୍ଗେଇ ପୂଜା କରାଯାଏ । ଉଭୟ ଗଣେଶ ଓ ସରସ୍ୱତୀ ପୂଜାଦିନ ଆମେ ନଡ଼ିଆ ବାଡ଼ାଉଁ ଓ ପୁଷ୍ପାଞ୍ଜଳି ଦେଉଁ । ସରସ୍ୱତୀଙ୍କର ନଡ଼ିଆ ମୂର୍ତ୍ତିକୁ ଥାଳିରେ ରଖି 'ବନ୍ଦଇ ହରି ଦେବ ମୁରାରି ଲକ୍ଷ୍ମୀଦେବୀଙ୍କର କାନ୍ତ' ଗୀତ ବୋଲି ମାଷ୍ଟ୍ରଙ୍କ ସହିତ ଘର ଘର ବୁଲୁଁ । ଲୋକେ ମଧ୍ୟ ଆନନ୍ଦରେ କିଛି ପଇସା, ଚାଉଳ ଓ ଥିଲାବାଲା ଲୋକେ ଧୋତି ବା ଶାଢ଼ୀ ମାଷ୍ଟ୍ରଙ୍କୁ ଦେଉଥିଲେ । ଲୋକେ ସେକାଳରେ ମାଷ୍ଟ୍ରଙ୍କୁ ଭାରି ମାନୁଥିଲେ ।

ମାଷ୍ଟ୍ରମାନେ ମଧ୍ୟ ଗାଁକୁ ଭଲ ପାଉଥିଲେ, ସ୍କୁଲକୁ ଭଲ ପାଉଥିଲେ । ପିଲାଏ ସ୍କୁଲରେ ନାମ ଲେଖାଇସାରିଲା ପରେ ବାପା ମାଆ ବା ମୁରୁବିମାନଙ୍କର ଦାୟିତ୍ୱ ଯେମିତି ଚାଲିଯାଏ । ଶିକ୍ଷକମାନେ ଯେମିତି ହୋଇଯାଆନ୍ତି ବାପା ମାଆ ସବୁକିଛି । ବାହାରକୁ ଭାରି କଡ଼ା । ଭିତରେ କିନ୍ତୁ ଗଭୀର ଶ୍ରଦ୍ଧା । ଦୁଇବେଳା ସ୍କୁଲ । ଭୋରୁ

ଭୋରୁ ସ୍କୁଲକୁ ଆସିବାକୁ ହୁଏ । ଯେଉଁ ପିଲା ପ୍ରଥମେ ପହଞ୍ଚେ ସ୍କୁଲ ଛୁଟିବେଳେ ତା' ହାତ ପାପୁଲିରେ ମାଷ୍ଟ୍ରେ ଧୀର କରି ବେତ ଛୁଆଁଇ ଦେବେ । ପରେ ପରେ ଯେଉଁମାନେ ଆସନ୍ତି ସେହି ଅନୁସାରେ ପିଲାଏ ବେତ ପ୍ରହାର ଏକ, ଦୁଇ, ତିନି, ଚା'ରି କ୍ରମରେ ଖାଆନ୍ତି । ତେଣୁ ଭୋରୁ ସ୍କୁଲକୁ ଆସିବାକୁ ପିଲାଙ୍କ ଭିତରେ ପ୍ରତିଯୋଗିତା ହୁଏ । କେହି ଛାତ୍ର ଆସି ନ ଥିଲେ ମାଷ୍ଟ୍ରେ ସଙ୍ଗେ ସଙ୍ଗେ ସେହି ପିଲାଙ୍କ ଘରକୁ ଯାଇ ତାକୁ ଧରିଆଣୁଥିଲେ । ପ୍ରତିଦିନ ସକାଳବେଳା ଛୁଟି ପୂର୍ବରୁ ମାନସାଙ୍କ ପଚରାଯିବା ବିଧି ଥିଲା । ବିଶେଷତଃ ପଣିକିଆ ପଚରା ଯାଉଥିଲା । ସେତେବେଳେ ପଣିକିଆରେ କାହାଣପଣ ଥିଲା । ସମସ୍ତେ ମୁଖସ୍ଥ କରିବାକୁ ବାଧ । ନ ହେଲେ ମାଷ୍ଟ୍ରଙ୍କ ବେତ ପିଠିରେ ନାଚିଯାଏ । ଉପରବେଳା ସନ୍ଧ୍ୟାଯାଏ ପଢ଼ାପଢ଼ି ହୁଏ । ଶେଷକୁ ମଧ ଗୀତ ବୋଲା ପ୍ରତିଯୋଗିତା ହୁଏ । ଏହିପରି ଭାବରେ ମୁଁ ପଢ଼ିଥିଲି ମୋ ଗାଁ ସ୍କୁଲରେ । ଏବେ ମଧ ମୋ ହୃଦୟରେ ବଞ୍ଚି ରହିଛି ସେକାଳର ପାଠପଢ଼ାର ଛବି, ସେକାଳର ମାଷ୍ଟ୍ରଙ୍କ ସ୍ନେହ ଶ୍ରଦ୍ଧା ଓ ବିଦ୍‌ବତ୍ତା, ସ୍କୁଲ ବଗିଚାରେ କୋଦାଳରେ ହାଣି ଫୁଲଗଛ ଲଗାଇବାର ଦୃଶ୍ୟ । ଏବେ ଆଉ ସେ ସ୍କୁଲ ନାହିଁ । କୋଠାଘର ହୋଇଗଲାଣି । ଉଚ୍ଚ ବେତନ ପାଇ ଶିକ୍ଷକମାନେ ରହିଲେଣି । ମଧ୍ୟାହ୍ନ ଭୋଜନ ଦିଆଗଲାଣି । ମାଗଣାରେ ସାଇକେଲ ବଣ୍ଟାଗଲାଣି । ତଥାପି ପିଲାଏ ପଢୁ ନାହାନ୍ତି କାହିଁକି ? ଶିକ୍ଷକମା'ନେ ଶିକ୍ଷାଦାନକୁ ଏକ ପ୍ରବୃତ୍ତି ଭାବରେ ଗ୍ରହଣ ନ କରି ବୃତ୍ତି ଭାବରେ ଗ୍ରହଣ କରୁଛନ୍ତି କାହିଁକି ? ଶିକ୍ଷକର ପବିତ୍ର କର୍ତ୍ତବ୍ୟ ସଂପାଦନ କରୁ ନାହାନ୍ତି କାହିଁକି ? ଶିକ୍ଷା ତ ଏକ ବ୍ୟବସାୟ ନୁହେଁ, ଏକ ଚାହିକିଚିତା ନୁହେଁ, ଏକ ଫେସନ ନୁହେଁ; ଏକ ସଂକଳ୍ପ, ଏକ ତପସ୍ୟା, ମଣିଷ ତିଆରି କରିବାର ଏକ ପବିତ୍ର ଅନୁଷ୍ଠାନ । ଶିକ୍ଷାହିଁ ବିଦ୍ୟା । 'ସା ବିଦ୍ୟା ଯା ବିମୁକ୍ତୟେ' । ବିଦ୍ୟା ମଣିଷକୁ ସକଳ କ୍ଷୁଦ୍ରତା, ସଂକୀର୍ଣ୍ଣତା, ଦୁର୍ବାସନାରୁ ମୁକ୍ତି ଦିଏ । ମଣିଷକୁ ପ୍ରସାରିତ କରିଦିଏ । ସୃଷ୍ଟି କରିଦିଏ ଗୋଟାଏ ସଂପର୍କର ସେତୁବନ୍ଧନ । ଏହା ହେଉଛି କି ? ଅଯଥା ରାଜନୀତିକରଣ କରାଯାଇ ଶିକ୍ଷାକୁ ଅନ୍ଧକାର ଭିତରକୁ ଠେଲି ଦିଆଯାଉ ନାହିଁ କି ?

ମୁଁ ତୃତୀୟ ଶ୍ରେଣୀ ପାସ୍ କରି ଇନ୍ଦୁପୁର ହାଇସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ କେନ୍ଦ୍ରାପଡ଼ା ଅଞ୍ଚଳରେ ମାତ୍ର ତିନୋଟି ହାଇସ୍କୁଲ ଥିଲା । ଗୋଟିଏ କେନ୍ଦ୍ରାପଡ଼ା ହାଇସ୍କୁଲ– ସର୍ବପୁରାତନ । ଅନ୍ୟ ଦୁଇଟି ପଟାମୁଣ୍ଡାଇ ମନ୍ମଥନାଥ ହାଇସ୍କୁଲ ଓ ଇନ୍ଦୁପୁର ହାଇସ୍କୁଲ । ଇନ୍ଦୁପୁରଠାରେ ଗୋଟିଏ ମାଇନର ସ୍କୁଲ ହେଲା ୧୯୩୭ ମସିହାରେ ଓ ୧୯୪୭ ମସିହାରେ ତାହା ହାଇସ୍କୁଲ ହେଲା । ସ୍କୁଲର ସଂପାଦକ ଥାଆନ୍ତି ନାରାୟଣଚନ୍ଦ୍ର ଦାଶ । ସଭାପତି ନଟବର ଜଗଦ୍ଦେବ । ସେ ଦୁଇଜଣ ଆମ

ଅଞ୍ଚଳର ପ୍ରାତଃସ୍ମରଣୀୟ । ସେତେବେଳେ ସ୍କୁଲଟି ଗହଗହ ଡାକୁଥିଲା । ଛାତ୍ରାବାସ ଥିଲା । ବିଭିନ୍ନ ଦୂରଦୂରାନ୍ତରୁ ପିଲାମାନେ ଆସି ସେଠି ପଢୁଥାନ୍ତି । ଛାତ୍ରାବାସରେ ମଧ୍ୟ ରହୁଥାନ୍ତି । ସେହି ସ୍କୁଲରେ ମୁଁ ଚତୁର୍ଥ ଶ୍ରେଣୀରେ ପଢ଼ି ପଞ୍ଚମକୁ ଉତ୍ତୀର୍ଣ୍ଣ ହେଲି ୧୯୫୨ ମସିହାରେ । ସେତିକିବେଳେ ମୋର ଉପନୟନ ପାଇଁ ବାପା ସମସ୍ତ ବ୍ୟବସ୍ଥା କରିଥାନ୍ତି । ଆମ ପୁରୁଣା ଖଞ୍ଜାକୁ ଭାଙ୍ଗି ନୂଆ ଘର କରିବାକୁ ଯୋଜନା କରିଥାନ୍ତି । ଗୋଟିଏ ଅସ୍ଥାୟୀ ଘର କରି ସେଇଠି ଆମେ ରହୁଥାଉ । ସେ ବର୍ଷ ହେଲା ପ୍ରଥମ ନିର୍ବାଚନ । ଆମ ଗାଁରୁ ପ୍ରାୟ ପାଞ୍ଚ/ଛ' କିଲୋମିଟର ଦୂର ନିକିରାଇଠାରେ ହେଲା ନିର୍ବାଚନ ବୁଥ୍ । ସେତେବେଳେ ଯୋଡ଼ି ବଳଦ ଓ ଚାଳଘର ଚିହ୍ନରେ ଭୋଟ ହେଉଥାଏ । ଦୁଇଟା ବାକ୍ସ ରହିଥାଏ । ହଳଦିଆ ଓ ସବୁଜ ରଙ୍ଗର ବାକ୍ସ । ଆମ ଗାଁରୁ ବାପାଙ୍କ ନେତୃତ୍ୱରେ ଖୋଳକରତାଳ ବଜାଇ, ଭାରତମାତାକୀ ଜୟ, ମହାତ୍ମାଗାନ୍ଧିକୀ ଜୟ ଧ୍ୱନି ଦେଇ ଲୋକେ ଭୋଟ ଦେବାକୁ ଯାଉଥାନ୍ତି । ମୋତେ ଭାରି କୌତୁକ ଲାଗୁଥାଏ । ନିର୍ବାଚନ ସରିଗଲା । କଂଗ୍ରେସ ଦଳ ଜିତି ସରକାର ଗଠନ କଲେ । ବସନ୍ତଋତୁ ଆରମ୍ଭରେ ବାପା ଯାଇଥାନ୍ତି ବ୍ରାହ୍ମଣୀ ନଦୀ ସେପଟକୁ ବସନ୍ତ ରୋଗୀଙ୍କ ସେବା କରିବା ପାଇଁ । ଫେରିଲା ପରେ ତାଙ୍କୁ ବସନ୍ତ ହେଲା । ସେ ଏଲୋପାଥି ଔଷଧ ଖାଆନ୍ତି ନାହିଁ । ସେ ଥିଲେ ପ୍ରାକୃତିକ ଚିକିତ୍ସାର ସମର୍ଥକ । ମୁଁ ଦେଖିଛି ତାଙ୍କୁ ଜ୍ୱର ହେଲେ ବନମାଟିକୁ କାଦୁଅ କରି ସାରା ଦେହରେ ବୋଳି ହୁଅନ୍ତି । ଜ୍ୱର ବାଉଳାରେ ସେ ବଡ଼ ପାଟିରେ ବୈଦେହୀଶ ବିଳାସର ପଦ ବୋଲନ୍ତି, ଚାଣକ୍ୟ ଶ୍ଳୋକ ବୋଲନ୍ତି । ସେଇଥିରେ ସେ ଭଲ ହୁଅନ୍ତି । ସେତେବେଳେ ଗାଁରେ ହଇଜା ପ୍ରବଳ ହେଉଥାଏ । ବସନ୍ତ ରୋଗ ବି ହେଉଥାଏ । ଗାଁ ଲୋକଙ୍କର ବିଶ୍ୱାସ– ଇଏ କୁଆଡ଼େ ଗାଁ ଠାକୁରାଣୀଙ୍କ କୋପରୁ ହୁଏ । ମାଳ ମାଳ ଲୋକେ ମରନ୍ତି । ୧୯୪୭ ମସିହାରେ ହଇଜାର ପ୍ରକୋପ ମୁଁ ଦେଖିଥିଲି । ଆମ ଗାଁରୁ ପ୍ରାୟ ଚାଳିଶ/ ପଚାଶ ଜଣ ମରିଗଲେ । ଡାକ୍ତର ନାହାନ୍ତି, ଚିକିତ୍ସା ନାହିଁ । ଠାକୁରାଣୀଙ୍କ ପାଖରେ ହୋମ କରନ୍ତି, କୀର୍ତ୍ତନ କରନ୍ତି । ଭୋଗ ଓ ପଣା ଦିଅନ୍ତି । ଠାକୁରାଣୀଙ୍କ କୋପ ଶାନ୍ତ ହୁଏ ନାହିଁ । କୌଣସି କୌଣସି ରୋଗୀ କହନ୍ତି– ଆମେ ସାତଭଉଣୀ ଆସିଛୁ । ଏତେ ମୁଣ୍ଡ ନେବୁ । ଆତଙ୍କ ଖେଳିଯାଏ ଗାଁରେ । ସନ୍ଧ୍ୟା ପୂର୍ବରୁ ପ୍ରତ୍ୟେକ ଘରର ତାଟିକବାଟ ବନ୍ଦ ହୋଇଯାଏ । ହଇଜା ଯେ ଦୂଷିତ ଜଳ ଓ ଖାଦ୍ୟରୁ ହେଉଛି; ଏଥିରେ ଲୋକଙ୍କ ବିଶ୍ୱାସ ନ ଥାଏ ।

ମୁଁ ଦେଖିଛି ମୋ ବାପାଙ୍କୁ ସେହି ସମୟରେ । ସେ ଅଣ୍ଟିରେ ଥୋଡ଼ାଏ ଅମରପୋଇ ପତ୍ର ଓ ଗୋଲମରିଚ ନେଇ ଘରେ ଘରେ ତାହାକୁ ବାଟି ରୋଗୀଙ୍କୁ ପିଆନ୍ତି । ପାଣିକୁ ଫୁଟାଇ ପିଇବାକୁ ଉପଦେଶ ଦିଅନ୍ତି । ଖାଦ୍ୟପଦାର୍ଥରେ ମାଛି ନ

ବସିବାକୁ କହନ୍ତି । ରୋଗୀ ଆରୋଗ୍ୟ ହୁଅନ୍ତି । ବସନ୍ତ ରୋଗ ବେଳେ ମଧ୍ୟ ସେ ରୋଗୀଙ୍କ ପାଖକୁ ଯାଇ ସେବା କରନ୍ତି ପ୍ରାକୃତିକ ଉପାୟରେ । କାହାର ପେଟ ଖରାପ ହେଲେ, କଲିଗ ରୋଗ ହେଲେ ବା ଆଉ କ'ଣ ହେଲେ ସେ ସମସ୍ତଙ୍କୁ ନିଜ ପରିସ୍ରା ପିଇବାକୁ ପରାମର୍ଶ ଦିଅନ୍ତି । ପୁରୁଣା କିରୋସିନି ବୋତଲରୁ କିରୋସିନି ବାହାର କରି ସେଥିରେ ପାଣି ପୂରାଇ ପିଇବାକୁ ଦିଅନ୍ତି । ପରେ ଯେତେବେଳେ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ମୂତ ପିଇବା କଥା କହିଲେ ସେତେବେଳେ ମୋ ବାପାଙ୍କ କଥା ମନେପଡୁଥାଏ ଓ ସାଙ୍ଗମାନଙ୍କୁ କହୁଥାଏ । ଥରେ ଗଛରୁ ପଡ଼ି ମୋ ବାଁ ହାତ ଦିଗଡ଼ ହୋଇଗଲା । ବାପା ଘରେ ନ ଥାନ୍ତି । ବୋଉ ଓ ରାଧାଦେଈ ତଥା ଅନ୍ୟ ମାଆମାନେ ମୋର ହାତଭଙ୍ଗା ଦେଖି ବିକଳରେ କାନ୍ଦୁଥାନ୍ତି । ବାପା କେଉଁଠି ଥିଲେ ଶୁଣି ଘରକୁ ଆସି ସମସ୍ତଙ୍କୁ ଗାଳି ଦେଲେ । ସେ କହିଲେ ପିଲାମାନେ ଗଛରୁ ପଡ଼ନ୍ତି, ଖେଳକୁଦ କରନ୍ତି; ହାତଗୋଡ଼ ଭାଙ୍ଗେ । ଏଥିରେ ବ୍ୟସ୍ତ ହେବାର କ'ଣ ଅଛି ? ସେ ସଙ୍ଗେ ସଙ୍ଗେ ପାଣସାହିରୁ କୁକୁଡ଼ା ଅଣ୍ଡା ମଗାଇ ମୋତେ ଖାଇବାକୁ ଦେଲେ ଓ ଅଣ୍ଡାର ଧଳାଲାଳ ଅଂଶକୁ ମୋ ହାତରେ ବୋଳି ଦେଲେ । ତା'ପରେ ଉଷୁନା ଚାଉଳ, ଅଙ୍କରାନ୍ତି ଫଳ ଓ ଆଉ କ'ଣ ମିଶାଇ ତାହାକୁ ବାଟି ମୋ ହାତରେ ପ୍ରଲେପ ଦେଇ ତଳେ ଉପରେ ଦୁଇଟି ବତା ଫାଳିଆ ଦେଇ କନା ଗୁଡ଼ାଇ ବାନ୍ଧିଦେଇ ମୋ ବେକରେ ଗୋଟିଏ କନାଧଡ଼ିରେ ଝୁଲାଇ ଦେଲେ । ସାତଦିନ ପରେ ମୋ ହାତ ଖୋଲିଦେଲେ ଓ ମୋତେ ନୋଟା ବା ଆଉ କ'ଣ ଉଠାଇବାକୁ କହିଲେ । ମୋ ହାତ ଭଲ ହୋଇଗଲା; ମାତ୍ର ଟିକେ ବଙ୍କା ହୋଇ ରହିଲା ।

ଏଇ ମୋର ବାପା । କେତେ କେତେ ଉପକାର କରିଛନ୍ତି ଲୋକଙ୍କର । ଆମ ଗାଁରେ ଗଣ୍ଡସାହି ନଦୀବନ୍ଧ କଡ଼ରେ ପାଣମାନେ ବଡ଼ କଷ୍ଟରେ ରହୁଥାନ୍ତି । ବାପା ତ ସେମାନଙ୍କୁ ଭଲ ପାଆନ୍ତି । ଆଳିରାଜାଙ୍କ ପାଖରୁ ଏକଏକର ଦଶ ଡିସିମିଲ ଜମିପଟା ଆଣିଲେ ଓ ସେଠାରେ ପାଣଙ୍କୁ ଘରକରି ରହିବାକୁ କହିଲେ । ଗାଁ ମଝିରେ ପାଣ ରହିବେ, ଏକଥାକୁ ଖଣ୍ଡାୟତମାନେ ସହିପାରିଲେ ନାହିଁ । ସେମାନେ ରାତିରେ ମଣିଷ ମୁଣ୍ଡର ଖପୁରି, ହାଡ଼, କଙ୍କାଳ ସବୁ ଆଣି ସେହି ଜମି ଉପରେ ପକାଇ ସିନ୍ଦୂର ଲଗାଇଦେଲେ । କଳା କାଛିଆ ଘୋଡ଼େଇ ଦେଲେ । ସକାଳୁ ସକାଳୁ ପାଣମାନେ ଭୟରେ ଆସି ବାପାଙ୍କୁ କହିଲେ । ବାପା ସେଠାକୁ ଯାଇ ନିଜ ହାତରେ ଖପୁରି ଓ ହାଡ଼ସବୁ ଗୋଟେଇ ଦୂରରେ ପକାଇ ଦେଲେ । ପାଣମାନେ ଘର କରି ରହିଲେ । ଏ ଦୃଶ୍ୟ ମୁଁ ନିଜେ ପିଲାଦିନେ ଦେଖିଛି ଓ ପରେ ଭାବିଛି ମୋ ବାପା ସତରେ କ'ଣ ?

ଏଇ ମଣିଷଟି ବସନ୍ତ ରୋଗରେ ପଡ଼ିଲା । ଔଷଧ ଖାଇଲେ ନାହିଁ । ବହୁ ଲୋକ ଆସୁଥାନ୍ତି ତାଙ୍କୁ ଦେଖିବାକୁ । ପଞ୍ଚମ ଶ୍ରେଣୀରେ ନାଁ ଲେଖାଇଥିବା ପିଲାଟିଏ ମୁଁ । ସକାଳେ ସେ ମୋତେ ପାଖକୁ ଡାକି କହିଲେ– 'ବାବନା, ତୁ ବ୍ରାହ୍ମଣୀ ନଦୀକୁ ଯାଇ ଢାଳେ ପାଣି ଆଣିବୁ । ତୋ ହାତରୁ ମୁଁ ପାଣି ପିଇବି ।' ବାପା ମୋତେ ବହୁତ ଶ୍ରଦ୍ଧା କରନ୍ତି । ରାତି ଅଧରେ ଘରକୁ ଆସିଲେ ବି ମୋତେ ଉଠାଇ ତାଙ୍କ ସାଙ୍ଗରେ ଖୁଆନ୍ତି । ଦିନେହେଲେ ସେ ମୋତେ ଚାପୋଡ଼ଟିଏ ମାରି ନାହାନ୍ତି । କେବଳ କହନ୍ତି– 'ସୁଗୋରୁକୁ ଛାଟେ, ସୁମଣିଷକୁ ପଦେ ।' ଚାଣକ୍ୟ ଶ୍ଳୋକ ବୋଲି ମୋତେ ଉପଦେଶ ଦିଅନ୍ତି ଓ କହନ୍ତି, 'ବିଦ୍ୱତ୍ୱଂଚ ନୃପତ୍ୱଂଚ ନୈବ ତୁଲ୍ୟ କଦାଚନ/ ରାଜନ ପୂଜ୍ୟତେ ସ୍ୱଦେଶେ ବିଦ୍ୱାନ୍ ପୂଜ୍ୟତେ ସର୍ବତ୍ର ।' ତେଣୁ ବାପାଙ୍କ କଥା ଶୁଣି ମୁଁ ସଙ୍ଗେ ସଙ୍ଗେ ପାଣି ଆଣିବାକୁ ବ୍ରାହ୍ମଣୀ ନଦୀକୁ ଯିବା ପାଇଁ ବାହାରିଲି । ପ୍ରାୟ ଦୁଇ କିଲୋମିଟର ବାଟ । ମୋତେ ସେଠି ଉପସ୍ଥିତ ଥିବା ତାଙ୍କ ବନ୍ଧୁମାନେ ମନା କଲେ । ଗୋଟିଏ କଂସାରେ ପାଣି ଆଣି ମୋତେ ଦେଲେ ବାପାଙ୍କୁ ଦେବା ପାଇଁ । ମୁଁ ବାପାଙ୍କୁ ଦେଲି । ସେ କଂସାଟି ଧରି ଆଖିପତା ଟେକି ପାଣିକୁ ଅନାଇଲେ । ମୋତେ କହିଲେ– 'ଇଏ କ'ଣ ବ୍ରାହ୍ମଣୀ ନଦୀ ପାଣି ?' ମୁଁ କିଛି କହିବା ପୂର୍ବରୁ ଉପସ୍ଥିତ ଲୋକେ କହିଲେ– 'ହଁ' । ବାପା ରାଗିଗଲେ । କହିଲେ, 'ମୁଁ ତୁମକୁ ପଚାରୁ ନାହିଁ । ବାବନାକୁ ପଚାରୁଛି ।' ମୁଁ ବା କ'ଣ ଜାଣେ । ଦିନକ ପାଇଁ ବାପାଙ୍କ ପାଖରେ ମିଛ କହି ନାହିଁ । କ'ଣ କହିବି ! ମୋତେ ଲୋକେ କହିଲେ– 'କହ, ହଁ ।' ମୁଁ କହିଦେଲି 'ହଁ' । ପୁଣି ପଚାରିଲେ ସତ କହୁଛୁ ? ମୁଁ କହିଲି 'ହଁ' । ଏଥର ସେ ପାଣି ପିଇଦେଲେ । ସନ୍ଧ୍ୟାବେଳକୁ ଆମ ପିଲାମାନଙ୍କୁ ମାଁପ ବିମ୍ବାଧର ସାମଲଙ୍କ ଘରକୁ ପଠାଇଦେଲେ । ତାଙ୍କ ପୁତୁରାର ବାହାଘର । ରାତି ଅଧବେଳକୁ ହଠାତ୍ ଝଡ଼ବର୍ଷା । ମୋ ମାଁ'ପ ମୁଣ୍ଡରେ ହାତ ଦେଇ କହିଲେ– 'ଶିର ଚାଲିଗଲା ।' ସକାଳୁ ସକାଳୁ ମାଁ'ପ ଆମକୁ ନେଇ ଘରକୁ ଆସିଲେ । ଆମ ଘର ଉପରେ ଗୋଟାଏ ଆମ୍ବତାଳ ଭାଙ୍ଗିପଡ଼ିଥାଏ । ମୁଁ ଦେଖିଲି ମୋ ବାପା– ଆମ ଗ୍ରାମର ମହାନାୟକ ଶୋଇଯାଇଛନ୍ତି ଶେଷ ନିଦ୍ରାରେ । ତାଙ୍କ ରୋଗଶଯ୍ୟାରେ ଆମ ଘର ପାଖର ମୋର ଜଣେ ମଉସା ବିଶ୍ୱମ୍ବର ପରିଡ଼ା ବାପାଙ୍କ ରୋଗଶଯ୍ୟା ପାଖରେ ଦିନରାତି ବସି ସେବା କରୁଥିବା ଦୃଶ୍ୟ ଏବେ ମଧ୍ୟ ମନେପଡ଼ିଯାଏ ।

ମୋ ବାପାଙ୍କ କଥା ମୁଁ ଭୁଲିପାରେ ନାହିଁ । ବାପାଙ୍କ ଶେଷ ଯାତ୍ରାବେଳେ ତାଙ୍କ ପାଖରେ ମିଛ କହି ଗଭୀର ଅନୁତାପ କରିଛି ଓ ଏବେ ମଧ୍ୟ କରୁଛି । ବାପା ମୋର ଥିଲେ ଅତ୍ୟନ୍ତ ଉଦାର । ଧର୍ମଗତ ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରି ନ ଥିଲା । ସେ ଜଗନ୍ନାଥଙ୍କୁ ମାନୁଥିଲେ । ଲୋକଙ୍କ ସେବାରେ ତାଙ୍କର ଆନନ୍ଦ । ବଡ଼ ତ୍ୟାଗୀ ମଣିଷଟିଏ । ମୋ

ପିଲାଦିନେ ମୁଁ ତାଙ୍କୁ ଦେଖିଛି । ପାଞ୍ଚ ସାତ ଦିନ ପରେ ରାତି ଅଧରେ ଘରକୁ ଆସିଲାବେଳେ ତାଙ୍କ ଦେହରେ ମାତ୍ର ଖଣ୍ଡିଏ ଲୁଗା ଥାଏ, ଯାହାକୁ ସେ ପିନ୍ଧିଥାଆନ୍ତି । ଆଉ ସବୁ କାହାକୁ ଦେଇଆସିଥାନ୍ତି । ଆମ ପାଳଜମିରେ ସେତେବେଳେ ଲଙ୍କା, ବାଇଗଣ ଆଦି ନାନା ପନିପରିବା ହେଉଥାଏ । ସେହି ଟଙ୍କା ଯଦି ବାପାଙ୍କ ହାତରେ ପଡ଼େ ତେବେ ତାହା ହରିପ୍ରୀତ୍ୟାର୍ଥରେ ଯାଏ । କାହାକୁ ଦେଇ ଆସିଥାନ୍ତି । ଘରେ ବୋଉକୁ କହନ୍ତି ନାହିଁ । ଯାହା ବୋଉ ହାତକୁ ଆସେ ସେ ଆଉ ବାପାଙ୍କୁ ଦିଏ ନାହିଁ । ସେଇ ଟଙ୍କା ରହିଯାଏ । ବାପାଙ୍କ ମୃତ୍ୟୁ ପରେ ବୋଉ ପାଖରେ କିଛି ଟଙ୍କା ଥିବାରୁ ଆମକୁ ଚଳିବାରେ ଅସୁବିଧା ହେଲା ନାହିଁ ।

ମୋ ବାପାଙ୍କ କଥା କହିଲେ ସରିବ ନାହିଁ । ମୋ ହେତୁ ପାଇବା ଦିନରୁ ବାପାଙ୍କ ସଂପର୍କରେ ଜାଣିବାର ସୁଯୋଗ ପାଇଥିଲି । ଠିକ୍ ସ୍ୱାଧୀନତା ପରବର୍ତ୍ତୀ ସମୟର କଥା । ବୋଧହୁଏ ୧୯୫୦ ମସିହା ହେବ । ସେତେବେଳେ ଆମ ଗାଁ କୌଣସି କାରଣରୁ ଦୁଇ ଭାଗ ହୋଇଯାଇଥାଏ । ଗୋଟିଏ ଦଳର ଲୋକେ ଅନ୍ୟ ଦଳର ବିବାହ ଭୋଜିକୁ ଯାଆନ୍ତି ନାହିଁ । ଅନ୍ୟ ଦଳ ମଧ୍ୟ ସେଇଆ । ଆମେ ପିଲାମାନେ  କେଉଁ ଦଳର ନୁହଁ । ଆମ ଭିତରେ ଘନିଷ୍ଠ ସଂପର୍କ ଥାଏ । ଚମ୍ପାନାନୀ ମଠ, ଯାହାକୁ ମହାପୁରୁଷ ମଠ କହନ୍ତି, ସେତେବେଳକୁ ପଡ଼ନ୍ତ ଅବସ୍ଥାରେ । ଚମ୍ପାନାନୀର ପୁତୁରା ରଘୁନାଥ ପଣ୍ଡା । ସିଏ ଆମଠାରୁ ବୟସରେ ବଡ଼ । ଭାରି ଉତ୍ସାହୀ । ପୂର୍ବରୁ ସେ ଆମ ଗାଁ ଯାତ୍ରାଦଳରେ ଅଭିନୟ କରୁଥିଲା । ତାଙ୍କରି ପରାମର୍ଶକ୍ରମେ ଆମେ ପିଲାମାନେ ତାଙ୍କ ମଠ ବାଡ଼ିରେ ସପ୍ତା ବସେଇବାକୁ ସ୍ଥିର କଲୁ । ଦୀନବନ୍ଧୁ ଦାଦା ନେତୃତ୍ୱ ନେଉଥାନ୍ତି । ପାଟରୁ ନଡ଼ା କାଟି ଆମେ ବୋହି ଆଣିଲୁ । ବାଉଁଶ କାଟି ଘର କଲୁ ଓ ନଡ଼ାରେ ଛାଇ ଦେଲୁ । ସେହି ଘରେ ସପ୍ତା ବସାଇଲୁ । ପୂର୍ବରୁ ଆମ ଗାଁ ଛକରେ ଠାକୁରାଣୀଙ୍କ ପାଖରେ ପ୍ରତିବର୍ଷେ ସପ୍ତା ବସୁଥିଲା । ଗାଁ ଦୋମେଳିଆ ହେବାରୁ ସପ୍ତା ବସାଇବା ବନ୍ଦ ହୋଇଗଲା । ଆମେ ପିଲାମାନେ ପୁଣି ଆରମ୍ଭ କଲୁ । ଆମକୁ ଜାତିଭେଦ କଥା ଛୁଇଁ ନ ଥିଲା । ଆମେ ସମସ୍ତେ ଥିଲୁ ଏକ । ମୁଁ ସାନ ଥିଲେହେଁ ମୋତେ ସମସ୍ତେ ଖାତିର କରୁଥିଲେ । ଆମ ଭିତରେ ବଢ଼େଇ, ତନ୍ତୀ, କେଉଟ, ଗଉଡ଼ ଓ ହରିଜନ ପିଲା ଥିଲେ । ସେଠି ପ୍ରସାଦ ହୁଏ ଓ ଆମେ ସମସ୍ତେ ଖାଉଁ । ଏ ଘଟଣାରେ ଖଣ୍ଡାୟତମାନେ ରାଗିଗଲେ । ଆମକୁ ଧମକଚମକ ଦେବା ଆରମ୍ଭ କଲେ । ସେମାନେ ମେଳହୋଇ ବାପାଙ୍କୁ କହିଲେ । ବାପା ସେମାନଙ୍କୁ ଭର୍ତ୍ସନା କଲେ । ସେ କହିଲେ– 'ପିଲାଏ କ'ଣ କରୁଛନ୍ତି; ସେଥିରେ ବାଧା ଦେବା ଠିକ୍ ନୁହେଁ । ପିଲାଏ  ତ ସମସ୍ତଙ୍କର । ସେମାନେ ଭଲ କାମ କରୁଛନ୍ତି । ସେମାନେ ଗାଁର ଭବିଷ୍ୟତ । ଆମ ଭିତରେ ତ ଯାବତୀୟ କ୍ଷୁଦ୍ରଭାବ ରହି ଆମକୁ ଭାଗ

ଭାଗ କରିଦେଲାଣି । ସେଇ ବିଷକୁ ପିଲାମାନଙ୍କ ଭିତରେ ପୂରାଉଛ କାହିଁକି ?' କଥା ସେଇଠି ରହିଲା । ଆମେ ଜାକଜମକରେ ସପ୍ତା ବସେଇବା କାର୍ଯ୍ୟ ଶେଷ କଲୁ ।

ଆଉ ଦିନେ ବାପା ପାଳକୁ ଯାଇଥାନ୍ତି । ଖରାବେଳେ ବଳଦ ଓ ଲଙ୍ଗଳ ନେଇ ଘରକୁ ଆସିଲେ । ଆମ ଠାକୁର ଘରଦାଣ୍ଡରେ ଆସୁଥିବାବେଳେ ହଠାତ୍ ମୋ ବୋଉ, ମୋ ମାଆ ତିନିଜଣ (ବାପାଙ୍କ ଦାଦାମାନଙ୍କ ସ୍ତ୍ରୀ) ପିଣ୍ଡାରୁ ଡେଇଁପଡ଼ି ବାପାଙ୍କୁ କହିଲେ ମଣି ପରିଡ଼ା ଓ ତା' ବଡ଼ପୁଅ, ସାନପୁଅ ମିଳିମିଶି ତାଙ୍କ ମଝିଆପୁଅ ରଘୁ ପରିଡ଼ାର ମୁଣ୍ଡ ଫଟେଇ ଦେଇଛନ୍ତି । ଲୋକେ ଛକରେ ଗଦା ହୋଇ ତା' ମୁଣ୍ଡରେ କନାପୋଡ଼ା ଦେଉଛନ୍ତି । ବାପା ମଧ୍ୟ ସେଇ ବାଟେ ଘରକୁ ଆସିଲାବେଳେ ଦେଖିଲେ ମାତ୍ର କାହାକୁ କିଛି ନ କହି ସିଧା ଘରକୁ ଚାଲିଆସିଲେ । ମଣି ପରିଡ଼ା ଘର ଛକ ପାଖରେ ଆମ ପୋଖରୀକୁ ଲାଗି । ତାଙ୍କ ମଝିଆପୁଅ ରଘୁନାଥ ମୋ ସାନମାଆର ଝିଅ ଭାବିଦେଈକୁ ବାହା ହୋଇଥାଏ । ସେ ତ ବିଧବା । ତା' ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ସେ ଯେତେବେଳେ ଝିଅକୁ ମଣି ପରିଡ଼ା ଘରେ ବାହା ଦେବାକୁ ସ୍ଥିର କଲା ସେତେବେଳେ ତାଙ୍କର ଅନ୍ୟ ଦେଢ଼ଶୁର ଓ ଦିଅର ବିରୋଧ କଲେ । ବାପା ମଧ୍ୟ ମନା କଲେ ମାତ୍ର ସେ ସେଇଠି ଝିଅକୁ ବିଭା ଦେଲା । ସେଇ ଦିନରୁ ବାପା ମଣି ପରିଡ଼ା ଘରକୁ ବା ସେ ଲୋକମାନଙ୍କୁ ଅନାନ୍ତି ନାହିଁ । ଯେତେବେଳେ ମାଆମାନେ କାନ୍ଦି କାନ୍ଦି କହିଲେ, ବାପା ସେଇଠୁ ଲଙ୍ଗଳ ସଜଟା ଫୋପାଡ଼ି ଦେଇ ଗୋଟାଏ ଗର୍ଜନ କରି 'ମଣି ପରିଡ଼ା ମଣି ପରିଡ଼ା' ଡାକି ତାଙ୍କ ଘରପାଖକୁ ଚାଲିଗଲେ । ସେତେବେଳକୁ ମଣି ପରିଡ଼ା ଘର କବାଟ ଭିତରୁ ବନ୍ଦ କରି ସପରିବାର ଲୁଚିଗଲେଣି । ଛକରେ ଲୋକେ ତଟସ୍ଥ । କେହି ବାପାଙ୍କୁ ସାହସ କରି କିଛି କହିପାରୁ ନ ଥାନ୍ତି । ବାପା ମଣିପରିଡ଼ାଙ୍କ କବାଟକୁ ଗୋଇଠା ମାରି ଭାଙ୍ଗିଦେଇ ଘର ଭିତରେ ପଶି ତାଙ୍କୁ ଟେକିଆଣି ତାଙ୍କ ଖଳାରେ ଥିବା ଧାନଗଦା ପରକୁ ଫିଙ୍ଗିଦେଲେ । ତାଙ୍କ ବଡ଼ପୁଅ ଓ ସାନପୁଅଙ୍କୁ ମାଡ଼ ଦେଲେ । ତା'ପରେ ତାଙ୍କ ରାଗ ଥଣ୍ଡା ପଡ଼ିଗଲା । ଘରକୁ ଆସି ଖାଇପିଇ ଶୋଇଲେ । ସନ୍ଧ୍ୟାବେଳକୁ ସେ ଘରେ ଥାଆନ୍ତି । ମୋତେ ପଢ଼ାଉଥା'ନ୍ତି । ଲଣ୍ଠନ ଜଳୁଥାଏ । ଏଣେ ମଣିପରିଡ଼ା ଗାଁରେ ବୁଲି ନିଶାପ ଡକାଇଲା । ସାରା ଗାଁରୁ ନିଶାପୀମାନେ ଆସିଥାନ୍ତି । ବିଶେଷତଃ ତାଙ୍କ ଭାଇୟା ପରିଡ଼ା ସାହିରୁ ବହୁତ ଲୋକ ଆସିଥାନ୍ତି । ସେକାଳରେ ଆମ ଗାଁର ବିଶିଷ୍ଟ ନିଶାପୀ କମ୍ବୁପାଣି ପରିଡ଼ା, ନିରାକାର ଉଦଣ୍ଡ ରାୟ, ହାଡ଼ିବନ୍ଧୁ ମଙ୍ଗରାଜ, ଯଦୁମଣି ଥାଟୋଇ, ଭାବଗ୍ରାହୀ ପରିଡ଼ା, ସତ୍ୟବାଦୀ ଜେନା, ଧନେଶ୍ୱର ମଳିକ ପ୍ରମୁଖ ବହୁ ବ୍ୟକ୍ତି ଜମା ହୋଇଥାନ୍ତି । ବାପାଙ୍କୁ କେହି କହି ନ ଥାନ୍ତି । କଥା ହେଲା ଯେ ଶ୍ରୀବସ୍ତ ବାବୁ ତ ନାହାନ୍ତି, ନିଶାପ କିପରି ହେବ ? ତାଙ୍କୁ ଡାକିବ କିଏ ? କେହି ସାହସ କରି ଆମ

ଘରକୁ ଗଲେ ନାହିଁ । ପରିଡ଼ା ସାହିର ହାଡ଼ିବନ୍ଧୁ ମଙ୍ଗରାଜ ବାପାଙ୍କର ଦାଦା ସଂପର୍କୀୟ । ବାପା ମଧ୍ୟ ତାଙ୍କୁ ସମ୍ମାନ ଦିଅନ୍ତି । ସେ ବଚ୍ଛବାବୁ ବଚ୍ଛବାବୁ ଡାକି ଡାକି ଆମ ଘର ଭିତରକୁ ଗଲେ । ବାପା ତାଙ୍କୁ ବିଛଣାରେ ବସାଇ ବୋଉକୁ ଚା' କରିବାକୁ କହିଲେ । ଉଭୟ ଚା' ଖାଇଲେ । ତା'ପରେ ସେ ବାପାଙ୍କୁ ଅତି ନମ୍ର ଭାବରେ ନିଶାପକୁ ଯିବାକୁ କହିଲେ । ବାପା କିଛି ଉତ୍ତର ନ ଦେଇ ତାଙ୍କ ସହିତ ଗଲେ । ମୁଁ ମଧ୍ୟ ବାପାଙ୍କ ସହିତ ଯାଇଥାଏ । ବାପା ପହଞ୍ଚି ହଠାତ୍ କହିଲେ- 'ନିଶାପରେ ବସିବା ପୂର୍ବରୁ ମୋର ଗୋଟିଏ ସର୍ତ୍ତ ଅଛି । ସେହି ସର୍ତ୍ତ ଯଦି ମଣିପରିଡ଼ା ମାନିବ ତେବେ ମୁଁ ନିଶାପରେ ବସିବି ।' ଉପସ୍ଥିତ ଭଦ୍ରଲୋକ ପଚାରିଲେ- ସର୍ତ୍ତ କ'ଣ ? ବାପା କହିଲେ- 'ମଣିପରିଡ଼ାଙ୍କ ସହିତ ମୋର କୌଣସି ଶତ୍ରୁତା ନାହିଁ । ମୁଁ ଦେଖୁଛି ଓ ଶୁଣୁଛି ଯେ ପ୍ରତିଦିନ ତାଙ୍କ ଘରେ ରଘୁନାଥଙ୍କୁ କେନ୍ଦ୍ର କରି ଭୀଷଣ ଝଗଡ଼ା ହେଉଛି । ଅଶାଳୀନ ଭାଷା ବ୍ୟବହାର କରୁଛନ୍ତି ଓ ଆମ ଘରକୁ ତାହା ଶୁଭୁଛି । ସେମାନେ ଘର ଭିତରେ ଯାହା କରୁଛନ୍ତି କରନ୍ତୁ, କାହାକୁ ମାରିବାର କଥା ମାରନ୍ତୁ ମୋର ଦୁଃଖ ନାହିଁ । ଦାଣ୍ଡକୁ ଓ ଆମ ଘରକୁ ତାହା ନ ଶୁଭୁ । ଏହାହିଁ ମୋର ସର୍ତ୍ତ ।' ମଣିପରିଡ଼ା ଛିଡ଼ା ହୋଇ ହାତଯୋଡ଼ି ଭଦ୍ରଲୋକଙ୍କୁ କହିଲେ ଯେ 'ଆଜିଠାରୁ ମୁଁ ଜଗନ୍ନାଥଙ୍କ ନାମରେ ହଲପ କରି କହୁଛି ଆଉ ଆମ ଘରେ ପାଟିତୁଣ୍ଡ ହେବ ନାହିଁ ।' ବାପା ତତ୍‌କ୍ଷଣାତ୍ ଛିଡ଼ା ହୋଇ କହିଲେ- 'ଆଉ ନିଶାପର ଆବଶ୍ୟକତା ନାହିଁ । ମୁଁ ତାଙ୍କ ଘରେ ପଶି ତାଙ୍କୁ ମାରିଛି; ଏହା ମୋର ଗୁରୁତର ଭୁଲ । ମୁଁ ତାଙ୍କୁ କ୍ଷମା ମାଗୁଛି ।' ଏତିକିରେ ନିଶାପ ସରିଗଲା । ସମସ୍ତେ ହରିବୋଲ ପକାଇ ବିଦା ହେଲେ ।

ମୋ ପିଲାଦିନେ ଏଇପରି କେତେ ଘଟଣାରେ ବାପାଙ୍କୁ ଦେଖିଛି । କେବଳ ଆମ ଗାଁରେ ନୁହେଁ; ବାହାର ଗାଁରେ ମଧ୍ୟ ନିଶାପ ବେଳେ ଯଦି ଉଭୟପକ୍ଷ ନ ମାନନ୍ତି ବାପା ଉଭୟଙ୍କ ପାଦ ଧରି ଶୋଇରୁହନ୍ତି ଓ କହନ୍ତି ଉଭୟ ନ ମିଳିଲା ପର୍ଯ୍ୟନ୍ତ 'ମୁଁ ଉଠିବି ନାହିଁ ।' ଫଳରେ ବାଦୀ ପ୍ରତିବାଦୀ ମିଳିଯାଆନ୍ତି । ମୁଁ ଦେଖିଛି ବାପା ନିଶାପ ବେଳେ ଚାଣକ୍ୟ ଶ୍ଳୋକ, ଢଗଢମାଳି, ଭାଗବତରୁ ପଦ ଉଦ୍ଧାର କରି ଏପରି ଯୁକ୍ତି କରନ୍ତି ଯେ ତାହା ଶୁଣି ଅନ୍ୟ ସମସ୍ତେ ତନ୍ମୟ ହୋଇଯାଆନ୍ତି । ତାଙ୍କ ଭାଗବତ ଓ ଢଗଢମାଳିର ଦାୟିକା ଭିତରୁ ଗୋଟାଏ ଦିଇଟା ଏବେ ମଧ୍ୟ ମୋର ମନେଅଛି । ସିଏ କହନ୍ତି- 'ସ୍ୱର୍ଗକୁ ନିଶୁଣୀ ନାହିଁ, ବଡ଼ଲୋକକୁ ଉତ୍ତର ନାହିଁ'; 'ମାରନା ମୁଁ ମଲିଣି/ ବଇଠା ଲଗାଇ ଦେଖିନି ମୁଁ ପୋଇଖାଇ ପରି ହେଲିଣି', 'ମନୁଷ୍ୟ ଦେହେ ଦିବ୍ୟଜ୍ଞାନ/ ଦେଖି ସନ୍ତୋଷ ଭଗବାନ' ଇତ୍ୟାଦି । କେହି ଅନ୍ୟାୟରେ କାହାକୁ ମାରିଲେ ସେ ରାଗିଯାନ୍ତି । ଥରେ ମୋ ପିଇସୀପୁଅ ଭାଇକୁ ପାଳରେ ଜଣେ ମାରିଥିଲା । ସେ କାନ୍ଦି

କାନ୍ଦି ବାପାଙ୍କୁ କହିବାରୁ ବାପା ତାଙ୍କୁ ଗାଳି ଦେଲେ । କହିଲେ– 'ତୁ ଯଦି ତାକୁ ମାରିକି ଆସିବୁ ତାହା ହେଲେ ତୋ କଥା ମୁଁ ବୁଝିବି ।' ବାପାଙ୍କ ଠାରୁ ହେମତ ପାଇ ସେ ତତ୍‌କ୍ଷଣାତ୍ ପାଳକୁ ଯାଇ ତାକୁ ଦଉଡ଼ିରେ ବାନ୍ଧି ମାଡ଼ ଦେଲା । ଏଇମିତି କେତେ କଥା । ଆଉ ଥରେ ପରିଡ଼ା ସାହିର କମ୍ବୁପାଣି ପରିଡ଼ା କୌଣସି ଏକ ହରିଜନ ସ୍ତ୍ରୀ ସହିତ ସହବାସ କରିଥିବାରୁ ତାଙ୍କ ସାହିରେ ତାଙ୍କୁ ଅ କ ରଖିଲେ ଓ ଲଣ୍ଡା ହୋଇ ପ୍ରାୟଶ୍ଚିତ୍ତ ହେଲେ ଯାଇ ଜାତିରେ ମିଶାଇବାକୁ କହିଲେ । ସେ ବାପାଙ୍କୁ ମାନନ୍ତି । ତେଣୁ ସେ ଆସି ଆମ ଘରେ ବାପାଙ୍କୁ କହିବାରୁ ବାପା ତାଙ୍କୁ ସାହସ ଦେଲେ । ପ୍ରାୟଶ୍ଚିତ୍ତ ନ ହେବାକୁ କହିଲେ । ସାହସର ସହିତ ପରିସ୍ଥିତିକୁ ମୁକାବିଲା କରିବାକୁ କହିଲେ । କେହି ନ ଚଳାଇଲେ ମଧ୍ୟ ସିଏ ତାଙ୍କ ସହିତ ଅଛନ୍ତି ବୋଲି କହିଲେ । ଏଇ କଥାଟା କୁଆଡ଼େ ଉଡ଼ିଗଲା । କମ୍ବୁପାଣି ପରିଡ଼ା ଜଣେ ବଡ଼ ମାମଲତକାର । ବାପାଙ୍କ ମୃତ୍ୟୁ ପରେ ସେ ଆମ ଘରକୁ ଆସି ଭଲମନ୍ଦରେ ଆମକୁ ସାହାଯ୍ୟ କ ଛନ୍ତି । ଯେଉଁମାନେ ଆମ ଘର ବା ଜମିବାଡ଼ି ବିଷୟରେ କିଛି କରନ୍ତି ସେ ଛିଡ଼ା ହୋଇଯାଆନ୍ତି । ତାଙ୍କ ଋଣ ମୁଁ ଶୁଝାଇ ଦେଲି ଯେତେବେଳେ ମୁଁ କଟକରେ ଚାକିରି କଲି । ସେ ରୋଗରେ ପଡ଼ିଲେ । ତାଙ୍କୁ ଆଣି ମୁଁ ମୋ ବସାରେ ରଖିଲି ଓ ମେଡ଼ିକାଲରେ ଅପରେସନ କରାଇ ଭଲ କଲି ।

ଆଉଥରେ ବାପାଙ୍କ ସହିତ ମୁଁ ଘାଗରା ପରଶୁରାମ ପରିଡ଼ାଙ୍କ ଗୋଦାମକୁ ଯାଇଥିଲି । ସେହି ଗୋଦାମ ଥିଲା ଆମ ଅଞ୍ଚଳର ଏକମାତ୍ର ପ୍ରସିଦ୍ଧ ଗୋଦାମ । ସେଠାରେ ଲୁଗାପଟାଠାରୁ ଆରମ୍ଭ କରି ଯାବତୀୟ ତେଜରାତି ସଉଦା ମିଳୁଥିଲା । ଲୋକେ ବିବାହ, ବ୍ରତ ଓ ଅନ୍ୟାନ୍ୟ କାର୍ଯ୍ୟରେ ସେଠାରୁ ସଉଦା ନେଉଥିଲେ । ତାଙ୍କୁ ମଧ୍ୟ ଲୋକେ ଭୟ କରୁଥିଲେ । ମୁଁ ତ ବାପାଙ୍କ ସହିତ ଯାଇଥାଏ । ବାପାଙ୍କୁ ସେ ଭାରି ମାନନ୍ତି । ସେହି ଗାଁର ପତିତପାବନ ପରିଡ଼ା ଥାଆନ୍ତି ଜଣେ ସ୍ୱାଧୀନତା ସଂଗ୍ରାମୀ । ବାପାଙ୍କ ସହିତ ତାଙ୍କର ଭଲ ସଂପର୍କ । ପରଶୁରାମବାବୁ ମୋତେ ଦେଖି ଖୁସି ହୋଇଗଲେ । ତାଙ୍କ ଲୋକଙ୍କୁ କହି ମୋ ପାଇଁ ମହନ ଭୋଗ କରାଇ ଖାଇବାକୁ ଦେଲେ । ତା'ପର ଦିନ ପ୍ରଥମାଷ୍ଟମୀ । ବାପା ମୋ ପାଇଁ ଜାମା ପ୍ୟାଣ୍ଟ ଆଣିବାକୁ ଯାଇଥାନ୍ତି । ପରଶୁରାମ ବାବୁ ମୋତେ ହଳେ ଜାମା ପ୍ୟାଣ୍ଟ ପିନ୍ଧାଇଲେ । ସେ ବାପାଙ୍କଠାରୁ ଟଙ୍କା ନେଲେ ନାହିଁ । ଏହା ପରେ ତ ବାପା ମରିଗଲେ । ମୋର ଯେତେବେଳେ ୧୯୬୦ ମସିହାରେ ବାହାଘର ହେଲା ମୋ ବୋଉ ଲୋକ ପଠାଇ ପରଶୁରାମ ବାବୁଙ୍କ ଗୋଦାମରୁ ସବୁ ସଉଦା ଆଣିଲେ । ପରଶୁବାବୁ ଟଙ୍କା ନେଲେ ନାହିଁ । ବାହାଘର ପରେ ଦେବାକୁ କହି ଗୋଟାଏ ଚିଠା ପଠାଇଦେଲେ । ମୋ ବୋଉ ତାଙ୍କ ଟଙ୍କା ପରିଶୋଧ କ ଦେଲା ।

ଦୁଇ ଚାରିବର୍ଷ ଭିତରେ ପରଶୁବାବୁଙ୍କ ଦୋକାନ ଭାଙ୍ଗିଗଲା । ପୂର୍ବର ସେ ଡାକ୍ ଆଉ ରହିଲା ନାହିଁ । ଲୋକେ କହିବାର ମୁଁ ଶୁଣିଲି– 'ଆବେ ପର୍ଶୁ, ଯାବେ ପର୍ଶୁ, ବାବୁ ପର୍ଶୁରାମ, ପଇସା କ୍ୟା ନ କରେ କାମ ।' ମୁଁ ତ କଟକରେ ଥାଏ । ଆମ ଗାଁ ଜଗନ୍ନାଥ ମଠକୁ ଦେବୋତ୍ତର ବିଭାଗ ନେଇଥାଏ । ମଠର କିଛି ଜମିକୁ ବ୍ରାହ୍ମଣୀ ବନ୍ଧର ପ୍ରସାରଣ ପାଇଁ ନେଇଥିବାରୁ ସେ ଟଙ୍କା ଆମେ ଆଣିଥାଉଁ । ପରଶୁବାବୁଙ୍କର ମଧ୍ୟ କିଛି ଜମିଯାଇ ଥାଏ । ସେ ମୋ ପାଖକୁ ଆସି ତାଙ୍କ ଟଙ୍କା କିପରି ପାଇବେ କହିବାରୁ ମୁଁ ଲ୍ୟାଣ୍ଡ ଆକ୍ୟୁଇଜେସନ ଅଫିସରଙ୍କୁ କହି ଦିଆଇ ଦେଇଥିଲି । ସେ ମରିଗଲେଣି ବହୁତ ଦିନରୁ । ଏବେ ମଧ୍ୟ ତାଙ୍କ କଥା ମୋର ମନେପଡ଼େ । ତାଙ୍କୁ ଅନେକ ଲୋକ ଅନେକ କଥା କହୁଥିଲେ ମଧ୍ୟ ମୁଁ ତାଙ୍କ ଭିତରେ ଅନୁଭବିଥିଲି ଗୋଟାଏ ମଣିଷପଣିଆ । ସେତେବେଳେ କମ୍ବଳଘୋଡ଼ା ବାବାଙ୍କର ଭାରି ମହିମା ଥାଏ । କି ଖରା କି ବର୍ଷା କି ଶୀତ ସବୁଦିନେ ଗୋଟାଏ କମ୍ବଳ ଘୋଡ଼େଇ ହୋଇ ବୁଲନ୍ତି । କେଉଁଠି ଶୁଅନ୍ତି କେହି ଜାଣନ୍ତି ନାହିଁ । କାହା ଘର ଭିତରକୁ ଯାଇ ଖାଆନ୍ତି ନାହିଁ । ଯିଏ ଯାହା ଦିଏ, ସେହି କମ୍ବଳ ଭିତରେ ଘୋଡ଼େଇ ହୋଇ ଖାଇଦିଅନ୍ତି । ତା'ପରେ ସେ ଚାଲିଯାଆନ୍ତି । ଲୋକେ କହନ୍ତି ସିଏ କୁଆଡ଼େ କିଆବଣ ଭିତରେ ରାତିରେ ଶୁଅନ୍ତି । ମୋ ବାପା ଥିଲାବେଳେ ସେ ଆମ ଘରକୁ ଆସି ଡିହ ଉପରେ କମ୍ବଳ ଘୋଡ଼େଇ ହୋଇ ବସିଥିବାର ମୁଁ ଦେଖିଥିଲି । ବାପା କ'ଣ ଖାଇବାକୁ ଦେଲେ । ସେ କମ୍ବଳ ଭିତରେ ଖାଇଦେଇ ଚାଲିଗଲେ । ପରଶୁବାବୁ ତାଙ୍କୁ ମାନୁଥିଲେ । ତାଙ୍କୁ ଗୋଟାଏ ନରହତ୍ୟା ଅପରାଧରୁ ସେ ରକ୍ଷା କରିଥିଲେ । ତାଙ୍କର ସମାଧି ହୋଇଗଲା ପରେ ତାଙ୍କ ଶ୍ରାଦ୍ଧ ଉତ୍ସବ ମହାଜାକଜମକରେ ପରଶୁବାବୁ କରାଉଥିଲେ । ପ୍ରାୟ ତିରିଶ ଚାଳିଶ ଖଣ୍ଡ ଗ୍ରାମରୁ ଚାଉଳ, ଡାଲି, ପନିପରିବା ଆସୁଥିଲା । ବିରାଟ ମହୋତ୍ସବ ହେଉଥିଲା । ଏବେ ଆଉ ସେ ଉତ୍ସବ ନାହିଁ । ସେଇ ମଠ ଶ୍ରୀହୀନ ହୋଇପଡ଼ିଛି ।

ମୋ ପିଲାଦିନର ଦୁଇଟି କଥା ମନେପଡୁଛି । ପ୍ରଥମଟି ହେଲା ପିଲାଦିନେ ସାଙ୍ଗଙ୍କ ସହିତ ପଡ଼ି କଙ୍କଡ଼ା ଗାତରେ ହାତ ପୂରାଇଥିଲି । ବାହା ପର୍ଯ୍ୟନ୍ତ କାଦୁଅ ଲାଗିଯାଇଥାଏ । ଘରକୁ ଆସି ପହଞ୍ଚିବା କ୍ଷଣି ବାପା ମୋତେ କଙ୍କଡ଼ା ଗାତରେ ହାତ ପୂରାଇବା ଜାଣି ଏପରି ଗୋଟାଏ ଭୁରୁଡ଼ି କାଢ଼ିଲେ ଯେ ମୁଁ ଚର୍‌ଚର୍ ହୋଇ ମୂତି ପକାଇଲି । ମୋ ବୋଉ ଆସି ମୋତେ କାଖେଇ ନେଇଯିବା ପରେ ବାପା ଶାନ୍ତ ପଡ଼ିଗଲେ । ସେଇ ଦିନରୁ ମୁଁ କଙ୍କଡ଼ା ଗାତରେ ହାତ ପୂରାଇବା ଛାଡ଼ିଦେଲି । ପିଲାଦିନେ ସାଙ୍ଗମାନେ ଗୋଟିଏ ଲେଖା ନୟନକୋରିକୁ ବୋହି ଶୁଖାଇ ଦେଉ ମାଛ ଧରିବା ପାଇଁ । ସେଥିରୁ ମାଛ ମିଳେ ନାହିଁ । ଆଉ ଗୋଟିଏ କଥା– ମୋ ସାନସାଆନ୍ତ ବଂଶୀଧର

ସାମଲ ଥିଲେ ଜଗନ୍ନାଥଙ୍କ ଭକ୍ତ । ବାପାଙ୍କର ସିଏ ଦାଦା । ବାପାଙ୍କୁ ସେ ଭାରି ମାନୁଥିଲେ । ତାଙ୍କର ଅନ୍ୟ ଦୁଇଭାଇ ମରିଯାଇଥିଲେ । ତାଙ୍କ ବଡ଼ଭାଇ ବେଣୁଧର ସାମଲ କଲିକତାରେ ଥାଆନ୍ତି । ସାନସାଆନ୍ତ ପୁରୀ ଗଲେ ଚାଲି ଚାଲି ଯାଆନ୍ତି । ମୁଁ ଥଟ୍ଟା ହୋଇ କହିଲେ ସେ କହନ୍ତି– ଆରେ, ତୁ କ'ଣ ଜାଣୁ ? ସିଏ ତ ଜଗନ୍ନାଥଙ୍କୁ କାଳିଆ ଡାକନ୍ତି । କାଳିଆ ପାଖକୁ କ'ଣ ଗାଡ଼ିଘୋଡ଼ାରେ ଯିବା କଥା ? ସେ ଘରୁ ବାହାରି ଚାଲି ଚାଲି ପୁରୀକୁ ଯାଆନ୍ତି, ବାଟରେ କୌଣସି ଖାଦ୍ୟ ଗ୍ରହଣ କରନ୍ତି ନାହିଁ । ପୁରୀରେ ପହଞ୍ଚି ମହୋଦଧିରେ ସ୍ନାନ କରି ମନ୍ଦିରକୁ ଯାଇ କାଳିଆଙ୍କୁ ଦର୍ଶନ କରନ୍ତି । ଭାରି ଶକ୍ତିଶାଳୀ ମଣିଷ ସେ । ଗୋଡ଼ ଓ ହାତ ଶାଳୁଆ ଗଞ୍ଜା ପରି । ଦଉଡ଼ିପାରନ୍ତି ନାହିଁ । ବାଗୁଡ଼ିଖେଳ ବେଳେ ଆମ ଛକ ଉପରେ ତାଙ୍କୁ ଅନ୍ୟମାନେ ଟାଣି ନେଇ ଖେଳାନ୍ତି । ସେ କହନ୍ତି– 'ସମସ୍ତେ ତାଙ୍କ ଗୋଡ଼କୁ ଧରିସାରିଲେ ସେ ରା' ଡାକିବେ ।' ସମସ୍ତେ ଧରନ୍ତି । ସେ କିନ୍ତୁ ଗୋଟାଏ ଝିଙ୍କାରେ ସମସ୍ତଙ୍କୁ ଠେଲି ଦେଇ ଚାଲିଆସନ୍ତି । ଦୋହାତି ଶାଳୁଆ କାଠକୁ କାନ୍ଧରେ କାନ୍ଧେଇ ଯାଆନ୍ତି । କୌଣସି ପିଲା ବା ବଡ଼ ମଣିଷ ବଂଶୀ କଣ୍ଟାରେ ମାଛ ଧରୁଥିଲେ ସେ ପହଞ୍ଚି ସବୁ ବଂଶୀ କଣ୍ଟାକୁ ଭାଙ୍ଗି ଫୋପାଡ଼ି ଦିଅନ୍ତି । ମାଙ୍କଡ଼ ବା ସାପ କେହି ତାଙ୍କ ଆଗକୁ ଆସିଗଲେ ସେ କହନ୍ତି– 'ବାପା ! ଯାଅ ତମ ବାଟରେ । ମୁଁ ତମର କିଛି କ୍ଷତି କରୁ ନାହିଁ ।' ପ୍ରତିଦିନ ଗାଧୁଆବେଳେ ଗାଧେଇ ସାରିଲା ପରେ ଏକାଦଶ ସ୍କନ୍ଦ ଭାଗବତରୁ ସାତ ଅଧ୍ୟାୟ ପଢ଼ନ୍ତି । ସମଗ୍ର ଏକାଦଶ ସ୍କନ୍ଦଟି ତାଙ୍କର ମୁଖସ୍ଥ । ଭାଗବତ ପଢ଼ିସାରିଲା ପରେ ସେ ଖାଆନ୍ତି । ମୁଁ ଥଟ୍ଟା କରି ତାଙ୍କୁ ପଚାରେ– 'ସାଆନ୍ତ, ସାତ ଅଧ୍ୟାୟ କାହିଁକି ପଢୁଛ ? ଗୋଟିଏ ଅଧ୍ୟାୟ ପଢ଼ିଲେ କ'ଣ ହୁଅନ୍ତା ନାହିଁ ?' ସେ କହନ୍ତି– 'ଆରେ ବୋକା, ତୁ କ'ଣ ଜାଣୁ ? ଗୋଟିଏ ଅଧ୍ୟାୟ ମୋ ପୁଅ ପାଇଁ, ଗୋଟିଏ ଅଧ୍ୟାୟ ତୋ ପାଇଁ, ଗୋଟିଏ ଅଧ୍ୟାୟ ମୋ ଭଣଜା ପାଇଁ, ଗୋଟିଏ ଅଧ୍ୟାୟ ଆମ ଗାଁ ପାଇଁ, ଗୋଟିଏ ଅଧ୍ୟାୟ ଓଡ଼ିଶା ପାଇଁ, ଗୋଟିଏ ଅଧ୍ୟାୟ ଭାରତ ପାଇଁ, ଆଉ ଗୋଟିଏ ଅଧ୍ୟାୟ ପୃଥିବୀ ପାଇଁ ।' ପରେ ବୟସ ହେଲା ପରେ ମୁଁ ଭାବିଲି, 'ସତରେ ସେଇ ଲୋକଟି କ'ଣ ? ତାଙ୍କର ସମସ୍ତଙ୍କ ପାଇଁ ପ୍ରାର୍ଥନା କରିବାର ମହତ୍ତ୍ୱ କ'ଣ ?' ଏପରି ଲୋକ ଆଉ ଆ୍ୟ ଗ୍ରାମରେ ନାହାନ୍ତି ।

କାଳିଆ କାଳିଆ ହୋଇ ସେ ଥରେ ପାଗଳ ହୋଇଗଲେ । ସନ୍ଧ୍ୟାବେଳେ ଆମ ଗାଁ ଓ ପାଖ ଗାଁର ମଜଭୁତ ଲୋକେ ତାଙ୍କୁ ଛକ ଉପରେ କଡ଼ି ପକାଇବାକୁ ଆସିଲେ । ବହୁ ଲୋକ ଜମା ହୋଇଥାନ୍ତି । ମୁଁ ମଧ୍ୟ ଦେଖୁଥାଏ । ବଡ଼ ବଡ଼ ଲଙ୍ଗଳ ଦଉଡ଼ିରେ ଫାଶ ପକାଇ ତାଙ୍କ ଉପରକୁ ଫିଙ୍ଗି ବହୁ କଷ୍ଟରେ ତାଙ୍କୁ କଡ଼ି ପକାଇଲେ । ରାତିରେ

ସେ ଆମ ଠାକୁରଘରେ ଥାଆନ୍ତି । ବାପା ନ ଥାନ୍ତି । ରାତି ଅଧରେ ସେ ଘରକୁ ଫେରି ଶୁଣିଲେ । ଭୋରୁ ସେ ଗୋଟିଏ ହଂସୁଆ ଧରି ତାଙ୍କ ପାଖକୁ ଗଲେ । ସାଆନ୍ତ ସେତେବେଳକୁ ଥଣ୍ଡା । ସେ କହିଲେ– 'ଆରେ ଶିର ! ତୁ ଥାଉଁ ଥାଉଁ ଏ ଗାଁବାଲା ମତେ କଡ଼ି ପକାଇଦେଲେ ?' ବାପା କାନ୍ଦିପକାଇ ହଂସୁଆରେ ତାଙ୍କ କଡ଼ି ଖୋଲି ଦେଲେ । ସାଆନ୍ତ ଭଲ ହୋଇଗଲା । ମୋ ବାପା ଆମ ଗ୍ରାମର ସମସ୍ତଙ୍କୁ ଖୁବ୍ ଭଲ ପାଉଥିଲେ । ତାଙ୍କର ଶତ୍ରୁ ମିତ୍ର ନ ଥିଲେ । ସତ୍ୟବାଦୀ ଜେନା ସେତେବେଳେ ଯୁବକ, ଭାରି ସାହସୀ । ବାପା ତାଙ୍କୁ ସାଙ୍ଗରେ ନେଇ ସବୁଆଡ଼କୁ ଯାଆନ୍ତି । ଥରେ ଆମ ଗାଁ ଛକ ଉପରେ ମୋ ପିଇସା ଓ ଆଉ ଜଣେ ଲୋକ ମାଡ଼ଗୋଳ ହୋଇ ଗଡ଼ାପଡ଼ା ହେଉଥାନ୍ତି । ଉଭୟ ପକ୍ଷର ଲୋକେ ଜମା ହୋଇ ଗଣ୍ଡଗୋଳ କରିବାକୁ ପ୍ରସ୍ତୁତ ହେଉଥାନ୍ତି । ବାପା ହଠାତ୍ ସେଠି ପହଞ୍ଚି ଏପରି ଗୋଟାଏ ଗର୍ଜନ କଲେ ଯେ ସମସ୍ତେ ନୀରବ ହୋଇଗଲେ । ମୁଁ ଦେଖିଛି ସତ୍ୟବାଦୀ ଦାଦା ଜଙ୍ଘରେ ଓ ଛାତିରେ ତାଳିମାରି ଯେପରି ବାଡ଼ି ବୁଲେଇଥିଲେ ସେଥିରେ ସମସ୍ତେ ନରମିଗଲେ । ବାପା ସେଇଠି ସମସ୍ତଙ୍କ ଭିତରେ ମିଳାମିଶା କରାଇଦେଲେ । ଗାଁରେ ଇମିତି କଥାକଥାକେ ଗଣ୍ଡଗୋଳ ହୁଏ । ଭଦ୍ରଲୋକେ ତାହାକୁ ମୀମାଂସା କରି ଦେଉଥିଲେ । ଏବେ ଆଉ ସେଇ ଅବସ୍ଥା ନାହିଁ ।

ଏହିପରି ମୋ ବାପାଙ୍କ କଥା ଅନେକ । ମୋର ଏଗାର ବର୍ଷ ଭିତରେ ଯେତିକି ଅନୁଭୂତି ଥିଲା ସେତିକି ଲେଖିଲି । ଛୋଟବଡ଼ ଆହୁରି କେତେ ତ କଥା ଅଛି । ସେ ତ ମହାତ୍ମାଗାନ୍ଧିଙ୍କୁ ଦେବତା ପରି ମାନୁଥିଲେ । ତେଣୁ ପ୍ରଥମ ନିର୍ବାଚନରେ ସେ କଂଗ୍ରେସକୁ ସମର୍ଥନ କରୁଥିଲେ । କେନ୍ଦ୍ରାପଡ଼ାର ବିଶିଷ୍ଟ ବ୍ୟକ୍ତି ଓ କଟକ ହାଇକୋର୍ଟର ବିଶିଷ୍ଟ ଓକିଲ ଦୀନବନ୍ଧୁ ସାହୁ ନିର୍ବାଚନରେ ଛିଡ଼ା ହୋଇଥିଲେ । ବାପା ତାଙ୍କୁ ସମର୍ଥନ କରୁଥିଲେ । ବୋଉ କିନ୍ତୁ ଯଦୁମଣି ମଙ୍ଗରାଜଙ୍କୁ ସମର୍ଥନ କରୁଥାଏ । ଖଣ୍ଡାୟତମାନେ ଏକ ମେଳ ହୋଇ ମଙ୍ଗରାଜଙ୍କୁ ଜିତାଇବା ପାଇଁ ଉଦ୍ୟମ କରୁଥାନ୍ତି । ବାପା ଛୁଆଁଅଛୁଆଁ ମାନୁ ନ ଥିବାରୁ ତାଙ୍କୁ ତଥା ସେ ସମର୍ଥନ କରୁଥିବା କଂଗ୍ରେସ ଦଳକୁ ବିରୋଧ କରୁଥାନ୍ତି । ମାତ୍ର ନିର୍ବାଚନରେ ଦୀନବନ୍ଧୁ ସାହୁ ବିଜୟୀ ହେଲେ । କେନ୍ଦ୍ରାପଡ଼ା କଲେଜ ତାଙ୍କର ବିଶିଷ୍ଟ କୀର୍ତ୍ତି । ଏବେ ତାଙ୍କ ସ୍ମୃତିରେ କେନ୍ଦ୍ରାପଡ଼ା କଲେଜ ବାର୍ଷିକ ସଭା କରୁଅଛି ଓ ପ୍ରତିବର୍ଷ ସମ୍ମାନଜନକ ଦୀନବନ୍ଧୁ ସାହୁ ସ୍ମୃତି ପୁରସ୍କାର ଦେଉଅଛନ୍ତି । ମୁଁ ମଧ୍ୟ ଏହି ପୁରସ୍କାର ଗୋଟିଏ ବର୍ଷ ପାଇଅଛି ।

ମୋ ବାପା ମୋ ପାଖରେ ମହାନ୍ । ସେ ଥିଲେ ନୀତିନିଷ୍ଠ ବିଚାରବନ୍ତ ବିବେକବାନ୍ ମଣିଷ । ସେ ସଂକୀର୍ଣ୍ଣ ନ ଥିଲେ । ବଡ଼ ଉଦାର ସେ । ମୃତ୍ୟୁ ପର୍ଯ୍ୟନ୍ତ ଖଦଡ଼ ପିନ୍ଧୁଥିଲେ । ବାଡ଼ିରେ କପାଚାଷ କରୁଥିଲେ । ବୋଉ ପ୍ରତି ତାଙ୍କର ଶ୍ରଦ୍ଧା ଅମାପ । ହରିଜନଙ୍କ

ସହିତ ମିଶୁଥିବାରୁ ବୋଉ ତାଙ୍କ ଉପରେ ବିରକ୍ତ ହୁଏ । ମାତ୍ର ବାପାଙ୍କର ସେ ସେବା କରିବାରେ ଆନନ୍ଦ ପାଏ । ପିଲାଦିନେ ବାପାଙ୍କ ପ୍ରଭାବ ମୋ ଉପରେ ପଡ଼ିଛି । ତାଙ୍କରିଠାରୁ ମୁଁ ଶିଖିଛି ସ୍ୱାଭିମାନର କଥା, ମଣିଷପଣିଆ କଥା । ଜାତିକୁ ନୁହେଁ, ଧର୍ମକୁ ନୁହେଁ; ମଣିଷମାନଙ୍କୁ ଭଲପାଇବା କଥା । ଆତ୍ମପ୍ରଚାର ନୁହେଁ; ଆତ୍ମସମୀକ୍ଷାର କଥା । ବାପା ଆଦୌ ବିଳାସୀ ନ ଥିଲେ । ଭାରି ସରଳ ତାଙ୍କର ଜୀବନ । ତାଙ୍କର ଆଦର୍ଶରେ ମୁଁ ଅନୁପ୍ରାଣିତ । ସେ ମୋର ବାପା, ଗୁରୁ ଓ ମାର୍ଗଦର୍ଶକ । ଆଜି ୭୪ ବର୍ଷ ବୟସରେ ତାଙ୍କୁ ମନେପକାଇ ପୁଲକିତ ହେଉଛି ଓ ଭାବୁଛି ତାଙ୍କର ନୀରବ ଆଶୀର୍ବାଦ ହିଁ ମୋତେ ଏତେ ବାଟ ନେଇଆସିଛି । ସେ ନିଜେ ଫଟୋ ଉଠାଇ ରଖିନଥିଲେ । ଏବେ ଭାବୁଛି ଏଇ ଆତ୍ମପ୍ରଚାରବିମୁଖ ଲୋକଟି ପ୍ରକୃତରେ କ'ଣ ? ତାଙ୍କ ଚେହେରା ମୋ ଆଗରେ ଭାସିଉଠୁଛି ମାତ୍ର ମୁଁ ଚିତ୍ରକର ହୋଇ ନ ଥିବାରୁ ଆଙ୍କିପାରୁ ନାହିଁ । ଆମ ଗ୍ରାମକୁ ପଣ୍ଡିତ ଗୋଦାବରୀଶ ମିଶ୍ର ଯାଇଥିଲେ ଯଦୁମଣି ମଙ୍ଗରାଜଙ୍କ ସହିତ ଭୋଟ ସଭା କରିବାକୁ । ମୁଁ ତାଙ୍କୁ ଦେଖିଥିଲି ସେଦିନ । ତାଙ୍କ ଚେହେରା ମୋର ମନେପଡୁଛି । ମୋ ବାପାଙ୍କ ଗୋରା ତକତକ ଚେହେରା ତାଙ୍କ ଚେହେରା ସହିତ ଏକରକମ ମିଶିଯାଉଥିବା ମନେପଡୁଛି ।

ବାପାଙ୍କୁ ହରାଇ ମୁଁ ଅନାଥ ହୋଇଗଲି ୧୯୫୨ ମସିହାରେ । ମୋ ବୋଉ କେବଳ ଆମର ମୁରବି । ମୁଁ ହେଲି ବଡ଼ପୁଅ । ମୋ ତଳେ ଦୁଇଟି ସାନଭାଇ ଓ ଗୋଟିଏ ସାନଭଉଣୀ । ବୋଉ ଆମ୍ଭମାନଙ୍କୁ କୋଳରେ ପୂରାଇ ପଣତକାନିରେ ଘୋଡ଼େଇ ବଢ଼େଇଛି । ଦୁନିଆର ବଡ଼ଦାଣ୍ଡରେ ଆମକୁ ଛାଡ଼ିଦେଇ ସିଏ ବି ଚାଲିଗଲେଣି ଅନେକ ଦିନରୁ ୧୯୭୭ ମସିହାରୁ ।

## ମୋ ବୋଉ

କ'ଣ କହିବି ମୋ ବୋଉ କଥା ? ସବୁ ବୋଉ ଏକା । ଜଣେ ଜଣେ ବଡ଼ ନିର୍ମମ ଥାଆନ୍ତି । ତାଙ୍କର ଛୋଟ ଛୋଟ ପିଲାଙ୍କୁ ଛାଟରେ ପିଟିଯାଆନ୍ତି । ଟିକିଏ ହେଲେ ଦୟା ଆସେ ନାଇଁ । ମୁଁ ଗାଁରେ ଦେଖିଛି । ସେତେବେଳେ ମୋର ଭାରି ରାଗ ହୁଏ । ଉପରେ ପଡ଼ି କଳି କରେ । ମୋତେ କିନ୍ତୁ କେହି କିଛି କହନ୍ତି ନାଇଁ । ମୋର ପିଲାଦିନରୁ ଗୋଟିଏ ସ୍ୱଭାବ ବଢ଼ିଗଲା ଯେ ଗରିବ ଲୋକଙ୍କୁ କେହି କିଛି ଗାଳିମନ୍ଦ କଲେ ବା ମାଡ଼ ଦେଲେ ମୁଁ ସହିପାରେ ନାଇଁ । ପିଲାଟିଏ ହେଲେ ମଧ୍ୟ ମୁଁ ପ୍ରତିବାଦ କରେ । ବଡ଼ ହେଲା ପରେ ମଧ୍ୟ ଏଇ ସ୍ୱଭାବ ମୋର ରହିଗଲା ।

ଆମ ଗାଁରେ ସୁରେନ୍ଦ୍ରନାଥ ସାମଲ ଥାଆନ୍ତି ଆଳିରାଜାଙ୍କ ତହସିଲଦାର । ସେ ଖଜଣା ଆଦାୟ କରନ୍ତି । ସେତେବେଳେ ଆଳିରାଜା ବ୍ରଜସୁନ୍ଦର ଦେବଙ୍କର ଭାରି ପ୍ରକୋପ । ଘୋଡ଼ାରେ ଯିବାଆସିବା କରୁଥିଲେ । ବାଘବାରେଣି ମନ୍ତ୍ର ଜାଣିଥିଲେ । କଲିକତା ଚିଡ଼ିଆଖାନାରେ ବାଘକୁ ଖୋଲି ତା' ଉପରେ ବସୁଥିଲେ । ଏମିତି କେତେ କଥା ଶୁଣିଥିଲୁ । ଆମ ଅଞ୍ଚଳର ପ୍ରସିଦ୍ଧ ଯାତ୍ରାକାର ଗୋପାଳ ଦାଶ ତାଙ୍କ ଗଡ଼ରେ ଥରେ ଯାତ୍ରା କରୁଥିଲେ । ତାଙ୍କର ରାଜା ପରି ଚେହେରା । କଣ୍ଠ ମଧ୍ୟ ମଧୁର । ସେ ରାଜପୋଷାକ ପିନ୍ଧି ମୁଣ୍ଡରେ ମୁକୁଟ ଓ ସିନ୍ଦୂରଗାର ଟାଣି କାନରେ କୁଣ୍ଡଳ ନାଇ ମଞ୍ଚକୁ ଆସି ସିଂହାସନରେ ବସି ରାଜାଙ୍କ ପରି ଦୂତକୁ ଆଦେଶ ଦେଲାବେଳେ ରାଜା ବ୍ରଜସୁନ୍ଦର ଦେବ ଓ ରାଣୀ ଉଭୟ ପ୍ରାସାଦ ଉପରେ ବସି ଯାତ୍ରା ଦେଖୁଥିଲେ । ରାଜା ଗୋଟା । ସବୁବେଳେ ଅବୁଝା । ସିଏ କହିଲେ ମୁଁ ତ ରାଜା, ଇଏ ପୁଣି କିଏ ? ତେଣୁ ସିଏ ଗୋଟିଏ ବନ୍ଧୁକ ଟାଣି ଆଣି ଗୋପାଳ ଦାଶଙ୍କୁ ମାରିବାକୁ ଉଦ୍ୟତ ହୁଅନ୍ତେ ରାଣୀ ତାଙ୍କୁ କୁଣ୍ଢାଇ ପକାଇ ଅଟକାଇଲେ ଓ ଗୋପାଳଙ୍କ ପାଖକୁ ଖବର ପଠାଇଲେ ସଙ୍ଗେ ସଙ୍ଗେ ଆଳି ଛାଡ଼ି ଚାଲିଯିବା ପାଇଁ । ଗୋପାଳ ପଳାଇଗଲେ । ଆଉ ଆଳି ଗଲେ ନାହିଁ । କେତେ ଦିନ ପରେ ଆଳି ଥାନାର ମୁସଲମାନ ଅଫିସର ଗୋପାଳଙ୍କୁ ଡକାଇ ଥାନା ପରିସରରେ ଯାତ୍ରା କରାଇଲେ । ସେଦିନ ରାଜନଅରରେ ବାଦୀପାଲା ହେଉଥାଏ । ମଣିନାଥ ଓ କେଶବ କର ପାଲା କରୁଥାନ୍ତି । ଯେମିତି ଗୋପାଳଙ୍କ ଯାତ୍ରା ପାର୍ଟିର କନସର୍ଟ ବାଜି ଉଠିଲା ଲୋକେ ପାଲାରୁ ଉଠି ସେଠାକୁ ପଳାଇଗଲେ । ପାଲା ପାଖରେ ଆଉ ଲୋକ ନାହାନ୍ତି । ରାଜା କାରଣ ପଚାରିବାରୁ ତାଙ୍କ ପାଖ ଲୋକେ କହିଲେ- ଗୋପାଳ ଦାଶ ଥାନାରେ ଯାତ୍ରା କରୁଛି । ଭଲ ଯାତ୍ରାବାଲା ସେ । ସେତେବେଳକୁ ବ୍ରଜସୁନ୍ଦର ଭୁଲିଗଲେଣି ଯେ ସେ ତାଙ୍କୁ ମାରିଦେବାକୁ ଉଦ୍ୟମ କରିଥିଲେ ବୋଲି । ସେ ତାଙ୍କ ଲୋକଙ୍କୁ ପଠାଇଲେ ଥାନାବାବୁଙ୍କ ପାଖକୁ । ଥାନାବାବୁ ଜାତିରେ ପଠାଣ; ମାତ୍ର ଭାରି ଟାଣୁଆ ସଚ୍ଚୋଟ ଅଫିସର । ସେ ରାଜାଙ୍କ କଥା ରକ୍ଷା କରି ଗୋପାଳଙ୍କୁ ନଅରରେ ଯାତ୍ରା କରିବାକୁ କହିଲେ; ମାତ୍ର ଗୋପାଳ ଅମତ ହେଲେ । ରାଜା ତାଙ୍କୁ ମାରିଦେବେ ବୋଲି କହିଲେ । ଥାନାବାବୁ ତାଙ୍କୁ କହିଲେ ସେ ନିଜେ ସେଠାରେ ରହିବେ । ରାଜା କିଛି କଲେ ସେ ତା'ର ପ୍ରତିକାର କରିବେ । ସେ ଜାଣିଥିଲେ ଯେ ରାଜା ବଡ଼ ଦୁର୍ଦ୍ଦାନ୍ତ । ଏକଦା ସେକାଳର ଦୁର୍ଦ୍ଦାନ୍ତ ଏସ୍.ପି. ସାହେବ ଶ୍ରୀକୃଷ୍ଣ ମହାପାତ୍ରଙ୍କୁ ଚକମା ଦେଖାଇ ନିଜ ନଅର ଉପରୁ ପାଖରେ ଥିବା କିମ୍ବିରିଆ ନଦୀକୁ ଡେଇଁପଡ଼ି ପହଁରି ପଳାଇଥିଲେ । ରାଣୀ ଶ୍ରୀକୃଷ୍ଣ ମହାପାତ୍ରଙ୍କୁ ଘରକୁ ଡକାଇ ତାଙ୍କୁ ଧରମପୁଅ କରି କୌଣସିମତେ ସମସ୍ୟାଟାକୁ ଏଡ଼ାଇ ଦେଇଥିଲେ । ଗୋପାଳ ଦାଶ ଥାନାବାବୁଙ୍କ

ସାହାଯ୍ୟରେ ଯାତ୍ରା କଲେ । ରାଜା ବହୁତ ଖୁସି ହୋଇ ଗୋପାଳଙ୍କୁ ପାଟଯୋଡ଼, ସୁନାର କୁଣ୍ଡଳ ଓ ଗୋଟିଏ ଘୋଡ଼ା ଦେଇଥିଲେ ।

ଆଗରୁ ତ କହିଛି ରାଜା ଗୋଜା । କାନକୁହା ପାଖଲୋକଙ୍କ କଥା ଶୁଣନ୍ତି । ସେଇ ଅନୁସାରେ କାମ କରନ୍ତି । ତାଙ୍କ ଇଲାକାରେ କେହି କାଠର ଘର କଲେ ରାଜାଙ୍କୁ କାନକୁହାମାନେ କହିଦିଅନ୍ତି ତ ରାଜଫଉଜ ଆସି ସେ ଘରକୁ ଭାଙ୍ଗି ଦିଅନ୍ତି । ଆମ ଗାଁରେ କାଳିନ୍ଦୀଚରଣ ଜେନା ଜଣେ ବଡ଼ ଚାଷୀ । ମାନ୍ୟଗଣ୍ୟ ବ୍ୟକ୍ତି । ସେ ଗୋଟିଏ କାଠଘର କଲେ । ରାଜା ଏ ଖବର ପାଇ ତାଙ୍କ ଘରକୁ ଭାଙ୍ଗିଦେବା ପାଇଁ ଲୋକ ପଠାଇଲେ; ମାତ୍ର କାଳିନ୍ଦୀ ଜେନା ବୁଦ୍ଧିମାନ୍ । ସେ ରାଜାଙ୍କ ପାଖକୁ ଯାଇ କାକୁତିମିନତି ହୋଇ କହିଲେ- ''ମଣିମା ! ମୁଁ ଘର କରୁଛି ସତ; ମାତ୍ର ତା' ନିଜ ପରିବାର ପାଇଁ ନୁହେଁ । ମଣିମାଙ୍କ ଲୋକେ ଗଲେ ରହିବାକୁ ଜାଗା ନାହିଁ । ସେଇମାନଙ୍କ ପାଇଁ ମୁଁ କରିଛି ।'' ରାଜା ବୁଝିଗଲେ ଓ ତାଙ୍କ ଘର ନ ଭାଙ୍ଗିବା ପାଇଁ ହୁକୁମ ଦେଲେ । ସେ ସମୟରେ ଆଉ ଗୋଟିଏ କରୁଣ ଘଟଣା ମନେପଡୁଛି । କାହାର ସୁନ୍ଦରୀ ଝିଅ ଥିଲେ ତାହାକୁ ରାଜକର୍ମଚାରୀମାନେ ଜବରଦସ୍ତ ନେଇଯାଆନ୍ତି ରାଜାଙ୍କ ପାଖକୁ । ରାଜାଙ୍କୁ ଭେଟି ଦେଇ କୃତକୃତ୍ୟ ହୁଅନ୍ତି । ଗଡ଼ଜାତ ଅଞ୍ଚଳରେ ଏଇ ପ୍ରଥା ଥିଲା । ବଡ଼ ନାରକୀୟତା । ରାଜାଙ୍କ ସହିତ ପୋଲିସ ହାତ ମିଳେଇଥାନ୍ତି । କାଳେ କାଳେ ଏହା ସତ୍ୟ । କ୍ଷମତା ଯୁଆଡ଼େ ପୋଲିସ ସିଆଡ଼େ । ନିରୀହଙ୍କ କଥା ପଚାରେ କିଏ ? ବଡ଼ ହେଲା ପରେ ମୁଁ ଏ ସଂପର୍କରେ ଅନେକ କଥା ପଢ଼ିଲି । ଜଗମୋହନ ଲାଲାଙ୍କ 'ସତୀ' ନାଟକରେ ତ ଏଇ କରୁଣ କାହାଣୀ ବର୍ଣ୍ଣିତ । ଆମ ଗାଁ ପାଖ ବେରୁହାଁ ଗ୍ରାମର ସୁନ୍ଦରାଙ୍କର ଗୋଟିଏ ସୁନ୍ଦରୀ ଝିଅ ଥିଲା । ତାକୁ ରାଜକର୍ମଚାରୀମାନେ ନେଇଯିବାକୁ ଆସିଲେ । ସୁନ୍ଦରା ତାଙ୍କ ପତ୍ନୀ, ପୁତ୍ର ଓ କନ୍ୟା ସହିତ ଘର ଓ ଗାଁ ଛାଡ଼ି ରାତାରାତି ମୋଗଲବନ୍ଦୀ ଅଞ୍ଚଳକୁ ପଳାଇଗଲେ । ଆଉ ସେ ଗାଁକୁ ଫେରିଲେ ନାହିଁ । ପିଲାଦିନେ ଆମେ ଦେଖିଛୁ ମାଟି କେନ୍ଦୁଅଠା ଓ ଝୋଟରେ ଚକଟା ହୋଇ ଛିଡ଼ାହୋଇଥିବା ତାଙ୍କ ଘରକାନ୍ଥକୁ ।

ଏଇପରି ଆଳିରାଜା । ବ୍ରଜସୁନ୍ଦରଙ୍କ ପରେ ତାଙ୍କ ପୁଅ ଚନ୍ଦ୍ରଭାନୁଦେବ ରାଜା ହେଲେ । ସେ ଟିକେ ଦୟାଳୁ ଓ ଉଦାରପନ୍ଥୀ । ତଥାପି ରାଜକର୍ମଚାରୀଙ୍କର ଭାଉ କାହିଁରେ କ'ଣ ? ଆମ ଗାଁର ତହସିଲଦାର ଖଜଣା ଆଦାୟ କରୁଥାନ୍ତି । ଯେଉଁ ଗରିବ ଲୋକେ ଖଜଣା ଦେଇପାରନ୍ତି ନାଇଁ ତାଙ୍କ ଜମି ନିଲାମ କରି ଦେଉଥିଲେ, ତାଙ୍କୁ ନିର୍ମମ ମାଡ଼ ଦେଉଥିଲେ । ମୁଁ ଦେଖିଛି ସୁର ବଡ଼ବାପା ଛକ ଉପରେ ଜଣେ ଗରିବ ମଳିକକୁ ଜୋତାରେ ପିଟିବାର ଦୃଶ୍ୟ । ରାଜାଘର ଘୋଡ଼ାମାନେ ଆସି ଆମ ଛକରେ ବନ୍ଧା ହୁଅନ୍ତି । ଗାଁ ଲୋକେ ଘୋଡ଼ାଙ୍କପାଇଁ ଦାନା ଓ ଘାସ ଦିଅନ୍ତି । କର୍ମଚାରୀମାନଙ୍କୁ ଖାଇବାକୁ

ଦିଅନ୍ତି । ସ୍ୱାଧୀନତା ପରେ ରାଜାମାନେ କ୍ଷମତା ହରାଇଲେ । ଆଉ ସେମାନଙ୍କର ପ୍ରକୋପ ରହିଲା ନାହିଁ । ବାପା ମରିଗଲା ପରେ ବୋଉ ରାଜାଘର ଖଜଣା ଠିକ୍ ସମୟରେ ଦେଉଥିଲା ।

ବାପାଙ୍କ ମୃତ୍ୟୁବେଳକୁ ମୁଁ ଇନ୍ଦୁପୁର ହାଇସ୍କୁଲରେ ପଞ୍ଚମ ଶ୍ରେଣୀରେ ପଢୁଥାଏ । କୌଣସିମତେ ବୋଉ ଦରମା ଓ ବହିପତ୍ର ଦେଉଥାଏ । ମୁଁ ତ ଘରର ବଡ଼ପୁଅ । ତେଣୁ ମୋତେ ଚାଷବାସ କଥା ବୁଝିବାକୁ ହେଉଥାଏ । ପାହାନ୍ତାରୁ ଉଠି ମାଠିଆ ଭାର ନେଇ ବ୍ରାହ୍ମଣୀ ନଦୀ ପଠାକୁ ଯାଇ ନଦୀରୁ ପାଣି ଆଣି ଧୂଆଁପତ୍ର, ବାଇଗଣ, ଲଙ୍କା ଆଦି ଗଛରେ ପାଣି ଦିଏ । ତା'ପରେ ବିଲବାଡ଼ି କଥା, ଚାକର, ମୂଲିଆ କଥା ବୁଝେ, ନିଜେ ମଧ୍ୟ ହଳ କରେ, ମଇ ଦିଏ, ବିଦା ଦିଏ, ଘର ଛାଏ, ଗାଈ ରଖେ, ଘାସ କାଟେ, ଧାନ ରୁଏ, ଧାନ କାଟେ, ବେଙ୍ଗଳା ପକାଏ, ଧାନ ବାଡ଼ାଏ ଇତ୍ୟାଦି ଯାବତୀୟ କାର୍ଯ୍ୟ କରେ । ଏଇ କାର୍ଯ୍ୟ ମୋର ଦଶମ/ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଚାଲୁରହିଲା ।

ମୋ ବୋଉ ଘରର ସବୁ କାମ କରେ । ଚାକର/କୋଠିଆଙ୍କୁ ଖାଇବାକୁ ଦିଏ, ସେମାନଙ୍କୁ ମୂଲପାତି ଦିଏ, ଧାନ ଅମଳ ହେଲେ ଖଣିପକାଇ ରଖେ, ନିଜେ ମଧ୍ୟ ଓଳିଆ ବାନ୍ଧେ, ଅମାରରେ ଧାନ ପୂରାଏ । ବିରି, ମୁଗ, ଧଣିଆ, ସୋରିଷ, ଯଅ, ମାଣ୍ଡିଆ, କୋଳଥ, ଝୋଟ, ଲଙ୍କା ଆଦି ଅମଳ ହେଲେ ତାକୁ ସାଇତି ରଖେ ଓ ବ୍ୟବସାୟୀଙ୍କୁ ବିକ୍ରି କରେ । ବାଡ଼ିରେ ନାନା ପ୍ରକାର ପନିପରିବା କରେ । କଦଳୀ ଗଛ ଲଗାଏ । ବାଡ଼ କଡ଼େ କଡ଼େ ମାଟିଆଳୁ ବା ଖମ୍ବଆଳୁ ପୁଆ ଲଗାଏ । ପିଢ଼ା ଉପରକୁ କଖାରୁ ଓ ଲାଉ ଗଛ ମଡ଼ାଏ । ଜହ୍ନି, କାକୁଡ଼ି, ଭେଣ୍ଡି, ଶିମ୍ବ, ବାଇଗଣ, ଲଙ୍କା ଓ ସାରୁଗଛ ଲଗାଏ । ଖଡ଼ା ନେଉଟିଆ ଶାଗ ପକାଏ । ବାଡ଼ିରେ ମଧ୍ୟ ସଜନା ଗଛ ଥାଏ । ଆମ୍ବଗଛ, ପଣସଗଛ ମଧ୍ୟ ଥାଏ । ଆମର କୌଣସି ପନିପରିବା କିଣା ହୁଏ ନାହିଁ । ସବୁ ଆମ ବାଡ଼ିରେ ହୁଏ । ମାଛ ମଧ୍ୟ ପୋଖରୀରେ ଥାଏ । ପନିପରିବା ବିକ୍ରି କରି ବୋଉ ଘରର ତେଲ ଲୁଣ ମସଲା, ପାନଗୁଆ ଖର୍ଚ୍ଚ ମେଣ୍ଟାଏ । ମୋତେ ମଧ୍ୟ ଦରମା ଦିଏ ।

ସେକାଳର ବୋଉର ପରିଶ୍ରମ କଥା ଭାବିଲେ ମୁଁ ବିସ୍ମୟ ହୁଏ । ଜଣେ ମଣିଷ ଗାଈଗୋରୁଠାରୁ ଆରମ୍ଭ କରି ଘରର ଯାବତୀୟ କାର୍ଯ୍ୟ କରୁଥିଲା । ଟିକିଏ ହେଲେ କ୍ଳାନ୍ତି ନାହିଁ । ରାତି ଆଠଟା ସୁଦ୍ଧା ଖାଇଦେଇ ସେ ଶୋଇଯାଏ । ବଳଦେବଜୀଉ ଓ ମାଆ ମଙ୍ଗଳାଙ୍କୁ ଡାକେ ଓ କହେ– ସେ ମଲାବେଳକୁ ଖୁସିରେ ମରିବ, ତା'ର କେହି ସେବା କରିବେ ନାହିଁ । ସେଇଆ ବି ହେଲା । ୧୯୭୭ରେ ଯେତେବେଳେ ସେ ଆରପାରିକୁ ଚାଲିଯାଇଥିଲା, ଖୁବ୍ ଖୁସିରେ ଯାଇଥିଲା ।

ବୋଉ ମୋର ପାଠପଢ଼ି ନ ଥିଲା । ନାଁ ଲେଖିପାରେ ନାହିଁ । ଟିପଚିହ୍ନ ଦିଏ । ମାତ୍ର ସେ ଫସଲ ବଣିଛ ବିକ୍ରି କରି ହଜାର ହଜାର ଟଙ୍କାର ଆଙ୍ଗୁଠି ଗଣି ହିସାବ କରିଦିଏ । ବିଭିନ୍ନ ପ୍ରକାର ଧାନ ବିହନକୁ ଯତ୍ନ ସହକାରେ ରଖେ । କେଉଁ ବିଲରେ କ'ଣ ବୁଣା ହେବ ଚାକରମାନଙ୍କୁ ବତାଇଦିଏ । ଆମ ଅଞ୍ଚଳରେ ପାଟଜମି ବେଶି । ହଜାର ହଜାର ଏକର ପାଟଜମି । ଚାରିଗାଁ ପାଟ, ଜମରା ପାଟ, ଧୂମାତ୍ ପାଟ, ନିକିରାଇ ପାଟ, ଘାଗରା ପାଟ, ବେରୁହାଁ ପାଟ, ତନାର ପାଟ ଆଦି ପାଟ ଅଞ୍ଚଳରେ ରାବଣା, ଲଙ୍କା, ବାଇକୋଇଲି ଆଦି ଧାନ ହୁଏ । ପାଟ ଉପରକୁ ଲାଗି ଜଳସେଚିତ ଅଞ୍ଚଳ । ସେଥିରେ କଟକୀ, ସରୁଚିନା, ତୁଳସୀଫୁଲ, ପାଟଣୀ, ଗୋପକାହ୍ନୁ ଆଦି ଧାନ ଚାଷ ହେଉଥିଲା । ଧାନକଟା ହେଲା ପରେ ମୁଗ ବୁଣା ହେଉଥିଲା । ସେହିପରି ପାଳ ଅଞ୍ଚଳରେ ମଧ୍ୟ ନାନା ପ୍ରକାର ଫସଲ ହେଉଥିଲା । ଆଷାଢ଼/ଶ୍ରାବଣ ମାସରେ ବ୍ରାହ୍ମଣୀ ନଦୀରେ ପ୍ରବଳ ବନ୍ୟା ହେଉଥିଲା । ସେତେବେଳେ ହୀରାକୁଦ ଡ୍ୟାମ ହୋଇ ନ ଥିଲା । ତେଣୁ ମହାନଦୀର ପାଣି ବିରୂପା ନଦୀ ଦେଇ ଇନ୍ଦୁପୁରଠାରେ ବ୍ରାହ୍ମଣୀରେ ମିଶେ ଓ ବ୍ରାହ୍ମଣୀ ନଦୀରେ ମଧ୍ୟ ପ୍ରବଳ ପାଣି ଆସେ । ଅନ୍ୟପଟରେ ଖରସ୍ରୋତା ନଦୀର ପାଣି । ଫଳରେ ଯାଜପୁରର ବିଞ୍ଝାରପୁର ଅଞ୍ଚଳ, କେନ୍ଦ୍ରାପଡ଼ାର ଆଳି ଅଞ୍ଚଳ ସବୁ ଏକାକାର ହୋଇ ବିରାଟ ସମୁଦ୍ର ପରି ଦେଖାଯାଉଥିଲା । ନଦୀବନ୍ଧ ଉପରେ ହଜାର ହଜାର ନରନାରୀ ଛିଡ଼ା ହୋଇ ବନ୍ଧର ଘଳିଆକୁ ଜଗିରହି ମାଟି ପକାଉଥିଲେ । ବନ୍ୟା ଛାଡ଼ିଗଲା ପରେ ଜମିରେ ପ୍ରଚୁର ପଟୁମାଟି ପଡୁଥିଲା । ପୁଣ୍ଟିଆ ଧାନ ପାଣିରେ ୨୧ ଦିନରୁ ୨୭ ଦିନ ପର୍ଯ୍ୟନ୍ତ ବୁଡ଼ିରହୁଥଲା । ପାଣି ଛାଡ଼ିଗଲା ପରେ ଧାନପତ୍ର ସବୁ ପଚି ମିଳେଇ ଯାଇଥାଏ । ମୂଳ ଗୋଟିଏ ଗୋଟିଏ ବଞ୍ଚି ରହିଥାଏ । ସେହି ମୂଳରୁ ପୁଆ ବାହାରେ । ବୁଦାଗୁଡ଼ିକ ଖୁବ୍ ମୋଟା ମୋଟା ହୋଇଯାଏ । ଧାନ ପ୍ରଚୁର ଫଳେ । ସେଥିରେ ଚାଷୀଙ୍କର କୌଣସି ଖର୍ଚ୍ଚ ନ ଥାଏ । ଧଳାପୁଣ୍ଟିଆ ଓ କଳାପୁଣ୍ଟିଆ ଧାନ ଲୋକେ ବହୁତ ଅମଳ କରୁଥିଲେ । ସେହି ଚାଉଳ ଖାଇବାକୁ ସୁଆଦିଆ ଲାଗେ । ସେହି କିଆରିରେ ମଧ୍ୟ ବିରି ଛାଟି ଦିଆଯାଏ । ଧାନକଟା ହୋଇ ଗଲା ପରେ ବିରି ନଟେଇଯାଏ । ପ୍ରଚୁର ବିରି ମଧ୍ୟ ଅମଳ ହେଉଥିଲା । ଉପର ଅଞ୍ଚଳରେ ବିଅଳି ଧାନ, ଲଙ୍କା, ବାଇଗଣ, ଟମାଟୋ, କଖାରୁ, ଜଡ଼ା, ଫେଶି, ଯଅ ଇତ୍ୟାଦି ଚାଷ ହୁଏ । ଆମର ମଧ୍ୟ ଏସବୁ ଚାଷ ହେଉଥିଲା । ଧୂଆଁପତ୍ର ଚାଷ ମଧ୍ୟ ହେଉଥିଲା । ବୋଉ ଘରେ ରହି ଚାକର ଓ ମୂଲିଆଙ୍କ ଦ୍ୱାରା ଏସବୁ ଚାଷ କଥା ବୁଝୁଥିଲା । ମୁଁ ମଧ୍ୟ ପ୍ରତିଦିନ ବିଲକୁ ଯାଇ ବୁଝାବୁଝି କରେ । ନଦୀପଠାରେ କାଠି ସାହାଯ୍ୟରେ ଜ୍ୟାମିତିର ଅଙ୍କନ ସବୁ କରୁଥିଲି । ସଂସ୍କୃତ ବ୍ୟାକରଣ ବହି ହାତରେ ନେଇଯାଇଥାଏ । ଧାତୁ ଶବ୍ଦରୂପ ସବୁ ସେଇ ବିଲରେ ମୁଖସ୍ଥ କରିଦିଏ ।

ବୋଉ ଗାଈ ନିଜେ ଦୁହେଁ । କ୍ଷୀର ସିଝାଇ ବସାଦହି କରେ, ଦହି ତୁଲାଇ ଲହୁଣି ବାହାର କରେ ଓ ସେଥିରୁ ଘିଅ ତିଆରି କରେ । ଆମକୁ ମଧ ଦୁଧ ପିଇବାକୁ ଦିଏ । ଆମ ଘରେ ଦୁଧ, ଦହି, ଘିଅ, ଛେନାର ଅଭାବ ନ ଥିଲା । ବସାଦହି ହାଣ୍ଡିରେ ଖଣ୍ଡ ଖଣ୍ଡ ହୋଇ ବସିଥାଏ । ମୁଁ ହାତ ପୂରାଇ ବସାଦହି ନେଇ ଖାଇଦିଏ । କେତେବେଳେ ତାଟିଆରେ ବୁଡ଼ାଇ ନେଇ ପିଇଦିଏ । ଚୁଲୀରେ ଦୁଧ ସିଝୁଥିଲା ବେଳେ ମୁଁ ପିମ୍ପେଇ କାଠିରେ ସର ନେଇ ଖାଇଦିଏ । ମୁଁ ହାତ ପୂରାଇ ଘିଅ ନେଇ ଖାଇଦିଏ, ଚୁଡ଼ାରେ ଗୋଳାଇ ପ୍ୟାଣ୍ଟ ପକେଟରେ ପୂରାଇଥାଏ, ତାକୁ ସ୍କୁଲକୁ ଗଲାବେଳେ ବାଟରେ ଖାଇ ଖାଇ ଯାଏ । ଜଣେ ସାଙ୍ଗ କହିଥାଏ ପଖାଳଭାତରେ ଘିଅ ଗୋଳାଇ ଖାଇଲେ ମୋଟା ହୋଇଯିବି । ମୁଁ ମୋଟା ହେବାପାଇଁ ଘିଅ ବଢ଼ାରୁ ଘିଅ ନେଇ କଂସାରେ ପୂରାଇ ନିଜେ ପଖାଳଭାତ ବାଢ଼ି ଆଣି ଖାଇଦିଏ । ବୋଉ ଜାଣିପାରେ ନାହିଁ । କଂସା ଧୋଇଲା ବେଳେ ସେ ଜାଣେ । ମୋତେ କିଛି କହେ ନାହିଁ ।

ବେଳେବେଳେ ବୋଉ ମୋ ଉପରେ ଯେ ନ ରାଗେ; ତୁହେଁ । କଡ଼ା ଭାଷାରେ କହିଦିଏ । ହେଲେ ଦିନେ ହେଲେ ହାତ ଉଠେଇ ମାରି ନାଇଁ । ଦିନେ ସେ ଆଶ୍ୱିନ ମାସରେ ମଙ୍ଗଳାଓଷା କରିଥାଏ । କାଷ୍ଠା ଓପାସ । ରାତିରେ ପୂଜା ସାରି ସିଝା ମୁଗ ଖାଏ । ସେତେବେଳକୁ ବୋଧହୁଏ ମୁଁ ସପ୍ତମ ଶ୍ରେଣୀରେ ପଢ଼ିଲିଣି । ଆମ ହାଇସ୍କୁଲ୍‌ର ଆଦର୍ଶ ଶିକ୍ଷକ ବୃନ୍ଦାବନ ସାହୁଙ୍କର ମୋ ଉପରେ ପ୍ରଭାବ ପଡ଼ିଥାଏ । ମୁଁ ମୂର୍ତ୍ତିପୂଜାକୁ ମାନୁ ନ ଥାଏ । ଏହାକୁ ଗୋଟାଏ ଅନ୍ଧବିଶ୍ୱାସ ବୋଲି କହୁଥାଏ । ସନ୍ଧ୍ୟାବେଳେ ବୋଉ ମୋତେ ମଙ୍ଗଳାଙ୍କ ଭୋଗ ଦେଲା । ମୁଁ ତା' ମୁହଁକୁ ଫୋପାଡ଼ି ଦେଲି । କହିଲି, ଗୋଟାଏ ମାଠିଆ ବସେଇ ତା' ଉପରେ ପଇଡ଼ ରଖି କ'ଣ ନା ମା' ମଙ୍ଗଳା ! ଅନ୍ୟ ସ୍ତ୍ରୀଲୋକେ ମୋ କାଣ୍ଡ ଦେଖି ଦୁଃଖ କଲେ । ବୋଉ ଘରକୁ ଆସି କାନ୍ଦିଲା । ସେ କହିଲା ମୋ ଜନ୍ମକାହାଣୀ । ମଙ୍ଗଳାଙ୍କ ସ୍ୱପ୍ନାଦେଶ କଥା କହିଲା । ମନେମନେ ଦୁଃଖ କଲି । ଆଉ ବୋଉର ନାନା ପୂଜାପାର୍ବଣ ଓ ଉପବାସକୁ ବିରୋଧ କଲି ନାଇଁ । ସପ୍ତମ ଶ୍ରେଣୀରେ ପଢୁଥିଲାବେଳେ ମୁଁ ଇନ୍ଦୁପୁର ପାଖ ମେସ୍‌ରେ ଥାଏ । ଦିନେ ରାତିରେ ମୋ ପିଇସାପୁଅ ଭାଇ ପ୍ରାଣକୃଷ୍ଣ ପରିଡ଼ା ମେସ୍‌ରେ ପହଞ୍ଚି ମୋତେ ଘରକୁ ନେଇଆସିଲା । ବାଟରେ କହିଲା ବୋଉକୁ ସାପ କାମୁଡ଼ିଛି । ଗୁଣିଆ ଝଡ଼ାଫୁଙ୍କା କରୁଛନ୍ତି । ମୁଁ କାନ୍ଦି ପକାଇଲି । ଏକମାତ୍ର ମୋର ଭରସା ବୋଉ । କ'ଣ କରିବୁ ଆମେ ତିନିଟା ଛୁଆ ?

ଘରେ ପହଞ୍ଚି ଦେଖିଲି ଲୋକ ଥାଟପଟାଳି । କେତେ କେତେ ଗୁଣିଆ ଝାଡୁଥାନ୍ତି । ଗୋଟିଏ ଗଡ଼ଜାତ ଗୁଣିଆ ଜୟକୃଷ୍ଣପୁର ଗ୍ରାମରେ ଦାମୋଦର ବେହେରାଙ୍କ ଘରେ ଥାଏ । ସେ ଆସି ଝାଡୁଥାନ୍ତି । ମୋତେ ଲୋକେ କହିଲେ ଦଶଟଙ୍କା ଓ ବୋଉର

ଅଳଙ୍କାର ଆଣି ଗୋଟିଏ ଖୁଣ୍ଟରେ ବାନ୍ଧି ବଳଦେବଜୀଉଙ୍କ ନାମରେ ମାନସିକ କରିବାକୁ । ମୁଁ ସିନ୍ଦୂକରୁ ବୋଉର ଅଳଙ୍କାର ବାହାର କଲି, ଆମ ସାହିର ଜଣଙ୍କଠାରୁ ଦଶଟଙ୍କା ଆଣି ଖୁଣ୍ଟରେ ବାନ୍ଧି ପାଣି ଛଡ଼େଇ ଦେଲି । ଏଣେ ଝଡ଼ାଫୁଙ୍କା ଚାଲିଥାଏ । ବୋଉର କ୍ଷତ ସ୍ଥାନରେ ଢାରମୁଗୁରା ଲଗାଯାଇଥାଏ । ଗୁଣିଆ ତାକୁ ଆଣି ହଳଦୀ ପାଣିରେ ବୁଡ଼ାଇ ପୁଣି ଲଗାଉଥାଏ । ସକାଳୁ ସକାଳୁ ବୋଉର ଚେତା ଆସିଲା । ଜଣାଗଲା ଯେ ସନ୍ଧ୍ୟାବେଳେ ବୋଉ ଆମ ବାଡ଼ିତଳ ବିଲକୁ ଝାଡ଼ା ଯାଇଥିଲା । ସେଠି ତାକୁ ଗୋଖର ସାପ କାମୁଡ଼ିଦେଲା । ସେ ଜୀବନ ବିକଳରେ ଦଉଡ଼ି ଆସିଲାବେଳେ ଦାଣ୍ଡରେ ପଡ଼ିଗଲା ଓ ତା' ଚାବିନେନ୍ଥାରୁ ଗୋଟାଏ ଚାବି ତା' ଓଠ ପାଖରେ ଫୁଟିଗଲା । ଅଜସ୍ର ରକ୍ତସ୍ରାବ ହେଉଥାଏ । ମୁଁ ଭୋରୁ ଭୋରୁ ଇନ୍ଦୁପୁର ଯାଇ ଡାକ୍ତର ଦିଗମ୍ବର ନାଥଶର୍ମାଙ୍କୁ ଡାକି ଆଣିଲି । ସେ ମୋତେ ଭାରି ସ୍ନେହ କରୁଥିଲେ । ତେଣୁ ସେ ଆସି ବୋଉକୁ ଇଂଜେକ୍ସନ ଦେଲେ ଓ କ୍ଷତ ସ୍ଥାନରେ ଔଷଧ ଦେଇ ବ୍ୟାଣ୍ଡେଜ କରିଦେଲେ । ବୋଉ ଭଲ ହେଲା ମାତ୍ର ଯେଉଁ ଟଙ୍କା ଓ ଅଳଙ୍କାର ବାନ୍ଧିଥିଲି ତାକୁ କିଏ ସେଇ ରାତିରେ ନେଇଗଲା । ମୁଁ ଭାବିଲି ମଣିଷମାନଙ୍କର ସ୍ୱଭାବ ସଂପର୍କରେ । ବିପଦରେ ଜଣେ ପଡ଼ିଥିଲାବେଳେ ତାକୁ ସହାନୁଭୂତି ଉପରେ ଉପରେ ଦେଖାଇ ଭିତରେ ଭିତରେ କିପରି ଚେର କାଟନ୍ତି । ହାୟ ମଣିଷ ? କୁଆଡ଼େ ଗଲା ତୋ ଦେବତ୍ୱ ? ତୋ ଭିତରେ ଏପରି ସଇତାନିତ୍ୱ ସୃଷ୍ଟି ହେଲା କିପରି ? ପରିଣତ ବୟସରେ ବୁଝୁଛି ଏ ଯୁଗର ମଣିଷମାନେ ବାହାରକୁ ଅତି ଆପଣାର ଦେଖେଇ ହୋଇ ଭିତରେ ଭିତରେ କିପରି ନାରକୀୟତା ସୃଷ୍ଟି କରନ୍ତି । ଛଳନା ଯେମିତି ହୋଇଯାଇଛି ଆଜିର ମଣିଷମାନଙ୍କର ଗୋଟାଏ ପ୍ରକୃତି । ଯିଏ ଯେତେ ଛଳନା କଲା, କପଟତା ଆଚରଣ କଲା, ତୋଷାମୋଦ କଲା ସିଏ ସେତେ ବଡ଼ ହେଲା । ହାୟ ! ଏଇ କ'ଣ ମଣିଷପଣିଆ !!!

ମୁଁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଇନ୍ଦୁପୁର ହାଇସ୍କୁଲରେ ପଢ଼ିଲି । ଏଣେ ଚାଷବାସ କଲି । ଘର କଥା ବୁଝିଲି । ମୋ ବାପା, ଦାଦା ମରିଯିବା ପରେ ତାଙ୍କର ଦୁଇ ଝିଅଙ୍କୁ ବାହା କରାଇ ଦେଇଥିଲେ । ତେଣୁ ବାପା ସେମାନଙ୍କ ଘରକୁ ଯାଉଥିଲେ ଓ ସେମାନେ ମଧ୍ୟ ଆମ ଘରକୁ ଆସୁଥିଲେ । ସେମାନଙ୍କର ଚଳାଚଳ ସେତେ ଭଲ ନ ଥିଲା । ବାପା ମରିଗଲା ପରେ ବୋଉ ସେମାନଙ୍କ ଘରକୁ ଭାରବେଭାର ପଠାଉଥିଲା । ମୁଁ ସେମାନଙ୍କୁ ବୋଉକୁ ଲୁଚାଇ ବିରି, ଧନିଆ, ସୋରିଷ ଇତ୍ୟାଦି ଦେଉଥିଲି । ସେଇ ଚିତ୍ରାଦେଈ ଓ ଆଦରାଦେଈ ମରିଗଲେଣି । ସେମାନଙ୍କ ସ୍ନେହ ମଧ୍ୟ ମୁଁ ଭୁଲି ନାହିଁ । ପ୍ରତିବର୍ଷ ଇନ୍ଦୁପୁର ବାରିଣୀ ଯାତ୍ରା ବେଳେ ମୋ ପିଇସା ନନ୍ଦକିଶୋର ସାମଲ ମୋତେ ତାଙ୍କ ଘର ଧୂମାତ୍‌କୁ ନେଇଯାଉଥିଲେ । ସେଇଠୁ ବାରିଣୀ ଦେଖିବାକୁ ଯାଉଥିଲି । ପିଇସା ମଧ୍ୟ ମୋତେ

କଣ୍ଢେଇ କିଣି ଦେଉଥିଲେ । ବାପାଙ୍କ ମୃତ୍ୟୁ ପୂର୍ବରୁ ତାଙ୍କର ଗୋଟିଏ ପୁଅ ହୋଇଥିଲା । ତାକୁ ମାମୁ ପୁଅ କରି ନେଇଥିଲେ । ତାକୁ ଦଶମାସ ହେଲାବେଳକୁ ବାପା ମରିଗଲେ । ମାମୁ ମଧ୍ୟ ପୁନର୍ବାର ବିବାହ କଲେ । ସିଏ ତାଙ୍କର ପଞ୍ଚମ ପକ୍ଷୀୟା ସ୍ତ୍ରୀ । ସାଧାରଣ ଘରର ଝିଅ । ସେ ଗୋଟିଏ ପୁତ୍ରସନ୍ତାନ ଜନ୍ମ ଦେଲା । ଆଉ ସେ ପୋଷ୍ୟପୁଅକୁ ଭଲ ପାଇଲା ନାହିଁ । ବୋଉ ତାଙ୍କ ଘରକୁ ଯାଇ ପୁଅକୁ ନେଇଆସେ, ମାମୁ ପୁଣି ନେଇଯାଆନ୍ତି । ମାମୁ ମଧ୍ୟ ମରିଗଲେ । ଏଥର ମାଈଁ ଆଉ ତାକୁ ଭଲ ପାଇଲା ନାହିଁ । ମୁଁ ସେତେବେଳକୁ ଚାକିରି କଲିଣି ଟେଲିଫୋନ ବିଭାଗରେ । ତାକୁ ପଢ଼େଇଲି । ସେ ମାଟ୍ରିକ ପାସ୍ କଲା । ମୁଁ ଫକୀରମୋହନ କଲେଜରେ ଅଧ୍ୟାପକ ହେଲି । ମୋ ସାନଭାଇକୁ ମୋ ପାଖରେ ରଖି ଆଇ.ଏ. ପଢ଼ାଇଲି । ପରେ ମୁଁ ରେଭେନ୍ସା କଲେଜକୁ ଆସିଲି । ସେଠି ମଧ୍ୟ ମୋ ପାଖରେ ରଖି ତାକୁ ବି.ଏ. ପଢ଼ାଇଲି । ସେ ବି.ଏ. ପାସ୍ କଲା । ମାଈଁ ଜିଦି କଲା ତା'ର ବାହାଘର ପାଇଁ । ସେ ବାହା ହେଲା । ସମସ୍ତ ଖର୍ଚ୍ଚ ମୁଁ ବହନ କଲି ମାତ୍ର ବିବାହ ପରେ ମାଈଁ ଆଉ ପୁଅବୋହୂଙ୍କୁ ଭଲ ପାଇଲା ନାହିଁ । ଏପରି ବ୍ୟବହାର ଦେଖାଇଲା ଯେ ବୋଉ ସେମାନଙ୍କୁ ନେଇ କଟକକୁ ଚାଲିଆସିଲା ଓ ମୋତେ କହିଲା– 'ସେମାନେ ତୋତେ ଲାଗିଲେ ।' ପରେ ସେମାନେ ପୁଣି ମାମୁଘରକୁ ଗଲେ ମାତ୍ର ଶେଷରେ ସେ ଆମ ଘରକୁ ଆସିଲେ ସବୁଦିନ ପାଇଁ । ସେତେବେଳକୁ ମୋ ବୋଉ ମରିଗଲାଣି ୧୯୭୭ ମସିହାରେ । ମୁଁ ମୋ ସାନ ଦୁଇଭାଇଙ୍କୁ ସମାନ ଭାବରେ ଜମି ବାଣ୍ଟିଦେଲି । ଏବେ ସେମାନେ ସ୍ୱତନ୍ତ୍ର ଭାବରେ ଭଲରେ ଅଛନ୍ତି । ମୁଁ ଗାଁ ଛାଡ଼ି, ଜମି ହରେଇ କଟକରେ ରହୁଛି ।

ମୋ ବୋଉର ବାତ୍ସଲ୍ୟ ମମତା ମୋତେ ବିଭୋର କରେ । ମୋତେ ଗାଁରେ କୋଠାଘରଟିଏ କରିବାକୁ କହିଲା । ମୁଁ ଘର ଆରମ୍ଭ କଲି ମାତ୍ର ସେ ଦେଖିବାକୁ ରହିଲା ନାହିଁ । ସେ ମୋ ବାହାଘର କରିଥିଲା । ମୋ ସାନଭଉଣୀ ସରୋଜିନୀର ବାହାଘର କରିଥିଲା ଯେତେବେଳେ ମୁଁ ଏକାଦଶ ଶ୍ରେଣୀ ପରୀକ୍ଷା ଦେଉଥିଲି । ମୋ ବାହାଘର ପରେ ମୋ ସାନଭାଇ ଗୋଲୋକର ବାହାଘର କରିଥିଲା, ଯଦିଓ ସେତେବେଳକୁ ମୁଁ ଚାକିରି କରି ବୋଉକୁ ସାହାଯ୍ୟ କରୁଥାଏ ।

ଏଇ ହେଉଛି ମୋ ବୋଉ । କେତେ କେତେ ସ୍ମୃତିର ସେ ମୋର ଗନ୍ତାଘର । ତା' କର୍ମ ଭଲ ତ ସେ ଭଲ । ଚକ୍ରୀ ପରି ସେ ଭୋରୁ ରାତି ପର୍ଯ୍ୟନ୍ତ ଘରୁ ବାହାର, ବାହାରୁ ଘର ହେଉଥାଏ । ଧାନ ସାଇତି ରଖେ ବର୍ଷକ ପାଇଁ । ସେଇପରି ବିରି ମୁଗ ଇତ୍ୟାଦି । ବଳକା ଜିନିଷ ବିକିଦିଏ । କାହାର ଅଭାବ ଅସୁବିଧା ହେଲେ ବୋଉ ସେମାନଙ୍କୁ ଧାନଦିଏ । କାହାରି ପାଖରୁ ସେ ଟଙ୍କା ଧାର କରେ ନାହିଁ । ନିଜର ଆୟରେ ସେ

ଚଳେ । ଥରେ ଜମି କିଣିବା ପାଇଁ ଇନ୍ଦୁପୁରର ମହାଜନ ନାରାୟଣ ଚନ୍ଦ୍ର ଜେନାଙ୍କଠାରୁ ଟଙ୍କା କରଜ କରିଥିଲା । ସେ ଟଙ୍କାକୁ ସେ ଯଥାସମୟରେ ପରିଶୋଧ କରିଦେଲା । ବୋଉ କାହାର ଧାରି ନାହିଁ । ପୁଅବୋହୂଙ୍କର ସେବା ନେଇ ନାହିଁ । ସେ ସରଳ ଈଶ୍ୱର ବିଶ୍ୱାସୀ । ସେଇ ବିଶ୍ୱାସ ତାକୁ ଭଲରେ ଭଲରେ ସେପୁରକୁ ନେଇଗଲା । ତା'ର ଯେଉଁଦିନ ଦେହ ଖରାପ ହେଲା ତାକୁ ମୋ ସାନଭାଇ ବାନାମ୍ବର ଇନ୍ଦୁପୁର ଡାକ୍ତରଖାନାକୁ ନେଇଗଲା । ସେଠି ସେ ରହିଲା ନାହିଁ । ସେ କହିଲା 'ମୋତେ ଶୀଘ୍ର ଘରକୁ ନେଇଯାଅ । ସେଠିକୁ ମୋ ବଡ଼ପୁଅ ବୋହୂ ଓ ବନ୍ଧୁମାନେ ଆସିବେ । ମୁଁ ସେମାନଙ୍କୁ ଦେଖିବି ।' ସେ ଘରକୁ ଆସିଲା । ମୁଁ ଖବର ପାଇ ଘରକୁ ଗଲି । ବୋଉକୁ ଦେଖିଲି । ସେତେବେଳକୁ ତା'ର ଦୀର୍ଘଶ୍ୱାସ ବାହାରିଲାଣି । ଇନ୍ଦୁପୁରରୁ ଡାକ୍ତର ନେଲି ମାତ୍ର ବୋଉ ଆମକୁ ଛାଡ଼ିଦେଇ ଚାଲିଗଲା ।

ବୋଉ ! ତୁ କେଉଁଠି ଅଛୁ ? ତୋ ଆତ୍ମା ନିଶ୍ଚୟ ମୋକ୍ଷ ପାଇଯାଇଥିବ । ତୋ ଆଶୀର୍ବାଦ ଯୋଗୁଁ ତ ମୁଁ ଏତେ ବାଟ ଆସିଛି । ତୋତେ କ'ଣ ଭୁଲି ହେବ ? ତୁ ପ୍ରକୃତରେ ମାଆଟିଏ– ସ୍ନେହମୟୀ ମାଆଟିଏ । ମୁଁ ମୋର ମାଆକୁ ହରାଇ ଏବେ ମଧ ନୀରବରେ ଝୁରିହୁଏ ।

## ଇନ୍ଦୁପୁର ହାଇସ୍କୁଲରେ ଆଠ ବର୍ଷ

ଆଗରୁ କହିଛି ମୁଁ ଇନ୍ଦୁପୁର ହାଇସ୍କୁଲରେ ପଞ୍ଚମ ଶ୍ରେଣୀରେ ପାଠ ପଢୁ ଥିଲାବେଳେ ମୋ ବାପା ମରିଗଲେ । ମୁଁ ଚାଷବାସ କରିବା ସହିତ ବହୁତ କଷ୍ଟରେ ପାଠ ପଢୁଥାଏ । ଆମ ଗାଁ ସ୍କୁଲ ପାଖରୁ ତିନି କିଲୋମିଟର ଦୂର । ବନ୍ଧୁବାନ୍ଧବ ଚାହୁଁଥାନ୍ତି ଆମ ସଂପତ୍ତିରୁ ଭାଗନେବା ପାଇଁ । ମୋତେ କେହି ପଇସାଟିଏ ସାହାଯ୍ୟ କରୁ ନ ଥାନ୍ତି । ସେଇଥିରେ ମୁଁ ପଢୁଥାଏ । କେତେବେଳେ ଖାତା କଲମ ବହି ଥାଏ ବା କେତେବେଳେ ନ ଥାଏ । ଇମିତି ଗୋଟାଏ ନାହିଁ ନାହିଁର ସଂସାର ଭିତରେ ମୋ ଛାତ୍ର ଜୀବନ ଗତି କରୁଥାଏ ।

ଇନ୍ଦୁପୁର ହାଇସ୍କୁଲ ମୋ ପାଇଁ ତୀର୍ଥଭୂମି । ଆଜି ମୁଁ ଯାହା ହୋଇଛି ସବୁ ସେହି ଇନ୍ଦୁପୁର ହାଇସ୍କୁଲର ଦାନ । ମୋ ଗାଁ ସ୍କୁଲରେ ପଢୁଥିଲାବେଳେ ମୁଁ ମାନିଥିଲି ଜଣେ ଗୁରୁଙ୍କୁ– ସେ କୀର୍ତ୍ତନାନନ୍ଦ ଘୋଷ । ଘର ବାରିମୂଳ । ରହୁଥିଲେ ଆମ ଗାଁରେ । ତାଙ୍କଠାରୁ ଶିଖିଥିଲି ଗୁରୁଜନମାନଙ୍କ ପ୍ରତି ଭକ୍ତି କରିବା, ସତ୍ୟ କହିବା ଓ ଶୃଙ୍ଖଳାର ସହିତ କାର୍ଯ୍ୟ କରିବା କଥା । ଦୁର୍ଗାପୂଜା ସମୟରେ ମୁଁ ଓ ମୋ ସାଙ୍ଗ କାଳିନ୍ଦୀ ତାଙ୍କ ଘରକୁ ଯାଉଥିଲୁ । ସେଠି ଠାକୁରଙ୍କ ବାସନ ମାଜିବା, ଫୁଲ ତୋଳିବା, ଫୁଲହାର ଗୁନ୍ଥିବା

କାମ କରୁଥିଲୁ । ମୁଁ ଯେତେବେଳେ କଟକରେ ଚାକିରି କଲି ସେ ଥରେ ଦୁଇଥର ମୋ ବସାକୁ ଆସିଛନ୍ତି । ମୁଁ ତାଙ୍କ ପାଦଛୁଇଁ ପ୍ରଣାମ କରେ । ତାଙ୍କର ବେତ୍ରାଘାତ, ତାଙ୍କର ଦଣ୍ଡ ମୋ ପାଇଁ ହୋଇଯାଇଥିଲା ବରଦାନ । ତାଙ୍କର ବିଦ୍‌ବତ୍ତା ଓ ସ୍ନେହ ଏବେ ସାତସପନ । ଆଜିର ପ୍ରାଥମିକ ବିଦ୍ୟାଳୟରେ ସେପରି ଶିକ୍ଷକ କାହାନ୍ତି ?

ଗାଁ ସ୍କୁଲରୁ ଆସି ଇନ୍ଦୁପୁର ହାଇସ୍କୁଲରେ ପଢ଼ିଲି । ଢେଙ୍କାନାଳର ଶ୍ରୀଯୁକ୍ତ ଭାଗୀରଥି ପଣ୍ଡା ଥାଆନ୍ତି ପ୍ରଧାନ ଶିକ୍ଷକ । ଡେଙ୍ଗା ହୋଇ ବୟସ୍କ ଲୋକଟିଏ । ଖରା, ବର୍ଷା ଶୀତରେ ମଧ୍ୟ ସେ ମୋଜା ନାଇ ପୂରା ଜୋତା ପିନ୍ଧନ୍ତି । ମୋଟା ଖଦଡ଼ ଧୋତି । ଖଦଡ଼ ପଞ୍ଜାବି । ପଞ୍ଜାବି ଉପରେ ଗୋଟିଏ ଛୋଟ କୋଟ୍ ଓ ତା' ଉପରେ ଆଉ ଗୋଟିଏ ବଡ଼ କୋଟ୍ । ଆଖିରେ ଚଷମା । ସେ ସକାଳ ପ୍ରାର୍ଥନା ଶ୍ରେଣୀକୁ ଆସନ୍ତି ପ୍ରତିଦିନ । ସେ ଆସିବା ପୂର୍ବରୁ ସମସ୍ତ ଛାତ୍ରଛାତ୍ରୀ ଓ ଶିକ୍ଷକମାନେ ଉପସ୍ଥିତ ଥାଆନ୍ତି । ପ୍ରାର୍ଥନା ସରିଗଲା ପରେ କ୍ଲାସ ହୁଏ । ହେଡ଼ମାଷ୍ଟ୍ରେ କେତେବେଳେ ଯାଇଁ କେଉଁ କ୍ଲାସର ପଛ ବେଞ୍ଚରେ ବସିଥାଆନ୍ତି ଶିକ୍ଷକ ବା ଛାତ୍ରମାନେ ଜାଣିପାରନ୍ତି ନାହିଁ । ଶିକ୍ଷକ ଯଦି କିଛି ଭୁଲ ପଢ଼ାଉଥାନ୍ତି ସିଏ ପରେ ଅଫିସଘରକୁ ସେହି ଶିକ୍ଷକକୁ ଡାକି ଚେତେଇ ଦିଅନ୍ତି । କୌଣସି ଛାତ୍ର ଯଦି କିଛି ଗୁରୁତର ଅପରାଧ କରେ ସେ ତାକୁ ପ୍ରତ୍ୟେକ ଶ୍ରେଣୀର ଦ୍ୱାରଦେଶରେ ଛିଡ଼ା କରାଇ ବେତରେ ଦୁଇ ପ୍ରହାର ଦିଅନ୍ତି । ଫଳରେ ତାଙ୍କ ସମୟରେ ସ୍କୁଲଟି ବଡ଼ ଶୃଙ୍ଖଳିତ ହୋଇଉଠିଲା । ତାଙ୍କ ପରେ କେରଡ଼ାଗଡ଼ର ବାସୁଦେବ ପାତ୍ର ପ୍ରଧାନଶିକ୍ଷକ ହୋଇ ଆସିଲେ । ସେ ମଧ୍ୟ ଥିଲେ ଉଭୟ ବିଜ୍ଞାନ ଓ ଇଂରାଜୀ ସାହିତ୍ୟରେ ଅଭିଜ୍ଞ ବ୍ୟକ୍ତି । ତାଙ୍କ ପରେ ପଦ୍ମଚରଣ ବିହାରୀ ହେଲେ ପ୍ରଧାନଶିକ୍ଷକ । ଏମାନଙ୍କ ବ୍ୟତୀତ ବଳରାମ ଶତପଥୀ ଥିଲେ ସଂସ୍କୃତ ପଣ୍ଡିତ, ସହକାରୀ ପଣ୍ଡିତ ଥିଲେ ହଳଧର ଶତପଥୀ । ବଳରାମ ପଣ୍ଡିତ ସଂସ୍କୃତ ଶବ୍ଦରୂପ, ଧାତୁରୂପ ଘୋଷିବାକୁ କହୁଥିଲେ । ଯିଏ କହି ନ ପାରେ ତା' ପିଠିରେ ବିଧା ମାରନ୍ତି, ଆଙ୍ଗୁଠିରେ ଡଷ୍ଟର ସାହାଯ୍ୟରେ ପିଟନ୍ତି । ମୁଁ ସଂସ୍କୃତ ବ୍ୟାକରଣ ବହି ନେଇ ବିଲକୁ ଯାଏ । ସେହି ବିଲରେ ସବୁ ମୁଖସ୍ଥ କରିଦିଏ । ସେ ମୋତେ ଦିନେ ହେଲେ ମାରି ନାହାନ୍ତି । ବୃନ୍ଦାବନ ସାହୁ ଥିଲେ ସାହିତ୍ୟ ଶିକ୍ଷକ । ସେ ଥିଲେ ଆଦର୍ଶବାଦୀ ଓ ପ୍ରଗତିଶୀଳ ମନୋଭାବର ବ୍ୟକ୍ତି । ସ୍କୁଲର ମେସ୍ ଘରେ ଗୋଟିଏ ରୁମ୍‌ରେ ରହୁଥିଲେ । ଗୋଟିଏ ଗାଈ ରଖିଥିଲେ । ଗାଈର ସେବା କରୁଥିଲେ । ଖାଲି ତକ୍ତପୋଷ ଖଟରେ ଶୋଉଥିଲେ । ମୁଣ୍ଡ ତଳେ ଗୋଟିଏ ଇଟା ଦେଉଥିଲେ । ଛାତ୍ରମାନଙ୍କୁ ଭାରି ସ୍ନେହ କରୁଥିଲେ । ସେହି ଆମ ଭିତରୁ ଛୁଆଁଅଛୁଆଁ ଭେଦ ଦୂର କରି  ଦେଇଥିଲେ । ମୂର୍ତ୍ତିପୂଜାକୁ ସେ ବିରୋଧ କରୁଥିଲେ ଓ ଆମ୍ଭମାନଙ୍କୁ ଗୋଟିଏ ଶ୍ଳୋକ ପଢ଼ି ଶୁଣାଉଥିଲେ ।

ଅନ୍ତର୍ଗତେ ଯଦି ହରି ତପସ୍ୟା ତତ୍ କିମ୍
ଅନ୍ତର୍ବହି ଯଦି ହରି ତପସ୍ୟା ତତ୍ କିମ୍ ।

ତାଙ୍କର ସାହିତ୍ୟ ପଢ଼ାଇବା ଶୈଳୀ ମୋତେ ଖୁବ୍ ମୁଗ୍ଧ କରୁଥିଲା । ବସ୍ତୁତଃ ମୋ ଭିତରେ ପରେ ଓଡ଼ିଆ ସାହିତ୍ୟ ପ୍ରତି ଯେଉଁ ଶ୍ରଦ୍ଧା ସୃଷ୍ଟି ହେଲା ତାହାର ପ୍ରେରଣା ଥିଲେ ବୃନ୍ଦାବନ ସାର୍ । ଆଉ ଜଣେ ଭୂଗୋଳ ଶିକ୍ଷକ ଥିଲେ ନରହରି ରାଉତ । ବଡ଼ ଆଦର୍ଶବାନ୍ ମଣିଷ । ପିଲାଙ୍କ ପ୍ରତି ତାଙ୍କର ସ୍ନେହ ଅସୀମ । ପରୀକ୍ଷା ସମୟରେ ଆମେ ସ୍କୁଲ ପଢ଼ିଆରେ ଲଣ୍ଠନ ଜାଳି ପଢୁଥିଲାବେଳେ ସେ କେତେବେଳେ ଆସି ଆମ ପଛରେ ଛିଡ଼ା ହୋଇଥାନ୍ତି, ଆମେ ଜାଣିପାରୁନା । ଆମକୁ ପାଠ ବତାନ୍ତି । ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସେ ଇଂରାଜୀ ଓ ଭୂଗୋଳ ପଢ଼ାଉଥିଲେ । ଅଷ୍ଟମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ କେବଳ ଭୂଗୋଳ ପଢ଼ାନ୍ତି । ତାଙ୍କର ଭୂଗୋଳ ପଢ଼ାଇବା ଶୈଳୀ ଚିତ୍ତାକର୍ଷକ । ମୋର ତ ଭୂଗୋଳ ବହି ନ ଥାଏ; ମୁଁ କେବଳ ତାଙ୍କ ମୁହଁରୁ ଯାହା ଶୁଣେ, ଲେଖିନିଏ । ମୋର ଭୂଗୋଳ ବହୁତ ଭଲ ହେଉଥିଲା । ଭାରତ ତଥା ପୃଥିବୀର ଭୂଗୋଳ ମୋ ମନରେ ଆଙ୍କି ହୋଇଯାଉଥିଲା । 'ବନ୍ଦେ ଅଷ୍ଟ୍ରେଲିଆର ପର୍ଥ', 'ୟାଂସିକିଆ ଚୀନ୍‌ର ଗଙ୍ଗା' ପରି କେତେକ ବିଷୟକୁ ଗୋଟିଏ ଲେଖା ପାରାରେ ଲେଖିବାକୁ କହୁଥିଲେ । ମୋ ଲେଖା ତାଙ୍କୁ ଭଲ ଲାଗୁଥିଲା । ଆଖି ବୁଜି ଗ୍ଲୋବରେ ତଥା ମ୍ୟାପରେ ବିଭିନ୍ନ ନଦୀ, ପର୍ବତ ଓ ସ୍ଥାନ ଦେଖାଇବାକୁ କହୁଥିଲେ । ଆମେ ମ୍ୟାପ୍‌ରେ ଏତେ ଅଭ୍ୟସ୍ତ ହୋଇଯାଇଥିଲୁ ଯେ ଆଖିବୁଜି ଠିକଣା ଜାଗାରେ ହାତ ପକାଇ ଦେଇଥିଲୁ । ମୁଁ ଯେତେବେଳେ ଦଶମ ଶ୍ରେଣୀ/ ଏକାଦଶ ଶ୍ରେଣୀରେ ପଢ଼ିଲି ସେ ମୋତେ ତଳ ଶ୍ରେଣୀରେ ଭୂଗୋଳ ପଢ଼ାଇବାକୁ କହୁଥିଲେ । ମୁଁ ମ୍ୟାପ ନେଇ ସେହି କ୍ଲାସକୁ ଯାଏ । ସାର୍ ମଧ୍ୟ ଯାଇ ସେଠାରେ ବେଞ୍ଚରେ ବସନ୍ତି । ମୁଁ ପଢ଼ାଏ । ସେ ଖୁସି ହୁଅନ୍ତି । ଏହିପରି ମାନଗୋବିନ୍ଦ ସାହୁ ଇତିହାସ ପଢ଼ାନ୍ତି । ତାଙ୍କର ଇତିହାସ ପଢ଼ା ବଡ଼ ଜୀବନ୍ତ । ସେ ନିଜେ ଶିବାଜୀ, ଆଉରଙ୍ଗଜେବ, କ୍ଲାଇବ୍ ହୋଇ ଅଭିନୟ ଭଙ୍ଗୀରେ ପଢ଼ାନ୍ତି । ଆମ ସମୟରେ ପୃଥିବୀ ଇତିହାସ, ଭାରତ ଇତିହାସ, ଓଡ଼ିଶା ଇତିହାସ ମଧ୍ୟ ପଢ଼ା ହେଉଥାଏ । ଇତିହାସ ପ୍ରତି ମୋର ଗୋଟିଏ ପ୍ରବଣତା ସୃଷ୍ଟି ହୋଇଗଲା । ମାଟ୍ରିକ ପଢ଼ିବା ସମୟରେ ଯେଉଁ ଇତିହାସ ପଢ଼ିଥିଲି ତାହାହିଁ ମୋର ଭବିଷ୍ୟତର ଇତିହାସ ଜ୍ଞାନ । ଯେତେବେଳେ ମୁଁ ଆଇ.ଏ. ପରୀକ୍ଷା ଘରୋଇ ଭାବରେ ଦେଲି ୧୯୬୧ ମସିହାରେ ସେତେବେଳେ ମୁଁ ଇତିହାସକୁ ସ୍ୱତନ୍ତ୍ର ପତ୍ର ଭାବରେ ନେଇଥିଲି । କଲେଜ ବହି ମୁଁ ଦେଖି ନ ଥିଲି । ମାଟ୍ରିକ ପାଠହିଁ ମୋତେ ସାହସ ଦେଲା ଇଂରାଜୀରେ ଉତ୍ତର ଦେବାପାଇଁ । ମୁଁ ଇତିହାସରେ ଭଲ ନମ୍ବର ରଖି ପାଶ୍ କଲି । ଅଷ୍ଟମ ଶ୍ରେଣୀ ବେଳକୁ ମୋର ଷ୍ଟାଣ୍ଡାର୍ଡ଼ ବଢ଼ିଲା । ବସନ୍ତସାର୍

ଇଂରାଜୀ ପଢ଼ାଉଥାନ୍ତି । ସାବିତ୍ରୀ ଶୀର୍ଷକରେ ଗୋଟିଏ ବଡ଼ କାହାଣୀ ଇଂରାଜୀରେ ପଢ଼ା ହେଉଥାଏ । ସାର୍‌ଙ୍କ ପଢ଼ା ମୋତେ ପ୍ରଭାବିତ କଲା । ମୁଁ ସେହି କାହାଣୀକୁ ନେଇ ବଙ୍ଗଳାଶ୍ରୀ ରାଗରେ କାବ୍ୟଟିଏ ଲେଖିଲି । ତାହାକୁ ହଳଧର ପଣ୍ଡିତଙ୍କୁ ଦେଲି ସଂଶୋଧନ କରିଦେବା ପାଇଁ । ତାହାହିଁ ଥିଲା ମୋର ପ୍ରଥମ କାବ୍ୟ । ନବମ ଶ୍ରେଣୀରୁ ଦଶମ/ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପ୍ରଧାନଶିକ୍ଷକ ବାସୁଦେବ ସାର୍ ଇଂରାଜୀ କବିତା ପଢ଼ାଉଥିଲେ । ପ୍ରତ୍ୟେକ କବିତା ପଢ଼ା ସରିଗଲା ପରେ ମୁଁ ଘରକୁ ଆସି ରାତିରେ ତାହାର ଭାବାନୁବାଦ କରୁଥିଲି । ମୁଁ ମଧ୍ୟ କେତେକ ମୌଳିକ କବିତା ଲେଖୁଥିଲି । ମୋ ଗାଁ, ଅଷ୍ଟମ ବର୍ଷର ଅଗଷ୍ଟ ପନ୍ଦର, ଗାଁ ମାମଲତକାର, ଶିଶୁ, ନେତା କିଏ, ପୂଜ୍ୟ କିଏ, ଅଛୁଆଁ କିଏ ଇତ୍ୟାଦି ନାନା କବିତା । ମୁଁ ଯେତେବେଳେ କଟକର ରାଉସାପାଟଣା ଅନନ୍ତଭବନ ମେସ୍‌ରେ ରହିଲି ମୋର କବିତା ଖାତା ନେଇ ହରିପୁରରୋଡ଼ ପାଖରେ ଥିବା ନିଆଁଖୁଣ୍ଟା ଅଫିସକୁ ଗଲି । ସେଠି ଗୋଦାବରୀଶ ମହାପାତ୍ରଙ୍କୁ ଦେଖିଲି । ଆମେ ହାଇସ୍କୁଲରେ ପଢ଼ିବାବେଳେ ତାଙ୍କ କବିତା ପଢ଼ିଥିଲୁ । ନିଆଁଖୁଣ୍ଟା ପ୍ରତି ମାସରେ ପଢୁଥାଏ । ଭୟଭୀତ ଚିତ୍ତରେ ମୁଁ ତାଙ୍କ ପାଖକୁ ଯେମିତି ଗଲି ସେ ମୋତେ କହିଲେ– 'ତୁମେ କିଏ ? କୁଆଡ଼େ ଆସିଛ ?' ମୁଁ ତାଙ୍କୁ ପ୍ରଣାମ କରି ମୋର ପରିଚୟ ଦେଲି ଓ ମୋ ଖାତାଟି ବଢ଼ାଇଦେଲି ସଂଶୋଧନ କରିଦେବା ପାଇଁ । ସେ ମୋତେ ବସାଇ ମୋ କବିତା ଖାତା ଖେଳାଇଲେ । ମୋତେ କବିତାର ଗଠନ ରୀତି, ଛନ୍ଦ, ଯତିପାତ ବିଷୟରେ କହିଲେ । ଆସନ୍ତା ରବିବାର ଦିନ ଆସି ଖାତା ନେଇଯିବାକୁ କହିଲେ । ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଲି । ମୋର ମନେହେଲା ସେ ଯେମିତି ମୋତେ ଅପେକ୍ଷା କରି ବସିଥିଲେ । ସେ ମୋତେ କବିତା ଖାତାଟି ଦେଲେ । ମୁଁ ଦେଖିଲି ନାଲିଗାର ଦେଇ ସଂଶୋଧନ କରି ଦେଇଛନ୍ତି । ମୋତେ କହିଲେ– 'କବିତା ଲେଖ, ହବ । ତେବେ ଗୋଟିଏ କଥା ମନେରଖ– ଇଏ ଗଦ୍ୟ କବିତା ବେଶି ଦିନ ରହିବ ନାହିଁ । କବିତା ହିଁ ଛନ୍ଦ, ଛନ୍ଦହିଁ କବିତା । ସମାଜ କଥା, ମଣିଷ କଥା ଲେଖ ।' ତାହାର ଅଳ୍ପଦିନ ପରେ ସେ ରୋଗଗ୍ରସ୍ତ ହେଲେ । ମୁଁ ଦେଖିବାକୁ ବଡ଼ଡାକ୍ତରଖାନା ଯାଇଥିଲି । ସେଦିନ ଦେଖିଲି ନିଆଁଖୁଣ୍ଟା ପାଇଁ ସେ କ'ଣ କାହାଙ୍କୁ ଡାକୁଥାନ୍ତି । ପରଦିନ ସେ ମରିଗଲେ । ତାଙ୍କ ଶବ ଶୋଭାଯାତ୍ରାରେ ଯାଇ ତାଙ୍କ ପାଦସ୍ପର୍ଶ କରି ପ୍ରଣାମ କଲି । ମନେକଲି ଓଡ଼ିଶାର ଗୋଟିଏ ଜାଗ୍ରତ ପ୍ରହରୀ ଓ ନିର୍ଭୀକ ସମାଲୋଚକଙ୍କର ଜୀବନଦୀପ ସବୁଦିନ ପାଇଁ ନିର୍ବାପିତ ହୋଇଗଲା ।

ଇନ୍ଦୁପୁର ହାଇସ୍କୁଲର ଅଙ୍କ ଶିକ୍ଷକ ନାରାୟଣ ଚନ୍ଦ୍ର ଜେନା, ମୋହନଚାନ୍ଦ ଜଗଦେବ, ଶରତଚନ୍ଦ୍ର ହାଜରା, ପାରେଶ୍ୱର ଜେନା, ଶିବଚରଣ ବେହେରା, ବିଜ୍ଞାନ

ଶିକ୍ଷକ ବାସୁଦେବ ପାତ୍ର, ପଦ୍ମଚରଣ ବିହାରୀ, ବାସୁଦେବ ମହାପାତ୍ର, କରୁଣାକର ବିହାରୀ ପ୍ରମୁଖ ଏବେ ମଧ୍ୟ ମୋର ଆଦର୍ଶ ହୋଇ ରହିଛନ୍ତି । ମୁଁ ଭୋରୁ ଭୋରୁ ପାଳ ବିଲରେ ପାଣି ଦେବାକୁ ଯାଇ ବ୍ରାହ୍ମଣୀ ନଦୀ ପଠାରେ ଜ୍ୟାମିତି ଅଙ୍କନ କରୁଥିଲି କାଠି ସାହାଯ୍ୟରେ । ସେହି ବିଲ ମୋର ହୋଇଗଲା ସ୍ଲେଟ, କାଗଜ, କଲମ, ପେନ୍‌ସିଲ ସବୁ କିଛି । ଅଷ୍ଟମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତି ଶନିବାର ଦିନ ଶେଷ କ୍ଲାସରେ ହୁଏ ତର୍କସଭା । ଶିକ୍ଷକମାନେ ରହନ୍ତି । ସେହି ତର୍କସଭାରେ ମୁଁ ବିଷୟର ବିରୋଧରେ କହେ । ସେଇଠୁ ମୋର ବକ୍ତୃତା ଦେବାର ଗୋଟାଏ ଅଭ୍ୟାସ ହୋଇଗଲା । ଆମେ ଗାଁରେ ଯୁବକସଂଘ କରି ସମୟେ ସମୟେ ଗାଁବାଲାଙ୍କୁ ଡକାଇ ସଭା କଲୁ । ସେହି ସଭାରେ ମୁଁ ଛୁଆଁଅଛୁଆଁ ଦୂରୀକରଣ, ମୂର୍ତ୍ତିପୂଜାର ଉଚ୍ଛେଦ ଇତ୍ୟାଦି ସଂପର୍କରେ କହେ । ଲୋକଙ୍କ ଭିତରୁ ଭୋଟ ନିଆଯାଏ । ସମସ୍ତେ ସପକ୍ଷରେ ହାତ ଟେକନ୍ତି । ଆମେ ଖୁସି ହେଉ । ସେହି ସ୍କୁଲରେ ପଢ଼ିଲାବେଳେ ବନ୍ୟା, ଘରପୋଡ଼ି, ମହାମାରୀ ସମୟରେ ଶିକ୍ଷକମାନେ ଆମକୁ ନେଇ ରିଲିଫ ଦେବାର ବ୍ୟବସ୍ଥା କରନ୍ତି । ଇନ୍ଦୁପୁର ବାରୁଣୀ ସମୟରେ ସ୍ୱେଚ୍ଛାସେବକ ଭାବରେ କାର୍ଯ୍ୟ କରୁ । ସ୍କୁଲରେ ପ୍ରତିବର୍ଷ ବାର୍ଷିକ ଉତ୍ସବ ହୁଏ । ବହୁତ ପୁରସ୍କାର ଦିଆଯାଏ । ପ୍ରତିବର୍ଷ ମୁଁ ବହୁତ ପୁରସ୍କାର ପାଇଛି । ଅଷ୍ଟମ ଶ୍ରେଣୀରେ ପଢୁଥିଲାବେଳେ ମୋତେ ସ୍କୁଲର ସେକ୍ରେଟାରୀ 'ଭକ୍ତିଯୋଗ' ଶୀର୍ଷକ ଏକ ବହି ପୁରସ୍କାର ଦେଲେ । ସେହି ବହିଟି ମୋ ଜୀବନରେ ଗଭୀର ପ୍ରଭାବ ପକାଇଲା । ମୁଁ ଗୀତା ଓ ଭାଗବତ ପଢ଼ିଲି । ଗୀତା ମୋ ଉପରେ ଏପରି ପ୍ରଭାବ ପକାଇଲା ଯେ ମୁଁ ମନେକଲି ଗୀତା ଏକ ଯୁଦ୍ଧ-ଗ୍ରନ୍ଥ ନୁହେଁ; ଏକ ସମାଜଶାସ୍ତ୍ର । ଅର୍ଜୁନଙ୍କୁ ଭଗବାନ୍ ନାନା ତତ୍ତ୍ୱ ଓ ଦର୍ଶନ ବିଷୟରେ କହିଛନ୍ତି । ଏକାଦଶ ଅଧ୍ୟାୟ ବିଶ୍ୱରୂପ ଦର୍ଶନ ଯୋଗରେ ସେ ଅର୍ଜୁନଙ୍କୁ ସ୍ପଷ୍ଟ ଭାବରେ କହିଛନ୍ତି ତାଙ୍କୁ ଯୁଦ୍ଧ କରିବାକୁ ହେବ । ଏ ଯୁଦ୍ଧ ଧର୍ମ ସହିତ ଅଧର୍ମର ଯୁଦ୍ଧ । ଯେତେବେଳେ ସଇତାନମାନଙ୍କର ହୃଦୟ ପରିବର୍ତ୍ତନ କସ୍ମିନ୍‌କାଳେ ସମ୍ଭବ ନୁହେଁ ଓ ସେମାନେ ସମାଜରେ ଭୟଙ୍କର ବିପଦର ସମ୍ମୁଖୀନ ହୁଅନ୍ତି ସେତେବେଳେ ସେମାନଙ୍କୁ ବିନାଶ କରିଦେବା ଉଚିତ । ଏହା ମୋ ଭିତରେ ପିଲାଦିନରୁ ଥିବା ସମାଜଭାବନାକୁ ଜାଗ୍ରତ କରିଦେଲା । ତେଣୁ ସେହି ଅଷ୍ଟମ ଶ୍ରେଣୀରୁ ରାଜନୀତିକୁ ନେଇ ଲୋକମାନଙ୍କୁ ଠକି ଭୋଟରେ ଜିତି ଆପେ ସୁଖ ଓ ବିଳାସରେ ରହୁଥିବା ମଣିଷମାନଙ୍କ ପ୍ରତି ମୋ ଭିତରେ ବିଦ୍ରୋହୀ ମନୋଭାବ ଦେଖା ଦେଲା । ଗୀତାର ସମଦୃଷ୍ଟି ମୋତେ ଅନୁପ୍ରାଣିତ କଲା । ଧର୍ମକୁ ନେଇ ବ୍ୟବସାୟ କରୁଥିବା ମଣିଷମାନଙ୍କ ପ୍ରତି ଯେପରି ବିତୃଷ୍ଣା ଜାତ ହେଲା ସେହିପରି ବାଣିଜ୍ୟ ବ୍ୟବସାୟକୁ ନେଇ ଓ ଟାଉଟରୀ କରି ଅର୍ଥ ରୋଜଗାର କରୁଥିବା ମଣିଷମାନଙ୍କ ପ୍ରତି ମୋର ମଧ୍ୟ ଘୃଣା ଜାତ ହେଲା ।

ଇନ୍ଦୁପୁର ହାଇସ୍କୁଲରେ ପ୍ରତିବର୍ଷ ନାଟକ ଅଭିନୀତ ହୁଏ । ଶିକ୍ଷକମାନେ ଅଭିନୟ କରନ୍ତି । ଛାତ୍ରମାନେ ମଧ୍ୟ ଅଭିନୟ କରନ୍ତି । ନାଟକ ଖୁବ୍ ଭଲ ହୁଏ । ଭଞ୍ଜକିଶୋର ପଟ୍ଟନାୟକଙ୍କର ମାଣିକ ଯୋଡ଼ି, ଜୟମାଲ୍ୟ, ରାମଚନ୍ଦ୍ର ମିଶ୍ରଙ୍କର ଘରସଂସାର, ଭାଇଭାଉଜ, ଗୋପାଳ ଛୋଟରାୟଙ୍କର ଶଙ୍ଖସିନ୍ଦୂର ଆଦି ନାଟକ ଅଭିନୀତ ହୁଏ । ଭାରି ଭଲ ଲାଗେ । ମୋର ଜଣେ ଦାଦା ସଂପର୍କୀୟ ଦୀନବନ୍ଧୁ ସାମଲ ସେତେବେଳେ ମୋର ଦୁଇ ଶ୍ରେଣୀ ଉପରେ ପଢୁଥାନ୍ତି । ସେ ଗାଁରେ ଯୁବକମାନଙ୍କୁ ମିଳାଇ ନାଟକ ଅଭିନୟ କରିବାକୁ କହିଲେ । ଆମେ ଛକ ଉପରେ ନାଟକ କଲୁ । ଗାଁ ଲୋକେ ଭାରି ଉତ୍ସାହ ଦେଲେ । ଏଣିକି ପ୍ରତିବର୍ଷ ଆମ ଗ୍ରାମରେ ନାଟକ ହେଲା । ନାଟକ ସହିତ ଆମେ ଗାଁରେ ତର୍କସଭା କରୁଥାଉ । ଯୌତୁକ ବିରୋଧରେ ଆନ୍ଦୋଳନ କରୁଥାଉ । ସେତେବେଳେ ଗାଁରେ ଚୋରିଗୋଳ ହେଉଥିଲା । ଆମେ ଯୁବକମାନେ ବାଡ଼ି ଧରି ରାତିରେ ଗାଁରେ ପହରା ଦେଉ । ଗାଁ ବାହାରେ ବିଲ ଭିତରେ ଜଗି ରହୁ । ଚୋରଗୋଳ ଆଉ ହେଲା ନାହିଁ । ଏହିପରି ଭାବରେ ମୁଁ ଏକାଦଶ ଶ୍ରେଣୀ ପରୀକ୍ଷା ଦେଲି । ସେତେବେଳେ ଆମ ସ୍କୁଲରେ ପରୀକ୍ଷା କେନ୍ଦ୍ର ହେଉ ନ ଥିଲା । କେନ୍ଦ୍ରାପଡ଼ା ହାଇସ୍କୁଲରେ ପରୀକ୍ଷା ଦେଲୁ । ମୁଁ ତ କେନ୍ଦ୍ରାପଡ଼ାରେ ରହିପାରିବି ନାହିଁ । ତେଣୁ ମୁଁ ଘରୁ ସାଇକେଲରେ କେନ୍ଦ୍ରାପଡ଼ା ଯାଇ ପରୀକ୍ଷା ଦେଲି । ସେହି ସମୟରେ ମୋ ସାନଭଉଣୀର ବାହାଘର ହେଲା । ସେହି ବାହାଘରରେ ମୁଁ ଅଂଶଗ୍ରହଣ କରିପାରିଲି ନାହିଁ । ପରୀକ୍ଷା ଫଳ ବାହାରିଲା । ମୁଁ ଆମ ସ୍କୁଲରେ ପ୍ରଥମ ହୋଇଥାଏ । ସେ ସମୟ ହେଉଛି ୧୯୫୮ ମସିହା । କଲେଜ ଯାଇ ପାଠ ପଢ଼ିବାର ସମ୍ଭାବନା ମୋର ଭାଙ୍ଗିଗଲା । କିଏ ମୋତେ ପଢ଼ାଇବ ? ବୋଉ କ'ଣ ଏତେ ଟଙ୍କା ଦେଇପାରିବ ? ମୋ ସାଙ୍ଗମାନେ ପଢ଼ିଲେ । ସେତେବେଳେ ଯାଜପୁର ନରସିଂହ ଚୌଧୁରୀ କଲେଜ ନୂଆ ଆରମ୍ଭ ହୋଇଥାଏ । କେନ୍ଦ୍ରାପଡ଼ାରେ କଲେଜ ହୋଇ ନ ଥାଏ । ତେଣୁ ମୁଁ ମନ ମାରିଦେଇ ଘରେ ରହିଲି ।

ଏକାଦଶ ଶ୍ରେଣୀରେ ପଢୁଥିଲାବେଳେ ପରୀକ୍ଷା ପୂର୍ବରୁ ମୁଁ ଦୁଇ/ତିନି ମାସ ଇନ୍ଦୁପୁର ହାଟ ପାଖରେ ଥିବା ନଡ଼ିଆବଣ ମେସ୍‌ରେ ରହିଲି । ମୋ ସାଙ୍ଗ ପ୍ରବୋଧ କୁମାର ବେହେରା ମୋ ପାଖକୁ ଆସେ । ସେ କହିଲା ମୁଁ ତାଙ୍କ ଘରେ ଖାଇବି ଓ ମେସ୍‌ରେ ଆସି ପଢ଼ିବି । ତାଙ୍କ ବାପା କ୍ଷେତ୍ରବାସୀ ବେହେରା ସ୍ୱାଧୀନତା ସଂଗ୍ରାମୀ । ଲବଣ ସତ୍ୟାଗ୍ରହ ବେଳେ ସେ ପୋଲିସ ମାଡ଼ରେ ଅକର୍ମଣ୍ୟ ହୋଇପଡ଼ିଥିଲେ । ପରେ ସେ ଭଲ ହୋଇଥିଲେ । ତଥାପି ତାଙ୍କ ଗୋଡ଼ରେ ଜଖମ ରହିଗଲା । ସେ ମୋ ବାପାଙ୍କର ଘନିଷ୍ଠ ବନ୍ଧୁ । ସେ ବହୁତ ଖୁସି ହେଲେ । ତାଙ୍କ ପତ୍ନୀଙ୍କୁ ମୁଁ ମାଉସୀ ଡାକୁଥାଏ । ମାଉସୀଙ୍କ ସାନଭଉଣୀ ତାଙ୍କ ସାନଭାଇ ପୀତାମ୍ବର ବେହେରାଙ୍କୁ ବିବାହ କରିଥାନ୍ତି ।

ଉଭୟ ମାଉସୀ ମୋତେ ବହୁତ ଶ୍ରଦ୍ଧା କରନ୍ତି । ମୁଁ ମନେକଲି ସତେ ଯେମିତି ମୋ ବୋଉ ହାତପରଷା ଖାଉଛି । ବହୁଦିନ ପରେ ମଉସା ମରିଗଲେ । ସେତେବେଳେ ମୁଁ ବାହାରେ ଥିବାରୁ ଜାଣିପାରିଲି ନାହିଁ । ମାଉସୀ ମଲାବେଳେ ତାଙ୍କ ଝିଅ ମୀନା ଆସି କଟକ ବସାରେ ମୋତେ କହିଲା । ମୁଁ ତାଙ୍କ ଏକାଦଶକୁ ଯାଇ ନିଜକୁ ଧନ୍ୟ ମନେକଲି । ଏପରି ସ୍ନେହୀ ଦମ୍ପତିକୁ ଆଉ କେଉଁଠି ଦେଖି ନାହିଁ । ତାଙ୍କର ପୁଅ ଓ ଝିଅମାନେ ମୋତେ ନନା ବୋଲି ଡାକନ୍ତି । ତାଙ୍କ ପୁଅମାନେ ଏବେ ପ୍ରତିଷ୍ଠିତ । ତାଙ୍କ ମଝିଆପୁଅ ଗାଁରେ ରହେ । ତା' ନାଁ ବିନୋଦ । ଲୋକେ ଡାକନ୍ତି ଟିମା ବୋଲି । ସେ ମୋତେ ଦେଖିଲେ ଆନନ୍ଦରେ ବିହ୍ୱଳ ହୋଇଯାଏ । ଗାଁର ସେ ଭଲମନ୍ଦ ବୁଝେ । ତାଙ୍କର ଆଉ ଗୋଟିଏ ଭାଇ ସୁବୋଧ ପୋଲିସ ଚାକିରି କରୁଥିଲେ । ତାଙ୍କର ଅକାଳ ବିୟୋଗ ହୋଇଗଲା । ଆଉ ଗୋଟିଏ ଭାଇ ଡାକ୍ତର ଓ ଅନ୍ୟ ଗୋଟିଏ ଭାଇ ଇଂଜିନିୟର । ସମସ୍ତେ ଅବସର ନେଇଗଲେଣି । ପୀତାମ୍ବର ମଉସା ମଧ୍ୟ ଅବସର ନେଇ କଟକରେ ପୁଅ ପାଖରେ ରହୁଛନ୍ତି । ମୋ ସଙ୍ଗାତ ସୁବିକାଶ ମଜୁମଦାର । ସେ ମାଇନିଂ ଡିପାର୍ଟମେଣ୍ଟରେ ଇଂଜିନିୟର ଥିଲା । ତା'ର ମଧ୍ୟ ମୃତ୍ୟୁ ହୋଇଗଲାଣି । ସେ ମୋତେ ବଙ୍ଗଳା ଭାଷା ଶିଖାଇ ଦେଇଥିଲେ । ତେଣୁ ମୁଁ ହାଇସ୍କୁଲରୁ ବଙ୍ଗଳା ପଢ଼ିବାକୁ ଆରମ୍ଭ କଲି । ହିନ୍ଦୀ ପ୍ରବେଶିକା ପରୀକ୍ଷା ଦେଇ ପାସ୍ କଲି । ଇନ୍ଦୁପୁର ହାଇସ୍କୁଲରେ ପଢୁଥିବାବେଳେ ବହୁ ସାଙ୍ଗଙ୍କ କଥା ମନେପଡ଼େ । ରବୀନ୍ଦ୍ରନାଥ ନାୟକ ତାଙ୍କ ବାପାଙ୍କର ଅତ୍ୟନ୍ତ ଅନୁଗତ । ବାପା ତ ସ୍ୱାଧୀନତା ସଂଗ୍ରାମୀ ଓ ଗାନ୍ଧିବାଦୀ । ତାଙ୍କ ନିର୍ଦ୍ଦେଶରେ ରବି ଯାଇଁ ଇନ୍ଦୁପୁର ହାଟରେ ବାଡ଼ିର ପନିପରିବା ବିକେ । ଖଦଡ଼ ପିନ୍ଧେ । ଭଲ ଛାତ୍ର । ମାତ୍ର ବାପା ତାଙ୍କର ବିବାହ କରିଦେଲେ । ଅଷ୍ଟମ ଶ୍ରେଣୀର ଛାତ୍ର । ସେ ଇନ୍ଦୁପୁର ସ୍କୁଲରୁ ଯାଇ ସାଲେପୁର ହାଇସ୍କୁଲରେ ପଢ଼ିଲା । ପରେ କଟକରେ ଇଂଜିନିୟରିଂ ପଢ଼ି ଓଭରସିଅର ହେଲା । ଏସ୍.ଡି.ଓ. ହୋଇ ଅବସର ନେଲା । ତା'ର କିନ୍ତୁ ଗାଁ ପ୍ରତି ମମତା ନିବିଡ଼ । ମୋ ପାଖକୁ ଆସନ୍ତି । ଗାଁରେ କ'ଣ କରିବାକୁ କହନ୍ତି । ପରଶୁରାମ ନାୟକ ଘନିଷ୍ଠ ବନ୍ଧୁ । ସେ ପରବର୍ତ୍ତୀ କାଳରେ ଷ୍ଟେଟବ୍ୟାଙ୍କର ସର୍ବୋଚ୍ଚ ଅଧିକାରୀ ହେଲେ ଓ ବହୁ ଯୁବକଙ୍କୁ ଚାକିରିରେ ନିଯୁକ୍ତି ଦେଲେ । ସମ୍ବର ସ୍ୱାଇଁ ଜୀବନବୀମା ନିଗମରେ ମ୍ୟାନେଜର ହୋଇ ଅବସର ନେଲେ । ପ୍ରବୋଧ କୁମାର ବେହେରା, ଧୀରେନ ଘୋଷ, ଚଣ୍ଡୀଚରଣ ଘୋଷ, ଡାକ୍ତର ଦାମୋଦର ରାଉତ, ଶ୍ୟାମସୁନ୍ଦର ଜେନା ଆଦି ବହୁ ସାଙ୍ଗଙ୍କ ସହିତ ମୋର ଥିଲା ଗଭୀର ସଂପର୍କ । କୁଳମଣି ଦାଶ ବି.ଏ. ପାସ୍ କରି ଚାକିରି ନ କରି ସମାଜସେବୀ ହେଲେ । ଧୂମାତ୍‌ରେ ପ୍ରତିଷ୍ଠା କଲେ ରାଧାଗୋବିନ୍ଦଜୀଉ ବିଦ୍ୟାପୀଠ । ଅନେକ ସମାଜ ହିତକର କାର୍ଯ୍ୟ ସହିତ ସେ ସଂପୃକ୍ତ ।

ଆମ ତଳ ଶ୍ରେଣୀରେ ପଢୁଥିବା ବିରଞ୍ଚି ନାରାୟଣ ଜଗଦେବ ପରବର୍ତ୍ତୀ କାଳରେ ଡାକ୍ତର ହେଲେ । ଇନ୍ଦୁପୁର ଡାକ୍ତରଖାନାରେ ମଧ୍ୟ ସେ ନିଯୁକ୍ତି ଲାଭ କଲେ । ଡାକ୍ତରଖାନାର ବହୁବିଧ ଉନ୍ନତି କଲେ । ସେହି ସମୟରେ ମୋ ମଝିଆଭାଇର ସ୍ତ୍ରୀ ଝାଡ଼ାବାନ୍ତି ହୋଇ ସଂକଟ ଅବସ୍ଥାକୁ ଚାଲିଗଲା । ମୁଁ ଘରେ ଥାଏ । ଇନ୍ଦୁପୁର ଆସି ବିରଞ୍ଚିବାବୁଙ୍କୁ ନେଇଗଲି ଘରକୁ । ସେ ସେଇଠି ସାଲାଇନ୍ ଓ ଔଷଧ ଦେଲେ । ସେ ଭଲ ହେଲା । ଆଉ ଥରେ ମୁଁ ମୋ କଟକର ଚାଉଳିଆଗଞ୍ଜରେ ଗୋଟିଏ ଭଡ଼ା ଘରେ ଥାଏ । ସେତେବେଳେ ମୋ ପିଲାମାନେ ଛୋଟ ଛୋଟ । ରାତିରେ ମୋ ସ୍ତ୍ରୀକୁ ଡାଇରିଆ ହେଲା । ଠିକ୍ ଭୋର ବେଳକୁ ସେ ଘର ବାରଣ୍ଡାରେ ପଡ଼ିଗଲା । କ'ଣ କରିବି ? ଶୀତଦିନ । ବିରଞ୍ଚିବାବୁ କୌଣସି ଏକ କାର୍ଯ୍ୟରେ ଆମ ଘରକୁ ଆସି କବାଟ ଠକଠକ କଲେ । ମୁଁ କବାଟ ଫିଟାଇ ଦେଖେ ତ ସ୍ୱୟଂ ଦେବଦୂତ ଯେମିତି ପହଞ୍ଚିଯାଇଛନ୍ତି । ସେ ମୋ ସ୍ତ୍ରୀକୁ ଦେଖି ଶୀତଦିନେ ମଧ୍ୟ ତାଙ୍କ ମୁଣ୍ଡରୁ ଝାଳ ବୋହିଗଲା । ସେ କହିଲେ ସଙ୍ଗେସଙ୍ଗେ ଡାକ୍ତରଖାନାକୁ ନ ନେଲେ ରୋଗୀ ମରିଯିବ । ସେତେବେଳେ ସେ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲରେ ଥାଆନ୍ତି । ସେ ଆଗରେ ଡାକ୍ତରଖାନାକୁ ଯା'ଇ ସବୁ ବ୍ୟବସ୍ଥା କରିଦେଲେ । ମୁଁ ଗୋଟିଏ ରିକ୍ସାରେ ମୋ ସ୍ତ୍ରୀକୁ ବସାଇ ଡାକ୍ତରଖାନାରେ ପହଞ୍ଚିଲି । ସେ ସଙ୍ଗେସଙ୍ଗେ ଚିକିତ୍ସା କଲେ । ଦିନ ବାରଟାବେଳକୁ ସେ ସୁସ୍ଥ ହେଲା । ମୁଁ ତାଙ୍କୁ ଘରକୁ ନେଇଆସିଲି । ବିରଞ୍ଚିବାବୁ ଘରକୁ ଆସି ତା'ର ଚିକିତ୍ସା କଲେ । କେବଳ ମୋ କଥା ନୁହେଁ, ଆମ ଅଞ୍ଚଳର ବିଭିନ୍ନ ଗ୍ରାମରେ ପ୍ରତି ରବିବାର ଦିନ ଡାକ୍ତରମାନଙ୍କୁ ନେଇ ଚିକିତ୍ସା ଶିବିର କରନ୍ତି । ଏବେ ମଧ୍ୟ ସେ ଇନ୍ଦୁପୁରରେ ସେହି କାର୍ଯ୍ୟ କରୁଛନ୍ତି । ପ୍ରକୃତରେ ସେ ମଣିଷ ପରି ମଣିଷ । ଦେବପ୍ରତିମ ମଣିଷ । ମୁଁ ତାଙ୍କୁ ମୋ ପ୍ରାଣଠାରୁ ବି ଶ୍ରଦ୍ଧା କରେ । ତାଙ୍କରି ଉଦ୍ୟମରେ ଇନ୍ଦୁପୁରଠାରେ 'ବିରୂପା କଲେଜ' ପ୍ରତିଷ୍ଠିତ ହେଲା । ଅନେକ ଲୋକହିତକର କାର୍ଯ୍ୟ ହେଲା । ତାଙ୍କ ନିଜ ସାହି ହବିଳିଠାରେ ଉତ୍କଳମଣି ଗୋପବନ୍ଧୁ ପାଠାଗାର ମଧ୍ୟ ହେଲା । ତାଙ୍କ ବାପା ନଟବର ଜଗଦେବ ସ୍ୱାଧୀନତା ସଂଗ୍ରାମୀ । ମାଆ ପ୍ରଭାବତୀ ଦେବୀ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ । ସାନବାପା ନାରାୟଣ ବୀରବର ସାମନ୍ତ ୧୯୨୧ ମସିହାରୁ ଗାନ୍ଧିଜୀଙ୍କ ସହିତ ମିଶି ଆନ୍ଦୋଳନରେ ଯୋଗ ଦେଇଥିଲେ । ସମଗ୍ର ପରିବାରଟି ଥିଲା ଜାତି ଓ ଦେଶ ପାଇଁ ଉତ୍ସର୍ଗୀକୃତ । ବିରଞ୍ଚିବାବୁ ସେଇ ପରଂପରା ଓ ଆଦର୍ଶର ଜୀବନ୍ତ ନିଦର୍ଶନ । ମୁଁ ବହୁ ଡାକ୍ତର ଦେଖିଛି, କିନ୍ତୁ ବିରଞ୍ଚିବାବୁଙ୍କ ପରି ଜଣେ ଡାକ୍ତରଙ୍କୁ ଦେଖି ନାହିଁ । ସେ କେବେ ଅର୍ଥ ପଛରେ ଗୋଡ଼ାଇ ନାହାନ୍ତି । ତେଣୁ ତାଙ୍କ ଭିତରେ ଗୋଟିଏ ଦିବ୍ୟ ମଣିଷପଣିଆ ସୃଷ୍ଟି ହୋଇଛି । କେନ୍ଦ୍ରାପଡ଼ାର ବିଶିଷ୍ଟ ସାଂସ୍କୃତିକ ଅନୁଷ୍ଠାନ 'ଧନୁର୍ଜ୍ଜୟ ଚାରିଟେବୁଲ୍ ଟ୍ରଷ୍ଟ' ତାଙ୍କୁ କେନ୍ଦ୍ରାପଡ଼ା ଗୌରବରେ ଭୂଷିତ କରିଅଛନ୍ତି ।

ସେକାଳର ଅନେକ ବନ୍ଧୁ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଅଛନ୍ତି । ଘାଗରା ଗ୍ରାମର ନନ୍ଦକିଶୋର ପରିଡ଼ା କେନ୍ଦ୍ରାପଡ଼ା କଲେଜରେ ରାଜନୀତି ବିଜ୍ଞାନରେ ଅଧ୍ୟାପକ/ପ୍ରାଧ୍ୟାପକ ହୋଇ ଅଧ୍ୟକ୍ଷ ହୋଇଥିଲେ । ଶ୍ରାବଣୀ ସାହିତ୍ୟ ସଂସଦ ଗଠନ କରି ଆପଣାର ସାହିତ୍ୟ ତୃଷ୍ଣାକୁ ଉଜ୍ଜୀବିତ କରିଛନ୍ତି । ମୋତେ ମଧ୍ୟ ସେହି ପରିଷଦ 'ଶ୍ରାବଣୀ' ସମ୍ମାନରେ ସମ୍ମାନିତ କରିଛନ୍ତି । ଏହା ଥିଲା ମୋ ଜୀବନର ସାରସ୍ୱତ ସାଧନା ପ୍ରତି ପ୍ରଥମ ସମ୍ମାନ (୧୯୭୨) । ରବୀନ୍ଦ୍ରନାଥ ଜେନା ମୋର ଉପର ଶ୍ରେଣୀର ଛାତ୍ର । ଅଥଚ୍ ତାଙ୍କର ମୋ ପ୍ରତି ଥିଲା ଗଭୀର ସ୍ନେହ । ନିକିରାଇ ଅଞ୍ଚଳର ଶିକ୍ଷାର ବିକାଶ ଦିଗରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଇନ୍ଦୁପୁର ହାଇସ୍କୁଲର ଆମର ତିନି/ଚାରି ବର୍ଷ ପୂର୍ବର ଛାତ୍ର ପ୍ରଭାକର ଶତପଥୀ, ପରେ ସେ ନାନା ପଦପଦବୀରେ ରହିଥିଲେ ମଧ୍ୟ ଇନ୍ଦୁପୁର/ଧୂମାତ୍ର ଶିକ୍ଷା ବିକାଶ ଓ ଅନ୍ୟାନ୍ୟ ଉନ୍ନତିମୂଳକ କାର୍ଯ୍ୟରେ ସାହାଯ୍ୟ ଲୋକଙ୍କୁ ଅଭିଭୂତ କରେ । ଇନ୍ଦୁପୁର ମାଇନର ସ୍କୁଲର ଛାତ୍ର ନିମାଇଁ ପାଣି ପରବର୍ତ୍ତୀ କାଳରେ ମୁଖ୍ୟ ଯନ୍ତ୍ରୀ ହୋଇଥିଲେ । ତାଙ୍କର ନିଷ୍ଠା ଯୋଗୁଁ ସେହି ଅଞ୍ଚଳରେ ଅନେକ ଜନହିତକର କାର୍ଯ୍ୟ ହୋଇଥିଲା । ଆଜି ଅତିକ୍ରାନ୍ତ ବୟସରେ ଇନ୍ଦୁପୁର ହାଇସ୍କୁଲର ମୋ ସାଙ୍ଗ ଓ ବରିଷ୍ଠ ଛାତ୍ରମାନଙ୍କ କଥା ମନେପଡ଼ିଲେ ମୁଁ ବିମୋହିତ ହୁଏ ।

ଏହିପରି ଭାବରେ ମୋର ହାଇସ୍କୁଲ ଜୀବନ ଶେଷ ହୋଇଗଲା । ଘରେ ରହିଥାଏ । ଚାଷବାସ ବୁଝୁଥାଏ । ଏହି ସମୟରେ ଯାଜପୁର ଜିଲ୍ଲା ଅନ୍ତର୍ଗତ ଗମ୍ଭୁଁ ଗ୍ରାମରେ ଗୋଟିଏ ମାଇନର ସ୍କୁଲ ଖୋଲିଲା । ମୋତେ ସ୍କୁଲର ସଂପାଦକ ସୁବୋଧ ଚନ୍ଦ୍ର ନାୟକ ନେଇ ସେଇଠି ଶିକ୍ଷକ ରୂପେ ନିଯୁକ୍ତି ଦେଲେ । ଏଥର ମୋର ଆରମ୍ଭ ହେଲା ଶିକ୍ଷକ ଜୀବନ । ସେତେବେଳକୁ ମୋତେ ଉଣେଇଶି ବର୍ଷ ଚାଲୁଥାଏ ।

## ସେକାଳର ଆଉ କେତେ କଥା

ହାଇସ୍କୁଲରେ ପଢୁଥିଲାବେଳେ ମୋର ଆହୁରି କେତେ କଥା ମନେ ପଡ଼ିଯାଉଛି । ୧୯୫୫ ମସିହାରେ ହେଲା ପ୍ରବଳ ବନ୍ୟା । ବ୍ରାହ୍ମଣୀ, ବିରୂପା, ବୈତରଣୀ, ଖରସ୍ରୋତା ଆଦି ନଦୀରେ ବନ୍ୟା ହୋଇ ସମଗ୍ର ଯାଜପୁର ଅଞ୍ଚଳ ଜଳାର୍ଣ୍ଣବ ହୋଇଗଲା । ସେ ବର୍ଷ ମଧ୍ୟ ମହାନଦୀରେ ପ୍ରବଳ ବନ୍ୟା ହୋଇଥାଏ । ଦଳେଇଘାଇ ବନ୍ଧ ଭାଙ୍ଗି ସମଗ୍ର ଜଗତ୍‌ସିଂହପୁର ଜିଲ୍ଲାରେ ଖଣ୍ଡ ପ୍ରଳୟ ହୋଇଥାଏ । ଆମ ଗାଁ ପାଖ ଇନ୍ଦୁପୁରଠାରେ ମଧ୍ୟ ବନ୍ଧ ଭାଙ୍ଗି ବିରାଟ ଘାଇ ହୋଇଗଲା । ଆମ ଗାଁ ମଧ୍ୟ ବନ୍ୟା ଜଳରେ ଉବୁଟୁବୁ ହେଲା । କେତେ ଘର ଭାଙ୍ଗିଗଲା । ଧାନ ଫସଲ ନଷ୍ଟ ହୋଇଗଲା । ବିଶାଳ ପାଟଜମିରେ ଧାନ ଧୋଇ

ହୋଇଗଲା । ପାଟ ମଝିରେ ମାଳବଣ । ସେଠି ମାଳ ସାତଭଉଣୀ ଗୋଟିଏ ମାଟି ଗମ୍ଭୀରାରେ ଥାଆନ୍ତି । ସେହି ବଣରେ ବନ୍ୟାଜଳ ପଶି ଗଛଲତାକୁ ନଷ୍ଟ କରିଦେଲା । ବନ୍ୟା ଛାଡ଼ିଗଲା ପରେ ସେଇ ବଣ ଶ୍ରୀହୀନ ହୋଇଗଲା । ହରିଜନମାନେ ଜାଳେଣି ପାଇଁ ସେ ବଣକୁ କାଟି ସଫା କରିଦେଲେ । ଆଉ ବଣ ରହିଲା ନାହିଁ । ଏହା ପୂର୍ବରୁ ଆମେ ପିଲାମାନେ ସେହି ବଣକୁ ଯାଉଁ । କେନ୍ଦୁ, ବରକୋଳି, ଖଜୁରକୋଳି, ବଇଁଚକୋଳି, କ୍ଷୀରକୋଳି, ହାଡ଼ହାଡୁଆ କୋଳି, କଣ୍ଟେଇ କୋଳି ପ୍ରଚୁର ହେଉଥିଲା । ଆମେ ନାନା ପ୍ରକାର କୋଳି ତୋଳି ଖାଉଥିଲୁ । ତେନ୍ତୁଳି ଗଛରୁ ତେନ୍ତୁଳି ଝଡ଼ାଇ ଆଣୁଥିଲୁ । ବଣ ଭିତରେ ଶିଆଳି ଲତା ମାଡ଼ିଥାଏ । ତାହାର ଡାଳରେ ଆମେ ଦୋଳି ଖେଳୁଥିଲୁ ।

ପାଟରେ ପ୍ରଚୁର ଧାନ ହେଉଥିଲା । ଚୈତ୍ର ଓ ବୈଶାଖ ମାସରେ ଖାଲି ପାଟରେ ଶିଆରେ ଲେଖା ଲଙ୍ଗଳ ବୁଲାଇ ରାବଣା ଧାନ ବୁଣି ଦେଉଥିଲେ । ଜ୍ୟେଷ୍ଠମାସ ବେଳକୁ ମାଟି ଫାଟି ଯାଉଥିଲା । ଧାନଗଛ ମରିଯାଇ ମୂଳଟି ମାନ ରହୁଥିଲା । ପହିଲି ଆଷାଢ଼ରେ ବର୍ଷା ହେଲେ ସେହି ମୂଳରୁ ଭୁସ୍‌ଭୁସ୍ ହୋଇ ଗଜା ବାହାରୁଥିଲା । ପାଣି ବଢ଼ିବା ସହିତ୍ ତାଳ ଦେଇ ଧାନଗଛ ବଢୁଥିଲା । ପୌଷ/ମାଘ ମାସ ବେଳକୁ ଯାଜପୁର ଅଞ୍ଚଳରୁ ଶହ ଶହ ଦୁଆଳି ଆସୁଥିଲେ । ପାଟକଡ଼ରେ ପଲ୍ଲା କରି ରହୁଥିଲେ ଓ ପାଟ ଭିତରକୁ ଯାଇ ଧାନ କାଟି କଳେଇ ବାନ୍ଧି ଡଙ୍ଗାରେ କୂଳକୁ ଆଣୁଥିଲେ । ଭାର କରି ଖଳାରେ ଗଦାଉଥିଲେ । ପାଟ କଡ଼େ କଡ଼େ ଶହ ଶହ ଖଳା । ଗୁଡ଼ିଆମାନେ ମୁଢ଼ି, ମୁଆଁ, ବାଦାମ, ଜିଲିପି, ଉଖୁଡ଼ା ବିକୁଥିଲେ । ଧାନ କଟା ହୋଇଗଲା ପରେ ଶହ ଶହ ଧାନ ସାଉଁଟାଳି ପାଟରେ ବୁଲି ବୋଝେ ବୋଝେ ଧାନଶିଁଷା ଆଣୁଥିଲେ । ଦୁଆଳିମାନେ ଦଶ ବିଡ଼ା କଳେଇରେ ଗୋଟିଏ ବଡ଼ ବିଡ଼ା ମୂଲ ନେଉଥିଲେ । ସେମାନେ ଛ'ମାସର ଦାନା ନେଉଥିଲେ । ଚାଷୀ ମଧ୍ୟ ଲାଭବାନ୍ ହେଉଥିଲା । ସେ ସମୟର ପାଟ ଧାନ କଟାର ଦୃଶ୍ୟ, ଧାନ ଖଳାର ଦୃଶ୍ୟ ଅତ୍ୟନ୍ତ ମନୋମୁଗ୍ଧକର ଥିଲା । ମାଳଠାକୁରାଣୀଙ୍କ ପାଖରେ ପ୍ରତ୍ୟେକ ଚାଷୀ ଖଳା ବଢ଼ିବା ଦିନ କ୍ଷୀରୀ କରୁଥିଲେ । ପିଲାମାନେ କ୍ଷୀରୀ ଖାଇ ଆନନ୍ଦ ପାଉଥିଲେ । ୧୯୫୫ ମସିହା ପରେ ପାଟରେ ଆଉ ଧାନ ହେଲା ନାହିଁ । ଜଳ ନିଷ୍କାସନ ପାଇଁ ସରକାରଙ୍କ ନିକଟରେ, ନେତାମାନଙ୍କ ନିକଟରେ କେତେ ଦରଖାସ୍ତ କରାଗଲା । ପାଟନାଳି ହେଲା ନାହିଁ । ମୋର ଯାହା ମନେପଡୁଛି ପ୍ରହ୍ଲାଦ ମଲିକ-ଜଳସେଚନ ବିଭାଗ ମନ୍ତ୍ରୀ ଥିଲାବେଳେ ପାଟନାଳି କିଛି ଖୋଳାଇଥିଲେ । ପାଟ ଚାଷ ନ ହେବାରୁ ଆମ ଅଞ୍ଚଳର ମେରୁଦଣ୍ଡ ଭାଙ୍ଗିଗଲା । ଏବେ ଶୁଣୁଛି ପାଟରେ କ'ଣ ଧାନ ଓ ବିରି ହେଉଛି ।

ସେହି ମାଳବଣରେ ବୈରାଗୀବାବା ଠାକୁରାଣୀଙ୍କ ମନ୍ଦିର କଲେ । ସେଠି ଗୋଟିଏ ଯଜ୍ଞ ହେଲା । ମୁଁ ସେଥିରେ ସକ୍ରିୟ ସହଯୋଗ କରିଥିଲି । ବୈରାଗୀବାବା ଆମ ଛକ ଉପରେ ପଞ୍ଚୁରାଇଙ୍କ ମନ୍ଦିର କଲେ । ଗୋଟିଏ କୋଠାଘର କଲେ । ଗୋଟିଏ ବଖରାରେ ଭାଗବତ ଗାଦି ହେଲା । ମୁଁ ଭାଗବତ ସେଟ୍ କିଣି ଦେଇଥିଲି । ସନ୍ଧ୍ୟାବେଳେ ଭାଗବତ ପାଠ ହେଉଥିଲା । ଲୋକେ ବସି ଶୁଣୁଥିଲେ । ବୈରାଗୀ ବାବା ସମାଧି ନେଇସାରିଲେଣି । ସେ ମନ୍ଦିର ଓ କୋଠା ଭାଙ୍ଗିଗଲାଣି । ଏବେ କେତେଜଣ ଯୁବକ ମିଳି ନୂଆ ମନ୍ଦିର ଓ ଘର କରୁଛନ୍ତି । ହନୁମାନ୍ ମନ୍ଦିର ମଧ୍ୟ ହୋଇଛି । ସ୍ଥାୟୀ ପାଲାମଣ୍ଡପ ତିଆରି ହୋଇଛି ।

ମୁଁ ସେତେବେଳେ ନବମ ଶ୍ରେଣୀରେ ପଢୁଥାଏ । ଥରେ ବରୀ ଆଶ୍ରମରୁ ଗୋପବନ୍ଧୁ ଚୌଧୁରୀ ପିଠିରେ ଗୋଟାଏ ବ୍ୟାଗ ପକାଇ ଆମ ସ୍କୁଲକୁ ପଶିଆସିଲେ । ମୁଁ ତାଙ୍କୁ ଆଗରୁ ଦେଖି ନ ଥାଏ । ସେଦିନ ପ୍ରଥମେ ଦେଖିଲି । ମୁହଁରେ ଦାଢ଼ି, ଦେହରେ ମୋଟା ଖଦଡ଼ ଧୋତି ଓ ଚାଦର । ହସହସ ମୁଖ । ସେ ସିଧା ଆମ ଖେଳପଡ଼ିଆକୁ ଆସି ବସିଗଲେ ଓ ଗୁଗୁଚିଆ ଉପାଡ଼ିବାକୁ ଲାଗିଲେ । ପଡ଼ିଆସାରା ଗୁଗୁଚିଆ ଜଙ୍ଗଲ । ଆମେ ପ୍ରତିଦିନ ଦେଖୁ ଓ ଆମ ଶିକ୍ଷକମାନେ ବି ଦେଖନ୍ତି । କେହି ସିଆଡ଼କୁ ଦୃଷ୍ଟି ଦେଇ ନ ଥିଲେ । ଯେତେବେଳେ ଶ୍ରୀଯୁକ୍ତ ଚୌଧୁରୀ ଗୁଗୁଚିଆ ଉପାଡ଼ିଲେ ଆମେ ପିଲାମାନେ ତାଙ୍କ ସହିତ ଉପାଡ଼ିଲୁ । ଅଳ୍ପ ସମୟ ମଧ୍ୟରେ ପଡ଼ିଆ ସଫା ହୋଇଗଲା । ମୁଁ ତାଙ୍କ ପାଖରେ ବସି ଗୁଗୁଚିଆ ଉପାଡ଼ିଲି । ଶିକ୍ଷକମାନେ ମଧ୍ୟ ଆସି ତାଙ୍କ ପାଖରେ ବସି ଗୁଗୁଚିଆ ଉପାଡୁଥାନ୍ତି । ତାଙ୍କ ଦାଢ଼ିରେ ମୁଁ ହାତ ମାରି କହିଲି– 'ଆପଣ ଦାଢ଼ି କାହିଁକି ରଖିଛନ୍ତି ?' ସେ ହସିଦେଲେ । ସେଇ ହସଟା ନିଷ୍ପାପ । ସେଇ ହସରେ ଯେମିତି ସେ ବ୍ରହ୍ମାଣ୍ଡକୁ ଜୟ କରିଯାଇଛନ୍ତି । ଆଜି ଅନେକବର୍ଷ ପରେ ତାଙ୍କର ମୁହଁ ଦିଶିଯାଉଛି । ତାଙ୍କ ହସ ମନେପଡ଼ି ଯାଉଛି । ଆଉ ସେ ହସ କାହିଁ ? ହସ ଅଛି ଯେ ତାହା କୁଟିଳ ହସ । ପରେ ମୁଁ ତାଙ୍କର ଚାଷୀ ମୂଲିଆ ଗାନ୍ଧି ବହି ପଢ଼ିଲି । ସିଏ ବରୀ ଆଶ୍ରମର ପ୍ରତିଷ୍ଠାତା । ଜଗତ୍‌ସିଂହପୁରର ଜମିଦାର ଓ କଟକର ବଡ଼ଓକିଲ ଗୋକୁଳାନନ୍ଦ ଚୌଧୁରୀଙ୍କର ସେ ବଡ଼ପୁଅ । ସେ ବିବାହ କରିଥିଲେ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ସାନଭାଇ ମାଜିଷ୍ଟ୍ରେଟ ଗୋପାଳ ବଲ୍ଲଭ ଦାସଙ୍କ କନ୍ୟା ରମାଦେବୀଙ୍କୁ । ଗୋପବାବୁ ମାଜିଷ୍ଟ୍ରେଟ ଚାକିରି ଛାଡ଼ି ମହାତ୍ମାଗାନ୍ଧିଙ୍କ ଡାକରାରେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ । ବରୀରେ ଆଶ୍ରମ କଲେ । ତାଙ୍କ ସାନଭାଇ ନବକୃଷ୍ଣ ଚୌଧୁରୀ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ । ସ୍ୱାଧୀନତା ପରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ସତ୍ୟନିଷ୍ଠ ଓ ତ୍ୟାଗୀ ମଣିଷ । ଆଜିକାଲିକାର ମନ୍ତ୍ରୀଙ୍କ ପରି ସେ ଭୋଗୀ ନ ଥିଲେ । ଯେଉଁଦିନ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ସେହିଦିନ ଥୋରିଆ ସାହି ଭୂଦାନ ଅଫିସରୁ ଚଟିଖଣ୍ଡେ

ପିନ୍ଧି ଖଦଡ଼ ଧୋତି ଓ ଫତେଇ ପରିଧାନ କରି ଚାଲି ଚାଲି କଟକ ରେଳଷ୍ଟେସନକୁ ଆସି ତାଳଚେର ଟ୍ରେନ୍‌ରେ ଅନୁଗୁଳ ବାଜିରାଉତ ଆଶ୍ରମକୁ ଚାଲିଗଲେ । କାନ୍ଧରେ ବ୍ୟାଗ । ଅନୁଗୁଳରେ ପହଞ୍ଚି ଗାଈ ଚରେଇଥିଲେ । ସେ ପ୍ରକୃତରେ ଥିଲେ ତ୍ୟାଗୀ ଓ ଆଦର୍ଶ ବ୍ୟକ୍ତିତ୍ୱର ଅଧିକାରୀ । ମା' ରମାଦେବୀ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ । ନବବାବୁଙ୍କ ପତ୍ନୀ ମାଳତୀଦେବୀ, ରମାଦେବୀଙ୍କ କନ୍ୟା ଅନ୍ନପୂର୍ଣ୍ଣା ଦେବୀ, ଜାମାତା ଶରତ ମହାରଣା ସମସ୍ତେ ସ୍ୱାଧୀନତା ସଂଗ୍ରାମୀ । ପରେ ସେମାନେ ସର୍ବୋଦୟ ଆନ୍ଦୋଳନରେ ମିଶିଗଲେ । ପିଲାଦିନେ ସେମାନଙ୍କୁ ଦେଖିଥିଲି । ଏବେ ବହୁବର୍ଷ ପରେ ସେମାନଙ୍କୁ ମନେପକାଇ କେବଳ ବିକଳ ହେଉଛି । ଭାବୁଛି ଆଉ କ'ଣ ଏପରି ଲୋକେ ଜନ୍ମ ନେବେ ନାହିଁ ? ମାଳତୀଦେବୀଙ୍କ ବାପା ଶାନ୍ତିନିକେତନରେ ରହୁଥିଲେ । ମାଳତୀଦେବୀ ମଧ୍ୟ ଶାନ୍ତିନିକେତନରେ ପଢୁଥିଲେ । ସେ ଥିଲେ ଗୁରୁଦେବ ରବୀନ୍ଦ୍ରନାଥଙ୍କର ଅତ୍ୟନ୍ତ ସ୍ନେହର ପାତ୍ରୀ । ନବକୃଷ୍ଣ ଚୌଧୁରୀ ସେତେବେଳେ ଶାନ୍ତିନିକେତନରେ ପଢୁଥିଲେ । ଉଭୟ ଉଭୟଙ୍କୁ ଭଲ ପାଇ ବସିଲେ । ଅଗ୍ନିକନ୍ୟା ମାଳତୀ ସେନ୍ ଓଡ଼ିଶାକୁ ଆସି ହୋଇଗଲେ ମାଳତୀ ଚୌଧୁରୀ । ସେ ଓଡ଼ିଶାକୁ ଆପଣାର କଲେ । ସ୍ୱାମୀଙ୍କ ପରି ସେ ମଧ୍ୟ ତ୍ୟାଗରେ ମହୀୟସୀ । ମୁଁ ବିଶ୍ୱଭାରତୀରେ ଥିଲାବେଳେ ତାଙ୍କ ଘରକୁ ଯାଇ ଦେଖିଛି । ତାଙ୍କର ତିରୋଧାନରେ ବିଶ୍ୱଭାରତୀର ଉପାଚାର୍ଯ୍ୟଙ୍କ ଅଧକ୍ଷତାରେ ଶୋକସଭା ହୋଇଥିଲା ।

ପୁଣି ସେହି ପିଲାଦିନର ମୋ ଗାଁ କଥା ଆହୁରି କେତେ ମନେପଡୁଛି । ଆମ ଗାଁ ଜଗନ୍ନାଥଙ୍କର ଦୋଳଉତ୍ସବ ଅତ୍ୟନ୍ତ ଚିତ୍ତାକର୍ଷକ । ସେତେବେଳେ ଦୋଳପୂର୍ଣ୍ଣିମା ଉପଲକ୍ଷେ ଆମ ମଠକୁ ନିକିରାଈ, ଧୂମାତ୍, ତନାର, ଅଳପୁଆ, କାଇପଡ଼ା ଆଦି ମଠରୁ ରାଧାକୃଷ୍ଣଙ୍କ ବିମାନ ଶୋଭାଯାତ୍ରାରେ ଆସୁଥିଲା । କେଳାକେଳୁଣୀ, ଶବର ଶବରୁଣୀ ଆଦି ନାଟ ସହିତ ବାଘ, ହାତୀ, ଘୋଡ଼ା ଆଦି ମୁଖା ନାଇ ନାଟ ହେଉଥିଲା । ସକାଳେ ଅବିର ଖେଳ ହେଉଥିଲା । ଆମେ ପିଲାମାନେ ମଧ୍ୟ ଛୋଟ ଛୋଟ ବିମାନ କରି ସାହି ସାହି ବୁଲି ସାରା ରାତି ବିତେଇ ଦେଉଥିଲୁ । ଆଜି ଏସବୁ ଦୃଶ୍ୟ ଆଉ ଦେଖିବାକୁ ମିଳେ ନାହିଁ । ଗାଁରେ ନାନା ପର୍ବପର୍ବାଣି ପୂଜାପାର୍ବଣ ହେଉଥିଲା । ରଜ ଉତ୍ସବ ତିନିଦିନ ଧରି ପାଳନ କରାଯାଉଥିଲା । ଏହି ତିନିଦିନ ଗଛରୁ ଡାଳ କେହି କାଟୁ ନ ଥିଲେ । ସଜବାଜ ଦିନରୁ ଦାନ୍ତକାଠି ଭାଙ୍ଗି ରଖୁଥିଲେ । ବାଟଣ ବଟା ହେଉନଥିଲା । ହଳ କର୍ଷଣ ବନ୍ଦ ରହୁଥିଲା । ଧରିତ୍ରୀ ଏହି ସମୟରେ ରଜସ୍ୱଳା ହୁଏ ବୋଲି ଲୋକ ବିଶ୍ୱାସ । ରଜ ଶେଷରେ ଧରିତ୍ରୀ ପୂଜା ହୁଏ । ଏହି ଦିନକୁ ଭିଂଦଅଣ ବା ଭୂମିଦଳନ କୁହାଯାଏ । ଶିଳପତା ଓ ଲଙ୍ଗଳ ଲୁହାକୁ ଘରର ଘରଣୀ ପୂଜା କରେ । ଏହା ଯେ ଏକ

କୃଷିଭିତ୍ତିକ ପର୍ବ ତାହା ସହଜରେ ଜଣାଯାଏ । ରଜ ତିନିଦିନ ତାସ, ପଶା ଓ ବାଗୁଡ଼ି ଖେଳ ହୁଏ । ଝିଅମାନେ ଗାଁ ବୁଲନ୍ତି, ଦୋଳି ଖେଳନ୍ତି । ଏହିପରି ଗହ୍ମାପୂର୍ଣ୍ଣିମା ମଧ୍ୟ ବେଶ୍ ଆନନ୍ଦ ସହକାରେ ପାଳିତ ହେଉଥିଲା । ଏହି ଦିନ ବଳଦେବଙ୍କ ଜନ୍ମଦିନ । ଗାଈଗୋରୁଙ୍କୁ ଗାଧୋଇ ଦେଇ ସେମାନଙ୍କୁ ପୂଜା କରାଯାଏ । ଗୁହାଳ କାନ୍ଥରେ ଆଣରେ ଗାଈ ବଳଦଙ୍କ ଛବି ଅଙ୍କାଯାଏ । ଘରେ ପିଠାପଣା ଓ ରନ୍ଧାବଢ଼ା ହୁଏ । ପ୍ରଥମେ ଗାଈ ବଳଦଙ୍କୁ ଖାଇବାକୁ ଦିଆଯାଏ । ଏବେ ତାହାକୁ ରାକ୍ଷୀ ପୂର୍ଣ୍ଣିମା କୁହାଯାଉଛି । ଭଉଣୀ ଭାଇ ହାତରେ ରାକ୍ଷୀ ବାନ୍ଧୁଛି । ଏହା ବଙ୍ଗଳା ଓ ଉତ୍ତରଭାରତରୁ ଆସିଛି । ଗୋପୂଜା କୁଆଡ଼େ ଗଲାଣି । ମୋ ପିଲାଦିନେ ମୁଁ ମଧ୍ୟ ଗାଈଗୋରୁଙ୍କ ଶିଙ୍ଗରେ ଢାଉରଙ୍ଗ ଲଗାଉଥିଲି । ସେମାନଙ୍କୁ ଖାଇବାକୁ ଦେଉଥିଲି । ଏବେ ଆଉ ଗାଈଗୋରୁଙ୍କ ପ୍ରତି ଶ୍ରଦ୍ଧା ନାହିଁ । ଗାଁରେ ମଧ୍ୟ ଝିଅମାନେ ଖୁଦୁରୁକୁଣୀ ଓଷା କରୁଥିଲେ । ଭାଲୁକୁଣୀ ମେଢ଼ ହେଉଥିଲା । ଆମେ ପିଲାମାନେ ବଡ଼ ପିଲାଙ୍କ ସହିତ ଯାଇ କିଆଫୁଲ, ବେତଫୁଲ, କଇଁଫୁଲ ତୋଳି ଆଣି ଦେଉ । ସାହିର ଝିଅମାନେ ଭାଲୁକୁଣୀ ଘରେ ରବିବାର ଦିନ ମିଳିତ ହୋଇ ତଅପୋଇ ଗୀତ ବୋଲନ୍ତି । ବସାପୁଚି ଓ ଠିଆପୁଚି ଖେଳନ୍ତି । ଗୀତ ଗାଆନ୍ତି । ଚାରିପାଳି ପରେ ଭାଲୁକୁଣୀ ମେଢ଼ ଶୋଭାଯାତ୍ରାରେ ଯାଇ ପଟ୍ଟାମୁଣ୍ଡାଇ କେନାଲରେ ବିସର୍ଜିତ ହୁଅନ୍ତି । ଏବେ ଗାଁରେ ସେହି ଓଷା ମହଳ ପଡ଼ିଗଲାଣି । ଏହିପରି ମାର୍ଗଶିର ମାସ ଗୁରୁବାର ଓଷା ବା ଲକ୍ଷ୍ମୀପୂଜା ଘରେ ଘରେ ହୁଏ । ନାନା ଜାତିର ପିଠାପଣା ହୁଏ । ସେ କାଳ ଗଲାଣି । ଏବେ ଝୁରି ହେଲେ ତାହା ଆଉ ଫେରିବ ନାହିଁ । ଏବେ ଯେଉଁ ଲକ୍ଷ୍ମୀପୂଜା ହେଉଛି ସେଥିରେ ନିଷ୍ଠା ନାହିଁ ବା ଭକ୍ତି ନାହିଁ । ଏହା ଗୋଟାଏ ଫେସନରେ ପରିଣତ ହୋଇଯାଇଛି ।

ମୋ ଗାଁର ଆଉ କେତୋଟି କଥା ଭୁଲି ହେଉ ନାହିଁ । ମୋ ପିଲାଦିନେ ଗାଁରେ ମାଡ଼ପିଟ ହେଉଥିଲା ଦୁଇ ଦଳଙ୍କ ଭିତରେ । ପୁଣି ମିଳିଯାଉଥିଲେ ଅଳ୍ପ କେଇଦିନ ଭିତରେ । ଗାଁ ଦୋମେଳିଆ ଥାଏ । ବଳିଆରା ସାହିରେ ରାଧାଶ୍ୟାମ ସାମଲଙ୍କର ବାହାଘର ହେଉଥାଏ । ବାପା ତ ଅନ୍ୟ ଦଳର । ତେଣୁ ସେ ତାଙ୍କ ଘରକୁ ଖାଇବାକୁ ଯାଇ ନ ଥାନ୍ତି । ରାଧୁଦାଦାଙ୍କ ପ୍ରତି ବାପାଙ୍କର ଭାରି ସ୍ନେହ ଥାଏ । ଗାଧୁଆବେଳେ ବାପା ଖାଇ ବସିଥାନ୍ତି । ମୁଁ ତାଙ୍କ ସହିତ ଖାଇବାକୁ ବସିଥାଏ । ରାଧୁଦାଦା ଆମ କବାଟ କଣରେ ଛକି ଛିଡ଼ା ହୋଇଥାଆନ୍ତି । ବାପା ଯେମିତି ଭାତ ଗୁଣ୍ଡାଏ ପାଟିକୁ ନେବାକୁ ଉଠାଇଛନ୍ତି ସେ କବାଟ କଣରୁ ବାହାରିଆସି ବାପାଙ୍କ ହାତକୁ ଧରି ପକାଇ କହିଲେ– 'ଭାଇ ! ତମେ ଯଦି ମୋ ବାହାଘରକୁ ନ ଯିବ ମୁଁ ବାହା ହେବି ନାହିଁ ।' ବାପାଙ୍କ ହାତରୁ ଭାତଗୁଣ୍ଡାଟା ଖସିପଡ଼ିଲା । ସେ ସଙ୍ଗେସଙ୍ଗେ ଉଠି ହାତ ଧୋଇ ତାଙ୍କ

ଘରକୁ ଗଲେ । ସେ ଆଦୌ ଚିନ୍ତା କଲେ ନାହିଁ ତାଙ୍କ ଦଳର କିଏ କ'ଣ କହିବେ ବୋଲି । ସେଦିନ ମୁଁ ଲକ୍ଷ୍ୟକଲି ବାପାଙ୍କର ଉଦାର ହୃଦୟବତ୍ତାକୁ ।

ବାପାଙ୍କର ଦେହାନ୍ତ ପରେ ବଳିଆରା ସାହିରେ ନାନା ଗଣ୍ଡଗୋଳ ହେଲା । ସେହି ସାହିରେ ଭିକାରୀ ସାମଲ ହଇଜାରେ ମରିଗଲେ । ତାଙ୍କ ବଡ଼ପୁଅ ଓ ବଡ଼ଝିଅ ମଧ୍ୟ ମରିଗଲେ । ତାଙ୍କ ବଡ଼ଝିଅ ନାଁ ଉତ୍ତ । ସେଇ ଅନୁସାରେ ତାଙ୍କ ସ୍ତ୍ରୀଙ୍କୁ ସାହିରେ ଉତ୍ତବୋଉ ଡାକୁଥିଲେ । ସେ ଅଳ୍ପ ବୟସରେ ବିଧବା ହୋଇଗଲା । ସାନପୁଅ ଓ ସାନଝିଅ ଥାଆନ୍ତି । ସେମାନଙ୍କୁ ସେ ଲାଳନପାଳନ କଲା । ତା' ଜମିକୁ ଭାଗଚାଷ କଲେ ରାଧୁଦାଦା । କୌଣସି କାରଣରୁ ତାଙ୍କ ସହିତ ଉତ୍ତବୋଉ ଖୁଡ଼ୀର ପଡ଼ିଲା ନାହିଁ । ସେତେବେଳକୁ ରାଧୁଦାଦା ମାମଲତକାର । ସେ ତାଙ୍କ ଜମିରୁ କିଛି ଅଂଶ ନେଇଗଲେ । ଉତ୍ତବୋଉ ଖୁଡ଼ୀ ପିଲାଦିନରୁ ମୋତେ ଭାରି ଭଲ ପାଏ । ମୁଁ ଘରକୁ ଗଲେ ଭଲ ତରକାରି କରିଥିଲେ କାନିରେ ଘୋଡ଼େଇ ମୋ ପାଇଁ ଆଣେ । ମୋ ବୋଉ ସହିତ ଗପେ । ଥରେ ସେ ପାପଗର୍ଭ ହୋଇଛି ବୋଲି ରାଧୁଦାଦା ଚାରିଆଡ଼େ କହିଲେ ଓ ତାକୁ ଶାସ୍ତି ଦେବାପାଇଁ ଭଦ୍ରଲୋକ ଡକାଇ ନିଶାପ କଲେ । ମୁଁ ସେତେବେଳକୁ ପ୍ରାୟ ଦଶମ ଶ୍ରେଣୀରେ ପଢ଼ିଲିଣି । ସେଇ ନିଶାପକୁ ମଧ୍ୟ ମୁଁ ଯାଇଥାଏ । ଜଣେ ସ୍ତ୍ରୀଲୋକର ଚରିତ୍ରକୁ ନେଇ ଯେପରି ଖୋଲାଖୋଲି ଆଲୋଚନା ହେଲା ଓ ତାଙ୍କୁ ପରୀକ୍ଷା କରିବାକୁ କୁହାଗଲା ମୁଁ ସେ କଥା ସହିପାରିଲି ନାହିଁ । ମୁଁ ଖୁବ୍ ଭର୍ତ୍ସନା କଲି । ଭଦ୍ରଲୋକମାନେ ପଳାଇଗଲେ । ଉତ୍ତବୋଉ ଖୁଡ଼ୀ ମରିଗଲାଣି । ତା'ର ଅମାୟିକ ସ୍ନେହ ଏବେ ମଧ୍ୟ ମୋର ମନେପଡ଼େ । ସେହି ସାହିରେ ଗୋଟିଏ ବଡ଼ ପୋଖରୀ ଥାଏ । ତାହାକୁ ଠାକୁର ପୋଖରୀ କହନ୍ତି । ସେତେବେଳେ ଗାଁରେ କୂଅ ନ ଥାଏ । ସେହି ପୋଖରୀରେ ଲୋକେ ଗାଧାନ୍ତି ଓ ସେହି ଜଳକୁ ଆଣି ପିଅନ୍ତି । ସେହି ସାହିର ସାରିଆ ମା' ବୁଢ଼ୀ ବାଡ଼ି ଖଣ୍ଡେ ଧରି ପୋଖରୀ କୂଳରେ ଜଗି ବସିଥାଏ । କାହାରିକୁ ସେ ପୋଖରୀରେ ବାସନକୁସନ ଧୁଆଇ ଦିଏ ନାହିଁ । କେହି ଯଦି ଝାଡ଼ା ଯାଇ ସେହି ପୋଖରୀରେ ପାଣି ସାରିବାକୁ ଆସେ ବୁଢ଼ୀ କଡ଼ା ଭାଷାରେ ଗାଳି ଦିଏ । ସେ କହେ ଯେଉଁ ପାଣି ଆମେ ପିଉଛୁ, ଯେଉଁ ପାଣିରେ ରୋଷେଇବାସ ହେଉଛି, ସେହି ପାଣିକୁ ଅପରିଷ୍କାର କରିବା ଠିକ୍ ନୁହେଁ । ପିଲାଦିନେ ତାକୁ ମୁଁ ଦେଖିଥିଲି । ମୋଟେ ପାଠଶାଠ ଜାଣି ନ ଥିବା ସେଇ ବୁଢ଼ୀର ମହତ୍ୱପଣିଆ ଏବେ ମଧ୍ୟ ମୋର ମନେପଡ଼ିଯାଉଛି । ସେଇ ପିଲାଦିନେ ଗୋବିନ୍ଦନନାଙ୍କ ସ୍ତ୍ରୀ ହୁଣ୍ଡୀଦେଈ ମୋତେ ଧରମଭାଇ କରିଥିଲା । ଏବେ ମଧ୍ୟ ହୁଣ୍ଡୀଦେଈ ଅଛି । ତା' ପୁଅମାନେ ମୋତେ ମାମୁ ଡାକନ୍ତି । ତା'ର ସ୍ନେହ ମୋତେ ବିହ୍ୱଳ କରେ ।

ସେଇ ଗାଁ ଏବେ ଅଛି । ତା' ଭୌଗୋଳିକ ସୀମା ସେଇମିତି ଅଛି । ନାହିଁ ତା'ର ସେକାଳର ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟ । ସେ ଗାଁର ଶ୍ମଶାନ ପଥୁରିଆ ଦଣ୍ଡା ବି ସଙ୍କୁଚିତ ହୋଇଗଲାଣି । ଗଛଲତା ସବୁ କଟା ହୋଇଗଲାଣି । ପାଟ ଶ୍ରୀହୀନ ହୋଇଗଲାଣି । କୃଷି-ସଂସ୍କୃତି ଯେମିତି ଧୀରେଧୀରେ ମଳିନ ପଡ଼ିଗଲାଣି । ଗୋଟାଏ ନଗର-ସଂସ୍କୃତି ଗାଁକୁ ଗ୍ରାସ କରିବାକୁ ଲାଗିଲାଣି । ଏଇ ମୋ ଗାଁ । ତଥାପି ସେ ମୋର ପ୍ରିୟ, ମୋର ଅତି ଆପଣାର ।

## ସେ ସମୟର ଲୋକବିଶ୍ୱାସ ଓ ଅଲୌକିକତା : ମୋର ଚିନ୍ତା-ସଂଘର୍ଷ

ମୋ ପିଲାଦିନେ ଓ କିଶୋର ଅବସ୍ଥାରେ ମୋ ଗାଁରେ ଲୋକମାନଙ୍କର ସରଳ ବିଶ୍ୱାସ ଓ ସେହି ବିଶ୍ୱାସଜନିତ କେତେ ଘଟଣା ମୁଁ ଦେଖିଛି । ସେତେବେଳେ ମୋ ଗାଁ କାହିଁକି ପ୍ରାୟ ସବୁ ଗାଁ ଥିଲା କୃଷିଭିତ୍ତିକ ଗାଁ । କୃଷି ସମ୍ବନ୍ଧୀୟ ନାନା ପ୍ରସଙ୍ଗ ଅଭିଜ୍ଞତାରୁ ଭବିଷ୍ୟତ ପାଣିପାଗ, ବନ୍ୟା, ଦୁର୍ଭିକ୍ଷ, ମହାମାରୀ ଇତ୍ୟାଦି ସଂପର୍କରେ ଢଗଢମାଳି ପକାଇ କହି ଦେଉଥିଲେ ଓ ତାହା ମଧ୍ୟ ଘଟୁଥିବା ମୁଁ ଦେଖିଛି । ଅଣ୍ଡିରା ବିଲୁଆକୁ ଆମ ଗାଁରେ ଫେରଣ୍ଡା କହୁଥିଲେ । ଦିନରେ ସିଏ ଭୁକିଲେ କୁଆଡ଼େ ଅଶୁଭ ଦେଖାଦିଏ । ସେମିତି ପେଚା ରାବିଲେ ମଧ ଗୋଟାଏ ଭୟ ସଞ୍ଚରି ଯାଉଥାଏ । ମୋ ଯୁବକ ଅବସ୍ଥାରେ ମୁଁ ଏହାକୁ ଅନ୍ଧବିଶ୍ୱାସ କହୁଥିଲି । ଏବେ ଭାବୁଛି ନା- ଏସବୁ ଅନ୍ଧବିଶ୍ୱାସ ନୁହେଁ; ବିଶ୍ୱାସ । ସେଇ ବିଶ୍ୱାସ ଏବେ ଭାଙ୍ଗିଗଲାଣି । ବିଜ୍ଞାନର କରାମତି ଫଳରେ ଏସବୁ ସ୍ୱପ୍ନ ଭୁଶୁଡ଼ି ପଡ଼ିଲାଣି ।

ସେତେବେଳେ ଗାଁରେ ମନ୍ତ୍ରତନ୍ତ୍ର ଗୁଣି ଗାରେଡ଼ିର ପ୍ରଭାବ ବହୁତ ଥିଲା । ଭୋଗ ବୈରାଗ ହେଲେ, ସାପ କାମୁଡ଼ିଲେ, ଭୂତପ୍ରେତ ଲାଗିଲେ, ବୀର ପେଷା ହୋଇଥିଲେ ଲୋକେ ଗୁଣିଆମାନଙ୍କ ପାଖକୁ ଯାଉଥିଲେ । ଗୁଣିଆ ମନ୍ତ୍ର ବୋଲି ଝଡ଼ାଫୁଙ୍କା କରି ଭଲ କରି ଦେଉଥିଲେ । ଏ କଥା ମୁଁ ମୋ ଗାଁରେ ଓ ଆଖପାଖ ଗାଁରେ ଦେଖିଛି । ଆମ ଗାଁକୁ ଲାଗି ଗୋଟିଏ ବିରାଟ ପଦ୍ମଗଣ୍ଡ ଥିଲା । ତାହା ଥିଲା ଭାରି ଗଭୀର । ସେହି ଗଣ୍ଡରେ ପ୍ରଚୁର ପଦ୍ମଫୁଲ ଫୁଟୁଥିଲା । ଲୋକେ ପଦ୍ମଫୁଲ ଆଣି ଠାକୁରଙ୍କୁ ପୂଜା କରୁଥିଲେ । ପଦ୍ମପତ୍ର ତୋଳି ଆଣି ଭୋଜିଭାତ ବେଳେ ତାହାକୁ ବ୍ୟବହାର କରୁଥିଲେ । ସେହି ଗଣ୍ଡରେ ରୋହି ଭାକୁର ଆଦି ପ୍ରଚୁର ମାଛ ରହୁଥିଲେ । ଗୋଟିଏ ବର୍ଷ ଆମ ଗାଁର ଲୋକେ ସେହି ଗଣ୍ଡରୁ ମାଛ ଧରିଲେ । ଆମ ଗାଁର କଳା ମଚମଚ ଲୋକଟିଏ ଧୋଇ

ମଳିକ । ମାଛ ଧରିବାରେ ସେ ପୋଖତ । ଗଣ୍ଡ ଭିତରେ ମାଛ ଧରୁଥିଲାବେଳେ ତାଙ୍କୁ ପଦ୍ମଗୋଖର କାମୁଡ଼ି ଦେଲା । ସେ ସେଇ ପାଣି ଭିତରେ ଚେତା ହରାଇ ଢଳି ପଡ଼ିଲା । ତାଙ୍କୁ ଲୋକେ ନେଇ ଆସିଲେ ସାହି ଭିତରକୁ । ଗୁଣିଆମାନେ ଝଡ଼ାଫୁଙ୍କା କଲେ । ତାଙ୍କ ଉପରେ ପାଣି ଢଳା ହେଲା । ସେ କିନ୍ତୁ ଚେତା ପାଉ ନ ଥାନ୍ତି । ଲୋକେ ଥାଟପଟାଳି ଭଳି ମାଡ଼ି ଆସୁଥାନ୍ତି । ଏହି ସମୟରେ ଜଣେ ଅଜଣା ଲୋକ ଆମ ଗାଁ ବନ୍ଧ ଉପରେ ଯାଉଥାଏ । ସେ ଜଣେ ଲୋକଙ୍କୁ ପଚାରିବାରୁ ସେହି ଲୋକ ସାପ କାମୁଡ଼ିଥିବା କଥା କହିଲା । ସେହି ଭଦ୍ରଲୋକଟି ତାଙ୍କୁ କହିଲା– ତମେ ଶୀଘ୍ର ଯାଇ ସାପ କାମୁଡ଼ିଥିବା ଲୋକକୁ ଗୋଟିଏ ଉଚ୍ଚା କାଠବେଞ୍ଚ ଉପରେ ବସାଇଦିଅ । ଦୁଇଜଣ ଲୋକ ତାଙ୍କ ଦୁଇପଟରୁ ଧରି ମାଟି ଉପରେ ପଟା ପକାଇ ତା' ଉପରେ ଛିଡ଼ା ହେବେ । ସିଏ ସେଇ ବନ୍ଧ ଉପରେ ବସି ମନ୍ତ୍ର ପଢ଼ିବ । ସେ ଲୋକଟି ଆସି ଏକଥା କହିବାରୁ ଲୋକେ ଧୋଇ ମଳିକକୁ ସେହିପରି ବସାଇ ଦୁଇଜଣ ଲୋକ ତାଙ୍କୁ ଧରିଲେ । ଏଣେ ଗୁଣିଆ ମନ୍ତ୍ର ପଢୁଥାଏ । ଧୋଇ ମଳିକର ଭକଭକ ବାନ୍ତି ହେଲା ଓ କିଛି ସମୟ ପରେ ଭଲ ହୋଇଗଲା । ସେତେବେଳେ ମୋର ପିଲା ବୟସ । ମୁଁ କିଛି ବୁଝିପାରୁ ନ ଥାଏ ।

ଆଉ ଥରେ ଆମ ଗାଁର ସତ୍ୟବାଦୀ ଜେନାଙ୍କୁ ତମ୍ପସାପ କାମୁଡ଼ି ଦେଲା । ତାଙ୍କୁ ଲୋକେ ନେଇ ଆସିଲେ ଆମ ସାହିର ଠାକୁର ପୋଖରୀ ପାଖକୁ । ପାଣି ଢାଳିଲେ । ଆମ ସାହିର ଗୁଣିଆ ଗୋଲୋକ ସାମଲ ନୃସିଂହ କବଚ ପଢ଼ି ଝାଡ଼ିଲେ ଓ ସେ ଭଲ ହେଲା । ଆଉ ଥରେ ଗୋଟାଏ ବାର ବର୍ଷର ଝିଅ ସନ୍ଧ୍ୟାବେଳେ ମଢ଼ିଆ ଦଣ୍ଡାକୁ ଝାଡ଼ା ଫେରିବାକୁ ଯାଇଥିଲା । ସେହି ଦଣ୍ଡାକୁ ଆମ ଗାଁ ଓ ଜୟକୃଷ୍ଣପୁର ଲୋକେ ଯିବାଆସିବା କରନ୍ତି । ସେଇ ଝିଅଟି ହଠାତ୍ ଡରିଗଲା । ତା' ଦେହରେ ଗୋଟାଏ ପ୍ରେତ ସବାର ହୋଇଗଲା । ସାହିକୁ ଆସିବା କ୍ଷଣି ସେ ଏଣୁତେଣୁ ଗପିଲା । ଆମ ସାହିର ଗୁଣିଆ ଗୋଲୋକ ସାମଲ ତାଙ୍କୁ ଝାଡ଼ିଲେ ଓ ପଚାରିଲେ– ତୁ କିଏ କହ, ନ ହେଲେ ଲୁହା ତତେଇ ଚିଆଁ ଦେବି । ସେ କହିଲା ଯେ ସିଏ ଜୟକୃଷ୍ଣପୁର ହରିଜନ ସାହିର ଝିଅ । ତାଙ୍କୁ ଅମୁକ ଲୋକ ପାପଗର୍ଭ କରିଦେଲା । ତା' ଗର୍ଭ ନଷ୍ଟ କରିବାକୁ ଉଦ୍ୟମ କଲାବେଳେ ସେ ମରିଗଲା । ତେଣୁ ସେ ପ୍ରେତ ହୋଇ ବୁଲୁଛି । ସେଇ ଗାଁର ଝିଅଟିର ମୃତ୍ୟୁ ଘଟଣାର ରହସ୍ୟ ଲୋକେ ଜାଣିଲେ । ଗୁଣିଆ ତାଙ୍କୁ ପାଣି ଢାଳେ ଦାନ୍ତରେ ଧରି ଯିବାକୁ କହିଲେ । ଝିଅଟି ପାଣିଢାଳ ଦାନ୍ତରେ ଧରି କିଛି ବାଟ ଦଉଡ଼ିଯାଇ ତଳେ ଚେତା ହରାଇ ପଡ଼ିଗଲା ଓ ସେ ଭଲ ହେଲା । ଅନେକ ଦିନ ପରେ ଅନାଦି ସାହୁଙ୍କର 'ଅଶରୀରୀ' ଗଳ୍ପ ପଢ଼ି ଜାଣିଲି ସତରେ ଭୂତପ୍ରେତ ଅଛନ୍ତି । ଲୋକଙ୍କ ଦେହରେ ଅବତୀର୍ଣ୍ଣ ହୋଇ ସତକଥା କହିଦିଅନ୍ତି ।

ଆଉ ଥରେ ଆମ ଗାଁର କଦଳୀ ଗୋରଡ଼ା ସାହିର ଶ୍ରୀଧର ସ୍ୱାଇଁଙ୍କ ସ୍ତ୍ରୀକୁ ଭୂତ ଲାଗିଲା । ସେ ସ୍ତ୍ରୀଲୋକଟି ସେତେବେଳକୁ ବୟସ୍କା । ସେ ହିନ୍ଦୀ ବା ଉର୍ଦ୍ଦୁ ଜାଣେ ନାହିଁ । ନିହାତି ଅପାଠୋଇ ସ୍ତ୍ରୀଲୋକଟିଏ । ଭୂତ ଗ୍ରାସିଲା ପରେ ସେ ଅନର୍ଗଳ ଉର୍ଦ୍ଦୁ ଭାଷାରେ କହିବାକୁ ଲାଗିଲା । କେତେ ଗୁଣିଆ ଆସିଲେ ମାତ୍ର କେହି ସେହି ଭୂତକୁ ଛଡ଼େଇପାରିଲେ ନାହିଁ । ସିଏ ତ ପଠାଣିଆ ଭାଷାରେ କହୁଥାଏ । ଆମେ ପିଲାମାନେ ଜମା ହୋଇ ଦେଖୁଥାଉ । ଏହି ସମୟରେ ଜଣେ ମୁସଲମାନ ଗୁଣିଆ ଆସି ପହଞ୍ଚିଲେ । ସିଏ ତାକୁ ଝାଡ଼ିଲେ । ତାକୁ ପଚାରିଲେ- ତୁ କିଏ ? ସେ କହିଲା ତା' କରୁଣ କାହାଣୀ । ଅନେକ ଦିନ ପୂର୍ବେ ଆମ ଗାଁ ପାଖ ବନ୍ଧରେ ବ୍ରିଟିଶ ଅମଳରେ ସଇପିନ୍ ତିଆରି ହେଉଥିଲା । ସେତେବେଳେ ଗୋଟାଏ ବିଶ୍ୱାସ ଥିଲା ନରବଳି ଦେଲେ ସଇପିନ୍ ଠିକ୍ ହେବ । ତେଣୁ ସେଇ ବାଟେ ଯାଉଥିବା ଜଣେ ଅଜ୍ଞାତ ମୁସଲମାନ ଯୁବକକୁ ସେଇଠାରେ କଣ୍ଟ୍ରାକ୍ଟରର ଲୋକେ ବଳି ଦେଇଦେଲେ । ସେଇ ଦିନରୁ ରାତିରେ ସେଇ ପଠାଣ ପ୍ରେତ କୁଆଡ଼େ ବାହାରେ । ଲୋକେ ସେହି ପ୍ରେତକୁ ଦେଖିଥିବା କହନ୍ତି । ମୁସଲମାନ ଗୁଣିଆ ସେହି ସ୍ତ୍ରୀଲୋକକୁ ଝାଡ଼ି ପ୍ରେତକୁ ବାହାର କଲେ ଓ ପାଖରେ ଗୋଟିଏ ଓସ୍ତ ଗଛରେ ତାକୁ ଛାଡ଼ି ସେହି ଗଛରେ ଲୁହା କଣ୍ଟା ବାଡ଼େଇ ଦେଲେ । ସ୍ତ୍ରୀ ଲୋକଟି ଭଲ ହେଲା । ଏହିପରି କେତେ ଅଲୌକିକ ଘଟଣା ମୁଁ ଦେଖିଛି ମୋ ଗାଁରେ । ଗୁଣିଆମାନେ ଝଡ଼ାଫୁଙ୍କା କରି ଭଲ କରି ଦେଉଥିଲେ । ମୋ ପିଲାଦିନେ ଥରେ ଆମ ଖଳାବାଡ଼ିରେ ଧନେଶ୍ୱର ଭୂୟାଁ ନାମକ ଜଣେ ଭକ୍ତିମାର୍ଗର ଲୋକ ମୋ ବାପାଙ୍କୁ କହୁଥିବାର ଶୁଣିଥିଲି- ଆମ ଗାଁ ମଠରୁ ଜଗନ୍ନାଥ ରାତି ଅଧରେ ବିମାନରେ ବସି ଆଲୋକମାଳା ସହିତ ପାଟେ ପାଟେ ମାଳ ସାତଭଉଣୀଙ୍କ ପାଖକୁ ଯାଉଥିବା କଥା । ଏହିପରି ଅନେକ କଥା । ପରବର୍ତ୍ତୀ କାଳରେ ଏମ୍.ଏ. ପଢୁଥିଲାବେଳେ 'ସମାଜ'ରେ ପ୍ରଫେସର ବସନ୍ତ ବେହୁରା ଗୋଟିଏ ପ୍ରବନ୍ଧ ଲେଖିଥିଲେ । ସେଥିରେ ସେ ଲେଖିଥିଲେ ଯେ ସାପ ବିଷ ନାହିଁ । ଲୋକେ ଭୟରେ ଅଚେତ ହୋଇଯାଆନ୍ତି । ମୁଁ ତାଙ୍କ ପାଖକୁ ସେତେବେଳେ ଆମ ଗାଁର ସାପ କାମୁଡ଼ା ପ୍ରସଙ୍ଗ ଉଲ୍ଲେଖ କରି ଚିଠି ଲେଖିଥିଲି । ସେ କିନ୍ତୁ ଉତ୍ତର ଦେଲେ ନାହିଁ ।

ଏହିପରି ଅନେକ ଅଲୌକିକ ଘଟଣା ସଂପର୍କରେ ଆମେ ଆସୁ । ଆମର ଆଧୁନିକ ଯୁକ୍ତିବାଦୀ ମନ ଏହାକୁ ବିଶ୍ୱାସ କରେ ନାହିଁ । ତଥାପି ଏବେ ମଧ୍ୟ ସାଧାରଣ ଗ୍ରାମ-ମଣିଷମାନଙ୍କ ଭିତରେ ଏହି ବିଶ୍ୱାସ ରହିଛି । ଶ୍ରୀଯୁକ୍ତ ଶାନ୍ତନୁ ଆଚାର୍ଯ୍ୟ କେନ୍ଦୁଝର ଓ କରଂଜିଆ ଅଞ୍ଚଳର କେତେ କେତେ ଲୋକବିଶ୍ୱାସ ଓ ଅଲୌକିକ ଘଟଣାକୁ ନେଇ ଗଳ୍ପ ଲେଖିଛନ୍ତି । ପାରଂପରିକ ଲୋକବିଶ୍ୱାସ ଓ ଅଲୌକିକ ଶକ୍ତିର ଯେ ପ୍ରଭାବ ନାହିଁ,

ଏସବୁ ବିଶ୍ୱାସକୁ ମାନୁ ନ ଥିଲି । ଏବେ କିନ୍ତୁ ଭାବୁଛି ପ୍ରକୃତରେ ଆମେ ପ୍ରକୃତିର ରହସ୍ୟକୁ କେତେ ବୁଝିଛୁ ବା ଜାଣିଛୁ ? ଶିକ୍ଷା ଓ ବିଜ୍ଞାନର ପରିମଣ୍ଡଳ ବାହାରେ ଯେ ଗୋଟାଏ ଅଲୌକିକ ଶକ୍ତି ଅଛି ଓ ଲୋକବିଶ୍ୱାସ ଯେ ଗୋଟାଏ ସତ୍ୟତା ଅଛି ତାହା ଆମେ ଜାଣିପାରୁ ନାହୁଁ ।

ସ୍ୱାଧୀନତା ଲାଭର ଠିକ୍ ପରେ ପରେ ଆମ ଗାଁରେ ମାଙ୍କଡ଼ଙ୍କ ଉତ୍ପାତ ଏତେ ବଢ଼ିଯାଇଥାଏ ଯେ ମୁରବିମାନେ ସ୍ଥିର କଲେ ବାଣୁଆ ଡକାଇ ମାଙ୍କଡ଼ ବଂଶକୁ ନିପାତ କରିବା ପାଇଁ । ସେତେବେଳକୁ ମୁଁ ଆଠ/ନଅ ବର୍ଷର ପିଲା । ବାଣୁଆ ଆସିଗଲା । ଆମ ଛକ ଉପରେ ବିରାଟ ବିରାଟ ବରଗଛ ଓ ଚାକୁଣ୍ଡା ଗଛ ଥାଏ । ମାଙ୍କଡ଼ମାନେ ସେହି ଗଛରେ ରହନ୍ତି । ବାରିରେ ଯାହା ଫଳ ଫୁଲୁରୀ ହୁଏ ଦଳଦଳ ମାଙ୍କଡ଼ ପଶି ନଷ୍ଟ କରି ଦିଅନ୍ତି । ବିଲରେ ବିରି, ମୁଗଛୁଇଁ ଇତ୍ୟାଦିକୁ ଖାଇଯାଆନ୍ତି । ସେଥିରେ ପୁଣି ଦନ୍ତାମାଙ୍କଡ଼ ସହିତ ଆଉ ଗୋଟିଏ ଦନ୍ତାମାଙ୍କଡ଼ର ଯୁଦ୍ଧ ହୁଏ । ଭାରି କୌତୁକ ଲାଗେ ଆମକୁ ସେହି ଦୃଶ୍ୟ ଦେଖିବାକୁ । ଏହି ଯୁଦ୍ଧ ଦିନ ତମାମ ଚାଲିଥାଏ । ଥରେ ଗୋଟିଏ ଦନ୍ତାମାଙ୍କଡ଼ ଆମ ଗ୍ରାମର ଜଣେ କଲିକତା ଫେରନ୍ତା ଲୋକକୁ ଏପରି ଏକ ବ୍ରହ୍ମଚାପୁଡ଼ା ମାରିଲା ଯେ ତା'ର ସବୁ ଦାନ୍ତ ଗଳିପଡ଼ିଲା । ଏହିସବୁ କାରଣରୁ ମାଙ୍କଡ଼ ମାରିବାକୁ ସିଦ୍ଧାନ୍ତ ନିଆଗଲା । ବାଣୁଆ ବନ୍ଧୁକରେ ଗୁଳି ଭର୍ତ୍ତି କରି ମାଙ୍କଡ଼ ମାରିଲା । ଗଛ ଉପରୁ ମାଙ୍କଡ଼ମାନେ ଗୁଳ୍‌ଗୁଳ୍ ହୋଇ ତଳକୁ ଗଳି ପଡୁଥାନ୍ତି । ଠିକ୍ ମରିବା ପୂର୍ବରୁ ଦୁଇହାତ ଯୋଡ଼ି ଯେପରି ଜୀବନ ପାଇଁ ଭିକ୍ଷା କରୁଥାଆନ୍ତି ତାହା ଦେଖି ମୋର ପିଲା ହୃଦୟ ବିଗଳିତ ହୋଇଯାଉଥାଏ । ବାଣୁଆ ମାଙ୍କଡ଼ ମାରି ସେମାନଙ୍କ ଲାଞ୍ଜ କାଟି ଓ ଦାନ୍ତ ଭାଙ୍ଗି ନେଉଥାଏ । ସିଏ କୁଆଡ଼େ ସରକାରଙ୍କ ଠାରୁ ବକ୍‌ସିସ୍ ପାଇବ । ମାଙ୍କଡ଼ ତ ମରାହେଲେ । ଆମ ଗାଁରୁ ମାଙ୍କଡ଼ ଉପଦ୍ରବ କମିଗଲା ମାତ୍ର କାହାରି ବାଡ଼ିରେ ଆଉ ଫଳ ଫୁଲୁରୀ ହେଲା ନାହିଁ । ତାହାର ଅଳ୍ପ କେତୋଟି ବର୍ଷ ପରେ ବିଲବାଡ଼ିରେ ଆଉ ଫସଲ ହେଲା ନାହିଁ । ନଦୀବନ୍ଧ ଭାଙ୍ଗି ସବୁ ନାରଖାର ହୋଇଗଲା । ପାଟ ଜମି ସେହି ଦିନରୁ ପଡ଼ିଆ ପଡ଼ିଲା । ଲୋକେ କହିଲେ ପ୍ରଭୁ ରାମଚନ୍ଦ୍ରଙ୍କ ଭକ୍ତ ହନୁମାନ୍‌ମାନଙ୍କୁ ମାରିବାର ଫଳ ଭୋଗିଲେ । ପ୍ରକୃତରେ ମାଙ୍କଡ଼ ପନିପରିବା, ଆମ୍ବ, ନଡ଼ିଆ, କଦଳୀ ଇତ୍ୟାଦି ନଷ୍ଟ କରୁଥିଲେ ସତ ମାତ୍ର ପୁଣି ଫଳୁଥିଲା । ଆମର ବିଶ୍ୱାସ ଯେ ମାଙ୍କଡ଼ ମାରିଲେ ପାପ ହୁଏ, ନାନା ଦୁର୍ଯୋଗ ଭୋଗିବାକୁ ହୁଏ । ଏହା ଏକ ଲୋକବିଶ୍ୱାସ । ହୁଏତ ଆଜିକାଲି ବିଜ୍ଞାନ ଯୁଗରେ ଏହାକୁ କେହି ବିଶ୍ୱାସ କରନ୍ତି ନାହିଁ; ତଥାପି ଏହା ଭିତରେ କି ରହସ୍ୟ ଅଛି ତାହାକୁ ଅନୁଧ୍ୟାନ କରିବା ଉଚିତ । ଏହିପରି ବିଲେଇ ମାରିବାକୁ ଲୋକେ ପାପ ବୋଲି କହୁଥିଲେ । ଏପରିକି ବିଲେଇଟିଏ ଗାଡ଼ି ଆଗରେ ଚାଲିଗଲେ

ଗାଡ଼ିବାଲା ଗାଡ଼ିକୁ ପଛକୁ ଫେରାଇ ଓ ଟିକେ ରହିଯାଇ ଗାଡ଼ି ଚଳାଏ । ଥରେ ମୁଁ ଏହିପରି ଏକ ଘଟଣାର ସମ୍ମୁଖୀନ ହୋଇଥିଲି । ଆମ ଗାଁରେ ଗୋଟିଏ ସାଂସ୍କୃତିକ ସଭା ସାରି ଡାକ୍ତର ଦେବେନ୍ଦ୍ର ରାୟ, ମୁରାରି ମୋହନ ଜେନା, ନାଟ୍ୟକାର ପ୍ରଫୁଲ୍ଲ ପଟ୍ଟନାୟକ ଓ ସ୍କୁଲ ବିଭାଗ ଇନ୍‌ସିପେକ୍ଟର ଜୀବନାନନ୍ଦ ଆଚାର୍ଯ୍ୟ ଆସୁଥାଉ । ଦେବେନ୍ଦ୍ରବାବୁ କାର୍ ଚଳାଉଥାନ୍ତି । ସାଲେପୁର ପାଖରେ ଗୋଟିଏ କଳା ବିଲେଇ ଆମ ଗାଡ଼ି ଆଗରେ ଚାଲିଯିବାରୁ ଦେବବାବୁ ଗାଡ଼ି ବନ୍ଦ କରିବାକୁ କହିବାରୁ ମୁଁ ତାଙ୍କୁ ଥଟ୍ଟା କଲି । ବିଜ୍ଞାନ ଯୁଗରେ ଇଏ ଗୋଟାଏ ଅନ୍ଧବିଶ୍ୱାସ କହିବାରୁ ସେ ଗାଡ଼ି ଚଳାଇଲେ । ବାଟରେ ଆମ ଗାଡ଼ିର ପଛଚକା ଘଷିହୋଇ ସଂପୂର୍ଣ୍ଣ ଜଳିଯିବାରୁ ଦେବବାବୁ ଗାଡ଼ି ଅଟକାଇ ଦେଖିଲେ । ସେ କହିଲେ ମୁଁ ଗାଡ଼ି ଅଟକାଇଥାନ୍ତି, ଆପଣ ପରିହାସ କରିବାରୁ ମୁଁ ଗାଡ଼ି ନେଇଆସିଲି, ଏଥର ଦେଖିଲେ ଏଇ ବିଶ୍ୱାସଟା କେତେ ତାତ୍ପର୍ଯ୍ୟପୂର୍ଣ୍ଣ । ରାତି ଅଧ । ଆମେ ସେଇଠି ଗାଡ଼ିରଖି ଚାଲି ଚାଲି ଜଗତପୁର ପର୍ଯ୍ୟନ୍ତ ଆସି ସେଇଠୁ ରିକ୍‌ସା ଧରି କଟକ ଆସିଲୁ । ଏବେ ଗାଡ଼ିରେ ଗଲାବେଳେ ବିଲେଇ ଗଲେ ଡ୍ରାଇଭରମାନେ ଗାଡ଼ି ରଖିଲେ ମୁଁ କିଛି କହେ ନାହିଁ ।

## ଗମ୍ଭୁ ସ୍କୁଲରେ ମୋର ଶିକ୍ଷକତା ଓ ମୋର ବାହାଘର

ମୁଁ ଗମ୍ଭୁ ମାଇନର ସ୍କୁଲରେ ୧୯୫୮ ମସିହାରେ ଶିକ୍ଷକ ଭାବରେ ଯୋଗ ଦେଲି । ସ୍କୁଲର ନିଜସ୍ୱ ଘର ନ ଥାଏ । ଗମ୍ଭୁ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ସ୍କୁଲ ଆରମ୍ଭ ହୋଇଥାଏ । ସେତେବେଳେ ସେହି ଅଞ୍ଚଳରେ କେଉଁଠି ମାଇନର ସ୍କୁଲ ନ ଥାଏ । ତେଣୁ ସେହି ସ୍କୁଲରେ କାଇପଡ଼ା, ମଣିରାମପୁର, କୃଷ୍ଣନଗର, ସେରପୁର, ଅଣିକଣା, ଡିହସାହି ଆଦି ଗ୍ରାମର ଛାତ୍ରଛାତ୍ରୀ ପଢୁଥାନ୍ତି । ବହୁତ ପିଲା । ହେଡ଼ମାଷ୍ଟର ଥାନ୍ତି ଗମ୍ଭୁର ବିପ୍ରଚରଣ ନାୟକ । ସେ ଆଇ.ଏ. ପାସ୍ କରିଥାନ୍ତି । ଦରମା ଖୁବ୍ କମ୍ । ମୁଁ ତିରିଶ ଟଙ୍କା ବେତନ ପାଏ । ସେକ୍ରେଟେରୀଙ୍କ ଘରେ ଜଳଖିଆ ଓ ଭାତ ଖାଏ । ସ୍କୁଲ ଘରେ ରହେ । ସ୍କୁଲର ସଭାପତି ଥାଆନ୍ତି କୃଷ୍ଣନଗରର ସ୍ୱାଧୀନତା ସଂଗ୍ରାମୀ ବୀରକିଶୋର ରାୟ । ସେ ସେକ୍ରେଟେରୀଙ୍କର ଘନିଷ୍ଠ ବନ୍ଧୁ । ସେକ୍ରେଟେରୀ ସୁବୋଧ ବାବୁ ମଧ୍ୟ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ଉଚ୍ଚପ୍ରାଥମିକ ବିଦ୍ୟାଳୟର ଶିକ୍ଷକ । ସେ ମଧ୍ୟ ଗାଁ ପୋଷ୍ଟଅଫିସର ଦାୟିତ୍ୱ ବୁଝୁଥାଆନ୍ତି । ମୋ ପ୍ରତି ସମସ୍ତଙ୍କର ଶ୍ରଦ୍ଧା ଜାତ ହୋଇଯାଏ । ମୁଁ ମଧ୍ୟ ସ୍କୁଲକୁ ନିଜର ମନେକଲି । ସନ୍ଧ୍ୟାବେଳେ କୀର୍ତ୍ତନଦଳ ନେଇ ଗାଁକୁ ଗାଁ ବୁଲି ଭିକ୍ଷା କରେ । ଯିଏ ଯାହା ଦିଏ ଆଣେ । ତାହାହିଁ ହେଲା ସ୍କୁଲର ପାଣ୍ଠି । ସ୍କୁଲକୁ ଲାଗି

ଗମୁ ଜଙ୍ଗଲ । ନାନା ପ୍ରକାର ଗଛ । ବଇଁଚ କୋଳି ପ୍ରଚୁର ହୁଏ । ସ୍କୁଲ ପାଖରେ ଆମ୍ବ ବଗିଚା । ଅଳ୍ପ ଦୂରରେ କେଲୁଅ ଓ ବିରୂପା ନଦୀ । ପ୍ରାକୃତିକ ପରିବେଶ ଅତ୍ୟନ୍ତ ସୁନ୍ଦର । ସେଇ ସ୍କୁଲରେ ମୁଁ ରହେ । ପିଲାମାନଙ୍କୁ ସନ୍ଧ୍ୟାବେଳେ ପଢ଼ାଏ ।

ସ୍କୁଲର ମଞ୍ଜୁରି ପାଇଁ ଡି.ଆଇ. ଆସିଲେ ପରିଦର୍ଶନ ପାଇଁ । ସେଦିନ ମୁଁ ସପ୍ତମ ଶ୍ରେଣୀରେ ଅଙ୍କ ପଢ଼ାଉଥାଏ । ସେ ଶ୍ରେଣୀକୁ ଯାଇ ବସିଲେ । କିଛି ସମୟ ପରେ ସେ ବିଦାୟ ନେଲେ । ସେକ୍ରେଟେରୀଙ୍କୁ କହିଗଲେ– ଏଇ ପିଲାକୁ ଯଦି ସ୍କୁଲରେ ସ୍ଥାୟୀ ଭାବରେ ରଖିବ ତେବେ ସେ ସ୍କୁଲକୁ ମଞ୍ଜୁରି ଦେବେ । ସେକ୍ରେଟେରୀ ମୋତେ ଏକଥା କହିଲେ । ଗମୁବଣକୁ ଲାଗି ବିରାଟ ପଡ଼ିଆ । ସେହିଠାରେ ସ୍କୁଲ ଘର ହେବାର ସ୍ଥିର ହେଲା । ମାଟି ପକାଇ ମୂଳଦୁଆ ହେଲା । ଘର କିପରି ହେବ ? କାଠ ବାଉଁଶ କେଉଁଠୁ ଆସିବ ? ବନ୍ୟା ସମୟରେ ପାଣି ଗାଁ ଭିତରକୁ ପଶିଆସେ । ସ୍କୁଲ ଚାରିପଟେ ପାଣି । କଥା ହେଲା ଗମୁ ବଣରେ ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀ ପ୍ରମୁଖ ଯେଉଁ ଗୋଟିଏ ବଡ଼ କାଠଘର କରିଥାନ୍ତି ତାହା ଆଉ କୌଣସି କାର୍ଯ୍ୟରେ ଲାଗୁ ନାହିଁ । ତାହାକୁ ଭାଙ୍ଗି ଆଣି ସ୍କୁଲଘର କରିବାକୁ ସ୍ଥିର ହେଲା । ସୁବୋଧବାବୁ ବରୀ ଆଶ୍ରମକୁ ଯାଇ ସେହି ଘରକୁ ଭାଙ୍ଗି ଆଣି ସ୍କୁଲ ଘର କରିବାକୁ ଆଶ୍ରମ ଲୋକଙ୍କୁ ଅନୁରୋଧ କଲେ । ଆଶ୍ରମର ଅନୁମତି ନେଇ ଆମେ ସେହି ବନ୍ୟା ସମୟରେ ସେ ଘର ପାଖକୁ କେତେଜଣ ଗଲୁ । ଘର ଉପରେ ଉଇ ଚରିଯାଇଥାଏ । ମୁଁ ପ୍ରଥମେ ଘର ଉପରକୁ ଚଢ଼ି ଗୋଟିଏ ବାଡ଼ିରେ ବାଡ଼େଇ ଦେଲି । କେତେ ଯେ ନାଗସାପ ଘର ଉପରୁ ବାହାରି ତଳକୁ ଡେଇଁପଡ଼ିଲେ ତା'ର ହିସାବ ନାହିଁ । ମୁଁ ଘର ଉପରୁ ତଳକୁ ଡେଇଁପଡ଼ି ବାଡ଼ିରେ ସାପଙ୍କୁ ବାଡ଼େଇଲି । ଅନ୍ୟମାନେ ମଧ୍ୟ ବାଡ଼େଇଲେ । ଅନେକ ସାପ ମଲେ । କିଛି ବଣ ଭିତରକୁ ପଳାଇଗଲେ । ଆମେ ସାହସ କରି ଘର ଭାଙ୍ଗିଲୁ । ଖୁଣ୍ଟ ଉପାଡ଼ିଲୁ । ବନ୍ୟା ପାଣିରେ ଭେଳା କରି ଭସାଇ ଭସାଇ ସ୍କୁଲ ପାଖକୁ ଆଣିଲୁ । ସେଇ କାଠରେ ସ୍କୁଲ ଘର ହେଲା । ମୋତେ ସମସ୍ତେ ଧନ୍ୟ ଧନ୍ୟ କଲେ । ନୂଆ ଘରେ ପାଠ ପଢ଼ା ହେଲା ।

ବିପ୍ରବାବୁ ସ୍କୁଲ ଛାଡ଼ିଦେବାରୁ ରତ୍ନଗିରି ପାଖରୁ ବେଣୁଧର ରାଉତ ଆସି ହେଡ଼ମାଷ୍ଟର ହେଲେ । ମୁଁ ଅଙ୍କ, ଭୂଗୋଳ, ଇଂରାଜୀ ଗ୍ରାମାର, ଓଡ଼ିଆ ବ୍ୟାକରଣ, ବିଜ୍ଞାନ ବିଷୟ ପଢ଼ାଉଥାଏ । ହେଡ଼ମାଷ୍ଟର କେବଳ ଇଂରାଜୀ ଓ ଇତିହାସ ପଢ଼ାନ୍ତି । ସେ ପ୍ରସ୍ତାବ ଦେଲେ କୋଚିଂ କ୍ଲାସ କରି ପିଲାଙ୍କଠାରୁ ଟଙ୍କା ଆଦାୟ କରିବା ପାଇଁ । ମୁଁ ମନା କଲି । ଫଳରେ ସେ ମୋ ଉପରେ ରାଗିଗଲେ । ସ୍କୁଲ ଛାଡ଼ି ସେ ବି.ଏ. ପଢ଼ିବାକୁ ଗଲେ । ବି.ଏ. ପାସ୍ କରି ସେ ବି.ଇଡି. ପଢ଼ିଲେ ଓ ରତ୍ନଗିରି ପାଖରେ ଗୋଟିଏ

ହାଇସ୍କୁଲରେ ଶିକ୍ଷକତା କଲେ । ତାଙ୍କ ପରେ ଆସିଲେ ହେଡ୍‌ମାଷ୍ଟର ହୋଇ ବିଚିତ୍ରାନନ୍ଦ ସାମଲ । ସେ ମାଟ୍ରିକ ବି.ଟି. । ସେ ମଧ୍ୟ ପିଲାଙ୍କୁ କୋଚିଂ କ୍ଲାସ କରିବାକୁ କହିଲେ । ମୁଁ ମନା କଲି । ତେଣୁ ସେ ମୋ ଉପରେ ମଧ୍ୟ ରାଗିଲେ । ଦିନେ ମୁଁ ସପ୍ତମ ଶ୍ରେଣୀରେ ପ୍ରପର ନାଉନ ପୂର୍ବରୁ କେଉଁ କେଉଁ ସ୍ଥାନରେ 'ଦି' ବ୍ୟବହୃତ ହୁଏ ପଢ଼ାଉଥିଲି । ପର୍ବତ, ନଦୀ, ସ୍ୱର୍ଗୀୟ ବସ୍ତୁ ଇତ୍ୟାଦି ନାମବାଚକ ଶବ୍ଦ ପୂର୍ବରୁ 'ଦି' ବସାଇବାକୁ କହିଲି । ମୁଁ ମଧ୍ୟ କହିଲି ଯେ ଯେତେବେଳେ ଦୁଇଟି ନାମବାଚକ ଶବ୍ଦକୁ ତୁଳନା କରି ଲେଖାଯାଏ ସେତେବେଳେ ଯାହା ସହିତ ତୁଳନା ହୁଏ ସେହି ଶବ୍ଦ ପୂର୍ବରୁ 'ଦି' ବସେ । ଉଦାହରଣ ଦେଇ ବୁଝାଇ ଦେଲି– 'Upendra Bhanja is the Kalidas of Odisha.' ପିଲାଏ ଟିପି ନେଲେ । ଅପରଘରେ ବିଚବାବୁ ଷଷ୍ଠ ଶ୍ରେଣୀରେ ପଢ଼ାଉଥାନ୍ତି । ସେ ଭାବିଲେ ଯେ ମୁଁ ଭୁଲ ପଢ଼ାଉଛି । ତା' ପରଦିନ ମୁଁ ଘରକୁ ଆସିଥାଏ । ସେଦିନ ସେ ସପ୍ତମ ଶ୍ରେଣୀକୁ ଯାଇ 'ଦି' ବ୍ୟବହାର କଥା  ପିଲାଙ୍କୁ ପଚାରିଲେ । ମୁଁ ଯାହା ପଢ଼ାଇଥିଲି ପିଲାଏ ସେହି ଉତ୍ତର ଦେଲେ । ସେ ରାଗିଯାଇ ଅମରଜଡ଼ା ଗଛ ଡାଳ ଭାଙ୍ଗି ଆଣି ସବୁ ପିଲାଙ୍କୁ ନିର୍ମମ ଭାବରେ ବାଡ଼େଇଗଲେ । ସେକ୍ରେଟେରୀଙ୍କ ସାନଭଉଣୀ ମଧ୍ୟ ମାଡ଼ ଖାଇଲା । ଗୋଟିଏ ଦୋବଲା ପତଲା ପିଲା ସନାତନ ରାୟ ତାଙ୍କ ଛାଟକୁ ହାତରେ ଧରି ପକାଇଲା । ସେ ତ ଭଲ ଛାତ୍ର । ତେଣୁ ଭୟ ନ କରି କହିଲା– 'ବୈଷ୍ଣବ ସାର୍ ଯାହା ପଢ଼ାଇଛନ୍ତି ଆମେ ତାହା କହିଲୁ । ଯଦି ଭୁଲ ହେଲା ଆମେ କିପରି ଦାୟୀ ହେଲୁ ? କାଲି ସାର୍ ଆସିଲେ ଆପଣ ତାଙ୍କୁ ଏଇ ଅମରଜଡ଼ା ଡାଙ୍ଗରେ ପିଟିବେ । ଆମେ ସବୁ ତାଳି ମାରି ନାଚିବୁ ।' ଏକଥା ଶୁଣି ବିଚବାବୁ କ୍ଲାସରୁ ଚାଲିଆସି ସେକ୍ରେଟାରୀ ଓ ସ୍କୁଲର ଅନ୍ୟ ସଦସ୍ୟମାନଙ୍କୁ ମୁଁ ଭୁଲ ପଢ଼ାଇ ପିଲାଙ୍କୁ ମୂର୍ଖ କରି ଦେଉଛି ବୋଲି ଅଭିଯୋଗ କଲେ । ତାଙ୍କୁ ସ୍କୁଲରୁ ବାହାର କରି ଦେବାକୁ କହିଲେ । ସେକ୍ରେଟାରୀ ସୁବୋଧ ବାବୁ, ପ୍ରାଥମିକ ବିଦ୍ୟାଳୟର ହେଡ଼ପଣ୍ଡିତ ଚୈତନ୍ୟ ଚରଣ ଚକ୍ରବର୍ତ୍ତୀ ଓ ଡମ୍ବରୁଧର ମହାପାତ୍ର ତାଙ୍କୁ ଧୈର୍ଯ୍ୟ ଧରିବାକୁ କହି ମୁଁ ସ୍କୁଲରୁ ଗଲେ ମୋତେ ପଚାରି ବ୍ୟବସ୍ଥା କରିବାକୁ କହିଲେ । ପରଦିନ ମୁଁ ସ୍କୁଲକୁ ଗଲି । ଏତେ କଥା ଘଟିଯାଇଛି ବୋଲି ମୁଁ ଜାଣି ନ ଥିଲି । ଯେତେବେଳେ ମୁଁ ସପ୍ତମ ଶ୍ରେଣୀକୁ ପଢ଼ାଇବାକୁ ଗଲି ସବୁ ପିଲା ଛିଡ଼ାହୋଇ କହିଲେ ମୁଁ ଭୁଲ ପଢ଼ାଇଛି ଓ ହେଡ଼ମାଷ୍ଟ୍ରେ ସେମାନଙ୍କୁ ଖୁବ୍ ପିଟିଛନ୍ତି । ଏକଥା ଶୁଣି ମୁଁ ଟିକେ ନୀରବ ହୋଇଗଲି । ମାତ୍ର ଉଣେଇଶି/କୋଡ଼ିଏ ବର୍ଷର ଯୁବକ । ମୋର ରାଗ ହୋଇଗଲା । ପିଲାଙ୍କୁ କହିଲି ମୁଁ ଯାହା ପଢ଼ାଇଛି ତାହା ଠିକ୍ । କାହାରି କଥା ନ ଶୁଣି ତମେ ତାହାକୁ ମନେରଖ । ମୁଁ କ୍ଲାସ ଛାଡ଼ି ଅଫିସ ଘରକୁ ଆସି ହେଡ଼ମାଷ୍ଟ୍ରଙ୍କୁ ଗାଳି ଦେଲି । ତାଙ୍କୁ କହିଲି.ଯଦି ମୁଁ ଭୁଲ ପଢ଼ାଇଥିଲି ତେବେ ମୋତେ କହିଥିଲେ ମୁଁ

ତା'ର ଉତ୍ତର ଦେଇଥାନ୍ତି । ତାହା ନ କରି ପିଲାଙ୍କୁ ଯେଉଁ ପିଟିଲେ ତାହା କ'ଣ ମୋତେ ପିଟିଲେ ନାହିଁ କି ? ମୁଁ ତାଙ୍କୁ ମାଡ଼ ଦେବାକୁ ଉଦ୍ୟତ ହୁଅନ୍ତେ ସୁବୋଧବାବୁ, ଡମ୍ବରୁବାବୁ ଓ ଚୈତନ୍ୟବାବୁ ଧାଇଁ ଆସି ମୋତେ ଅଟକାଇଲେ । ତା' ପରଦିନ ସେ ସ୍କୁଲ ଛାଡ଼ି ଚାଲିଗଲେ ।

ଗମ୍ଭୁ ସ୍କୁଲ ପ୍ରତି ମୋର ଗଭୀର ମମତା ସୃଷ୍ଟି ହୋଇଥାଏ । ଗରିବ ପିଲାଙ୍କୁ ମୁଁ ସାହାଯ୍ୟ କରୁଥାଏ । ପିତୃହରା ନୀଳମଣି ଧଳକୁ ମୁଁ ସାନଭାଇ ପରି ଦେଖୁଥାଏ । ତା' ବୋଉ ମୋତେ ଧରମପୁଅ କରିଥିଲା । ସେ ଭଲ ପଢୁଥାଏ । ତା'ର ନାମ ମୁଁ ଇନ୍ଦୁପୁର ହାଇସ୍କୁଲରେ ଲେଖାଇ ଦେଲି । ହେଡ୍‌ମାଷ୍ଟ୍ରେ ବାସୁଦେବ ପାତ୍ର ମୋତେ ଭାରି ଶ୍ରଦ୍ଧା କରନ୍ତି । ତାଙ୍କୁ କହି ତା'ର ଫ୍ରିସିପ୍ କରିଦେଲି । ସେ ମାଟ୍ରିକ ପାସ୍ କରି ଟେଲିଫୋନ ବିଭାଗରେ ଚାକିରି କଲା । ଏବେ ସେ କଟକର ସିଡ଼ିଏରେ ଘର କରି ରହୁଛି । ସନାତନ ପରେ ପାଠ ପଢ଼ି ଡେପୁଟି କଲେକ୍ଟର ହେଲା । ସେ ଏବେ ପୁରୀରେ ରହୁଛି ।

ସେହି ସ୍କୁଲରେ ଥିଲାବେଳେ ଗାଁର କେତେକ ଯୁବକ ଆସନ୍ତି । ଆମେ ବାଗୁଡ଼ି ଖେଳୁ । ମୁଁ ତ ବାଗୁଡ଼ି ଖେଳରେ ପୋଖତ । ଥରେ ଜଣକୁ କାଞ୍ଚି ମାରିବାବେଳେ ତଳେ ବାଡ଼େଇ ହୋଇ ମୋ ହାତ ବାହା ପାଖରୁ ଖସିଗଲା । ଭାରି କଷ୍ଟ ହେଲା । ତାକୁ ମୋଡ଼ାମୋଡ଼ି କରିଦେବାରୁ ଲାଗିଗଲା । ମୁଁ ଆଉ ଘରକୁ ନ ଯାଇ କଲିକତା ଚାଲିଗଲି । ସେଠୁ ଆସି ଘରକୁ ଗଲି ଓ ସ୍କୁଲକୁ ଆସିଲି । ଏକଦା ବାଗୁଡ଼ି ଖେଳିସାରି ସ୍କୁଲର କୂଅ ପାଖରେ ମୁଁ ଗାଧୋଉଥାଏ । ସନ୍ଧ୍ୟା ସମୟ । ଜଣେ ଲୋକ ଆସି ଆମ ପିଲାଙ୍କୁ ପଚାରିଲା– 'ମାଷ୍ଟ୍ରେ କିଏ ?' ପିଲାଏ ମୋତେ ଦେଖାଇ ଦେଲେ । ମୁହଁରେ ଦାଢ଼ି । କାନ୍ଧରେ ଗୋଟିଏ ଝୁଲା ବ୍ୟାଗ । ମଳିଆ ପୋଷାକ । ଚାଦର ଖଣ୍ଡେ ଘୋଡ଼ାଇ ହୋଇଥାନ୍ତି । ସେ ମୋତେ କହିଲେ ରାତିକ ପାଇଁ ସ୍କୁଲରେ ରହିବେ ବୋଲି । ମୁଁ ତାଙ୍କୁ ଅନୁମତି ଦେଲି । ଖରାଦିନ । ପିଲାଏ ସ୍କୁଲରେ ରାତିରେ ରହି ପଢ଼ାପଢ଼ି କରନ୍ତି । ମୁଁ ତାଙ୍କୁ ସ୍କୁଲରେ ଆଶ୍ରୟ ଦେଇଥିବା କଥା ଜାଣି ସେକ୍ରେଟେରୀ ସୁବୋଧବାବୁ ଓ ଡମ୍ବରୁବାବୁ ମୋ ପାଖକୁ ଆସି ଚାଣକ୍ୟ ଶ୍ଳୋକ ବୋଲି ଅଜ୍ଞାତ ଲୋକକୁ ରଖିବା ଠିକ୍ ନୁହେଁ ବୋଲି କହିଲେ । ମୁଁ ସେମାନଙ୍କୁ ବିନୀତ ଭାବରେ କହିଲି– 'ଜଣେ ବାଟୋଇଙ୍କୁ ମୁଁ ରହିବା ପାଇଁ କହିସାରିଲିଣି । ଏବେ ମନା କଲେ କଥାଟା ଖରାପ ହେବ । ମୁଁ ତାଙ୍କ ନିକଟରେ ରାତିରେ ଶୋଇବି । କ'ଣ କିଛି ଅଘଟଣ ଘଟିଲେ ମୁଁ ଦାୟୀ ହେବି ।' ସେମାନେ ଚାଲିଗଲେ । ଭଦ୍ରଲୋକଙ୍କୁ ଖଣ୍ଡେ ଖଜୁରି ଚଟ ଦେଲି । ସେ ଘର ଭିତରେ ବସିଲେ । ଖାଇବାକୁ କହିବାରୁ ସେ ମନା କଲେ । ରାତିରେ ସେ କିଛି ଖାଆନ୍ତି ନାହିଁ ବୋଲି କହିଲେ । ତକିଆ ଦେବାରୁ ସେ ମଧ୍ୟ ମନା କଲେ । କହିଲେ ସେ ରାତିରେ ଶୋଇବେ

ନାହିଁ । କେବଳ ଠାକୁରଙ୍କୁ ଧ୍ୟାନ କରିବେ । ମୁଁ ମୋ ବିଛଣାରେ ଶୋଇଲି । ମୋ ପାଖରେ ମୋ ଦାଦାଙ୍କ ପୁଅକୁ ଶୁଆଇଲି । ସେ ସପ୍ତମରେ ପଢୁଥାଏ । ରାତିରେ ମୋର ନିଦ ହେଲା ନାହିଁ । ସେଇମିତି ବିଛଣାରେ ଗଡ଼ପଡ଼ ହେଉଥାଏ । ଅଧରାତି ବେଳକୁ ସେ ଭଦ୍ରଲୋକ ମୋତେ ଡାକିଲେ । ମୁଁ ଉଠିବସିଲି । ସେ ତାଙ୍କର ଜୀବନ କାହାଣୀ କହିଲେ । ସେ ଥିଲେ ଝଙ୍କଡ଼ର ଶାରଳା ଠାକୁରାଣୀ ମନ୍ଦିର ନିକଟବର୍ତ୍ତୀ ସଅଁରା ଗ୍ରାମର ବ୍ୟକ୍ତି । ସେହି ଗାଁ ମାଇନର ସ୍କୁଲର ସେ ଶିକ୍ଷକ । ତାଙ୍କୁ ଅପସ୍ମାର ବାତ ହେଲା । ଯେତେ ଔଷଧ ଖାଇଲେ ମଧ ଭଲ ହେଲା ନାହିଁ । ଦିନକୁ ପାଞ୍ଚ ସାତ ଥର ବାତ ହେଲା । ତାଙ୍କର ପୁଅ ବାହା ହୋଇଥାଏ । ଘରେ ତାଙ୍କ ସ୍ତ୍ରୀ ଓ ବୋହୂ । ଦିନେ ସେ ଘରେ ଦଉଡ଼ି ଲଗାଇ ଆତ୍ମହତ୍ୟା କରୁଥିଲେ । ଏହି ସମୟରେ ତାଙ୍କ ବୋହୂ ଦେଖି ଡାକ ପକାଇଲା । ମାଆ ଓ ପୁଅ ଧାଇଁଆସି ଦଉଡ଼ି ଖୋଲିଦେଲେ । ସେ କିନ୍ତୁ କହିଲେ– ଆଉ ଏ ରୋଗଯନ୍ତ୍ରଣା ସହିପାରିବେ ନାହିଁ । ପୁଅବୋହୂ ଆଦି ତାଙ୍କୁ ନିୟମ କରାଇଦେଲେ ଆତ୍ମହତ୍ୟା ନ କରିବାକୁ । ସେ ନିୟମ କଲେ ମାତ୍ର ଶାରଳା ଠାକୁରାଣୀଙ୍କ ପାଖରେ ଅଳିହା ପଡ଼ିବାକୁ କହିଲେ । ତା'ପରେ ସେ ଠାକୁରାଣୀଙ୍କ ପାଖରେ ସାତଦିନ ଅଳିହା ପଡ଼ିଲେ । ଠାକୁରାଣୀଙ୍କର ଆଦେଶ ହେଲା ଆରଡ଼ି ଯାଇ ପ୍ରଭୁ ଆଖଣ୍ଡଳମଣିଙ୍କ ପାଖରେ ଅଳିହା ପଡ଼ିବା ପାଇଁ । ସେ ଏଥର ଆଖଣ୍ଡଳମଣିଙ୍କ ପାଖକୁ ଗଲେ ଓ ସେଠି ୧୫ ଦିନ ଅଳିହା ପଡ଼ିଲେ । ପ୍ରଭୁଙ୍କର ଆଦେଶ ହେଲା– 'ସେ ବିଂଝାରପୁରର ଖରସ୍ରୋତା ନଦୀ କୂଳରେ ଥିବା ଗୋଟିଏ ଗାଁକୁ ଯାଇ ତା'ର ପୂର୍ବ ଜନ୍ମର ବୋଉକୁ ଭେଟିବା ପାଇଁ । ତାଙ୍କରି ଘରେ ସେ ପ୍ରଥମେ ଖାଇବ ଓ ସେ ଯାହା ଦେବେ ଆଣିବ । ପନ୍ଦର ଦିନ ଭିକ୍ଷା କରି ଆରଡ଼ିକୁ ଯିବ ଓ ସେଠାରେ ସେହି ଟଙ୍କାରେ ବାଳ ମହୋତ୍ସବ କରି ଘରକୁ ଯିବ । ତା'ର ରୋଗ ଭଲ ହୋଇଯିବ ।' ପ୍ରକୃତରେ ଶାରଳାଙ୍କଠାରୁ ଆରମ୍ଭ କରି ଆରଡ଼ି ପର୍ଯ୍ୟନ୍ତ ଓ ସେଠାରୁ ପନ୍ଦରଦିନ ବୁଲି ଆମ ସ୍କୁଲରେ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କୁ ଆଉ ଅପସ୍ମାର ବାତ ହୋଇ ନ ଥିଲା । ସେଦିନ ରାତିରେ ଶାରଳା ଦେବୀ ଶୂନ୍ୟରେ ଯେଉଁ ମନ୍ତ୍ର କହିଥିଲେ ତାହାକୁ ମୋତେ କହିଲେ । ମୁଁ ଟିପି ନେଲି– 'ଓଁ ହ୍ଲିଂ କ୍ଲିଂ ଶ୍ଳିଂ ପୌର୍ଣ୍ଣମାସୀ ନମଃ ।' ଏହି ମନ୍ତ୍ରକୁ ସାତଥର ମନେପକାଇଲେ କୌଣସି ଭୟ ରହିବ ନାହିଁ ବୋଲି କହିଲେ । ପ୍ରକୃତରେ ଏ ମନ୍ତ୍ର ପ୍ରଭାବରେ ମୋ'ଠାରୁ ଭୟ ଛାଡ଼ିଗଲା । ମୁଁ ଯେତେବେଳେ ଯେଉଁ କାର୍ଯ୍ୟ କରେ ଏହି ମନ୍ତ୍ରକୁ ମନେପକାଏ । ମୁଁ ତ ପିଲାଦିନେ ପରୀକ୍ଷା ଦେଇସାରି ଗାଁର ସାଙ୍ଗମାନଙ୍କ ସହିତ ଚାଲି ଚାଲି ଶାରଳାଙ୍କ ପାଖକୁ ଯାଉଥିଲି । ଶାରଳାଙ୍କ ପ୍ରତି ମୋର ଭକ୍ତି ଜାତ ହୋଇଥାଏ । ସେଦିନ ସେହି ଲୋକଙ୍କ ସାନ୍ନିଧ୍ୟ ଲାଭ କରି କୃତକୃତ୍ୟ ହେଲି । ତାଙ୍କ ନାମ ଓ ତାଙ୍କ ପୂର୍ବଜନ୍ମର ବୋଉଙ୍କ ନାମ ଏବଂ ଖରସ୍ରୋତା କୂଳର ଗାଁର ନାମ ମୁଁ ଭୁଲିଗଲିଣି ।

ସେହି ଗମ୍ଭୁ ସ୍କୁଲରେ ଥିଲାବେଳେ ଥରେ ବରୀ ଆଶ୍ରମରୁ ଶରତ ମହାରଣା ସ୍କୁଲକୁ ଆସିଲେ । ମୋଟା ଖଦଡ଼ ଲୁଗା । ଫତେଇ ଓ ଖଦଡ଼ ଚାଦର । କାନ୍ଧରେ ଗୋଟିଏ ବ୍ୟାଗ । ବାଙ୍ଗରା ଆଉ କଳା ହୋଇ ଲୋକଟିଏ । ମୁଁ ତାଙ୍କୁ ଦେଖି ବିମୋହିତ ହେଲି । କୃତିତ୍ୱ ସହିତ ଏମ୍.ଏ. ପାସ୍ କରି ଉଚ୍ଚପଦ ଚାକିରି ଛାଡ଼ି ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ । ଗୋପବନ୍ଧୁ ଚୌଧୁରୀଙ୍କ ପଦାଙ୍କ ଅନୁସରଣ କଲେ । ତାଙ୍କ କନ୍ୟାକୁ ବିବାହ କଲେ । ପରେ ସେ ବିନୋବାଜୀଙ୍କ ଭୂଦାନ ଆନ୍ଦୋଳନରେ ଯୋଗ ଦେଲେ । ସର୍ବୋଦୟ ନେତା ହେଲେ । କୋରାପୁଟର ଆଦିବାସୀ ଅଞ୍ଚଳରେ ସେବା କଲେ । ବଡ଼ ନମ୍ର ଓ ଧୀରସ୍ଥିର ବ୍ୟକ୍ତି । ସେଦିନ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ପାଇ ମୁଁ ଧନ୍ୟ ହେଲି । ସେ ମଧ୍ୟ ସ୍ନେହରେ ମୋତେ ଆଉଁଶି ଦେଲେ । ପରେ କଟକରେ ରହିଲା ପରେ କେତେଥର ମୁଁ ତାଙ୍କୁ, ଗୋପବନ୍ଧୁଙ୍କୁ ଓ ମା' ରମାଦେବୀଙ୍କୁ ଭେଟିଛି । ପାଇଛି ସେମାନଙ୍କର ଅମାପ ସ୍ନେହ ।

ସେହି ସ୍କୁଲରେ ଥିଲାବେଳେ ମୋର ସେହି ଗାଁରେ ବାହାଘର ପାଇଁ ପ୍ରସ୍ତାବ ଆସିଲା । ମୁଁ ତ ବାହାଘର କଥା ଶୁଣିଲେ ବିରକ୍ତ ହୁଏ । ସେ ପ୍ରସ୍ତାବକୁ ମଧ୍ୟ ମୁଁ ମନା କଲି । ୧୯୫୯ ମସିହାରେ ବୋଉକୁ କହି ଅଶୀଟଙ୍କା ନେଇ ଯାଜପୁର ଯାଇ ଆଇ.ଏ. ଶ୍ରେଣୀରେ ନାମ ଲେଖାଇଲି । ସେଇଠି ଥିଲାବେଳେ ଟେଲିଫୋନ ଅପରେଟର ଚାକିରି ପାଇଁ ସମାଜରେ ବିଜ୍ଞାପନ ବାହାରିଥାଏ । ମୁଁ ଗୋଟିଏ ଫର୍ମ ପୂରଣ କରି ଡାକରେ ପଠାଇଦେଲି । ସେଥିରେ ଗଣିତ, ଇଂରାଜୀ ଓ ବିଜ୍ଞାନ ବିଷୟର ନମ୍ବର ଉପରେ ଗୁରୁତ୍ୱ ଦିଆଯାଇଥାଏ । ମୋର ତ ମାଥମେଟିକ୍ସ ଅପ୍ସନାଲ ଥିଲା । ଗଣିତରେ ୯୯ ମାର୍କ । ସେଇପରି ଇଂରାଜୀ ଓ ବିଜ୍ଞାନରେ ଖୁବ୍ ଭଲ ନମ୍ବର ଥିଲା । ମୋର ବିଶ୍ୱାସ ହୋଇଗଲା ଯେ ମୁଁ ସେ ଚାକିରି ପାଇଯିବି । ଏଣେ ମୋତେ ଯାଜପୁର କଲେଜ ଭଲ ଲାଗୁ ନ ଥାଏ । ତେଣୁ ମୁଁ ସେ କଲେଜ ଛାଡ଼ି ଘରକୁ ଚାଲିଆସିଲି ମାତ୍ର ସାତଦିନ ପରେ । ସନ୍ଧ୍ୟା ସମୟରେ ମୁଁ ବିଂଝାରପୁରରେ ପହଞ୍ଚି ଖରସୁଆ ନଦୀକୁ ଡଙ୍ଗାରେ ପାର ହୋଇ ରଣପୁର ଗାଁରେ ପହଞ୍ଚିଲି । ସେତେବେଳେ ନଦୀରେ ପ୍ରବଳ ପାଣି । ଗାଁ ଭିତରେ ବି ପଶିଯାଇଥାଏ । ମୁଁ ସେଇ ଗାଁର ଯୁବକସଂଘ ଘରକୁ ଗଲି । ଜଣେ ଯୁବକ ମୋ ପରିଚୟ ଜାଣି ସେହି ଗାଁର ମୁଖ୍ୟ ବ୍ୟକ୍ତିଙ୍କୁ କହିବାରୁ ସେ ମୋତେ ତାଙ୍କ ଘରକୁ ଡକାଇ ନେଇଗଲେ । ସେ ମହାଶୟ ବାପାଙ୍କୁ ଜାଣିଥାନ୍ତି । ସେହି ବଂଶ ଓ ବୁନିୟାଦିର ଆମେ ଦାୟାଦ । ରକ୍ତସଂପର୍କ ଏପରି ଟାଣିଲା ଯେ ମୋତେ ତାଙ୍କ ଘରେ ଆରାମରେ ରଖିଲେ । ପରଦିନ ସକାଳୁ ମୁଁ ଅନ୍ୟାସପୁରପାଟ ଦେଇ ଘରକୁ ଆସିଲି । ସେଦିନ ମୁଁ ମନେକଲି ରକ୍ତସଂପର୍କର ମହତ୍ତ୍ୱ କ'ଣ ? ଏଣେ ଗମ୍ଭୁ ସ୍କୁଲବାଲା ମୋତେ ପୁଣି ନେଇ ସ୍କୁଲରେ

ରଖିଲେ । ଦରମା କରିଦେଲେ ମାସକୁ ୫୦ ଟଙ୍କା । ନଭେମ୍ବର ମାସ ବେଳକୁ ଇଣ୍ଟରଭ୍ୟୁ ପାଇଁ ମୋ ପାଖକୁ ଚିଠି ଆସିଲା, କ'ଣ କରିବି, କଟକ ତ ଦେଖି ନାହିଁ । ଯିବି କେମିତି ? ଭୂଗୋଳ ବହିରୁ ପଢ଼ିଥାଏ କଟକ ବିଷୟରେ । ଜୋବ୍ରା ଆନିକଟ ଡେଇଁଗଲେ କଟକ । ତେଣୁ ଜଣେ ସାଙ୍ଗ ପାଖରୁ ସାଇକେଲ ଆଣି ସେହି ସାଇକେଲ ଚଢ଼ି ପଟାମୁଣ୍ଡାଇ ଜଗତପୁର ବନ୍ଧ ଦେଇ ଇଣ୍ଟରଭ୍ୟୁ ଦେବାକୁ ଆସିଲି । ଜଗତପୁରରେ ପହଞ୍ଚିବା ପରେ ଦେଖିଲି ଲୋକେ ସାଇକେଲ ଟେକି ଟେକି ରେଳ ପୋଲ ଉପରେ ଯାଉଛନ୍ତି । ମୁଁ ମଧ ଗଲି । ଏତିକିବେଳେ ଟ୍ରେନ୍ ଆସିଲା । ପୋଲକୁ ଲାଗି ଯେଉଁ ଖୋପଭଳିଆ ସ୍ଥାନ ଥାଏ ଲୋକେ ତାରି ଭିତରେ ରହିଯାଉଥାନ୍ତି । ମୁଁ ମଧ ସେଇଆ କଲି । କଟକ ଆସି ରାଣୀହାଟ ପୋଲ ପାଖରେ ଛିଡ଼ା ହୋଇଥାଏ । ସନ୍ଧ୍ୟା ସମୟ । କୁଆଡ଼କୁ ଯିବି ? କେଉଁଠି ରହିବି ? ହଠାତ୍ ମୋ ସାଙ୍ଗ ପ୍ରବୋଧ ଦେଖାହେଲା । ସେ ମୋତେ ଏପରି ଆସିବାର କାରଣ ପଚାରିଲା । ମୁଁ ତାକୁ ସବୁ କହିଲି । ସେ ମୋତେ ନେଇଗଲା ତା' ଦାଦାଙ୍କ ବସାକୁ । ସେଇଠି ମୁଁ ରହିଲି । ସାଙ୍ଗହୋଇ ଡି.ଇ.ଟି. ଅଫିସ ଦେଖିବାକୁ ଆସିଲୁ । ତା'ପରଦିନ ମୁଁ ଇଣ୍ଟରଭ୍ୟୁ ଦେଲି । ଡି.ଇ.ଟି. ବା ଡିଭିଜନାଲ ଇଂଜିନିୟର ଥାନ୍ତି ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତି । ତାଙ୍କ ନାମ ବି.ଏଲ. ସେନ । ମୁଁ ଇଣ୍ଟରଭ୍ୟୁ ଦେଲି । ଭଲ ହେଲା । ତା'ପରେ ସାଇକେଲରେ ଘରକୁ ଫେରିଆସିଲି । ପୁଣି ସେଇ ସ୍କୁଲ । ଚିଠି ପାଇଲି ଯେ ଚାକିରି ପାଇଁ ମୁଁ ଯୋଗ୍ୟ ବିବେଚିତ ହୋଇଛି । କଲିକତା ଯାଇ ଦୁଇମାସ ଟ୍ରେନିଂ ନେବାକୁ ହେବ । ମୁଁ ସ୍କୁଲରେ ଥାଏ । ଦିନେ ଆମ ଗାଁର ଆଦିକନ୍ଦ କକା ସାଇକେଲରେ ଆସି ମୋ ପାଖରେ ପହଞ୍ଚିଲା । ମୋ ବୋଉ ଡକାଇଛି କହି ମୋତେ ନେଇଆସିଲା । ଗାଁ ପାଖରେ କହିଲେ ମୋର ବାହାଘର ପାଇଁ ଭଦ୍ରଲୋକମାନେ ଆସିଛନ୍ତି । ମୁଁ ତା' ଉପରେ ବିରକ୍ତ ହେଲି । ସ୍କୁଲ ଘରେ ଭଦ୍ରଲୋକମାନେ ବସିଥାନ୍ତି । ମୁଁ ସେଠାକୁ ନ ଯାଇ ସାଙ୍ଗମାନଙ୍କ ସହିତ ଭଲି ଖେଳିଲି । ଜଣେ ଭଦ୍ରବ୍ୟକ୍ତି ମୋତେ ଡାକିବାକୁ ଆସିଲେ । ମୁଁ ତାଙ୍କୁ ଆଗରୁ ଜାଣିଥିଲି । ତାଙ୍କ ନାମ ମାର୍କଣ୍ଡେୟ ପାତ୍ର ।

ମଣ୍ଡଳ କଂଗ୍ରେସ ନିର୍ବାଚନ ବେଳେ ସେ ଆମ ଗ୍ରାମକୁ ପ୍ରିଜାଇଡ଼ିଂ ଅଫିସର ହୋଇ ଆସିଥିଲେ । ମୁଁ ତ ଆମ ଗ୍ରାମର ଯୁବକମାନଙ୍କର ନେତା । ଆମେ ଜଣଙ୍କୁ ସମର୍ଥନ କରୁଥାଉ । ଆମ ତରଫରୁ ଜଣେ ହରିଜନ ସ୍ତ୍ରୀଲୋକକୁ ସେ ଭୋଟ ଦେବାକୁ ମନା କଲେ । ମୁଁ ଯାଇ ତାଙ୍କ ସହିତ ଯୁକ୍ତି କଲି ଓ ସେ ସ୍ତ୍ରୀଲୋକ ଭୋଟ ଦେଲେ । ଭୋଟ ସରିଗଲା ପରେ ରାତିରେ ସେ ସ୍କୁଲରେ ରହିଲେ । ଆମ ଗାଁ ସ୍କୁଲର ଶିକ୍ଷକଙ୍କୁ ସେ ମୋ ବିଷୟରେ ପଚାରିଲେ । ତାଙ୍କଠାରୁ ମୋର ପ୍ରଶଂସା ଶୁଣି ଆଉ ଜଣେ ଦୁଇଜଣଙ୍କୁ ପଚାରି ପରଦିନ ସେ ତାଙ୍କ ଗ୍ରାମକୁ ଚାଲିଗଲେ । ସେ ତାଙ୍କ ଗ୍ରାମରେ ପହଞ୍ଚି ବ୍ରଜକିଶୋର

ପାତ୍ରଙ୍କୁ କହିଲେ– 'ତୁମେ ଏତେ ଜାଗାରେ ଭଉଣୀ ପାଇଁ ବର ଖୋଜୁଛ । ମୁଁ ଚାରିଗାଁରେ ଗୋଟିଏ ପିଲା ଦେଖିଆସିଛି । ତାଙ୍କ ସହିତ ବାହାଘର କର ।' ସେ ମୋର ଏତେ ପ୍ରଶଂସା କଲେ ଯେ ତାଙ୍କ ଗାଁରେ ଆଲୋଚନା ହୋଇ ସ୍ଥିର ହେଲା ଯେ ମୋ ସହିତ ବାହାଘର କରିବେ । ତା'ପରେ ତାଙ୍କ ତରଫରୁ ମଧ୍ୟସ୍ଥ ଆସିଲା ଆମ ଘରକୁ । ମୋ ସାଆନ୍ତ, ପିଇସିପୁଅ ଭାଇ, ମୋ ସାନଭାଇ ଓ ମୋ ସାଙ୍ଗ କାଳିନ୍ଦୀ ଗଲେ କନ୍ୟା ଦେଖିବାକୁ । ସେମାନେ ମନୋନୀତ କରି ଫେରିଲା ପରେ ମୋତେ ଦେଖିବାପାଇଁ ଦଶବାରଜଣ ଆସିଥାନ୍ତି । ଆମର ତ ଘର ନ ଥାଏ, ତେଣୁ ସ୍କୁଲ ଘରେ ବସିଥାନ୍ତି । ଏତେ କଥା ହୋଇଗଲାଣି ମୁଁ ଆଦୌ ଜାଣିନଥାଏ । ତାହା ଛଡ଼ା ବାହାଘର ଗୋଟାଏ କ'ଣ, ସ୍ତ୍ରୀ ପୁରୁଷ ମଧ୍ୟରେ ସଂପର୍କ କ'ଣ ମୁଁ ମଧ୍ୟ ଜାଣି ନ ଥାଏ । ଏ ଦିଗରେ ମୁଁ ଥିଲି ଗୋଟାଏ ନିର୍ବୋଧ । ମାର୍କଣ୍ଡବାବୁ ମୋତେ ଡାକିଲେ ଓ ମୁଁ ସେଇ ଧୂଳିଧୂସରିତ ଅବସ୍ଥାରେ ଗଲି । ମୋତେ କେତେ ପ୍ରଶ୍ନ ପଚାରିଲେ । ମୁଁ ଟେଲିଫୋନ ଅପରେଟର ଚାକିରି ପାଇଛି, ଦରମା କେତେ ପଚାରନ୍ତେ ମୁଁ କହିଲି ସେ ବିଷୟରେ ମୁଁ କିଛି ଜାଣେନା । ଟ୍ରେନିଂ ପରେ ମୁଁ ଚାକିରିରେ ଯୋଗଦେବି । ଦରମା ପାଇଲା ପରେ ଜାଣିବି ଦରମା କେତେ । ଆମ ଗ୍ରାମର ଭଦ୍ରଲୋକମାନେ ଉପସ୍ଥିତ ଥିଲେ । ସେମାନେ ଯୌତୁକ କଥା କହିଲେ । ମୁଁ ସବୁ ଶୁଣି ନୀରବରେ ଉଠିଆସି ଭଲି ଖେଳିଲି । ପୁଣି ମୋତେ ଡାକିଲେ । ମୁଁ ତ ଗାଁରେ ଯୌତୁକ ବିରୋଧୀ ଆନ୍ଦୋଳନ କରୁଥିଲି । ଗଉଡ଼ମାନେ ଆଉ ଶବାରି ବା ପାଲିଙ୍କି କାନ୍ଧେଇବେ ନାହିଁ ବୋଲି କହୁଥିଲି । ତେଣୁ ମୁଁ କିଛି ନ କହି ଉଠିଆସିଲି । ସେହି ଭଦ୍ରଲୋକମାନେ ବାହାରିଲେ ଯିବାପାଇଁ । ଛକରେ ପହଞ୍ଚି ଆମ ଘର ଦେଖିବାକୁ ଗଲେ । ମୁଁ ଏକଥା ଶୁଣି ସେମାନଙ୍କ ପାଖକୁ ଆସି ଅଟକାଇଲି । ମୁଁ ମନାକଲି ଆମ ଘରକୁ ଯିବାପାଇଁ । ଯଦି ଯିବେ ମୋର ତିନୋଟି ସର୍ତ୍ତ ଅଛି ବୋଲି କହିଲି । ପ୍ରଥମ ସର୍ତ୍ତ ମୁଁ ବିଧବାର ପୁଅ । ଏଠୁ ଗଲା ପରେ କେହି କହିବେ ନାହିଁ ଯେ ଗୋଟିଏ ବିଧବାର ପୁଅ ସହିତ ବାହାଘର କରୁଛନ୍ତି । ଦ୍ୱିତୀୟ ସର୍ତ୍ତ– ମୋର ଘର ନାହିଁ । ବାପା ମରିବା ପୂର୍ବରୁ ଯେଉଁ ଅସ୍ଥାୟୀ ଘର କରିଥିଲେ ସେଇଥିରେ ଆମେ ରହୁଛୁ । ସେଇ ଘରେ ଗାଈ ବଳଦ ବନ୍ଧା ହେଉଛନ୍ତି, ଧାନ ଚାଉଳ ଝୋଟ ବିରି ମୁଗ ଓ ଘଷି ମଧ୍ୟ ରହୁଛି । ବସିବା ପାଇଁ ଜାଗା ନାହିଁ । ଘର ଦେଖି ବାହାରେ କହିବେ ନାହିଁ ଯେ– ଛିଃ, ଏ କି ଘର ! ତୃତୀୟ ସର୍ତ୍ତ ହେଉଛି– ମୁଁ ମାତୃକୁଳନାଶନ, ଅର୍ଥାତ୍ ମାଟ୍ରିକ୍ୟୁଲେସନ । ଏଠୁ ଫେରିଗଲା ପରେ କହିବେ ନାହିଁ ଯେ ଗୋଟାଏ ମାଟ୍ରିକ ପିଲା ସହିତ ବାହାଘର କରୁଛୁ । ଏତିକି କହି ମୁଁ ଖେଳିବାକୁ ଚାଲିଗଲି । ସେମାନେ ଆମ ଘର ଦେଖି ଫେରିଗଲେ । ମୋ ବଡ଼ଶଳା ବ୍ରଜକିଶୋର ପାତ୍ର, କଂଗ୍ରେସ ନେତା ଯୁଧିଷ୍ଠିର ପାତ୍ର ଓ ମଧ୍ୟସ୍ଥ ମାର୍କଣ୍ଡେୟ

ପାତ୍ର ତିନିଜଣ ଆମ ଗାଁରୁ ଅଳ୍ପ ବାଟ ଯାଇ ଛିଡ଼ାହୋଇ ରହିଲେ । ଆମ ଗାଁର ଜ୍ୟୋତିଷ ନେତ୍ରାନନ୍ଦ ନାୟକ ଆସୁଥାନ୍ତି । ତାଙ୍କୁ ମୋ କଥା ପଚାରିଲେ । ସେ ଖୁବ୍ ପ୍ରଶଂସା କଲେ ଓ କହିଲେ ଆପଣମାନଙ୍କର ଭାଗ୍ୟରେ ଥିଲେ ତାଙ୍କୁ ବର ରୂପେ ପାଇବେ । ସେମାନଙ୍କ ଅନୁରୋଧକ୍ରମେ ମୋତେ ନେତ୍ରାକକା ଡାକି ଅନୁରୋଧ କଲେ ସେମାନଙ୍କ ପାଖକୁ ଯିବାପାଇଁ । ମୁଁ ଗୋଟିଏ ସାଇକେଲ ଚଢ଼ି ସେମାନଙ୍କ ପାଖକୁ ଆସିଲି । ଡକେଇବାର କାରଣ ପଚାରିଲି । ସେମାନେ ମୋତେ କହିଲେ– 'ମୁଁ ଫୁଲ୍‌ପ୍ୟାଣ୍ଟ ଓ ଫୁଲ୍‌ଜାମା ପିନ୍ଧିବାକୁ ଭଲପାଏ କି ନାହିଁ ?' ପୁଣି ପଚାରିଲେ 'ମୁଁ ରାଲେ ସାଇକେଲ ବା ଅନ୍ୟ କେଉଁ ସାଇକେଲ, କ'ଣ ଚଢ଼ିବାକୁ ଭଲ ପାଏ ? ଫୁଲ୍‌ଜୋତା ବା ସାଣ୍ଡେଲ୍, ଗୋଲ ସାଇଜ ଘଣ୍ଟା ବା ଆୟତକ୍ଷେତ୍ର ପରି ଘଣ୍ଟା କ'ଣ ପିନ୍ଧିବାକୁ ଭଲ ପାଏ ।' ମୁଁ ସବୁ ମନା କରିଦେଲି । କହିଲି– ଆମର ସାଇକେଲ ନାହିଁ । ଯେତେବେଳେ ଯେଉଁ ସାଇକେଲ ପାଏ ଭଲ ଲାଗେ । ଜୋତା ତ ମୁଁ କେବେ ପିନ୍ଧି ନାହିଁ । ଏବେ ଗୋଟାଏ ସ୍ୱଞ୍ଜ ପିନ୍ଧୁଛି । ଭଲ ଲାଗୁଛି । ଘଣ୍ଟା କଥା କିଛି ମୁଁ ଜାଣେ ନାହିଁ । ଫୁଲପ୍ୟାଣ୍ଟ ଓ ଫୁଲଜାମା ମୁଁ କେବେ ପିନ୍ଧି ନାହିଁ । ଧୋତି ପିନ୍ଧୁଛି । ଏହିପରି କହିବାରୁ ସେମାନେ ଚାଲିଗଲେ । ତାଙ୍କ ଗାଁରେ ବସି ଆଲୋଚନା କଲେ ଓ ମୋ ସହିତ କୃଷ୍ଣଚନ୍ଦ୍ର ପାତ୍ରଙ୍କ ଝିଅ ଓ ବ୍ରଜକିଶୋର ପାତ୍ରଙ୍କ ଏକମାତ୍ର ଭଉଣୀ ଯଶୋଦାଙ୍କ ବିବାହ ପାଇଁ ସିଦ୍ଧାନ୍ତ ନେଲେ ।

ଏଣେ ମୋର ଟ୍ରେନିଂ ଆଦେଶ ଆସିଗଲା । ମୁଁ କଲିକତା ଗଲି ଟ୍ରେନିଂ ପାଇଁ । ପ୍ରଥମ ମାସ ମାନୁଏଲ ଟ୍ରେନିଂ । ଶ୍ରେଣୀରେ ମୁଁ ଭଲ କରୁଥିଲି । ଇନ୍‌ଷ୍ଟ୍ରକ୍ଟର ପି.ସି. ଘୋଷ ଶ୍ରେଣୀରେ ଗୀତା ଉପରେ ଆଲୋଚନା କରନ୍ତି । ମୁଁ ତ ପୂର୍ବରୁ ଗୀତା ପଢ଼ିଥାଏ, ତେଣୁ ତାଙ୍କ ସହିତ ଆଲୋଚନା କରେ । ଅନ୍ୟମାନେ ମୋ ପ୍ରତି ଶ୍ରଦ୍ଧାଶୀଳ ହୋଇ ଉଠନ୍ତି । ପୁତୁଲବାଲା ମଣ୍ଡେଲ ବୋଲି ଗୋଟିଏ ଝିଅ ଟ୍ରେନିଂ ନେଉଥାଏ । ସେ ମୋତେ ମନେମନେ ଭଲପାଇ ବସିଲା । ମୁଁ ତାଙ୍କୁ ବୁଝାଇ ଦେଲେ ସେ ପାଠ ବୁଝୁଥିଲା । ଏତିକିବେଳେ ପରୀକ୍ଷା ହେଲା । ମୁଁ ପ୍ରଥମ ହେଲି । ବାହାଘର ପାଇଁ ଘରୁ ଟେଲିଗ୍ରାମ ପାଇଲି । ତେଣୁ ଘରକୁ ଆସିଲି । ଦେଖିଲି ପୁତୁଲବାଲାର ମନଟା ବିଷଣ୍ଣ ହୋଇଗଲା ।

ବାହାଘର ବେଳକୁ ମୋତେ ଏକୋଇଶି ବର୍ଷ ଚାଲୁଥାଏ । ମୁଁ ବାହାହେବାକୁ କଲିକତାରୁ ଆସିଲି । ମୋ ବୋଉ ଚାହୁଁଥାଏ ମୁଁ ପାଲିଙ୍କିରେ ବସି ବାହା ହେବାକୁ ଯିବି । ମୁଁ ମନା କରୁଥାଏ । ବାହାଘର ପୂର୍ବରୁ ସ୍ୱୀକାର ଆସିଲା ରାତି ଅଧବେଳକୁ । ଆମ ଗାଁର ଭଦ୍ରଲୋକ ଓ ଆମ ଭାୟାମାନେ ଆସିଥାନ୍ତି । ମୁଁ ସଂକଳ୍ପରେ ବସିଲି । ମୋତେ ବ୍ରାହ୍ମଣ ମୁଦି ଓ ଚେନ ପିନ୍ଧାଇଦେଇ ମୋ ଆଙ୍ଗୁଠିରେ କୁଶବଟୁ ପିନ୍ଧାଇଦେଲେ ।

ପଞ୍ଝୁ ପୂଜା ହେବ । ହଠାତ୍ ଜଣେ ଲୋକ ଦଉଡ଼ି ଆସି କହିଲା ବିଚରା ନିତ୍ୟାନନ୍ଦ ପରିଡ଼ା ମରିଯିବ । ତାକୁ ହଇଜା ହୋଇଛି । ମୁଁ ସଙ୍ଗେ ସଙ୍ଗେ ମୁଦି ଚେନ ଓ କୁଶବଟୁ ଓହ୍ଲାଇ ଛିଡ଼ା ହୋଇଗଲି । ଯାଇଁ ଦେଖେ ତ ନିତ୍ୟାନନ୍ଦ ପରିଡ଼ାଙ୍କ ଅବସ୍ଥା ସଂକଟପୂର୍ଣ୍ଣ । ସାନ ସାନ ପୁଅ ଝିଅ ଦୁଇଟି । ଉପସ୍ଥିତ ଲୋକେ ଠାକୁରାଣୀ ଭୟରେ ପାଖକୁ ଯାଉ ନ ଥାନ୍ତି । ମୁଁ ଗୋଟିଏ ସାଇକେଲ ନେଇ ଇନ୍ଦୁପୁର ଯାଇ ଡାକ୍ତରଙ୍କୁ ନେଇଆସିଲି । ସେ ସାଲାଇନ୍ ଲଗାଇଲେ, ଇଂଜେକ୍ସନ୍ ଦେଲେ, ଔଷଧ ଦେଲେ । ସବୁ ଖର୍ଚ୍ଚ ମୁଁ ବହନ କଲି । ସେ ଭଲ ହେଲେ । ମୋର ସ୍ୱୀକାର ହେଲା । ମୋ ସାନଭଉଣୀର ଦେଢ଼ଶୁର ଉଦୟନାଥ ପରିଡ଼ା ସବୁ ଦାୟିତ୍ୱ ନେଇଥାନ୍ତି । ମୁଁ ତାଙ୍କୁ କହି କେନ୍ଦ୍ରାପଡ଼ାରୁ ଗୋଟିଏ କାର୍ ମଗାଇଲି । ସେହି କାର୍‌ରେ ମୁଁ ଗଲି । ଅନ୍ୟ ଲୋକେ ମଧ ବିଭିନ୍ନ ଉପାୟରେ ଗଲେ । ବଡ଼ମୂଳ ବସନ୍ତ ଗାଁରେ ପାତ୍ର ସାହିର ଭାରି ନାଁ ଡାକ ଥାଏ । ବଡ଼ ବଡ଼ ଧନୀ ଓ ଚାଷୀବନ୍ଦୀ ଘର । ବିହୁ ଲୋକ ଉଚ୍ଚଶିକ୍ଷିତ । ମୋ ଶ୍ୱଶୁର କୃଷ୍ଣଚନ୍ଦ୍ର ପାତ୍ର ସରଳ, ଧର୍ମପ୍ରାଣ ଓ ବଡ଼ ଅମାୟିକ । ବଡ଼ ଚାଷୀ । ଚାକରବାକର ଥାଆନ୍ତି । ମୋ ବଡ଼ଶଳା ବ୍ରଜକିଶୋର ପାତ୍ର ଭୁବନେଶ୍ୱରରେ ଜଳସେଚନ ବିଭାଗରେ ଆକାଉଣ୍ଟାଣ୍ଟ ଓ ହେଡ଼କ୍ଲର୍କ ଥାଆନ୍ତି । ସାନଶଳା ଚକ୍ରଧର ପାତ୍ର ଇଂଜିନିୟରିଂ ପଢୁଥାନ୍ତି । ଗୋଟିଏ ବୋଲି ଭଉଣୀ । ଭାରି ଅଳିଅଳରେ ବଢ଼ିଥାଏ । ତାକୁ ସେତେବେଳେ ବୟସ ଉଣେଇଶି । ମୁଁ ତାଙ୍କୁ ଦେଖି ନ ଥାଏ । ସେତେବେଳେ ବାହାଘର ପୂର୍ବରୁ ବରକନ୍ୟା ଦେଖାଦେଖି ପ୍ରଥା ପ୍ରଚଳିତ ହୋଇନଥାଏ । ଆମେ ଯେତେବେଳେ ତାଙ୍କ ଗାଁରେ ପହଞ୍ଚିଲୁ ମୋତେ ଦେଖିବା ପାଇଁ ଗାଁ ଲୋକେ ଜମା ହୋଇଗଲେ । ମୋ ଚେହେରା ଖୁବ୍ ସୁନ୍ଦର ଥାଏ । ଲୋକେ କହୁଥାନ୍ତି ବରକୁ କନ୍ୟା ହେଲା ନାହିଁ । ମୋତେ ଗୋଟିଏ ଚାମଦୋଳରେ ବସାଇ ନେବାକୁ ଜିଦି କଲେ । ମୁଁ ମନା କରିଦେଲି । ଯାହା ହେଉ ମୋର ବାହାଘର ସରିଗଲା । ଆମେ ଘରକୁ ଫେରିଲୁ । ସେଇ ଭଙ୍ଗା ଦଦରା ଘରେ ରହିଲୁ । ମୁଁ ଚତୁର୍ଥୀ ପରଦିନ କଲିକତା ଗଲି ଓ ଟ୍ରଙ୍କ କୋର୍ସରେ ଟ୍ରେନିଂ ନେଲି । ସେହି ଶ୍ରେଣୀରେ କେବଳ ୨୨ଜଣ ଝିଅ ଥିଲେ ଓ ମୁଁ ଏକମାତ୍ର ପୁଅ ପିଲା । ମୁଁ ସେମାନଙ୍କ ସହିତ କଥା ହୁଏ ନାହିଁ । ଥରେ ଇନ୍‌ଷ୍ଟ୍ରକ୍ଟର କଲ୍ୟାଣୀ ଘୋଷ ମୋତେ ଲାଜ ନ କରି ଝିଅମାନଙ୍କ ସହିତ ମିଶିବାକୁ କହିଲେ । ଟ୍ରେନିଂ ଶେଷ ହୋଇ ଆସିଲା । ପରୀକ୍ଷାରେ ମୁଁ ମଧ ପ୍ରଥମ ହେଲି । ଶେଷଦିନ ମୁଁ କ୍ଲାସକୁ ଆଗରୁ ଯାଇଥାଏ ଓ ମୋ ଚେୟାରରେ ବସି ବଙ୍ଗଳା ଖବରକାଗଜ ପଢୁଥାଏ । ସେହି ବ୍ୟାଚ୍‌ର ସବୁଠୁ ସୁନ୍ଦରୀ ଝିଅ ଦୀପାଳି ବିଶ୍ୱାସ ଆସି ମୋ ଚେୟାରରେ ହାତ ଦେଇ ଛିଡ଼ାହେଲା ଓ ମୋତେ ବହୁତ ଭଲପାଏ ବୋଲି କହିଲା । ତା'ପରେ ଅନ୍ୟମାନେ ଆସି ମୋତେ ଘେରି ନାନା କଥା କହିଲେ । ମୋତେ କଫି ହାଉସକୁ

ନେଇ ମିଠା ଓ କଫି ପିଆଇଲେ । ତା'ପରେ ମୋତେ କଲିକତା ସହର ବୁଲାଇ କ'ଣ ସବୁ କିଣାକିଣି କଲେ । ଆମେ ସମସ୍ତେ କ୍ଲାସକୁ ଆସିଲୁ । ସେମାନେ ବିଦାୟ ସଭା ଆୟୋଜନ କଲେ । ବିଭାଗୀୟ ଅଫିସରମାନେ ଆସିଲେ । ମୋତେ ଭାଷଣ ଦେବାକୁ କହିଲେ ଓ ମୁଁ ମଧ୍ୟ ଭାଷଣ ଦେଲି । ମୋତେ ରବୀନ୍ଦ୍ରନାଥ ଠାକୁରଙ୍କ 'ଗୀତାଞ୍ଜଳି' ବହି ସହିତ ଷ୍ଟେନ୍‌ଲେସ୍ ଷ୍ଟିଲର ତିଆରି ଗୋଟିଏ ବଡ଼ ଜିନିଷ ଉପହାର ଦେଲେ । ଗୀତାଞ୍ଜଳି ବହିର ପ୍ରଥମ ପୃଷ୍ଠାରେ ଦୀପାଳି ଚାରି ଧାଡ଼ିର କବିତାଟିଏ ଲେଖିଥିଲା । ସେମାନେ ସମସ୍ତେ ଆସି ମୋତେ ହାଓଡ଼ା ଷ୍ଟେସନରେ ଛାଡ଼ି ଦେଇଗଲେ । କିଛିଦିନ ପର୍ଯ୍ୟନ୍ତ ଚିଠି ଦେଉଥିଲେ । ତା'ପରେ ସଂପର୍କ ଛିନ୍ନ ହୋଇଗଲା ।

ମୁଁ ଶିକ୍ଷକତା କରୁଥିବାବେଳେ ଆମ ଗାଁରେ ଗୋଟିଏ ଘଟଣା ଘଟିଲା । ସେଦିନ ଜୋର ବର୍ଷା ହେଉଥାଏ । ଆମେ ଯୁବକମାନେ ଯୁବକସଂଘ ଘରେ ତାସ୍ ଖେଳୁଥାଉ । ରାତି ଦଶଟା ଖଣ୍ଡେ ହେବ । ଆମର ଜଣେ ସାଙ୍ଗ ମହେଶ୍ୱର ନାୟକ ଦଉଡ଼ି ଦଉଡ଼ି ଆସି କାନ୍ଦି କାନ୍ଦି କହିଲେ ତାଙ୍କ ବଡ଼ଭାଇ ବିଷ ଖାଇଦେଇଛି । ଆଚାର୍ଯ୍ୟ ପରୀକ୍ଷାରେ ଫେଲ୍ ହୋଇଯାଇଥିଲେ । ସେତେବେଳେ ମୁଁ ଗମ୍ଭ ସ୍କୁଲରେ ଥିଲାବେଳେ ଲକ୍ଷ୍ମଣ ମିଶ୍ରଙ୍କ ଅନୁଭୂତ ଯୋଗମାଳା ପଢୁଥାଏ । ସେହି ପୁସ୍ତକ ଅନୁସାରେ ଗମ୍ଭରେ ଦୁଇ ତିନିଜଣଙ୍କୁ ଭଲ କରିଥାଏ । ମାୟାକକାଙ୍କଠାରୁ ଶୁଣି ମୁଁ ଆଉ କାଳିନ୍ଦୀ ଦଉଡ଼ି ଦଉଡ଼ି ଗଲୁ । ସେଠି ଦେଖିଲୁ ତାଙ୍କ ପାଖକୁ କେହି ଯାଉନଥାନ୍ତି । ସେ ବାଡ଼େଇ କଚାଡ଼ି ହେଉଥାଏ । ମୁଁ ସଙ୍ଗେ ସଙ୍ଗେ ତାଙ୍କୁ ମାଡ଼ିବସିଲି । ତା' ସାନଭାଇକୁ ସେଇଠି ଲଙ୍ଗଳା ହୋଇ ମୂତିବାକୁ କହିଲି । ସେ ମୂତିଲା ଓ ମୁଁ ଗୋଟିଏ ଟାଟିଆରେ ତା' ମୂତ ଧରି ଦୟାକକାକୁ ପିଆଇ ଦେଲି । ଅଳ୍ପ ସମୟ ପରେ ସେ ଶାନ୍ତ ହେଲା;ମାତ୍ର ମୋର ଭୟ ହେଲା କାଳେ କ'ଣ ହୋଇଯିବ । ଗୋଟିଏ ଟୋକେଇରେ ତାଙ୍କୁ ବସାଇ ଶିକା ଭାର ଯୋଗେ କାଳିନ୍ଦୀ ଓ ମୁଁ ନେଇ ଇନ୍ଦୁପୁର ଡାକ୍ତରଖାନାକୁ ଗଲୁ । ସରକାରୀ ଡାକ୍ତର ମନା କଲା । ପୋଲିସ କେଶ ନ ହେଲେ ସେ ଦେଖିବେ ନାହିଁ । ଡାକ୍ତରମାନେ ଏଇଆ । ଜଣେ ମରିଯାଉଥିବ ତାକୁ ଚିକିତ୍ସା ନ କରି ପୋଲିସ କଥା କହୁଥିବେ । ଆମେ ଦୟାକକାଙ୍କୁ ଘରୋଇ ଡାକ୍ତର ପାଖକୁ ନେଇଆସିଲୁ । ସେ ସଙ୍ଗେ ସଙ୍ଗେ ତାଙ୍କ ପାଟି ବାଟେ ପେଟ ଭିତରକୁ ନଳିଭର୍ତ୍ତି କରି ଔଷଧ ପୂରାଇଲେ । ସେ ବାନ୍ତି କଲେ । ବାନ୍ତି ମଧ୍ୟ ଦେଇ ଅଫିମ ଟେଳାଏ ବାହାରି ଆସିଲା । ସେ ଭଲ ହେଲେ ଓ ସକାଳୁ ସକାଳୁ ଆଣି ତାଙ୍କ ଘରେ ଛାଡ଼ିଲୁ ।

ଏହି ସମୟରେ ଆଉ ଗୋଟିଏ କଥା ଘଟିଲା । ବିନୋବାବାଭେ ଚାଲି ଚାଲି ଆସିଥାନ୍ତି ଆମ ଅଞ୍ଚଳକୁ । ନିକିରାଇଠାରେ ସଭା ହେଲା, ମୁଁ ଯାଇଥାଏ ବିନୋବାଜୀଙ୍କୁ ଦେଖିବା ପାଇଁ । ସିଏ ଗାନ୍ଧିଜୀଙ୍କ ଶିଷ୍ୟ ଓ ସନ୍ନ୍ୟାସୀ ସୁଲଭ ମଣିଷ । ତାଙ୍କ ଭାଷଣ

ମୋ ଯୁବକ ହୃଦୟରେ ପ୍ରଭାବ ପକାଇଲା । ଛୁଆଁ-ଅଛୁଆଁ ଭେଦ ଉଠାଇବାକୁ କହିବା ସଙ୍ଗେ ସଙ୍ଗେ ଭୂମିହୀନମାନଙ୍କୁ ଭୂମି ଦେବାକୁ କହିଲେ । ତାଙ୍କର ପ୍ରଭାବ ଏପରି ପଡ଼ିଲା ଯେ କୁଳସାହି ଗ୍ରାମର ପ୍ରସିଦ୍ଧ ବ୍ୟକ୍ତି ଜଗନ୍ନାଥ ବିଶ୍ୱାଳଙ୍କ ଜମିରୁ ହରିଜନମାନେ ବିରି ଉପାଡ଼ି ନେବାକୁ ଆଗେଇଗଲେ । ଫଳରେ ଫଉଜଦାରୀ ହେଲା । ଜଣେ ହରିଜନ ଲୋକ ମରିଗଲା । ମକଦ୍ଦମା ହେଲା ମାତ୍ର ସେଥିରେ ମର୍ଡ଼ର କରିଥିବା ବ୍ୟକ୍ତି ଖଲାସ ହୋଇଗଲେ । ହରିଜନମାନଙ୍କ ବିରୋଧରେ ଖଣ୍ଡାୟତମାନେ ଏକତ୍ର ହୋଇଗଲେ । ଏହା ମୋତେ ଆଦୌ ଭଲ ଲାଗୁନଥାଏ ।

ଏହାହିଁ ହେଲା ମୋ ଶିକ୍ଷକତା-ଜୀବନ, ଟେଲିଫୋନ ଅପରେଟର ଚାକିରି ପ୍ରାପ୍ତି, ବିବାହର କାହାଣୀ ଓ ଗାଁର ମଙ୍ଗଳକାରୀ କର୍ମ ।

## ଟେଲିଫୋନ ବିଭାଗରେ ଚାକିରି ଓ ମୋର ପାଠପଢ଼ା

ମୁଁ ୧୯୬୦ ମସିହା ଜୁନ ମାସରେ ସମ୍ବଲପୁର ଟେଲିଫୋନ ଏକ୍ସଚେଞ୍ଜ୍‌ରେ ଅପରେଟର୍ ଭାବରେ ଯୋଗ ଦେଲି । ବୋର୍ଡ଼ ପାଖରେ ବସି ମୁଁ କାନ୍ଦି ପକାଇଲି । ମୋ ପାଖରେ ବସିଥାନ୍ତି ବଳରାମ ସାହୁ । ଅତ୍ୟନ୍ତ ଅମାୟିକ ଓ ସ୍ନେହୀ ଲୋକ । ସେ ମୋତେ ଆଶ୍ୱାସନା ଦେଲେ । ଘରୋଇ ଭାବରେ ଆଇ.ଏ. ପରୀକ୍ଷା ଦେବାକୁ କହିଲେ । ମୋତେ ମଧ୍ୟ ବହିଟିଏ ଆଣିଦେଲେ । ସେ ସେଇ ବର୍ଷ ଘରୋଇ ଭାବରେ ଆଇ.ଏ. ପରୀକ୍ଷା ଦେଇ ପାସ୍ କରିଥାନ୍ତି । ତାଙ୍କର ଇଚ୍ଛା ଥାଏ ବି.ଏ. ପଢ଼ି ବି.ଇଡ଼ି. କରି ଶିକ୍ଷକତା କରିବେ । ପରେ ସେ କୁସୁପୁର ହାଇସ୍କୁଲରେ ଶିକ୍ଷକ ହେଲେ । ତାଙ୍କ ସହିତ ମୋର ଘନିଷ୍ଠ ସଂପର୍କ ବଢ଼ିଯାଇଥାଏ । ଏବେ ସେ ଇହଧାମରୁ ବିଦାୟ ନେଇଗଲେଣି । ତାଙ୍କ ପରାମର୍ଶକ୍ରମେ ମୁଁ ଆଇ.ଏ. ପରୀକ୍ଷା ଦେବାକୁ ସ୍ଥିର କଲି ଓ ଅପ୍‌ସନାଲ ବିଷୟ ରୂପେ ଇତିହାସ, ଅର୍ଥନୀତି ଓ ଓଡ଼ିଆ ବିଷୟ ନେଲି ।

ସମ୍ବଲପୁରରେ ମୁଁ ମାତ୍ର ସାତଦିନ ଚାକିରି କରିଥିଲି । ସେତେବେଳେ ସର୍ବଭାରତୀୟ କେନ୍ଦ୍ର ସରକାରୀ କର୍ମଚାରୀମାନେ ଷ୍ଟ୍ରାଇକ୍ କରିଥାନ୍ତି । ସମ୍ବଲପୁର ଏକ୍ସଚେଞ୍ଜ୍ ମଧ୍ୟ ଷ୍ଟ୍ରାଇକ୍ ଯୋଗୁଁ ବନ୍ଦ ରହିଥାଏ । ସମସ୍ତ ଅପରେଟର ଓ ଅନ୍ୟ କର୍ମଚାରୀବୃନ୍ଦ ଆରେଷ୍ଟ ହେଲେ । ମାତ୍ର ସେଠାରେ ଗୋଟାଏ ମିଥ୍ୟା ସମ୍ବାଦ ପ୍ରଚାର ହୋଇଗଲା ଯେ କଟକରେ ଓ ଅନ୍ୟ ସ୍ଥାନରେ ଷ୍ଟ୍ରାଇକ୍ ବନ୍ଦ ହୋଇଗଲାଣି । ଆମ ସଂପାଦକ ଏକଥା ଶୁଣି ସମ୍ବଲପୁରରୁ ଷ୍ଟ୍ରାଇକ୍ ବନ୍ଦ କରିଦେଲେ । ମାତ୍ର କଟକରେ ଷ୍ଟ୍ରାଇକ୍ ଚାଲିଥାଏ । ମୁଁ ନୂଆ ହୋଇଥିବାରୁ ମୋତେ ସମ୍ବଲପୁରରୁ କଟକ ଡେପୁଟେସନରେ ପଠାଇ ଦେଲେ । ମୁଁ କଟକ ଏକ୍ସଚେଞ୍ଜରେ

ଯୋଗ ଦେଲି । ଚାରି ପାଞ୍ଚ ଦିନ ପରେ ଷ୍ଟ୍ରାଇକ୍ ବନ୍ଦ ହୋଇଗଲା । ମୁଁ ସମ୍ବଲପୁରକୁ ଫେରିଯିବାର କଥା । ମନଦୁଃଖରେ ମୁଁ ଡି.ଇ.ଟି.ଙ୍କ ପାଖକୁ ଗଲି । ତାଙ୍କୁ କାନ୍ଦି କାନ୍ଦି କହିଲି ଚାକିରି ଛାଡ଼ି ଦେବାକୁ । ସେ ମୋତେ କଟକରେ ରହିବାକୁ କହିଲାରୁ ମୁଁ ରାଜି ହୋଇଗଲି । ତାଙ୍କର ଅର୍ଡ଼ର ଅନୁସାରେ କଟକ ଏକ୍ସଚେଞ୍ଜରେ କାର୍ଯ୍ୟ କଲି । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ କଟକରେ ଥାଏ । ମଙ୍ଗଳାବାଗ ନିକଟରେ ଯେଉଁଠି ବ୍ଲଡ଼ବ୍ୟାଙ୍କ ହୋଇଛି ତା'ରି ପାଖରେ ବର୍ଦ୍ଧମାନ କୋଠାରେ ଅଫିସ ହେଉଥାଏ । ଖବରକାଗଜରେ ବାହାରିଥିଲା ଯେ ସେ ବର୍ଷ ଆଇ.ଏ. ପରୀକ୍ଷା ଶେଷ ବର୍ଷ । ତା'ପରେ ପ୍ରିୟୁନିଭରସିଟି ହୋଇଯିବ । ତେଣୁ ସାରା ଓଡ଼ିଶାରୁ ବହୁତ ପିଲା ଆଇ.ଏ. ପରୀକ୍ଷା ଦେବାକୁ ଫର୍ମ ପୂରଣ କରିଥାନ୍ତି । ଆମ ଅଫିସରେ ବାରଜଣ ଫର୍ମ ପୂରଣ କଲେ । ମୁଁ ମଧ୍ୟ ଫର୍ମ ପୂରଣ କରି ୟୁନିଭରସିଟି ଅଫିସରେ ଦାଖଲ କରିଦେଲି । ମୁଁ ପରୀକ୍ଷା ଦେଉଛି ବୋଲି କାହାକୁ ଜଣାଇ ନ ଥାଏ । ମୁଁ ରହୁଥାଏ ରାଉସାପାଟଣାର ଅନନ୍ତ ଭବନ ମେସ୍‌ରେ । ସେହି ମେସ୍‌ରେ ମଧ୍ୟ ଦୁଇତିନିଜଣ ପରୀକ୍ଷା ଦେବାକୁ ଫର୍ମ ପୂରଣ କରିଥାନ୍ତି । କେହି ଜାଣିପାରିଲେ ନାହିଁ ମୁଁ ପରୀକ୍ଷା ଦେବି ବୋଲି । ମେସ୍ ଘରଟିର ମାଲିକ ପ୍ରାଣକୃଷ୍ଣ ଦେବତା । ସାଲେପୁର ପାଖରେ ତାଙ୍କର ଘର । ତାଙ୍କର ଗୋଟିଏ ସ୍ୱତନ୍ତ୍ର ରୁମ୍ ଥାଏ । ସେଠି ଗୋଟିଏ ବଡ଼ ଖଟ ପଡ଼ିଥାଏ । ଚେୟାର, ବେଞ୍ଚ ଓ ଟେବୁଲ ଥାଏ । ସେ କେବେ ଆସିଲେ ସେହି ରୁମ୍‌ରେ ରହନ୍ତି । ଦିନେ ଅଧେ ରହି ଗାଁକୁ ଚାଲିଯାଆନ୍ତି । ସେ ମୋତେ ଭାରି ସ୍ନେହ କରନ୍ତି । ମୋର ପାଠପଢ଼ା କଥା ଜାଣି ସେ ତାଙ୍କ ରୁମରେ ରହି ପଢ଼ାପଢ଼ି କରିବାକୁ ମୋତେ କହିଲେ ଓ ତାଙ୍କ ରୁମର ଚାବି ମୋତେ ଦେଇଦେଲେ । ସେହି ରୁମରେ ମୁଁ ରହିଲି ।

ଫର୍ମ ପୂରଣ ତ କରି ଦେଇଛି । ପଢ଼ିବି କ'ଣ ? ମୁଁ ସିଲାବସ କ'ଣ ଜାଣେ ନାହିଁ । କେବଳ ଭରସା ଥାଏ ଇତିହାସ ପାଠ ତ ହାଇସ୍କୁଲରେ ପଢ଼ିଥିଲି । ସେଇ ପାଠ କେବଳ ଇଂରାଜୀରେ ଲେଖିବି । ଓଡ଼ିଆ ବିଷୟ ହୋଇଯିବ ବୋଲି ଭାବିଲି । ଇଂରାଜୀରେ ତିନୋଟି ପେପର ଥାଏ । ତୃତୀୟ ପେପରଟି ସଂପୂର୍ଣ୍ଣ ବାହାର ବିଷୟକ । ପ୍ରବନ୍ଧ, ପତ୍ରଲିଖନ, ଗ୍ରାମାର, ପ୍ରେସି, ଅନୁବାଦ ଇତ୍ୟାଦି । କେବଳ ପ୍ରଥମ ଦୁଇଟି ପତ୍ର ବହି ବିଷୟକ । ପ୍ରଥମ ପତ୍ର ଗଦ୍ୟ ଓ ଦ୍ୱିତୀୟ ପତ୍ର କବିତା । ମୁଁ ନୂଆ ସିଲାବସ୍ କ'ଣ ହୋଇଥିଲା ଜାଣି ନ ଥିଲି । ପୁରୁଣା ସିଲାବସ୍ ଦେଖି ପଢୁଥିଲି । ଇକୋନମିକ୍ସ ଥିଲା ମୋ ପାଇଁ ସଂପୂର୍ଣ୍ଣ ନୂଆ । ଆମ ଗାଁ ପାଖରେ ଜଣେ ହିନ୍ଦୀ ଶିକ୍ଷକ ସେ କଟକରେ ରହି ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାନ୍ତି । ଖ୍ରୀଷ୍ଟ କଲେଜର ପ୍ରଫେସର ଜାକବ ପୋଷ୍ଟାଲ କୋଚିଂ ଦେଉଥାନ୍ତି । ତାଙ୍କଠାରୁ ସେ ଶିକ୍ଷକ ନୋଟ ଆଣିଥାନ୍ତି । ମୁଁ ତାଙ୍କ ପାଖରୁ

ଇକୋନମିକ୍ସ ନୋଟ ନେଇ ପଢ଼ିଲି ଓ କିଛି ଟିପି ଦେଲି । ସେ ବର୍ଷ କଟକ ସହରର ସବୁ ସ୍କୁଲ, କଲେଜ ସେଣ୍ଟର ହୋଇଥାଏ । ମୋର ସେଣ୍ଟର ଥିଲା ମେଡ଼ିକାଲ କଲେଜ । ମୁଁ ସେଇଠି ପରୀକ୍ଷା ଦେଲି । ଇଂରାଜୀ ପତ୍ରରେ ନୂଆ କୋର୍ସରୁ ପ୍ରଶ୍ନ ଆସିଲା । କ'ଣ କରିବି ? ଭଗବାନ୍‌ଙ୍କୁ ଡାକି ଉତ୍ତର ଦେଲି । ସବୁ ମୋର ଅନୁମାନଭିତ୍ତିକ । ଗୋଟିଏ 'ଭିଲେଜ ସ୍କୁଲ ମାଷ୍ଟର' କବିତାରୁ ପ୍ରଶ୍ନ ଓ ଅନ୍ୟଟି ଗଦ୍ୟର 'ମ୍ୟାନ ଇନ୍ ବ୍ଲାକ୍'ରୁ ପ୍ରଶ୍ନ । ସେ ବିଷୟ ତ ପଢ଼ି ନାହିଁ । ଲେଖିବି କ'ଣ ? ମୋ ଆଖି ଆଗରେ ଭାସିଉଠିଲା ମୋ ଚାଟଶାଳୀ ପଢ଼ାର ଦୃଶ୍ୟ, ଅବଧାନେ କୀର୍ତ୍ତନ ମାଷ୍ଟ୍ରେଙ୍କ ବେତ, ପିଲାଙ୍କୁ ବଗିଚା କାମ କରାଇବାର ଦୃଶ୍ୟ, ବଗିଚାର ଦୃଶ୍ୟ, ଗାଁଲୋକଙ୍କ ସହିତ କଥାବାର୍ତ୍ତା କରିବାର ଦୃଶ୍ୟ ଇତ୍ୟାଦି । ଅପରପକ୍ଷରେ ବାପାଙ୍କର ଗରିବ ଲୋକଙ୍କୁ ବୋଉକୁ ଲୁଚାଇ ସାହାଯ୍ୟ କରିବାର କାହାଣୀ, ବାହାରକୁ ଟାଣ କରି କହୁଥିବେ ପରିଶ୍ରମ କର, ଏଣେ ଲୁଚେଇ ଦେଉଥିବେ । ଏଇଆ ଭାବି ମୁଁ ଦୁଇଟିଯାକ ପ୍ରଶ୍ନର ଉତ୍ତର ଇଂରାଜୀ ଭାଷାରେ ଲେଖିଦେଲି । ସେତେବେଳେ ପରୀକ୍ଷା ଫଳ 'ସମାଜ'ରେ ନାମ ସହିତ ବାହାରୁଥିଲା । ପରୀକ୍ଷାଫଳ ବାହାରିବା ପୂର୍ବରୁ ମୁଁ ସାଇକେଲରେ ଗାଁକୁ ପଳାଇଲି । କାରଣ ମୋର ଧାରଣା ଥାଏ ମୁଁ ନିଶ୍ଚୟ ଫେଲ ହୋଇଥିବି । ଗୋଟାଏ ଭରସା ଥାଏ ଯେ ମୋ ପରୀକ୍ଷା ଦେବା କଥା ତ କେହି ଜାଣି ନାହାନ୍ତି, ମୁଁ ଫେଲ୍ ହେଲେ ମୋତେ ଲାଜ ଲାଗିବ ନାହିଁ । ଯେଉଁଦିନ ପରୀକ୍ଷା ଫଳ ବାହାରିଲା ସେଇ ଦିନ ମୁଁ ଘରୁ ସାଇକେଲରେ ଆସୁଥାଏ । ପୀରବଜାର ପାଖରେ ମୋର ଜଣେ ଟେଲିଫୋନ ଅପରେଟର ବନ୍ଧୁ ମୁରଲୀଧର ସେଠୀ କଟକ ଆଡୁ ସାଇକେଲରେ ଆସି ସେଇଠି ପହଞ୍ଚିଗଲେ । ମୋତେ ଦେଖି ଡାକ ପକାଇଲେ । ମୁଁ ତାଙ୍କ ପାଖକୁ ଯିବାରୁ ସେ ବହୁତ ଖୁସି ହୋଇ ମୋତେ କୁଣ୍ଢାଇ ପକାଇଲେ । ମୋତେ କହିଲେ ମୁଁ ଆଇ.ଏ. ପରୀକ୍ଷାରେ ପାସ୍ କରିଛି । ଅଫିସର ସମସ୍ତେ ଫେଲ ହୋଇଯାଇଛନ୍ତି । ମୁଁ ଏକଥା ବିଶ୍ୱାସ କରିପାରିଲି ନାହିଁ । ମନେମନେ ଖୁସି ହେଲି । ଜଗତପୁରରେ ପହଞ୍ଚି 'ସମାଜ' କିଣିଲି । ମୋ ନାଁ ଦେଖି ମୁଁ ବହୁତ ଖୁସି ହେଲି । ସେଇଠି ଛିଡ଼ା ହୋଇ ଜଗନ୍ନାଥଙ୍କୁ ପ୍ରଣାମ କଲି ।

କଟକ ଆସିଲି । ମେସ୍‌ରେ ପହଞ୍ଚି ଶୁଣିଲି ଯେଉଁମାନେ ପରୀକ୍ଷା ଦେଇଥିଲେ ସମସ୍ତେ ଫେଲ୍ ହୋଇଯାଇଛନ୍ତି । ଆଇ.ଏ. ପରୀକ୍ଷା ଫଳ ବାହାରିବା ପୂର୍ବରୁ ମୁଁ ଏଲ.ଆଇ.ସି. କ୍ଲର୍କ ପରୀକ୍ଷା, ଷ୍ଟେଟବ୍ୟାଙ୍କ କ୍ଲର୍କ୍ ପରୀକ୍ଷା, ରେଲୱେ କ୍ଲର୍କ୍ ପରୀକ୍ଷା ଓ ଆମ ଟେଲିଫୋନ ବିଭାଗର ଇଂଜିନିୟରିଂ ସୁପରଭାଇଜର ପରୀକ୍ଷା ମଧ୍ୟ ଦେଇଥିଲି । ଆଇ.ଏ. ପରୀକ୍ଷା ଫଳ ବାହାରିବା ସଙ୍ଗେସଙ୍ଗେ ଏସବୁ ଫଳ ମଧ୍ୟ ବାହାରିଗଲା । ସବୁଥିରେ ମୁଁ କୃତକାର୍ଯ୍ୟ ହୋଇଥାଏ । ପ୍ରଥମେ ଏଲ.ଆଇ.ସି.ରୁ ନିଯୁକ୍ତି ଆଦେଶ

ଆସିଲା ସୁନ୍ଦରଗଡ଼ରେ ଜଏନ୍ କରିବା ପାଇଁ । ମୁଁ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଲି । ପ୍ରଥମେ ତ ମୁଁ ଶିକ୍ଷକ ହୋଇଥିଲି । ଶିକ୍ଷକତା ପ୍ରତି ମୋର ଭାରି ମମତା ଜାତ ହୋଇଥାଏ । ତେଣୁ ସିଦ୍ଧାନ୍ତ କଲି ବି.ଏ. ପଢ଼ି ଟ୍ରେନିଂ ନେଇ ଶିକ୍ଷକ ହେବି । ଇଏ ହେଉଛି ୧୯୬୧ ମସିହା କଥା । ସେ ବର୍ଷ ମୁଁ ଦ୍ୱନ୍ଦ୍ୱରେ ଛଟପଟ ହୋଇ କିଛି କରିପାରିଲି ନାହିଁ । ପରବର୍ଷ ୧୯୬୨ ମସିହାରେ ମୁଁ କଟକ ଖ୍ରୀଷ୍ଟ କଲେଜରେ ଓଡ଼ିଆ ଅନର୍ସ ନେଇ ବି.ଏ.ରେ ନାମ ଲେଖାଇଲି ।

ସେତେବେଳେ କଟକରେ ମାତ୍ର ଚାରୋଟି କଲେଜ । ରେଭେନ୍ସା କଲେଜ, ଶୈଳବାଳା ମହିଳା ମହାବିଦ୍ୟାଳୟ, ଖ୍ରୀଷ୍ଟ କଲେଜ ଓ ଷ୍ଟୁଆର୍ଟ କଲେଜ । ଖ୍ରୀଷ୍ଟ କଲେଜ ଏକମାତ୍ର ସକାଳୁଆ ହୁଏ । ଚାକିରିଆମାନଙ୍କର ସେଇ କଲେଜରେ ପଢ଼ିବାକୁ ସୁବିଧା ହୁଏ । ମୁଁ ସେଇ କଲେଜରେ ପଢ଼ିଲି । ଓଡ଼ିଆ ବିଷୟରେ ଆମକୁ ପଢ଼ାଉଥାନ୍ତି ଶ୍ରୀଧର ଦାସ, ପଠାଣି ପଟ୍ଟନାୟକ, ଦେବେନ୍ଦ୍ରନାଥ ମହାନ୍ତି, ମୃତ୍ୟୁଞ୍ଜୟ ନାୟକ, ଚନ୍ଦ୍ରଶେଖର ମିଶ୍ର ପ୍ରମୁଖ । ପଠାଣିବାବୁଙ୍କ ପଢ଼ାଇବା ଶୈଳୀ ମୋତେ ମୁଗ୍ଧ କରୁଥାଏ । ତାଙ୍କୁ ମୁଁ ମୋର ପ୍ରକୃତ ଗୁରୁ ମନେକଲି । ଦେବେନ୍ଦ୍ରବାବୁଙ୍କ ସ୍ନେହ ମୁଁ ଭୁଲିପାରେ ନାହିଁ । ଇଂରାଜୀ ବିଷୟ ପଢ଼ାଉଥିଲେ ପ୍ରଫେସର ବାନାର୍ଜୀ, ଶୈଲେନ ଚାଟାର୍ଜୀ ଓ ମନୋଜ ଦାସ । ମନୋଜବାବୁ ଗଦ୍ୟ ପଢ଼ାନ୍ତି । ସେତେବେଳକୁ ସେ ଶ୍ରୀଅରବିନ୍ଦ ଦର୍ଶନରେ ପ୍ରଭାବିତ ହୋଇଥାନ୍ତି । ଶ୍ରେଣୀକୁ ଆସିଲାବେଳେ କେଉଁ ଦିନ ମୁଣ୍ଡ କୁଣ୍ଡାଇ ନ ଥାନ୍ତି, ଜାମାରେ ବୋତାମ ଲଗାଇ ନ ଥାନ୍ତି । ତାଙ୍କ ପଢ଼ା ମୋତେ ଆନନ୍ଦ ଦେଉଥାଏ । ଥରେ ସେ ବେକନ୍ଙ୍କ ଇଂରାଜୀ ପ୍ରବନ୍ଧ ଅନ୍ ଟ୍ରୁଥ୍ ପଢ଼ାଉଥିଲେ । ସତ୍ୟ କିପରି ଲୁଚି ରହିଥାଏ, କିପରି ସତ୍ୟକୁ ଖୋଜିବା ପାଇଁ ଆକର୍ଷଣ ବଢୁଥାଏ ଇତ୍ୟାଦି ପ୍ରସଙ୍ଗ ପଢ଼ାଇବା ସହିତ ସୁନାଖଣିରୁ ସୁନାକୁ ବାହାର କରିବା ପ୍ରସଙ୍ଗକୁ ଏପରି ଭାବରେ ବୁଝାଇଲେ ଯେ ତାହା ମୋ ଉପରେ ଗଭୀର ପ୍ରଭାବ ପକାଇଥିଲା । ଅର୍ଥନୀତି ପାଠ ପଢ଼ାଉଥିଲେ ସୁବ୍ରମଣ୍ୟମ୍ ସାର୍, ଦୟାନିଧି ସାମନ୍ତରାୟ, ବସନ୍ତ କୁମାର ଜେନା ପ୍ରମୁଖ ।

ଖ୍ରୀଷ୍ଟ କଲେଜରେ ପଢୁଥିଲାବେଳେ ମୁଁ ଶରତଚନ୍ଦ୍ର ବେହେରାଙ୍କ ଇତିହାସ ଶ୍ରେଣୀରେ ବସି ଶୁଣେ । ବୈଦିକ ଯୁଗର ଇତିହାସକୁ ସେ ଏତେ ସୁନ୍ଦର ଭାବରେ ପଢ଼ାନ୍ତି ତାହା ଶୁଣି ମୁଁ ତନ୍ମୟ ହୁଏ । ପରବର୍ତ୍ତୀ କାଳରେ ଯେଉଁ ବେଦବେଦାନ୍ତ ଇତ୍ୟାଦି ପଢ଼ିଲି ତାହା ତାଙ୍କର ପ୍ରେରଣା ବୋଲି ମୁଁ ମନେକରେ । ସେତେବେଳେ ସେ ଓଡ଼ିଶା ଇତିହାସର ଶୈଳୋଦ୍‌ଭବ ବଂଶ ସଂପର୍କରେ ଗବେଷଣା କରି ପିଏଚ୍.ଡି. ଉପାଧି ପାଇଥିଲେ । ସେ ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ପ୍ରଫେସର ହୋଇ ଗଲେ ଓ ତାଙ୍କର ଅକାଳ ବିୟୋଗ ହୋଇଗଲା । ବି.ଏ. ପଢୁଥିଲାବେଳେ ମୁଁ ପୁନର୍ବାର ଲେଖାଲେଖି

କଲି । ମାଟ୍ରିକ ପଢ଼ିବାବେଳେ କବିତା ଲେଖୁଥିଲି । ଗମୁ ମାଇନର ସ୍କୁଲରେ ଥିଲାବେଳେ ରାତି ଓ ଛୁଟି ସମୟରେ ନିକଟସ୍ଥ ବଣକୁ ଚାହିଁ କବିତା ଲେଖୁଥିଲି । କେତେ ଅନାବନା କବିତା । ଦୁଇଟି କାବ୍ୟ ଲେଖିଥିଲି- ଗୋଟିଏ ବାଳଭକ୍ତ ଧ୍ରୁବ ଓ ଅନ୍ୟଟି ବାଳଭକ୍ତ ପ୍ରହ୍ଲାଦ । ଭାଗବତର ଏହି ଦୁଇ ଚରିତ୍ର ମୋତେ ବହୁତ ଭଲ ଲାଗେ । ସେମାନଙ୍କର ସତ୍ୟନିଷ୍ଠତା, ଭଗବାନ୍‌ଙ୍କ ପ୍ରତି ଏକାଗ୍ରତା ଓ ନିର୍ଭୀକତା ମୋତେ ଉଦ୍‌ବୁଦ୍ଧ କରେ । କାବ୍ୟ ଦୁଇଟି ବିଭିନ୍ନ ରାଗରାଗିଣୀରେ ରଚିତ । କଟକ ଆସିଲା ପରେ ମୁଁ କଟକ ବେତାର କେନ୍ଦ୍ରର ପ୍ରମୁଖ ଅଧିକାରୀ ସୁରେନ୍ ମହାନ୍ତିଙ୍କ ଘରେ ତାଙ୍କ ଦୁଇ ପୁଅଙ୍କୁ ଅଙ୍କ ପଢ଼ାଇଲି । ସୁରେନ୍ ବାବୁଙ୍କ ଘର ଆମ ଗାଁ ନିକଟବର୍ତ୍ତୀ ଚଉଦକୁଲାଟରେ । ଖାନଦାନି ବୁନିୟାଦି ଘର । ଜଗନ୍ନାଥ ମହାନ୍ତି ସେହି ବଂଶର । ସେ ଜିଲାଜଜ୍ ହୋଇ ଅବସର ନେଇଥିଲେ । ସୁରେନ୍‌ବାବୁ ମୋତେ ଭାରି ସ୍ନେହ କରନ୍ତି । ସେ ମଧ୍ୟ ଜଣେ ନାଟ୍ୟକାର । ତାଙ୍କ 'ବେଗମ୍ କୋଠି' ନାଟକ ମୁଁ ପଢ଼ିଥାଏ । ତାଙ୍କୁ ମୋ କାବ୍ୟ ଦୁଇଟି ସଂଶୋଧନ କରିବାକୁ ଦେଲି । ସେ ପ୍ରଚୁର ମଦ୍ୟପାନ କରନ୍ତି । ମୋ କାବ୍ୟ ଦୁଇଟି କେଉଁଠି ହଜାଇଦେଲେ । ମୁଁ ଆଉ ପାଇଲି ନାହିଁ । ମନ ଦୁଃଖ ହେଲା । ଆଉ ସେପରି ଲେଖିପାରିଲି ନାହିଁ ।

ମୋ ଭିତରେ ସାହିତ୍ୟପ୍ରାଣତା ସୁପ୍ତ ହୋଇଥିଲା । ଖ୍ରୀଷ୍ଟ କଲେଜରେ ପ୍ରବନ୍ଧ ପ୍ରତିଯୋଗିତା ପାଇଁ ପ୍ରବନ୍ଧଟିଏ ଦେଲି । ମୁଁ ଦ୍ୱିତୀୟ ସ୍ଥାନ ଅଧିକାର କଲି । କବିତାଟିଏ ଲେଖି କଲେଜ ମାଗାଜିନ୍‌କୁ ଦେଲି । ସେହି କବିତା ବାହାରିଲା । ପତ୍ରିକାରେ ଦେଖିଲି- ସଂପାଦକ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ ଓ ସହ-ସଂପାଦକ ମୋ ନାମ । ମୁଁ ଖୁସି ହୋଇଗଲି । ଅନୁଭବ କଲି ପଠାଣି ସାର୍‌ଙ୍କର ମୋ ପ୍ରତି ଥିବା ଶ୍ରଦ୍ଧାକୁ । ଏପର୍ଯ୍ୟନ୍ତ ପଠାଣିବାବୁଙ୍କୁ ମୁଁ ମୋର ପୂଜ୍ୟ ଗୁରୁ ମନେକରେ । ଦେଖାହେଲେ ତାଙ୍କ ପାଦ ଛୁଇଁ ପ୍ରଣାମ କରେ । ବି.ଏ. (ଅନର୍ସ)ରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ହେଲି । ତା'ପରେ ମୁଁ ରେଭେନ୍ସା କଲେଜରେ ଓଡ଼ିଆ ବିଭାଗରେ ନାମ ଲେଖାଇଲି ୧୯୬୪ ମସିହାରେ । ଏଣେ ମୁଁ ଟେଲିଫୋନ ବିଭାଗରେ ଚାକିରି କରିଥାଏ । ଗୋଟିଏ ସୁବିଧା ଥାଏ- ଅପରେଟର ଚାକିରିରେ ବିଭିନ୍ନ ସିଫ୍ଟ ଥିବାରୁ ମୁଁ ବନ୍ଧୁମାନଙ୍କ ସହ ଡିଉଟି ବଦଳାଇ ଦିନ ୩ଟାରୁ ଓ ରାତି ୧୦ଟାରୁ ଡିଉଟି କରେ । ତେଣୁ ରେଭେନ୍ସା କଲେଜରେ ପାଠ ପଢ଼ିବାରେ ଅସୁବିଧା ହେଲା ନାହିଁ । ଭାରି କଷ୍ଟ ହୁଏ । ଏଣେ ପାଠପଢ଼ା ତେଣେ ଚାକିରି । ମୁଁ ପୁଣି ସେମିନାର ସେକ୍ରେଟାରୀ ହେଲି । ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟକ୍ଷ ପ୍ରଫେସର ବଂଶୀଧର ସାମନ୍ତରାୟ । କଲେଜର ମହତ୍ତ୍ୱ ଓ ମହିମା କହିଲେ ନ ସରେ । ସାରା ଓଡ଼ିଶାରେ କାହିଁକି ଭାରତବର୍ଷରେ ମଧ୍ୟ ଏହି କଲେଜର ଗୌରବ ଥାଏ ।

କଲେଜର ଅଧ୍ୟାପକମାନଙ୍କୁ କଟକ ସହରରେ ଭାରି ସମ୍ମାନ ଦେଉଥିଲେ । କଲେଜ ଭିତରେ ଥିବା ଫୁଲବଗିଚା, ସୂର୍ଯ୍ୟଘଡ଼ି, କନିକା ଲାଇବ୍ରେରୀ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥାଏ । ମୁଁ ରେଭେନ୍ସା କଲେଜରେ ପଢ଼ିଲାବେଳେ ସେ କଲେଜର ଇତିହାସ ଜାଣିଲି । ୧୮୬୮ ମସିହାରେ ପ୍ରତିଷ୍ଠିତ କଟକ କଲେଜ କିପରି ଟି. ରେଭେନ୍ସାଙ୍କ ନାମରେ ନାମିତ ହୋଇ ରେଭେନ୍ସା କଲେଜ ହେଲା, କିପରି ସେହି କଲେଜରେ ଖ୍ୟାତନାମା ପ୍ରଫେସରମାନେ ପାଠ ପଢ଼ାଉଥିଲେ ଓ ନାନା ବିଷୟରେ ଲେଖାଲେଖି କରୁଥିଲେ, ପଶ୍ଚିମ ଛାତ୍ରାବାସ ଓ ପୂର୍ବ ଛାତ୍ରାବାସରେ ରହି ଛାତ୍ରମାନେ କିପରି ଜାତୀୟ ମୁକ୍ତି ସଂଗ୍ରାମରେ ଭାଗ ନେଉଥିଲେ, ପଶ୍ଚିମ ଛାତ୍ରାବାସରେ କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ଶରତ ମୁଖାର୍ଜୀ, ହରିହର ମହାପାତ୍ର ଓ ଅନ୍ନଦାଶଙ୍କର ରାୟ ପ୍ରମୁଖ ଛାତ୍ରମାନେ ରହି କିପରି ହାତଲେଖା ପତ୍ରିକା 'ଅବକାଶ' ବାହାର କରୁଥିଲେ ଓ ସବୁଜ ସାହିତ୍ୟ ସମିତି ଗଢ଼ିଥିଲେ ଇତ୍ୟାଦି ନାନା ବିଷୟରେ ଜାଣିଲି । ଜାଣିଲି ମଧ୍ୟ ପ୍ରଫେସର ମୋହିନୀମୋହନ ସେନାପତି, ବିପିନବିହାରୀ ରାୟ, ରତ୍ନାକର ପତି, ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରାଣକୃଷ୍ଣ ପରିଜା, ବଂଶୀଧର ସାମନ୍ତରାୟ, କରୁଣାକର କର ପ୍ରମୁଖ ବହୁ ବିଦ୍ୱାନ୍ ପ୍ରଫେସରଙ୍କ ସଂପର୍କରେ ନାନା କଥା । ସେହି କଲେଜ ଅଛି; ଏବେ ତାହା ବିଶ୍ୱବିଦ୍ୟାଳୟ ହୋଇଛି ମାତ୍ର ଅତୀତର ସେ ଗାମ୍ଭୀର୍ଯ୍ୟ ନାହିଁ, ମର୍ଯ୍ୟାଦା ନାହିଁ । ବରଂ ତାହାର ଯେ ଅବକ୍ଷୟ ହେଉଛି କହିଲେ ବୋଧହୁଏ ସତ୍ୟର ଅପଳାପ ହେବ ନାହିଁ ।

ଏମ୍.ଏ. ପଢ଼ିଲାବେଳକୁ କଟକରୁ ବିଶ୍ୱବିଦ୍ୟାଳୟ ଭୁବନେଶ୍ୱରକୁ ଉଠିଗଲା । ଓଡ଼ିଆ ବିଭାଗର ମୁଖ୍ୟ ଥାଆନ୍ତି ପ୍ରଫେସର ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ । ଋଷିପ୍ରତିମ ବ୍ୟକ୍ତି । ଭାରି ସରଳ ମାତ୍ର ଜ୍ଞାନଦୀପ୍ତ ମଣିଷ । ସେ ଲଣ୍ଡନରୁ ଭାଷାତତ୍ତ୍ୱ ଉପରେ ଗବେଷଣା କରି ପିଏଚ୍.ଡି. ପାଇଥାନ୍ତି । ଆମକୁ ସେ ଭାଷା ପଢ଼ାନ୍ତି, ପାଲି ପ୍ରାକୃତ ପଢ଼ାନ୍ତି । ପିଲାମାନଙ୍କ ପ୍ରତି ସମଦୃଷ୍ଟି । ଡକ୍ଟର କୁଞ୍ଜବିହାରୀ ଦାଶ ଆମକୁ ଲୋକସାହିତ୍ୟ ପଢ଼ାନ୍ତି । ସେ ଥିଲେ ଜଣେ ଆଧୁନିକ କବି । ବହୁ କାବ୍ୟକବିତା ତାଙ୍କର ପ୍ରକାଶ ପାଇଥାଏ । ୧୯୫୧ ମସିହାରେ ସେ ଶାନ୍ତିନିକେତନ ବିଶ୍ୱଭାରତୀରେ ଓଡ଼ିଆ ବିଭାଗରେ ଅଧ୍ୟାପକ ହେଲେ । ବସ୍ତୁତଃ ସେ ବିଶ୍ୱଭାରତୀ ଓଡ଼ିଆ ବିଭାଗର ନବ ସ୍ରଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଇଠି ସେ ଓଡ଼ିଆ ଲୋକଗୀତି ଓ ଲୋକକାହାଣୀ ଉପରେ ଗବେଷଣା କରି ପିଏଚ୍.ଡି. ପାଇଥିଲେ । ସେ ମଧ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇ ନରନାରୀଙ୍କୁ ଭେଟି ଓଡ଼ିଆ ଲୋକକାହାଣୀ, ଲୋକକବିତା, ଢଗଢମାଳି, ପ୍ରବାଦ ପ୍ରବଚନ ସଂଗ୍ରହ କରି ବିଭିନ୍ନ ଖଣ୍ଡରେ ପ୍ରକାଶ କରିଛନ୍ତି । ଓଡ଼ିଆ ଲୋକସାହିତ୍ୟକୁ ବାହାରେ

ପ୍ରଚାର କରିବା ପାଇଁ ଇଂରାଜୀରେ ବହି ଲେଖିଛନ୍ତି । ସେ ମଧ୍ୟ ସମାଲୋଚନା, ଉପନ୍ୟାସ, ଗଳ୍ପ, ଭ୍ରମଣ କାହାଣୀ, ଆତ୍ମଚରିତ ଓ ବିଭିନ୍ନ ମନୀଷୀଙ୍କର ଜୀବନୀ ଲେଖିଛନ୍ତି । ସେ ମୋତେ ବହୁତ ଶ୍ରଦ୍ଧା କରୁଥିଲେ । ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଆମର ଆଧୁନିକ ସାହିତ୍ୟ ପଢ଼ାଉଥିଲେ । ସେ ଜଣେ ବିଶିଷ୍ଟ ସମାଲୋଚକ ଓ କବି । ସେ ମଧ୍ୟ ଆତ୍ମଚରିତ ଲେଖିଛନ୍ତି । ପ୍ରଫେସର କାହ୍ନୁଚରଣ ମିଶ୍ର ଭାରି ସ୍ନେହୀ । ବୈଷ୍ଣବ ସାହିତ୍ୟ ଓ ପ୍ରାଚୀନ ସାହିତ୍ୟରେ ସେ ଅତ୍ୟନ୍ତ ଦକ୍ଷ । ଆମକୁ ସେ ବୈଷ୍ଣବ ସାହିତ୍ୟ ପଢ଼ାଉଥିଲେ । ସେ ମଧ୍ୟ ଜଗନ୍ନାଥ ତତ୍ତ୍ୱ ଓ ଧର୍ମ ଉପରେ ଗବେଷଣା କରି କଲିକତା ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ପାଇଥିଲେ । ଏହା ଇଂରାଜୀ ଭାଷାରେ ରଚିତ । ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର ଥିଲେ ଜଣେ କବି ଓ ସମାଲୋଚକ । ସେ ମଧ୍ୟ ଅତ୍ୟନ୍ତ ସ୍ନେହୀ । ପ୍ରଫେସର ଜୟକୃଷ୍ଣ ମିଶ୍ର ପ୍ରାଚୀନ ସାହିତ୍ୟ, ରାଧାନାଥ କାବ୍ୟ ପଢ଼ାଇଲାବେଳେ ତନ୍ମୟ ହୋଇଯାଆନ୍ତି । କାଳିଦାସ, ଶ୍ରୀହର୍ଷ, ମାଘ ପ୍ରମୁଖଙ୍କ ଦୃଷ୍ଟାନ୍ତ ଦିଅନ୍ତି । ମାତୃମୁକ୍ତି ମୁକ୍ତାବଳୀ ସଂସ୍କୃତ ମହାକାବ୍ୟ ସେ ଲେଖୁଥାନ୍ତି । ପ୍ରଫେସର ସିଦ୍ଧେଶ୍ୱର ହୋତା, କେତକୀ ନାୟକ ଆମକୁ ସଂସ୍କୃତ ପଢ଼ାଉଥାନ୍ତି । ଆଉ ମଧ୍ୟ ଜାନକୀବଲ୍ଲଭ ମହାନ୍ତି (ଗୋରା), ଶାନ୍ତିଦେବୀ ପ୍ରମୁଖ ଅଧ୍ୟାପକ/ଅଧ୍ୟାପିକା ଥାଆନ୍ତି । ଡକ୍ଟର ଧନେଶ୍ୱର ମହାପାତ୍ର ନୂଆକରି ଯୋଗ ଦେଇଥାନ୍ତି । ସେ ସଂସ୍କୃତ ପଣ୍ଡିତ ଓ ଭାଷାବିତ୍ । ଅନେକ ସଂସ୍କୃତ ଗ୍ରନ୍ଥ ସେ ଅନୁବାଦ କରିଥାନ୍ତି । ବଡ଼ ସ୍ୱାଭିମାନୀ ସେ । ତେଣୁ ସେ ଚାକିରି ଛାଡ଼ିଦେଇ ସ୍ୱାଧୀନ ଭାବରେ ଜୀବନ କାଟୁଛନ୍ତି । ତାଙ୍କର ସ୍ନେହ ଭୁଲିବାର ନୁହେଁ ।

ଆମେ ଏମ୍.ଏ. (୧୯୬୪-୬୬) ପଢୁଥିଲାବେଳେ ଓଡ଼ିଆ ଓ ସଂସ୍କୃତ ବିଭାଗ ଏକତ୍ର ମିଶି ଥିଲା । ତେଣୁ ଆମେ ଆନ୍ଦୋଳନ କଲୁ ଦୁଇଟି ବିଭାଗକୁ ଅଲଗା କରିବା ପାଇଁ । ଆମ ସାଙ୍ଗରେ ଦଶ/ବାର ବର୍ଷ ପାଠ ଛାଡ଼ି ଏମ୍.ଏ. ପଢୁଥିବା ଖୋର୍ଦ୍ଧାର ଲକ୍ଷ୍ମୀନାରାୟଣ ରାୟସିଂହଙ୍କ ନେତୃତ୍ୱରେ ଆମେ ଆନ୍ଦୋଳନ କଲୁ । ମୁଁ ସେକ୍ରେଟେରୀ ଥିବାରୁ ମୋ ନାମରେ ମେମୋରାଣ୍ଡମ ଲେଖାଗଲା । ଏହି ଦୁଇଟି ବିଭାଗକୁ ଅଲଗା କରିବା ସଙ୍ଗେସଙ୍ଗେ ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ କରାଯିବାକୁ ଆନ୍ଦୋଳନ କଲୁ । ସେତେବେଳେ ବିଶ୍ୱବିଦ୍ୟାଳୟର ଟାଣୁଆ ସିଣ୍ଡିକେଟ ମେମ୍ବର ଥାଆନ୍ତି ଶ୍ରୀରାମଚନ୍ଦ୍ର ଦାଶ, ମନମୋହନ ମିଶ୍ର, ସୁରଜମଲ୍ଲ ସାହା ପ୍ରମୁଖ । ଆମେ ସେମାନଙ୍କୁ ଭେଟି ମେମୋରାଣ୍ଡମ କପି ଦେଲୁ । ସିଣ୍ଡିକେଟ ସଭାରେ ମନମୋହନ ମିଶ୍ର ଉତ୍କଳ-ଭାଷାରେ କହିବାକୁ ଅନୁମତି ମାଗି ଭାଷଣ ଦେଲେ । ଏହା ପରେ ସଂସ୍କୃତ ଓ ଓଡ଼ିଆ ବିଭାଗ ଅଲଗା ହେଲା । ଓଡ଼ିଆ ଭାଷାର ମଧ୍ୟ ଗୁରୁତ୍ୱ ବୃଦ୍ଧି ପାଇବାକୁ ଲାଗିଲା । ପରେ ଦେଖାଗଲା ବି.ଏ. ପର୍ଯ୍ୟନ୍ତ ବିଭିନ୍ନ ବିଷୟରେ ଓଡ଼ିଆ ଭାଷାରେ ପାଠ ପଢ଼ାଇବାକୁ ଆଗ୍ରହ ପ୍ରକାଶ ପାଇଲା ଓ ପୁସ୍ତକମାନ ପ୍ରଣୀତ ହେଲା ।

୧୯୬୬ ମସିହାରେ ହେଲା ଏମ.ଏ. ପରୀକ୍ଷା । ମୁଁ ପ୍ରଥମ ଦିନ ଏମ୍.ଏ. ପରୀକ୍ଷା ଦେବାକୁ ଯାଉଛି । କଲିକତା ହାଇକୋର୍ଟରୁ ଗୋଟିଏ ସମନ ପାଇଲି । ମୁଁ ଛାନିଆ ହୋଇଗଲି । ଏଣେ ପରୀକ୍ଷା, ତେଣେ କୋର୍ଟ ସମନ । ପ୍ରଫେସର ଜୟକୃଷ୍ଣ ମିଶ୍ରଙ୍କୁ କହିଲି । ସେ କହିଲେ- ଆରେ ତୁ ଜାଣିନୁ- 'ମାନି ଜାମିନି ମଧ୍ୟସ୍ଥି, ଯାକୁ ମନା କରିଛନ୍ତି ଅଗସ୍ତି ।' ମୁଁ ପରା ଜଣେ ପିଲାର ମାନି ହୋଇ ଏବେ କୋର୍ଟକୁ ଦଉଡୁଛି । ସେ ପିଲାର ଦେଖା ନାହିଁ । ହଉ, ସେ କଥା ଭୁଲି ତୁ ପରୀକ୍ଷା ଦେ' । ପରେ ସେକଥା ବୁଝିବୁ । ମୁଁ ପରୀକ୍ଷା ହଲକୁ ଗଲି । ମା' ଶାରଳାଙ୍କୁ ମନେପକାଇ ଯେଉଁ ମନ୍ତ୍ରଟି ମୋତେ ଗମ୍ବୁ ସ୍କୁଲରେ ସେଇ ଅଜଣା ଲୋକଟି କହିଥିଲେ, ତାକୁ ଖାତା ଉପରେ ଲେଖି ପରୀକ୍ଷା ଦେଲି । ଆଠଟି ପେପର ପରୀକ୍ଷା ସରିଗଲା । ମୁଁ ଗାଁକୁ ଯାଇ ଉଦଭାଇଙ୍କୁ ସମସ୍ତ କଥା କହିଲି । ସେ ମୋତେ ଭରସା ଦେଲେ । କଥା ହେଉଛି ଆମ ଗ୍ରାମର ପୀତାମ୍ବର ପରିଡ଼ା ଦିନେ ମୋ କଟକ ବସାରେ ପହଞ୍ଚି କହିଲେ- 'ବୈଷ୍ଣବ, ତମେ ମୋ ସାଙ୍ଗରେ ଚାଲ । ତମେ ଗାରେଣ୍ଟର ହିସାବରେ ଦସ୍ତଖତ କରିଦେବ । ପ୍ରଫୁଲ୍ଲ (ତାଙ୍କ ସାନପୁଅ) ଟ୍ରକ୍ କିଣିବ । ଏଥିରେ ଭୟ କରିବାର ନାହିଁ । ମୁଁ ଅଛି । ସେ କୋରାପୁଟରେ ବଡ଼ କଣ୍ଟ୍ରାକ୍ଟର । ଟଙ୍କା ସେ ପରିଶୋଧ କରିଦେବ ।' ମୁଁ ତାଙ୍କୁ ତ ମାନେ । ତାହା ଛଡ଼ା ମୋର ଗୋଟାଏ ପ୍ରକୃତି କାହା କଥା ନ ଭାଙ୍ଗିବା । ଏଥିପାଇଁ କେତେ ସଂକଟର ସମ୍ମୁଖୀନ ହୋଇଛି । ତଥାପି ପ୍ରକୃତି ଛାଡ଼ି ନାହିଁ । ପ୍ରଫୁଲ୍ଲବାବୁ ଟଙ୍କା ନ ଦେବାରୁ କଂପାନୀ କେଶ୍ କଲା । ପରେ ଜାଣିଲି କଂପାନୀ ଲୋକ କୋରାପୁଟ ଯାଇ ତାଙ୍କ ଟ୍ରକ୍ ଜବତ କରି ନେଇଛନ୍ତି । ମୁଁ ଟିକେ ଆଶ୍ୱସ୍ତ ହେଲି ।

ପରୀକ୍ଷା ଫଳ ବାହାରିଲା । ମୁଁ ପ୍ରଥମ ଶ୍ରେଣୀରେ ପ୍ରଥମ ହେଲି । ଉତ୍କଳ ବିଶ୍ୱବିଦ୍ୟାଳୟରେ ସେତେବେଳେ କୁଳପତି ଥିଲେ ପ୍ରଫେସର ଡକ୍ଟର ସଦାଶିବ ମିଶ୍ର । ତାଙ୍କ ହାତରୁ ମୁଁ ଏମ୍.ଏ. ଓ ବି.ଏ. (ଅନର୍ସ)ରେ ପ୍ରଥମ ହୋଇଥିବାରୁ ସାର୍ଟିଫିକେଟ୍ ସହିତ ଦୁଇଟି ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦ ଲାଭ କଲି । ବହୁତ ଖୁସି ହେଲି । ଫଳ ବାହାରିବାର ପନ୍ଦରଦିନ ଭିତରେ ମୁଁ ଆଡ୍‌ହକ ଅଧ୍ୟାପକ ଭାବରେ ବାଲେଶ୍ୱରର ଫକୀରମୋହନ କଲେଜରେ ଯୋଗ ଦେଲି । ଟେଲିଫୋନ ଚାକିରିରୁ ରିଜାଇନ୍ କଲି । ଏଇ ହେଲା ମୋର ଛାତ୍ର ଜୀବନର କାହାଣୀ । ଟେଲିଫୋନ ଅପରେଟର ଥିଲାବେଳେ ମୁଁ ରାଉସାପାଟଣାର ଅନନ୍ତ ଭବନ ମେସ୍‌ରେ ରହୁଥିଲି । ସେ ଘରର ମାଲିକ ପ୍ରାଣକୃଷ୍ଣ ଦେବତା । ସେ ମୋତେ ବହୁତ ଶ୍ରଦ୍ଧା କରନ୍ତି । ତାଙ୍କ ନିଜ ବଖରାଟିରେ ମୋତେ ରହିବାକୁ କହିଲେ । ମୁଁ ସେଇଠି ରହିଲି ଏକା । ସେହି ଘରେ ପଢ଼ାପଢ଼ି କରେ । ଗାଁ ଲୋକ ଆସିଲେ ସେଇଠି ମୋ ସହିତ ରହନ୍ତି । ଏହି ସମୟରେ ଦୁଇମାହ ପାଇଁ ମୋ

ସ୍ତ୍ରୀକୁ ଆଣି ମେସ୍ ପାଖରେ ଗୋଟିଏ ଘରଭଡ଼ା ନେଇ ରହିଲି । ମେସ୍‌ର ବୁଢ଼ା ପାଡ଼ୀନନା ମୋ ସ୍ତ୍ରୀ ପାଇଁ ଭଲ ତରକାରି ହୋଇଥିଲେ ନେଇ ଦେଇଆସନ୍ତି । ଏହି ସମୟରେ ଗୋଟିଏ ଘଟଣା ଘଟିଲା । ସେତେବେଳେ କେନ୍ଦ୍ର ସରକାରୀ କର୍ମଚାରୀମାନେ ପ୍ରାୟ ମେଡ଼ିକାଲ ବିଲ କରି ବହୁତ ଟଙ୍କା ନେଉଥାନ୍ତି । ମୁଁ ଏ ବିଷୟରେ ଅଜ୍ଞ । ମୋତେ ମୃଷି ବେହେରା ବୋଲି ଜଣେ ଅପରେଟର ଦୁଇଟି ଫର୍ମ ଆଣି ଦସ୍ତଖତ କରିଦେବାକୁ କହିଲେ । ମୁଁ ଦସ୍ତଖତ କରିଦେଲି । ସେ ମୋତେ ପରେ ଆଣି ଦେଢ଼ଶହ ଟଙ୍କା ଦେଲେ । ମୋ ସ୍ତ୍ରୀ ନାମରେ ଯେଉଁ ରୋଗ ସେ ଡାକ୍ତରଙ୍କଠାରୁ ଲେଖିଆଣିଥିଲେ ସେହି ରୋଗ ମୋ ସ୍ତ୍ରୀକୁ ହେଲା । ମୋର ପାପବୋଧ ଜାଗ୍ରତ ହେଲା । ସେହି ଦିନରୁ ମୋ ଅଧ୍ୟାପକ ଜୀବନର ଶେଷ ପର୍ଯ୍ୟନ୍ତ ମୁଁ ମେଡ଼ିକାଲ ବିଲ୍ କରି ନାହିଁ । ମୋ ଜୀବନରେ ଗୋଟିଏ ଶିକ୍ଷା ହେଲା ଯେ ମିଛ କହି ଅନ୍ୟକୁ ଠକିଲେ ନିଜେ ସେହି ଗାତରେ ପଡ଼ିବ ।

୧୯୬୬ ମସିହା ନଭେମ୍ବର ମାସ ୧୬ ତାରିଖ ଦିନ ମୁଁ ହେଲି ଆଧୁନିକ ଓଡ଼ିଶାର ଅନ୍ୟତମ କର୍ଣ୍ଣଧାର କଥାସମ୍ରାଟ୍ ବ୍ୟାସକବି ଫକିରମୋହନ ମହା-ବିଦ୍ୟାଳୟର ଅଧ୍ୟାପକ । ମୁଁ ନିଜକୁ ନିଜେ ଗୌରବ ଅନୁଭବ କଲି ।

## ୧୯୬୬ ପୂର୍ବରୁ ମୋର ଗାଁ ସଂପର୍କ ଓ ସାହିତ୍ୟ ସୃଷ୍ଟିର କୁଆଁଧ୍ୱନି

ପିଲାଦିନରୁ ମୁଁ ଗାଁକୁ ଭଲପାଉଥିଲି ଓ ଗାଁ ସହିତ ଥିଲା ମୋର ନିବିଡ଼ ବନ୍ଧନ । କଟକରେ ରହିଲା ପରେ ମଧ୍ୟ ମୁଁ ପ୍ରତି ଶନିବାର ଦିନ ଗାଁକୁ ସାଇକେଲରେ ଯାଉଥିଲି ଚାଳିଶ/ ପଚାଶ ମାଇଲ ରାସ୍ତା । ରବିବାର ଦିନ ରହି ସୋମବାର ଦିନ ସକାଳୁ ସକାଳୁ କଟକ ଫେରିଆସୁଥିଲି । ତେଣୁ ଗାଁର ଯାବତୀୟ ସମସ୍ୟା ସହିତ ମୁଁ ଜଡ଼ିତ ହୋଇ ରହୁଥିଲି । ପୂର୍ବରୁ କହିଛି ଯେ ପିଲାଦିନରୁ ମୋ ଉପରେ ମୋ ବାପାଙ୍କ ପ୍ରଭାବ ଗଭୀର ଭାବରେ ପଡ଼ିଥିଲା । ତେଣୁ ମୁଁ ମଧ୍ୟ ବାପାଙ୍କ ପରି ଉଦାର ଓ ମଣିଷପ୍ରେମୀ ଥିଲି ।

୧୯୫୨ ମସିହାରେ ଆମେ କେତେଜଣ ସାଙ୍ଗ ମିଳି ଗାଁରେ ଗୋଟିଏ ପାଠାଗାର କଲୁ । ତାହାର ନାମ ଦେଲୁ 'ଚାଷୀମୂଲିଆ ପାଠାଗାର' । ଦୀନବନ୍ଧୁ ଦାଦା ଥିଲେ ଆମର ମୁଖ୍ୟ । କିନ୍ତୁ ମୋତେ ଛାଡ଼ି ସେ କିଛି କରିପାରୁ ନ ଥିଲେ । ସେହି ପାଠାଗାରରେ ଆମେ ନାନା ପୁରାଣ, ଭାଗବତ, ଗୀତା ଓ ଅନ୍ୟାନ୍ୟ ବହି ରଖିଥିଲୁ । ଗାଁ ଲୋକେ ବହି ନେଇ ପଢୁଥିଲେ । କାଳିନ୍ଦୀଚରଣ ଭୂୟାଁ ହେଲେ ପାଠାଗାରର ସଂପାଦକ । ଏହା ପରେପରେ ଆମେ ଗଠନ କଲୁ ଜଗନ୍ନାଥ ସାଂସ୍କୃତିକ ପରିଷଦ । ପ୍ରତିବର୍ଷ ଛକ ଉପରେ ଆମେ ନାଟକ କରୁ । ଦୀନବନ୍ଧୁ ଦାଦା, କାଳିନ୍ଦୀଚରଣ ଭୂୟାଁ, ଦୈତାରୀ ନାୟକ, ମହେଶ୍ୱର

ନାୟକ ନିର୍ଦ୍ଦେଶନା ଦିଅନ୍ତି । ଲୋକେ ଭଲ ପାଆନ୍ତି ଆମକୁ; ମାତ୍ର ଆମେ ଯେଉଁ ଜାତିଫାତି ମାନିଲୁ ନାହିଁ ସେଥିପାଇଁ ବିରକ୍ତ ହୁଅନ୍ତି । ୧୯୬୪ ମସିହାରେ ଆମ ଯୁବକ ସଂଘ ଓଡ଼ିଶାରେ ପ୍ରଥମ ପୁରସ୍କାର ଲାଭ କଲା । ପାଞ୍ଚହଜାର ଟଙ୍କା । ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ବୀରେନ ମିତ୍ରଙ୍କୁ ମୁଖ୍ୟମନ୍ତ୍ରୀ କରିଥାନ୍ତି । ଆମେ ଭୁବନେଶ୍ୱର ଯାଇ ମୁଖ୍ୟମନ୍ତ୍ରୀଙ୍କଠାରୁ ପୁରସ୍କାର ଗ୍ରହଣ କଲୁ । ସେହି ଟଙ୍କାରେ ଆମେ ସ୍କୁଲପଡ଼ିଆରେ ଘର କଲୁ । ଇଟା କାନ୍ଥ । ଟାଇଲ ଛପର । ଆମ ପରିଷଦର ସଭ୍ୟ ବାବାଜୀ ମହାରଣା ମାତ୍ର ପଚିଶ ଟଙ୍କାରେ ସେ ଘର କଲେ । ସେଥିରେ ତିନୋଟି ବଖରା । ଗୋଟିଏ ବଖରା ହେଲା ପାଠାଗାର ଗୃହ । ମଝିଘରଟି ବଡ଼ । ଏହା ହେଲା ନାଟମଣ୍ଡପ । ଅନ୍ୟ ଘରଟି ହେଲା ଯୁବକ ସଂଘ ଅଫିସ । ପ୍ରତିବର୍ଷ ଏଠି ନାଟକ ହେଲା । ମୁଁ ମଧ୍ଯ ଗୋଟିଏ ଦୁଇଟି ନାଟକରେ ଅଭିନୟ କରିଥିଲି । କାର୍ତ୍ତବୀର୍ଯ୍ୟାର୍ଜୁନ ନାଟକରେ ମୁଁ କାର୍ତ୍ତବୀର୍ଯ୍ୟ ହୋଇଥିଲି । ଆମ ଗ୍ରାମର ରଘୁନାଥ ପାତ୍ର ଭାରି ସଉକିନିଆ । ସେ କେନ୍ଦ୍ରାପଡ଼ାରେ ବାଟା ଜୋତା ଦୋକାନ କରିଥାନ୍ତି । ପୂର୍ବରୁ ସେ ବାରିପଦାରେ ଥିଲେ । ଗାଁ ସହିତ ତାଙ୍କର ସଂପର୍କ ନ ଥିଲା । କେନ୍ଦ୍ରାପଡ଼ା ଆସିଲା ପରେ ସେ ଆମ୍ଭମାନଙ୍କ ସହିତ ମିଶିଲେ । କଟକରୁ ଅଭିନେତ୍ରୀ ନେଇ ଗାଁରେ ନାଟକ କରାଇଲେ ଓ ନିଜେ ମଧ୍ଯ ଅଭିନୟ କଲେ । ଆମ ଗାଁ ନାଟକ ଖୁବ୍ ପ୍ରଭାବ ପକାଇଥିଲା । କ୍ରମେ ଆମେ ତିଆରି କରିଥିବା ଘରଟି ଭାଙ୍ଗିପଡ଼ିଲା । ନାଟକ ବନ୍ଦ ହୋଇଗଲା । ପାଠାଗାର ମଧ୍ଯ ଆଉ ଚାଲିଲା ନାହିଁ ।

ଏହି ସମୟରେ ଦୁଇଟି ମୁଖ୍ୟ ଘଟଣା ଘଟିଲା । ଗୋଟିଏ ଆମ ଗ୍ରାମର ଜଗନ୍ନାଥ ମନ୍ଦିର ଓ ତାଙ୍କ ଜମିକୁ ନେଇ । ଅନ୍ୟଟି ଆମ ଗ୍ରାମର ମାଇନର ସ୍କୁଲ ପ୍ରତିଷ୍ଠାନକୁ ନେଇ । ଆଳିରାଜାଙ୍କ ଗୁମାସ୍ତା ପଛୁଆ ତାରିଖ ଦେଇ ଠାକୁରଙ୍କ ସବୁ ଜମି ବିକ୍ରି କରି ଦେଇଥାନ୍ତି । ଏ ଘଟଣା ମୋତେ ବିଚଳିତ କରି ଦେଉଥାଏ । ମୁଁ କଟକରେ ୧୯୬୦ ମସିହାରୁ ରହିଲି । ଅନନ୍ତ ଭବନ ମେସ୍‌ର ସେଇ ପ୍ରାଣକୃଷ୍ଣ ଦେବତାଙ୍କ ରୁମ୍ । ୧୯୬୩ ମସିହାର କୌଣସି ଏକ ଦିନ ସନ୍ଧ୍ୟା ସମୟରେ ଦୋଳମୁଣ୍ଡେଇ ଛକ ପାଖରେ ଥିବା ପୂର୍ଣ୍ଣିମା ହୋଟେଲରେ ଜଳଖିଆ ଖାଉଥାଏ । ସେହି ଟେବୁଲର ଅନ୍ୟପଟେ ଜଣେ ଭଦ୍ରଲୋକ ଜଳଖିଆ ଖାଉଥାନ୍ତି । ସେ ମୋତେ ମୋର ପରିଚୟ ପଚାରିଲେ । ମୁଁ କହିଲି । ତାଙ୍କ ପରିଚୟ ମଧ୍ଯ ଦେଲେ । ସେ ଥିଲେ ଓଡ଼ିଶାର ଦେବୋତ୍ତର କମିଶନର ଅଫିସର ଜଣେ ସିନିୟର୍ ଇନିସ୍‌ପେକ୍ଟର । ତାଙ୍କର ନାମ ନିଶାକର ସାହୁ । ତାଙ୍କର କାର୍ଯ୍ୟ କ'ଣ ବୋଲି ପଚାରିବାରୁ ସେ କହିଲେ ଯେ ଓଡ଼ିଶାରେ ଯେତେ ମଠବାଡ଼ି, ମନ୍ଦିର ଓ ଦେବାନୁଷ୍ଠାନ ଅଛି ସେସବୁର ରକ୍ଷଣାବେକ୍ଷଣ ଓ ଉନ୍ନତି ତାଙ୍କର ଦାୟିତ୍ୱ । ମୁଁ

ଆମ ଗ୍ରାମର ଜଗନ୍ନାଥ ମନ୍ଦିର, ଠାକୁରଙ୍କ ଜମି ଓ ତାହା ବିକ୍ରି ହୋଇଯାଇଥିବା କଥା କହିବାରୁ ସେ ମୋତେ ପାଖରେ ଥିବା କଳାଶ୍ରୀ ଥିଏଟର ଅଫିସକୁ ନେଇଗଲେ । ସେଇଠି ତାଙ୍କଠାରୁ ଶୁଣିଲି କଳାଶ୍ରୀ ଥିଏଟରର ଇତିହାସ । କିପରି ସେ ସେହି ଅନୁଷ୍ଠାନ କଲେ, ତାହାର ଇତିହାସ ଜାଣିଲି । ସେ ଥିଲେ କଳା, ସଂସ୍କୃତି, ସାହିତ୍ୟ ଓ ଧର୍ମପ୍ରାଣ ବ୍ୟକ୍ତି । ସେ ମୋତେ ଗୋଟିଏ ଫର୍ମ ଦେଲେ ଓ ସେଥିରେ ଆମ ଗ୍ରାମର ବିଶ୍ୱସ୍ତ ସାତଜଣଙ୍କ ନାମ ଦସ୍ତଖତ କରିବାକୁ କହିଲେ । ମୁଁ ଧନେଶ୍ୱର ମଳିକ, ଆଦିକନ୍ଦ ମଳିକ, ଉଦୟନାଥ ପରିଡ଼ା, ଦିବାକର ପରିଡ଼ା, ଯଦୁମଣି ଥାଟୋଇ, ବୈରାଗୀ ଚରଣ ସ୍ୱାଇଁ ଓ ମୋ ନାଁ ଦସ୍ତଖତ କରି ଦେଲି । ଏହା ପରଦିନ ସେ ଆଡ଼ିସନାଲ କମିଶନରଙ୍କ କୋର୍ଟରେ ବିଧିମୁତାବକ କେଶ ଦାଖଲ କଲେ । ସେହି ଫର୍ମରେ ମୁଁ ଠାକୁରଙ୍କ ସଂପତ୍ତିର ପରିମାଣ ଓ ଆନୁଷଙ୍ଗିକ ତଥ୍ୟ ଦେଇଥାଏ । ସେହି ଦିନ ଟ୍ରଷ୍ଟବୋର୍ଡ଼ ଆଦେଶ ବାହାରିଗଲା । ସନ୍ଧ୍ୟା ସୁଦ୍ଧା ମୁଁ ସେହି ଆଦେଶନାମା ଆଣି ସେହି ସାତଜଣଙ୍କୁ ଡାକି ମଠବାଡ଼ିରେ ସଭା କଲି । ହରିଜନ ସାହିର ଲୋକେ ଏ ଖବର ପାଇ ଆନନ୍ଦରେ ବିହ୍ୱଳ ହୋଇଗଲେ । ସମସ୍ତେ ମଠବାଡ଼ିକୁ ଆସିଗଲେ । ଗାଁର କିଛି ଲୋକ ମଧ୍ୟ ଆସିଲେ । ସେହି ରାତିରେ ଗୁମାସ୍ତାକୁ ଲୋକେ ବାହାର କରିଦେଇ ମନ୍ଦିର ଓ ଠାକୁରଙ୍କ ଦାୟିତ୍ୱ ନେଇଗଲେ । ଦିବାକର ପରିଡ଼ାଙ୍କୁ ମ୍ୟାନେଜିଂ ଟ୍ରଷ୍ଟି କଲୁ । ତା'ପରେ କଟକ ଯାଇ ୬୮ଧାରାରେ ସଂପତ୍ତି ଠାକୁରଙ୍କ ନାମରେ କରିବା ପାଇଁ ମୋକଦ୍ଦମା କଲୁ । ସେଥିରେ ମଧ୍ୟ ଠାକୁରଙ୍କର ଡିଗ୍ରୀ ହେଲା । ନିଶାକରବାବୁ ପୋଲିସ ଫୋର୍ସ ସହିତ ଗାଁକୁ ଆସି ଯେଉଁ ସଂପତ୍ତି ସବୁ ବିକ୍ରି ହୋଇଯାଇଥିଲା ତାହା ଉପରେ ନାଲିପତାକା ଲଗାଇ ଠାକୁରଙ୍କର ହେଲା ବୋଲି ଘୋଷଣା କଲେ । ସେଦିନ ଆମ ଗାଁ ଲୋକାର୍ଣ୍ଣବ । ବାହାର ଗ୍ରାମରୁ ମଧ୍ୟ ଲୋକେ ଆସିଥାନ୍ତି । ତନାର ଧୂମାତ୍ ଆଦି ମଠର ଲୋକେ ମଧ୍ୟ ଜମା ହୋଇଥାନ୍ତି । ମୁଁ ଯେମିତି ଆମ ଅଞ୍ଚଳରେ ହୀରୋ ବନିଯାଇଥାଏ । ମୋର ଜୟ... ଜୟକାର ପଡୁଥାଏ ।

ଜମି ଦଖଲ ହୋଇଗଲା । ସବୁ ଜମି ଫେରିଲା । ରାଜାଘର ୪୧ ଧାରାରେ ମୋକଦ୍ଦମା କଲେ । ସେଥିରେ ମଧ୍ୟ ଠାକୁରଙ୍କର ଡିଗ୍ରୀ ହେଲା । ସେହି ମୋକଦ୍ଦମା ବେଳେ ଆମ ଗ୍ରାମର ଠାକୁରଙ୍କ ଟ୍ରଷ୍ଟ ବୋର୍ଡ଼ର ମେମ୍ବରମାନେ କଟକ ଯାଇ ମୋରି ପାଖରେ ରହୁଥିଲେ । ସେମାନଙ୍କର ଖାଇବା ଖର୍ଚ୍ଚ ଓ ମୋକଦ୍ଦମା ଖର୍ଚ୍ଚ ମୁଁ ବହନ କରୁଥାଏ । ମେମ୍ବରମାନେ ମୋତେ ମାନନ୍ତି । ଗୋଟିଏ ଘଟଣାରେ ସେମାନେ ଗାଁରେ ପାଣଙ୍କ ଜମିଦଖଲ ନେଇ ମାଡ଼ଫଉଜଦାରୀ କରିଦେଲେ । ସେମାନଙ୍କୁ ଜମିରୁ ବେଦଖଲ କରିଦେଲେ । ମୁଁ କିନ୍ତୁ ଗରିବ ଲୋକଙ୍କୁ ମାଡ଼ ଦେବାର ସପକ୍ଷରେ ନ ଥିଲି । ସେହି ମୋକଦ୍ଦମାରେ ଅବଶ୍ୟ ସମସ୍ତେ ଖଲାସ ହେଲେ । ଠାକୁରଙ୍କ ଯାନିଯାତ୍ରା ଆଡ଼ମ୍ବରରେ

ହେଲା । ମୁଁ ଫକୀରମୋହନ କଲେଜରେ ଅଧ୍ୟାପକ ହେଲା ପରେ ଟ୍ରଷ୍ଟବୋର୍ଡ଼ରୁ ବିଦାୟ ନେଲି । ପରେ ଦେଖିଲି ଟ୍ରଷ୍ଟବୋର୍ଡ଼ର ମେମ୍ବର ହେବା ପାଇଁ କନ୍ଦଳ ଲାଗିଲା । ସେଥିରେ ରାଜନୀତି ପ୍ରବେଶ କଲା । କ୍ରମେ ମଠର ମର୍ଯ୍ୟାଦା ଲୋପ ପାଇଲା । ଏବେ ଶୁଣୁଛି ଠାକୁରଙ୍କ ସଂପତ୍ତିକୁ ଅନେକ ଲୋକ ମାଡ଼ିବସି ଘରଦ୍ୱାର, ବାଡ଼ିବଗିଚା କରିଗଲେଣି । ଆଉ ଠାକୁରଙ୍କ ସଂପତ୍ତି ହରଣ କରିବାକୁ ଭୟ ନାହିଁ । ମହାପୁରୁଷ ଅଚ୍ୟୁତାନନ୍ଦ ମାଳିକାରେ ଲେଖିଥିଲେ- 'ଠାକୁରଙ୍କ ଦତ୍ତ ସଂପତ୍ତି ହରିବେ ଅଜ୍ଞାନ ପାଷାଣ୍ଡ ମତେ ।' ବ୍ରହ୍ମସ୍ୱ ରାଜସ୍ୱ ଦେବସ୍ୱ ଖାଇ ଲୋକେ ହୁରକିମତ୍ତା ହେଉଛନ୍ତି । କେହି କାହାକୁ ମାନୁ ନାହାନ୍ତି ।

ଅନ୍ୟ ଘଟଣାଟି ହେଲା ଆମ ଗ୍ରାମର ମାଇନର ସ୍କୁଲକୁ ନେଇ । ସେତେବେଳେ ଆମ ଗାଁ ତଥା ପାଖ ଗାଁରେ ମାଇନର ସ୍କୁଲ ନ ଥିଲା । ଆମ ଗାଁ ପ୍ରଥମେ ଇନ୍ଦୁପୁର ପଞ୍ଚାୟତରେ ଥିଲା । ପରେ ଘାଗରା ପଞ୍ଚାୟତରେ ରହିଲା । ସେହି ଘାଗରା ଗ୍ରାମରେ ଆମେ ସମସ୍ତେ ଏକତ୍ର ହୋଇ ମାଇନର ସ୍କୁଲ ଓ ପରେ ହାଇସ୍କୁଲ କଲୁ । କିଛି ଦିନ ପରେ ଆମ ଗ୍ରାମରେ ଗୋଟିଏ ଗାର୍ଲସ୍ ମାଇନର ସ୍କୁଲ କରିବାକୁ ସ୍ଥିର କଲୁ । ମହେଶ୍ୱର ନାୟକ ହେଲେ ସଂପାଦକ । କେତେ ଜଣ ଝିଅପିଲା ପଢ଼ିଲେ । ସେମାନଙ୍କୁ ମୟାକା ସାଇକେଲରେ ବସାଇ ନେଇ କେନ୍ଦ୍ରାପଡ଼ାରେ ପରୀକ୍ଷା ଦେବାର ବ୍ୟବସ୍ଥା କଲେ । ସରକାରଙ୍କ ମଞ୍ଜୁରି ମିଳିଲା ନାହିଁ । ଆମେ ତାଙ୍କୁ ବଦଳାଇ ଜଗନ୍ନାଥ ମାଇନର ସ୍କୁଲ କରିଦେଲୁ । ଘର ନଥାଏ । ଯୁବକସଂଘ ଘରେ କ୍ଲାସ ହେଲା । ଷଷ୍ଠ ସପ୍ତମ ଖୋଲିଲା । ଶିକ୍ଷାବିଭାଗ ମଞ୍ଜୁରି ଦେଲେ । ଆମ ଗ୍ରାମରେ ପ୍ରଫୁଲ୍ଲ କୁମାର ଜେନା, ପରୀକ୍ଷିତ ପାତ୍ର ଓ ଜୟକୃଷ୍ଣପୁରର ମାଧବଚନ୍ଦ୍ର ବେହୁରା ଶିକ୍ଷକ ହେଲେ । ଜଣେ ପାଣ ପିଲା ଧ୍ରୁବଚରଣ ଜେନା ପିଅନ ରହିଲା । ସ୍କୁଲର ନିଜସ୍ୱ ଘର ତିଆରି ଆରମ୍ଭ ହେଲା । ଏହି ସମୟରେ ରଘୁଭାଇ (ରଘୁନାଥ ପାତ୍ର) ସେକ୍ରେଟାରୀ ହେବାକୁ କେତେକ ଲୋକଙ୍କୁ ଧରି ଭାରି ଗଣ୍ଡଗୋଳ କଲେ । ମୁଁ ସେତେବେଳକୁ ଫକୀରମୋହନ କଲେଜରୁ ବଦଳି ହୋଇ ରେଭେନ୍ସା କଲେଜକୁ ଆସିଥାଏ । ମୁଁ ଗାଁକୁ ଆସି ଏସବୁ କଥା ଶୁଣିଲି । ମୟାକା ବ୍ୟସ୍ତ ହେଲେ । ମୁଁ ତାଙ୍କୁ କହିଲି ଆମେ ତ ସ୍କୁଲ କରିଦେଲେ, ମଞ୍ଜୁରି ତ ମିଳିଗଲା, ଘର ତିଆରି ତ ଆରମ୍ଭ ହୋଇଛି । ଏଣିକି ଆଉ କିଏ ଦାୟିତ୍ୱ ନେବ ତ ନେଉ । ତମେ ରିଜାଇନ୍ କରିଦିଅ । ମୋ କଥାରେ ସେ ରିଜାଇନ୍ କଲେ ଓ ରଘୁଭାଇ ସେକ୍ରେଟାରୀ ହେଲେ । ଶିକ୍ଷକମାନଙ୍କର ଦରମା ତାଙ୍କ ସମୟରେ ସରକାରଙ୍କ ପାଖରୁ ସେକ୍ରେଟାରୀଙ୍କ ନାମରେ ଆସିଲା । ସେ ଦରମା ଖାତାରେ ଶିକ୍ଷକଙ୍କ ଦସ୍ତଖତ କରାଇ ନେଉଥିଲେ ମାତ୍ର ଦରମା ଦେଉ ନ ଥିଲେ । ଏମିତି ଦୁଇ ତିନି ବର୍ଷ ଚାଲିଲା । ବାତ୍ୟା ଟଙ୍କା କିଛି ମିଳିଲା । ସବୁ ସେକ୍ରେଟାରୀଙ୍କ ପାଖରେ । ଏଣେ ଘର ହେଲା ନାହିଁ । ଯୁବକସଂଘ

ଘର ଭାଙ୍ଗିପଡ଼ିଲା । ମୁଁ ଘରକୁ ଯାଇଥାଏ । ଶିକ୍ଷକମାନେ ଆସି ମୋତେ ସବୁ କଥା କହିଲେ । ମୁଁ ସେମାନଙ୍କୁ କହିଲି ଏଥର ତମେ ଯେଉଁ ଚେକ୍ ପାଇବ ନିଜେ ଭଙ୍ଗାଇ ଦରମା ନେଇଯିବ । ସେକ୍ରେଟାରୀଙ୍କୁ ଦେବ ନାହିଁ । ସେମାନେ ଭୟ କଲେ । ମୁଁ ସାହସ ଦେଲି । ମୁଁ ଛୁଟିରେ ଥାଏ । ଶିକ୍ଷକମାନେ ଟଙ୍କା ନ ଫେରାଇବାରୁ ରଘୁଭାଇ ଓ ତାଙ୍କ ସହିତ କେତେଜଣ ମାମଲତକାର ଲୋକ ସେମାନଙ୍କ ଘରକୁ ଯାଇ ଧମକ ଦେଲେ । ସ୍କୁଲରୁ ବାହାର କରିଦେବାକୁ କହିଲେ । ସେମାନେ ମୋ ନାଁ କହିବାରୁ ନୀରବ ରହିଲେ । ପରଦିନ ସକାଳେ ରଘୁଭାଇଙ୍କୁ ସମର୍ଥନ କରି ତାଙ୍କ ସାହିର କେତେଜଣ ବାଡ଼ିଠେଙ୍ଗା ଧରି ମୋତେ ମାରିବା ପାଇଁ ଗର୍ଜନ ତର୍ଜନ କରି ମାଡ଼ିଆସିଲେ ।

ମୁଁ ଆମ ଛକପାଖ ପୋଖରୀରେ ଗାଧୋଇ ଓଦା ଲୁଗା ପିନ୍ଧି ମୋ ଝିଅକୁ କାଖେଇ ଛିଡ଼ା ହୋଇଥାଏ । ମୋ ପାଖରେ ଧନେଶ୍ୱର ମଳିକ ବସିଥାଆନ୍ତି । ପାଖରେ ଛିଡ଼ା ହୋଇଥାଏ ପ୍ରସିଦ୍ଧ ବାଡ଼ିଖେଳାଳି ଭଜ ମଳିକ । ଧନୁ ସାଆନ୍ତ ମୋତେ କହିଲେ– 'ବାବୁ, ହୁକୁମ ଦିଅନ୍ତୁ । ଅସହ୍ୟ ହେଲାଣି । ଏବେ ଶେଷ କରି ଦେବୁ ।' ମୁଁ କହିଲି, ସାଆନ୍ତ, 'ଗରଜିଲା ମେଘ ବରଷେ ନାଇଁ/ ଭୁକିଲା କୁକୁର କାମୁଡ଼େ ନାଇଁ ।' ମୁଁ ଗର୍ଜନ କରୁଥିବା ଲୋକଙ୍କୁ ପାଟିକରି କହିଲି ଯେଉଁଠି ଅଛ ସେଇଠୁ ଫେରିଯାଅ । ନ ହେଲେ ପରିଣତି ପାଇଁ ଦାୟୀ ରହିବ । ସେମାନେ ଧନେଶ୍ୱର ମଳିକକୁ ଦେଖି ପଳାଇଗଲେ । ଧନୁଆ ସାଆନ୍ତ କହିଲେ– ଆଜି ସନ୍ଧ୍ୟାବେଳେ ମିଟିଂ ଡାକିବା । ସେକ୍ରେଟାରୀଙ୍କଠାରୁ ଟଙ୍କା ଆଦାୟ କରିବା ।

ସନ୍ଧ୍ୟାବେଳକୁ ମିଟିଂ ହେଲା । ବହୁଲୋକ ଆସିଲେ । ରଘୁଭାଇ କେନ୍ଦ୍ରାପଡ଼ା ପଳାଇଲେ । ଭାରି ଉତ୍ତେଜନା ହେଲା । ମୋତେ ଆମ ଗାଁର ସରପଞ୍ଚ ସର୍ବେଶ୍ୱର ଭାଇ, ଦୀନବନ୍ଧୁ ଦାଦା ଓ କାଳିନ୍ଦୀ ବୁଝାଇଲେ । ମୋତେ ନେଇ ରଘୁଭାଇଙ୍କ ପାଖକୁ ଗଲେ । ମୁଁ ତାଙ୍କୁ କହିଲି– 'ତୁମେ ଗ୍ରାମକୁ ଚାଲ । ସେଇଠି ସମସ୍ତଙ୍କ ଉପସ୍ଥିତିରେ ସମାଧାନ ହେବ ।' ସେ ଭୟ କଲେ । ମୁଁ କହିଲି ଭୟ କରିବାର କିଛି ନାହିଁ । ମୁଁ ଅଛି । ତୁମକୁ କେହି କିଛି କହିବେ ନାହିଁ ।' ସନ୍ଧ୍ୟାବେଳକୁ ସଭା ହେଲା । ରଘୁଭାଇ ଆସିଲେ । ଟଙ୍କାପଇସା ହିସାବ ହେଲା । ସେ ଯାହା ଖର୍ଚ୍ଚ କରିଛନ୍ତି ବୋଲି କହିଲେ ଆମେ ତାକୁ ଗ୍ରହଣ କରିନେଲୁ । ତାଙ୍କ ପାଖରେ ଆହୁରି ସତୁରୀ ହଜାର ଟଙ୍କା ଥିବାର ହିସାବରୁ ଜଣାଗଲା । ମୁଁ ନିଷ୍ପତ୍ତି ଦେଲି ଯେ ସେହି ଟଙ୍କାରେ ଘର ହେବ । ଧନେଶ୍ୱର ମଳିକ ଦାୟିତ୍ୱରେ ରହିବେ । ଆଉ କେତେ ଜଣଙ୍କ ନାମ ରଖିଲି । ଶିକ୍ଷକ ଓ ପିଅନ ମାସକୁ ମାସ ତାଙ୍କ ଦରମା ନେବେ । ସେମାନଙ୍କ ଦରମାରୁ କିଛି କଟା ହେବ ନାହିଁ । ସମସ୍ତେ ରାଜି ହେଲେ । ପରେ ସରକାରଙ୍କ ନିୟମ ଅନୁସାରେ ହେଡ଼ମାଷ୍ଟ୍ରେ ହେଲେ ସେକ୍ରେଟାରୀ । ଆମେ ପୁଣି ହାଇସ୍କୁଲ କରିବାକୁ ଉଦ୍ୟମ କଲୁ ମାତ୍ର ତାହା ହେଲା ନାହିଁ ।

ଆମ ଗାଁ ଏବେ ସ୍ୱତନ୍ତ୍ର ପଞ୍ଚାୟତ ହୋଇଗଲାଣି । କେତେ କୋଠାବାଡ଼ି ହୋଇଗଲାଣି । ଜଳ ଯୋଗାଣ ବ୍ୟବସ୍ଥା ହେଲାଣି । ଏ ଦିଗରେ ବିଧାୟିକା ଡକ୍ଟର ସିପ୍ରା ମଲ୍ଲିକଙ୍କ ଉଦ୍ୟମ ପ୍ରଶଂସନୀୟ । ଦୋକାନବଜାର ହେଲାଣି । ହେଲେ ସେକାଳର ସ୍ନେହ ପ୍ରୀତି ମମତା ଆଉ ନାହିଁ । ରାଜନୀତି ସବୁ ଭାଙ୍ଗିଦେଇଛି । ଏ ଦଳ ସେ ଦଳ ଭିତରେ ସଂଘର୍ଷ । କେହି କାହାକୁ ମାନୁ ନାହାନ୍ତି । ଏବେ ଆଉ ଆଗର ସାଆନ୍ତ, ମଉସା, ଦାଦା, ଭାଇ ଡାକ ନାହିଁ । 'ବାବୁ' ଡାକ ଖେଳେଇ ହୋଇଗଲାଣି । ଇଂରେଜ ଅମଳରେ ଯେଉଁ ବାବୁ-ସଂସ୍କୃତି ଆରମ୍ଭ ହୋଇଥିଲା ଏବେ ଗାଁ ଗାଁରେ ତା'ର ଚେର ପାତାଳଫୁଟା ମହାଦେବ ପରି ହୋଇଗଲାଣି ।

ମୁଁ ରେଭେନ୍ସା କଲେଜରେ ଥିଲାବେଳେ ମୟାକାଙ୍କ ସାନଭାଇ ପୀତାମ୍ବରଙ୍କର ବାହାଘର ହେଲା ଯାଜପୁର ଜିଲ୍ଲାର ଧାରପୁର ଗ୍ରାମରେ । ତାଙ୍କ ବାହାଘର ଭୋଜିକୁ ଆମ୍ଭମାନଙ୍କୁ ସେ ନିମନ୍ତ୍ରଣ କରିଥିଲେ । ଜ୍ୟୋତିଷ ଘରେ ସେତେବେଳେ କେହି ଖାଉ ନ ଥିଲେ । କେବଳ ଜ୍ୟୋତିଷ ନୁହେଁ; ତନ୍ତୀ, ବଢ଼େଇ, ଗଉଡ଼, କେଉଟ ଘରେ ମଧ୍ୟ କେହି ଖାଉ ନ ଥିଲେ । ଆମେ ଯୁବକ ସଂଘବାଲା ସମସ୍ତଙ୍କ ଘରକୁ ବିବାହ ଭୋଜିରେ ଗଲୁ । ଆମ ଉପରେ; ବିଶେଷକରି ମୋ ଉପରେ ମୁରବିମାନଙ୍କର ରାଗ ହେଲା । ଯେଉଁଦିନ ମୟାକାଙ୍କ ଘରକୁ ଆମେ ଖାଇବାକୁ ଗଲୁ ବାଟରେ ଶମ୍ଭୁନାଥ ଉଦଣ୍ଡରାୟ ମୋତେ ଦେଖି କହିଲେ- 'ବୈଷ୍ଣବ, ସମାଜ ବୋଲି ଗୋଟିଏ ପ୍ରଥା ଅଛି, ତମେ ଜାଣ ? ଜ୍ୟୋତିଷ ଘରକୁ ଖାଇବାକୁ ଗଲେ ତମର ପରିଣତି କ'ଣ ହେବ ଜାଣକି ?' ମୁଁ କହିଲି- 'ଜାଣେ । ଚେଷ୍ଟା କରି ଦେଖନ୍ତୁ, କ'ଣ କରିପାରୁଛନ୍ତି ।' ଆମେ ତ ଖାଇବାକୁ ଗଲୁ । ସେଠି ଦେଖିଲି କେତେଜଣ ଖଣ୍ଡାୟତ ଲୋକ ଖାଇବାକୁ ଯାଇଛନ୍ତି । ସେହି ବାହାଘର ଦିନ ରାତିରେ ମୁଁ ବର ସାଙ୍ଗରେ ନ ଯାଇ ସକାଳୁ ସକାଳୁ ସାଇକେଲରେ ଧାରପୁର ଗଲି । ମୁଁ ସକାଳୁ ସକାଳୁ ସାଇକେଲରେ ଯାଉଥାଏ । ବାଟରେ ହଳଦୀବସନ୍ତ ଗାଁ ପଡ଼ିଲା । ସିଏ ଗୋଟିଏ ସାଆନ୍ତିଆ ଗାଁ । ସେଇ ଗାଁ ରାସ୍ତାକୁ ଲାଗି ଗାଁ ମୁଖ୍ୟ ବିଶ୍ୱମ୍ଭର ଜେନା ଗୋଟିଏ ଆରାମ ଚେୟାରରେ ବସିଥାନ୍ତି । ବାରିକ ପାଖରେ ବସି ତେଲ ଘଷୁଥାଏ । ପାନକୁଟାରେ ପାନ କୁଟୁଥାଏ । ସିଏ ମୋତେ ଯେମିତି ଦେଖିଲେ, ଅଟକାଇଲେ । ମୁଁ କୁଆଡ଼କୁ ଯାଉଛି, ଘର କେଉଁଠି, ବାପାଙ୍କ ନାଁ କ'ଣ, ଇମିତି କେତେ କଥା ପଚାରିଲେ । ମୁଁ ସବୁ କହିଲି । ସିଏ ମୋ ବାପାଙ୍କୁ ଜାଣିଥିଲେ । ତେଣୁ ସେ ମୋତେ କହିଲେ- 'ତୁମେ ଶ୍ରୀବତ୍ସବାବୁଙ୍କ ପୁଅ ହୋଇ, ଜ୍ୟୋତିଷ ବାହାଘରକୁ ଯାଉଛ ?' ମୁଁ ତାଙ୍କୁ କିଛି ନ କହି ଚାଲିଗଲି । ଧାରପୁର ଗାଁ ମୁଣ୍ଡରେ ପହଞ୍ଚି ଦେଖିଲି ବର ବାଲିପଠାରେ ବସିଛି । ବରଯାତ୍ରୀମାନେ ବସିଛନ୍ତି । କ'ଣ ଗୋଟାଏ ଅଘଟଣ ଘଟିଛି । ମୁଁ ପହଞ୍ଚି ବର ରୋଶଣି କରିବାକୁ କହିଲି । ବାଜା ବାଜିଲା । ବାଣ ଫୁଟିଲା । ଗାଁ ଲୋକେ ଆସିଲେ ।

ପୀତିଆ କକାଙ୍କ ଶଳା ଜଣେ ରେଲୱେ କର୍ମଚାରୀ । ଆଉ ଜଣେ ଶଳା ହାଇସ୍କୁଲ ଶିକ୍ଷକ । ମୁଁ ସେମାନଙ୍କୁ କହିଲି– 'ଆଗେ ବାହାଘର ସରୁ, ତା'ପରେ ସେମାନଙ୍କର କ'ଣ ଡିମାଣ୍ଡ ଆମେ ବୁଝିବୁ ।' ବାହାଘର ହେଲା । ଆଉ କେହି କିଛି କହିଲେ ନାହିଁ । ଏଇପରି ଅନେକ କଥା । ଏବେ ଭାବୁଛି କୁଆଡ଼େ ଗଲା ସେ କାଳର କଥା ? ସେ ସମୟର ପରସ୍ପର ପ୍ରତି ସ୍ନେହ ଶ୍ରଦ୍ଧା ଆଜି ସ୍ୱପ୍ନ ପରି ଲାଗୁଛି । ଘରେ ଘରେ ପାଠ ପଢୁଆ ଲୋକ । ଘରେ ଘରେ ଚାକିରିଆ, ବ୍ୟବସାୟୀ ଓ ରାଜନୀତିଆ କର୍ମୀ । ଅଥଚ କାହାରି ସହିତ କାହାର ସଂପର୍କ ନାହିଁ । ସବୁଥିରେ ରାଜନୀତି । ବିଧାୟକ, ସାଂସଦ ଓ ମନ୍ତ୍ରୀଙ୍କ ହସ୍ତକ୍ଷେପ । ପୋଲିସ କ୍ଷମତାସୀନ ନେତା ଓ ସେହି ଦଳର କର୍ମୀଙ୍କ ହାତବାରିସି । ସବୁ ମୂଳରେ ଭୋଟ ରାଜନୀତି । କେହି ବୁଝିବାକୁ ନାହିଁ, ହେଜିବାକୁ ନାହିଁ । କ'ଣ ହେବ ଭବିଷ୍ୟତ ? କିଏ କହିବ ? ଚାଲୁ ଏମିତି । କେତେ ଦିନ ଚାଲିବ । ତା'ପରେ ତ ଦିନେ ନା ଦିନେ ପୂର୍ଣ୍ଣଚ୍ଛେଦ ପଡ଼ିବ !

## ହରିଜନ ସାହିରେ ଅଷ୍ଟପ୍ରହରୀ

ଆମ ଗାଁରେ ଅଛି ଗୋଟିଏ ବଡ଼ ହରିଜନ ବସ୍ତି । ସେହି ସାହିର ମୁରବି ଧନେଶ୍ୱର ମଳିକ । ବଡ଼ ଚାଷୀ । ପ୍ରଥମେ ସେ ଆମ ଗାଁରେ କୋଠାଘର କରିଥିଲେ । ତାଙ୍କରି ନେତୃତ୍ୱରେ ତାଙ୍କ ସାହିରେ ଅଷ୍ଟପ୍ରହରୀ ହେଲା । ସେ ସଂକଳ୍ପ କରନ୍ତି । ପ୍ରାୟ ଶହେ ପାଖାପାଖି କୀର୍ତ୍ତନ ଦଳଙ୍କୁ ପ୍ରତିବର୍ଷ ନିମନ୍ତ୍ରଣ କରନ୍ତି । ହରିଜନସାହିର ଲୋକେ ରାସ୍ତାକଡ଼ରେ, ବନ୍ଧ ଉପରେ, ପାଳରେ ଯେତେ ଗଛ ଥାଏ କାଟି ଆଣନ୍ତି । ଅଷ୍ଟପ୍ରହରୀରେ ଜାଳେଣି କରନ୍ତି । କେତେ ବର୍ଷ ପରେ ଦେଖାଗଲା ଆଉ ଗାଁରେ ଗଛ ନାହିଁ ।

ଅଷ୍ଟପ୍ରହରୀକୁ ବିଭିନ୍ନ ଗ୍ରାମରୁ ହରିଜନମାନେ କୀର୍ତ୍ତନ ଦଳ ନେଇଆସନ୍ତି । ଶୃଙ୍ଖଳା ପାଇଁ ଆମକୁ ଧନେଶ୍ୱର ମଳିକ କୁହନ୍ତି । ମୁଁ ଆମ ଯୁବକମାନଙ୍କୁ ଦାୟିତ୍ୱ ଦିଏ । ଛକ ଉପରେ ନାମ ପଞ୍ଜୀକରଣ କରି ଦଳ ପରେ ଦଳ କୀର୍ତ୍ତନ କରି ଯିବାକୁ ବ୍ୟବସ୍ଥା କରୁ । ଠିକ୍ ସମୟରେ ସବୁ ଦଳ କିପରି କୀର୍ତ୍ତନ କରିପାରିବେ ତାହାର ବ୍ୟବସ୍ଥା ମଧ୍ୟ କରୁ । ବେଶ୍ ଶାନ୍ତିଶୃଙ୍ଖଳାରେ ଅଷ୍ଟପ୍ରହରୀ ସରିଯାଏ । ଅଷ୍ଟପ୍ରହରୀ ସମୟରେ ହରିଜନସାହି ଯେମିତି ଏକ ପର୍ବରେ ପରିଣତ ହୋଇଯାଏ । ସେତେବେଳେ ମୁଁ ଅନୁଭବ କରେ ସେହି ଅଷ୍ଟପ୍ରହରୀ ସତେ ଯେମିତି ଆମ ଗ୍ରାମର ଗୌରବ ହୋଇଯାଏ । ଦଶ/ପନ୍ଦର ବର୍ଷ ପରେ ଅଷ୍ଟପ୍ରହରୀ ଭାଙ୍ଗିଗଲା । ହରିଜନସାହିରେ କନ୍ଦଳ ପଶିଲା । ଯୁବକମାନେ ଆଉ ଧନେଶ୍ୱର ମଳିକଙ୍କୁ ମାନିଲେ ନାହିଁ ।

କିଛି ବର୍ଷ ପରେ କାଳିନ୍ଦୀଚରଣ ଭୂୟାଁ ଓ ମହେଶ୍ୱର ନାୟକ ହରିଜନ ସାହିର ଯୁବକମାନଙ୍କୁ ସଂଗଠିତ କରି ପ୍ରତିବର୍ଷ ରାମଲୀଳା କରାଇଲେ । ଏହା ମଧ୍ୟ ବେଶ୍ ସୁନାମ ଅର୍ଜନ କଲା । ମୁଁ ମୋର ସାଧମତେ ସାହାଯ୍ୟ କରେ ଓ ରାମଲୀଳା ସମୟରେ ଉପସ୍ଥିତ ରହେ । ଏବେ ଆଉ ରାମଲୀଳା ହେଉ ନାହିଁ । ଘରେ ଘରେ ଟି.ଭି. । ନୂଆ ନୂଆ ଅପେରା ପାର୍ଟି ଛାଇହୋଇ ଗଲାଣି । ଆଉ କିଏ ପାଲା କି ନାଟକ କି ରାମଲୀଳା ଦେଖିବ ? ସେ ଯୁଗ ଗଲାଣି । ଇଏ ନୂଆ ଯୁଗ, ନୂଆ ଚଳଣି, ନୂଆ ଚମକ । ଆଗେ ଯେଉଁ ସବୁ ପର୍ବପର୍ବାଣି ହେଉଥିଲା, ବାରିଣୀ, ଦୋଳ ଉତ୍ସବ ଇତ୍ୟାଦି ହେଉଥିଲା ଏବେ ସେସବୁ ଆଉ ନାହିଁ । ସବୁ ମହଳ ପଡ଼ିଗଲାଣି ।

## ସେ କାଳ ଓ ଏ କାଳର ରାଜନୀତି

ପ୍ରଥମ ସାଧାରଣ ନିର୍ବାଚନଠାରୁ ଏପର୍ଯ୍ୟନ୍ତ ମୁଁ ଆମ ଗଣତନ୍ତ୍ରର ଭୋଟ ରାଜନୀତିକୁ ଦେଖିଆସିଛି । ସେ କାଳରେ ଦୁଇଟି ଦଳ ଥିଲା, ଏବେ କେତେ ଯେ ଦଳ ତା'ର ହିସାବ ନାହିଁ । ସବୁ ଦଳ କ୍ଷମତା ପାଇଁ ବିକଳ । କ୍ଷମତାକୁ ଆସିଲେ କୁଆଡ଼େ ଘିଅ ମହୁରେ ଦେଶକୁ ଭସାଇଦେବେ । ହେଲେ କାହିଁ ? ଦେଶ ତ ଦିନକୁ ଦିନ ରସାତଳକୁ ଯାଉଛି । ଅଥଚ ନେତାଏ କହୁଛନ୍ତି ଦେଶ ଉନ୍ନତି କରୁଛି । ଦାରିଦ୍ର୍ୟ ଲୋପ ପାଉଛି । ସେ କାଳ ଥିଲା ଭିନ୍ନ । ଆମ ଗାଁକୁ ନେତାମାନେ ଯାଉଥିଲେ । ସେତେବେଳେ ତ ମାଇକ ନ ଥିଲା । ଗୋଟିଏ ବଡ଼ ଚୁଙ୍ଗାରେ ଭାଷଣ ଦେଉଥିଲେ । କିଛି ପେଣ୍ଡାଲ ନ ଥିଲା, ଫୁଲହାର କି ତୋରଣ ନ ଥିଲା, ବାଣ ରୋଶଣି ନ ଥିଲା । ଲୋକେ ଶୁଣୁଥିଲେ ଓ ସେହି ଅନୁସାରେ ଭୋଟ ଦେଉଥିଲେ । ସେତେବେଳେ ଆମ ଗ୍ରାମରେ ମୁଁ ଦେଖିଛି ଦୀନବନ୍ଧୁ ସାହୁ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଯଦୁମଣି ମଙ୍ଗରାଜ, ପଣ୍ଡିତ ଗୋଦାବରୀଶ ମିଶ୍ର, ଡାକ୍ତର ସରୋଜକାନ୍ତ କାନୁନ୍‌ଗୋ, ପ୍ରହ୍ଲାଦ ମଲ୍ଲିକ, ଭାଗବତ ପ୍ରସାଦ ମହାନ୍ତି, ପୁରୁଷୋତ୍ତମ ନାୟକ ପ୍ରମୁଖ ବହୁ ନେତାଙ୍କୁ । ଭୋଟ ଯାଉଥିଲା ଭୋଟ ବାଟରେ । ଗାଁରେ କିଛି ଗଣ୍ଡଗୋଳ ନ ଥିଲା । ପ୍ରାୟ ଷାଠିଏ ମସିହା ପରଠାରୁ ରାଜନୀତି ବଦଳିବାକୁ ଆରମ୍ଭ କଲା । ନେତାଏ ଓ ତାଙ୍କର ଗୁଣ୍ଡା ଶ୍ରେଣୀର କର୍ମୀମାନେ ରାତି ଅଧରେ ବୁଲି ବୁଲି ଟଙ୍କା ବାଣ୍ଟିଲେ । ଅନ୍ୟାନ୍ୟ ପଦାର୍ଥ ବାଣ୍ଟିଲେ । ଏଇ ଟଙ୍କା ବଣ୍ଟାକୁଣ୍ଟାକୁ ନେଇ ଲୋକଙ୍କ ଭିତରେ ମାଡ଼ ଫଉଜଦାରୀ ହେଲା । ପୋଲିସ ଓ ସରକାରୀ ଅଫିସରମାନେ ପରୋକ୍ଷରେ ସାହାଯ୍ୟ କଲେ କ୍ଷମତାସୀନ ଦଳକୁ ।

ଭୋଟ ରାଜନୀତି କଳୁଷିତ ହେଲା । ମୁଁ ହାଇସ୍କୁଲରେ ପଢୁଥିଲାବେଳେ ଏଇ ନେତାମାନଙ୍କର ଛଇ ଦେଖି ମନେମନେ ବିରକ୍ତ ହେଉଥିଲି । କବିତାଟିଏ ଲେଖିଥିଲି 'ନେତା କିଏ ।'

ସେଇ କବିତାରେ ଠାଏ ଲେଖିଥିଲି-

ସେବା ନାମ ନେଇ ନେବା ବାନାକୁ ଯେ
ବରିଛି ଏ ମହୀତଳେ
ସେ ମାରୁଛି ମଜା ବସି ପ୍ରାସାଦରେ
ନିଃସ୍ୱ ସିନା ଗଡ଼ି ମରେ ।

ଯାହା ସେତେବେଳେ ଲେଖିଥିଲି ଏବେ ମଧ ସେଇ କଥା ଦେଖୁଛି । ଯିଏ ନେତା ହେଲା ସିଏ ରାତାରାତି ବଡ଼ଲୋକ ହେଲା । ଦେଶର ସଂପତ୍ତିକୁ ଖୋଳ କଲା । ଲୋକେ ତ ଭକୁଆ । ସେମାନେ ଖାଲି ଏଠିକି ସେଠିକି ବୁହା ହୋଇ ନେତାଙ୍କ ନାମରେ ଜିନ୍ଦାବାଦ ଦେଲେ । ସେ କାଳର ନେତା ଆଉ ନାହାନ୍ତି । ଏ କାଳରେ ନୂଆ ନୂଆ ନେତା । ପୋଷାକ ଭିନ୍ନ । ଚାଲି ଠାଣି ଭିନ୍ନ । କଥା ବି ଭିନ୍ନ । ନେତାଏ ସବୁ ଲୋକଙ୍କୁ ଦେଉଛନ୍ତି, ଯାବତୀୟ ଉନ୍ନତିମୂଳକ କାର୍ଯ୍ୟ କରୁଛନ୍ତି ବୋଲି କହୁଛନ୍ତି, ହେଲେ ସେମାନେ କାହା ଟଙ୍କା ଦେଉଛନ୍ତି ? ତାହା କ'ଣ ସେମାନଙ୍କ ନିଜସ୍ୱ ଧନ ? ଏଇ କଥା ଛାନ୍ଦୋଗ୍ୟ ଉପନିଷଦରେ ଶଗଡ଼ିଆ ରୈକ୍ୱ ରାଜା ଜାଣଶ୍ରୁତିକୁ ପଚାରିଥିଲେ । ରାଜା ନତମସ୍ତକ ହୋଇ ତାଙ୍କ ପାଦତଳେ ପଡ଼ିଥିଲେ । ଆଜି ସେକଥା ନାହିଁ । କେହି କାହାକୁ ପଚାରୁ ନାହିଁ । ସଭିଏଁ ଖାଲି ନେବା ପାଇଁ ହାତ ପତାଉଛନ୍ତି । ଏବେ ସରକାର ଗରିବମାନଙ୍କୁ ଦୁଇଟଙ୍କା ଓ ଏକଟଙ୍କାରେ ଚାଉଳ ଦେଉଛନ୍ତି, ଘର ଦେଉଛନ୍ତି, ଛତା ଓ ମୋବାଇଲ ଦେଉଛନ୍ତି, ଆହୁରି କ'ଣ କେତେ ଦେଉଛନ୍ତି । ଇଏ କାହାର ଟଙ୍କା ? ଇଏ କ'ଣ ନେତାଙ୍କର ନା ଆମ୍ଭମାନଙ୍କଠାରୁ ନାନା ଭାବରେ ନେଉଥିବା କର ଟଙ୍କା ? ସେଇମିତି କେନ୍ଦ୍ର ସରକାର କହୁଛନ୍ତି ସିଏ କୁଆଡ଼େ ଢାଳି ପକାଉଛନ୍ତି । ଅଥଚ ସେଇ ଟଙ୍କା କାହାର ?

ସେ କାଳରେ ରାଜନୀତିରେ ଗୋଟାଏ ମୂଲ୍ୟବୋଧ ଥିଲା । ଏ କାଳରେ ଅଛି କେବଳ ମୂଲ୍ୟ । ସେ କାଳରେ ଜଣେ ନେତାଙ୍କୁ ମୁଁ ଦେଖିଛି । ତାଙ୍କ ସଂପର୍କରେ ଆସିଛି । ସିଏ ପ୍ରହ୍ଲାଦ ଚନ୍ଦ୍ର ମଲ୍ଲିକ । ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳରେ ସେ ଜଳସେଚନ ବିଭାଗର ଉପମନ୍ତ୍ରୀ ଥାଆନ୍ତି । ବୋଧହୁଏ ୧୯୬୨-୬୩ ମସିହା ହେବ । ୧୯୫୫ ବନ୍ୟା ଫଳରେ ଇନ୍ଦୁପୁରଠାରେ ବନ୍ଧ ଭାଙ୍ଗିଯାଇଥିଲା । ସେହି ବନ୍ଧକୁ ଜଗତପୁରଠାରୁ ପଟାମୁଣ୍ଡାଇ କେନାଲ କୂଳେ କୂଳେ ଅଳଭା ପର୍ଯ୍ୟନ୍ତ ଚଉଡ଼ା ଓ ଉଚ୍ଚା କରାଗଲା । ବନ୍ଧପାର୍ଶ୍ୱର ଉତ୍ତରପଟ ଜମିକୁ ସରକାର ଅଧିଗ୍ରହଣ କଲେ । ମାତ୍ର କୌଣସି ଚାଷୀ ଟଙ୍କା ପାଇଲେ ନାହିଁ ।

ପ୍ରାୟ ଦଶବର୍ଷ ପରେ ଆମ ଗ୍ରାମର ଧ୍ୱଜାମଣି ପାତ୍ର ମୋ କଟକ ବସାକୁ ଆସି ପହଲିବାବୁଙ୍କ ପାଖକୁ ଯିବାକୁ କହିଲେ । ସେ ପହଲିବାବୁଙ୍କୁ ନାତି ନାତି କହି ତାଙ୍କ ନାଁ ଧରି ଡାକନ୍ତି । ମୁଁ ତାଙ୍କୁ ସାଙ୍ଗରେ ନେଇ ଭୁବନେଶ୍ୱର ପହଲିବାବୁଙ୍କ ପାଖକୁ ଗଲି । ତାଙ୍କୁ ଦେଖାକରି ସମସ୍ତ କଥା କହିଲି । ସେ ତତ୍‌କ୍ଷଣାତ୍ ବିଭାଗୀୟ ମୁଖ୍ୟ ଯନ୍ତ୍ରୀ, ଜଳସେଚନ ବିଭାଗର ସେକ୍ରେଟାରୀ ଓ ଅନ୍ୟ କେତେଜଣ ରେଭିନ୍ୟୁ ଅଫିସରଙ୍କୁ ଫୋନରେ କହିଲେ ଏବଂ ପନ୍ଦର ଦିନ ମଧ୍ୟରେ କ୍ଷତିଗ୍ରସ୍ତ ଲୋକଙ୍କୁ ଟଙ୍କା ଦେଇ ତାଙ୍କୁ ଜଣାଇବାକୁ ନିର୍ଦ୍ଦେଶ ଦେଲେ । ପ୍ରକୃତରେ ପନ୍ଦରଦିନ ଭିତରେ ସମସ୍ତ ଚାଷୀ ଟଙ୍କା ପାଇଗଲେ । ଆମ ଜଗନ୍ନାଥ ମଠର କିଛି ଜମି ମଧ୍ୟ ଯାଇଥାଏ । ସେ ଟଙ୍କା ମଠ ପାଇଲା । ଆମ ପାଟନାଳି ସଂପର୍କରେ ସେ ମଧ୍ୟ ହାପପ୍ୟାଣ୍ଟ ପିନ୍ଧି ଇଂଜିନିୟରମାନଙ୍କ ସହିତ ପାଟରେ ପଶି ନିଜେ ସେମାନଙ୍କୁ ନାଳ ତିଆରି ସଂପର୍କରେ ମ୍ୟାପ କରି ବୁଝାଉଥିବା ମୁଁ ଦେଖିଛି । ସେ ହରିଜନ ଶ୍ରେଣୀର ଓ ଉଚ୍ଚଶିକ୍ଷିତ ହୋଇଥିଲେ ମଧ୍ୟ ଭାରି ଉଦାର ଓ ସ୍ନେହୀ ଥିଲେ । ଯେତେବେଳେ ବରୀ ଡେରାବିଶ ନିର୍ବାଚନମଣ୍ଡଳୀରୁ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସହିତ ନିର୍ବାଚନ ଲଢ଼ିଲେ ମୋତେ ତାଙ୍କ ସାଙ୍ଗରେ ନେଇ ବରୀ ଅଞ୍ଚଳକୁ ଯାଇଥିଲେ । ସେ ଯେତେବେଳେ ବାଲିବିଲ, କାଇପଡ଼ା, ଅଙ୍ଗାଳ ଆଦି ଗ୍ରାମରେ ଚାଲି ଚାଲି ଯାଉଥିଲେ ଗାଁ ଦାଣ୍ଡର ଦୁଇପଟେ ବୁଢ଼ା ବୁଢ଼ା ଲୋକେ ବସି ଦେଖୁଥାନ୍ତି । ସମସ୍ତେ ଖଣ୍ଡାୟତ । ବଡ଼ ବଡ଼ ନିଶ । ଗୋଡ଼ ଉପରେ ଗୋଡ଼ ପକାଇ ବସିଥାନ୍ତି । ପହଲିବାବୁ ଦୁଇହାତ ଯୋଡ଼ି ମୁଣ୍ଡ ନୁଆଁଇ ସେମାନଙ୍କୁ ନମସ୍କାର କରୁଥାନ୍ତି ଓ କହୁଥାନ୍ତି, 'ସାଆନ୍ତେ, ମୁଁ ପହଲି ଆସିଛି । ମୋତେ ଟିକେ ଅନେଇବେ ।' ମୁଁ ପଛେ ପଛେ ଯାଉଥାଏଁ । ଶୁଣୁଥାଏ ବୁଢ଼ା ବୁଢ଼ା ଲୋକେ କହୁଥିବା କଥା– 'ପହଲିଟା କେଡ଼େ ସରଳ ! ଆମକୁ ସାଆନ୍ତେ ବୋଲି କହୁଛି । ଆମେ ତାଙ୍କୁ ଏଥର ଭୋଟ ଦେବା ।' ପ୍ରକୃତରେ ସେ ସୁରେନ୍ଦ୍ର ଦ୍ୱିବେଦୀଙ୍କ ପରି ନେତାଙ୍କୁ ବହୁ ଭୋଟରେ ହରାଇ ଜିତିଗଲେ ଓ ମନ୍ତ୍ରୀ ମଧ୍ୟ ହେଲେ । ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ମୋର ତାଙ୍କ ସହିତ ସଂପର୍କ ଥିଲା । ସେ ଥିଲେ କେନ୍ଦ୍ରାପଡ଼ା ଜିଲ୍ଲାର ଅସପନ୍ନ ନେତା । ବିଜୁବାବୁ ଯେତେବେଳେ ବିଭିନ୍ନ ସ୍ଥାନରୁ ହାରିଗଲେ ସେତେବେଳେ ପହଲିବାବୁ କେନ୍ଦ୍ରାପଡ଼ାର ଦୁଇଟି ସ୍ଥାନରୁ ଜିତିଥିଲେ । ସେ ରାଜନଗରରୁ ଇସ୍ତଫା ଦେଇ ବିଜୁବାବୁଙ୍କୁ ଛିଡ଼ା କରାଇଲେ ଓ ଜିତାଇଲେ ମଧ୍ୟ । ବିଜୁବାବୁଙ୍କର କେନ୍ଦ୍ରାପଡ଼ା ପ୍ରତି ଗୋଟାଏ ଅହେତୁକ ମମତା ଜାତ ହେଲା । ବାତ୍ୟା ଓ ବନ୍ୟା ସମୟରେ ତାଙ୍କର ଅବଦାନ ଭୁଲିବାର ନୁହେଁ ।

ଏହିପରି ଆଉ କେତେଜଣ ନେତାଙ୍କୁ ଦେଖିଛି । ସେମାନେ କିନ୍ତୁ ଏତେ ଉଦାର ନୁହନ୍ତି । ଜାନକୀବାବୁ ଯେତେବେଳେ ଦୀର୍ଘ ପନ୍ଦରବର୍ଷ କାଳ ମୁଖ୍ୟମନ୍ତ୍ରୀ ହେଲେ

ସେତେବେଳେ ତାଙ୍କୁ ତଳିଆନେତା ଓ କର୍ମୀମାନେ ପ୍ରଭାବିତ କରି ଗୋଟାଏ ଭିନ୍ନ ବାତାବରଣ ସୃଷ୍ଟି କରିଦେଲେ । ନିଜେ ଜାନକୀବାବୁ ଉଚ୍ଚକୋଟୀର ସାହିତ୍ୟିକ । ସେ ଲେଖକ-ଲେଖିକାଙ୍କୁ ସମ୍ମାନ ଦିଅନ୍ତି ଓ ପ୍ରୋତ୍ସାହନ ଦିଅନ୍ତି । ମୁଁ ତାଙ୍କୁ ଭଲପାଏ ତାଙ୍କର ଏହି ଗୁଣ ଯୋଗୁଁ । ତାଙ୍କ ପାଖକୁ କେତେକ ସମୂହ ଘଟଣାରେ ଯାଇଛି । ସେ ସାହାଯ୍ୟ କରିଛନ୍ତି । ଥରେ ଛତିଆ କଲେଜ ରାସ୍ତା ପାଖରେ ମୁଁ ଓ ମହାପୁରୁଷ ପ୍ରଦ୍ୟୁମ୍ନ କୁମାର ଦାସ ଛିଡ଼ା ହୋଇଥାଉ, ଜାନକୀବାବୁଙ୍କୁ ଗୋଟିଏ ଫୁଲହାର ଦେବାପାଇଁ । ଦୁଇପାର୍ଶ୍ୱରେ ଲୋକେ ଛିଡ଼ା ହୋଇଥାଆନ୍ତି । ପୋଲିସ ଯେ କାହିଁରେ କେତେ । ଆମକୁ ଜମା ଛିଡ଼ା କରାଇ ଦେଉ ନ ଥାନ୍ତି । ସେଠି ମୁଖ୍ୟମନ୍ତ୍ରୀ ରହିବେ ନାହିଁ ବୋଲି କହୁଥାନ୍ତି । ଏତିକିବେଳେ ଜାନକୀବାବୁଙ୍କ ଗାଡ଼ି ଆସିଗଲା । ଆଗରେ ପଛରେ ପୋଲିସ ବାହିନୀ । ତାଙ୍କ ଆଖି ମୋ ଉପରେ ପଡ଼ିଯିବାରୁ ସେ ଗାଡ଼ି ଅଟକାଇ ଡାକିଲେ । ମୁଁ ଓ ମହାପୁରୁଷ ଫୁଲମାଳ ଦେଲୁ । ସେ କେତେକ ଭଲମନ୍ଦ କଥା ପଚାରିଲେ । ସେଦିନ ମୁଁ ଅନୁଭବ କଲି ତାଙ୍କର ମଣିଷପଣିଆକୁ । ଏବେ ସେହି ମଣିଷପଣିଆ ନେତାମାନଙ୍କର କାହିଁ ? କେବଳ ଗୋଟାଏ ଭ୍ରାନ୍ତ ଅହମିକା । କେବଳ ଦଳ ଦଳ ଭିତରେ ସଂଘର୍ଷ-କାଦୁଅ ଫୋପଡ଼ା ।

## ପୁଷ୍ପଗିରି ପରିଷଦ ଓ ମୁଁ

ମୁଁ ପଞ୍ଚମ ବାର୍ଷିକ ଏମ୍.ଏ. ଛାତ୍ର । କୃଷ୍ଣଚନ୍ଦ୍ର ଭୂୟାଁ ଷଷ୍ଠବର୍ଷ ଏମ୍.ଏ. ଛାତ୍ର । ଆମେ ଦୁହେଁ ଇନ୍ଦୁପୁର ହାଇସ୍କୁଲର ଛାତ୍ର । ସେ ମୋର ତଳଶ୍ରେଣୀରେ ପଢୁଥାନ୍ତି । ଘର ରତ୍ନଗିରି ପାଖ ରାଉତସାହି । ତାଙ୍କ ବଡ଼ଭାଇ କଲିକତାରେ କ'ଣ ଚାକିରି କରୁଥାନ୍ତି । ତେଣୁ ତାଙ୍କର ଟଙ୍କାପଇସା ବେଶପୋଷାକରେ ଅଭାବ ନ ଥିଲା । ସେହି ସମୟରୁ ତାଙ୍କ ସହିତ ମୋର ସଂପର୍କ । ମୁଁ ମାଟ୍ରିକ ପାସ୍ କଲାପରେ ପଢ଼ିଲି ନାହିଁ । ସେ କିନ୍ତୁ ଖ୍ରୀଷ୍ଟ କଲେଜରେ ପଢ଼ିଲେ । ରେଭେନ୍ସାରେ ଏମ୍.ଏ. ପଢ଼ିଲେ । ମୁଁ ପରେ ଟେଲିଫୋନ ଅପରେଟର ହୋଇ ସେହି ଖ୍ରୀଷ୍ଟ କଲେଜରେ ବି.ଏ. (ଅନର୍ସ) ପଢ଼ିଲି । ରେଭେନ୍ସାରେ ଏମ୍.ଏ. ପଢ଼ିଲି । ଉଭୟଙ୍କ ମଧ୍ୟରେ ଭଲ ସଂପର୍କ ଥାଏ । ସେ ଖବରକାଗଜରେ ଆମ ପର୍ବପର୍ବାଣି ଉପରେ ପ୍ରବନ୍ଧ ଲେଖୁଥାନ୍ତି । ସେଥିରୁ ତାଙ୍କର ଗୋଟିଏ ସ୍ୱତନ୍ତ୍ର ଦୃଷ୍ଟିକୋଣ ଫୁଟିଉଠୁଥାଏ । ସେ କଲେଜଛକରେ କ୍ଷୀରୋଦ ସାହୁଙ୍କର ଗୋଟିଏ ଭଡ଼ାଘରେ ରହୁଥାନ୍ତି । ସେଇଠି ଆମର ସାହିତ୍ୟ ଚର୍ଚ୍ଚା ହୁଏ । ଦିନେ ସେ ପ୍ରସ୍ତାବ ଦେଲେ 'ପୁଷ୍ପଗିରି' ପତ୍ରିକା ପ୍ରକାଶ କରିବା ପାଇଁ । ସେ ଗଲେ ଗାଁକୁ । ରତ୍ନଗିରିଠାରେ କେତେଜଣ ତାଙ୍କର ବନ୍ଧୁଙ୍କୁ ନେଇ ଆଲୋଚନା କଲେ । ଅର୍ଜ୍ଜୁନ ଚରଣ ରାଉତ, ଭଜହରି ମହାପାତ୍ର, ଉତ୍ତମ ଚରଣ

ନାୟକ, ବିଷ୍ଣୁଚରଣ ମହାନ୍ତି ପ୍ରମୁଖ ତାଙ୍କୁ ସାହସ ଦେଲେ । ସହଯୋଗ କଲେ । ନମସ୍ୟ ନବଘନ ଜେନା ମଧ୍ୟ ହେମତ ଦେଲେ । ଗଢ଼ିଉଠିଲା ପୁଷ୍ପଗିରି ପରିଷଦ ଓ ପ୍ରକାଶ ପାଇଲା ପତ୍ରିକା 'ପୁଷ୍ପଗିରି' । ଏହି ପତ୍ରିକାର ସଂପାଦକ କୃଷ୍ଣବାବୁ ନିଜେ ହେଲେ ।

'ପୁଷ୍ପଗିରି' ବାହାରିଲା । ଏହି ପତ୍ରିକାର ପ୍ରଥମ ସଂଖ୍ୟାରେ ମୋର ଗୋଟିଏ ପ୍ରବନ୍ଧ 'ବାସ୍ତବବାଦ' ପ୍ରକାଶ ପାଇଲା । କୃଷ୍ଣବାବୁଙ୍କର ଯାଜପୁରର ଇତିହାସ ଓ ଐତିହ୍ୟ ପ୍ରତି ଗଭୀର ଶ୍ରଦ୍ଧା । ରତ୍ନଗିରିକୁ ପୁଷ୍ପଗିରି ବିହାର କହିବାରେ ତାଙ୍କର ବହୁତ ଆନନ୍ଦ । ଆମେ ପୁଷ୍ପଗିରି ପତ୍ରିକାର ଦୁଇଟି ବିଶେଷାଙ୍କ କଲୁ । ଗୋଟିଏ ଅଭିମନ୍ୟୁ ସାମନ୍ତସିଂହାର ବିଶେଷାଙ୍କ, ଅନ୍ୟଟି ଆଭାସ ଗଳ୍ପ ବିଶେଷାଙ୍କ । ସେ ପର୍ଯ୍ୟନ୍ତ ଅଭିମନ୍ୟୁଙ୍କ ଉପରେ କୌଣସି ବିଶେଷାଙ୍କ ହୋଇନଥିଲା । 'ପୁଷ୍ପଗିରି' ପତ୍ରିକାର ଏହା ଏକ ବିଶିଷ୍ଟ ଅବଦାନ । ଏଥିରେ ମଧ୍ୟ ମୋର ଗୋଟିଏ ଲେଖା ପ୍ରକାଶ ପାଇଥିଲା– 'ବିଦଗ୍ଧ ଚିନ୍ତାମଣି କାବ୍ୟରେ ଶ୍ରୀରାଧା' । ସେତେବେଳେ ବ୍ରହ୍ମାନନ୍ଦ ପଣ୍ଡା, ରବି ପଟ୍ଟନାୟକ, ରଣଧୀର ଦାସ ପ୍ରମୁଖ ଆଭାସ ଗଳ୍ପ ଲେଖୁଥାନ୍ତି । କୃଷ୍ଣବାବୁ ପ୍ରସ୍ତାବ ଦେଲେ ଆଭାସ ଗଳ୍ପ ସଂପର୍କରେ ବିଶେଷାଙ୍କ କରିବା ପାଇଁ । ବିଶେଷାଙ୍କ ବାହାରିଲା । ଏହା ସେତେବେଳେ ଓଡ଼ିଆ ଗଳ୍ପ ସାହିତ୍ୟରେ ଚମକ ସୃଷ୍ଟି କଲା । ମୁଁ ମଧ୍ୟ ସେଥିରେ ଗୋଟିଏ ଆଭାସ ଗଳ୍ପ ପ୍ରକାଶ କରିଥିଲି । ପରବର୍ତ୍ତୀ କାଳରେ 'ଓଡ଼ିଆ ଆଭାସ ଗଳ୍ପ ! ଏକ ଅଧ୍ୟୟନ' ଶୀର୍ଷକରେ ଦୀର୍ଘ ସମାଲୋଚନାତ୍ମକ ପ୍ରବନ୍ଧ ଲେଖିଥିଲି ଓ ସେଥିରେ କହିଥିଲି ଆଭାସ ଗଳ୍ପର ଭବିଷ୍ୟତ ଏତେ ଭଲ ନୁହେଁ । ତାହାହିଁ ହେଲା । ୧୯୬୫ ମସିହାରେ କୃଷ୍ଣବାବୁ ଏମ୍.ଏ. ପାସ୍ କରି କଲିକତାର ସିଟି କଲେଜରେ ଓଡ଼ିଆ ବିଭାଗରେ ଅଧ୍ୟାପକ ହେଲେ । ଆଉ ସଂପର୍କ ରହିଲା ନାହିଁ । ପୁଷ୍ପଗିରି ବନ୍ଦ ହୋଇଗଲା ।

ପତ୍ରିକା ବନ୍ଦ ହୋଇଯିବାର କାରଣ ହେଲା ରତ୍ନଗିରି ଅଞ୍ଚଳର ତାଙ୍କ ବନ୍ଧୁମାନେ । କେତେକଙ୍କର ସଂକୀର୍ଣ୍ଣତା ଦେଖାଦେଲା । କୃଷ୍ଣବାବୁ ଯେଉଁ ଅଭିମନ୍ୟୁ ଜୟନ୍ତୀ, ବୌଦ୍ଧଜୟନ୍ତୀ ଆରମ୍ଭ କରିଥିଲେ ତାହା ମଧ୍ୟ ମହଳ ପଡ଼ିଆସିଲା । ଏବେ ହେଉଛି ମାତ୍ର ସେ କାଳର ମହିମା ଆଉ ନାହିଁ । କଲିକତାରେ କୃଷ୍ଣବାବୁଙ୍କର ମହତ୍ତ୍ୱ ବଢ଼ିଗଲା । ତାଙ୍କ ଭିତରେ ଓଡ଼ିଆତ୍ୱର ସ୍ୱାଭିମାନ ପ୍ରଚଣ୍ଡ ହୋଇଉଠିଲା । ସେ କଲିକତାରେ ଓଡ଼ିଆ ସଂଗଠନ କଲେ, ଓଡ଼ିଆ ସ୍କୁଲ ଓ ହାଇସ୍କୁଲର ପୃଷ୍ଠପୋଷକତା କଲେ, ମଧୁଜୟନ୍ତୀ, ଗୋପବନ୍ଧୁ ଜୟନ୍ତୀ ଇତ୍ୟାଦି କଲେ । ବଙ୍ଗଳା ଭାଷାରେ ଲେଖାଲେଖି କରି ବଙ୍ଗାଳୀ ଲେଖକଙ୍କ ଭିତରେ ଆଦର ଲାଭ କଲେ । କଲିକତାରେ ଓଡ଼ିଆ ଶ୍ରମିକ, କଲିକତାରେ ଜଗନ୍ନାଥ ସଂସ୍କୃତି ଓ ଜଗନ୍ନାଥ ମନ୍ଦିର ସଂପର୍କରେ ପ୍ରବନ୍ଧ ଲେଖିଲେ, ଗଳ୍ପ ବହି, ପ୍ରବନ୍ଧ ବହି ଲେଖିଲେ । ସର୍ବୋପରି ସେ କଲିକତାରେ ଓଡ଼ିଆ ସଂସ୍କୃତି, ବଙ୍ଗଳା ସାହିତ୍ୟକୁ ଓଡ଼ିଶାର ଦାନ ସଂପର୍କରେ ଗ' ବଷଣା କରି ପିଏଚ.ଡି. ଉପାଧି ପାଇଲେ । ପ୍ରଥମଥର

ପାଇଁ ସେ ସେହି ନିବନ୍ଧରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ଜଣେ ଓଡ଼ିଆ ବୋଲି ପ୍ରମାଣ କଲେ । ଏବେ ସେ 'ପ୍ରତିବେଶୀ' ପତ୍ରିକା ସଂପାଦନା କରୁଛନ୍ତି ଓ ନିଜର ଓଡ଼ିଆ ସ୍ୱାଭିମାନକୁ ବଞ୍ଚାଇ ରଖିଛନ୍ତି । ଆଧୁନିକ ଓଡ଼ିଆ ଲେଖକ ପରିଚୟ ଗ୍ରନ୍ଥ ତାଙ୍କର ମଧ୍ୟ ଏକ ବିଶେଷ କୃତି । ସଂପ୍ରତି ସେ କଲିକତାର ସଲ୍‌ଟ ଲେକ ଅଞ୍ଚଳରେ ସ୍ଥାୟୀ ବାସିନ୍ଦା । ଏପରି ଜଣେ ସ୍ୱାଭିମାନୀ ବ୍ୟକ୍ତିଙ୍କୁ ବନ୍ଧୁ ଭାବରେ ପାଇ ମୁଁ ନିଜକୁ ଧନ୍ୟ ମନେକରେ ।

## ମୋର ପ୍ରଥମ ଅଧ୍ୟାପକ ଜୀବନ : ଫକୀରମୋହନ କଲେଜ

ମୁଁ ୧୯୬୬ ମସିହା ନଭେମ୍ବର ମାସରେ ବାଲେଶ୍ୱର ଫକୀରମୋହନ କଲେଜରେ ଅଧ୍ୟାପକ ଭାବରେ ଯୋଗ ଦେଲି । ସେତେବେଳକୁ ମୁଁ ମାତ୍ର ଛବିଶ/ସତେଇଶି ବର୍ଷର ଯୁବକ । ୧୯୬୫ ମସିହାରେ ମୋର ଝିଅଟିଏ ହେଲା– ତା' ନାଁ ମଞ୍ଜୁଶ୍ରୀ । ଏଇ ନାଁ ମୋ ସାଙ୍ଗ ଆନନ୍ଦଚନ୍ଦ୍ର ପଟ୍ଟନାୟକ ଦେଇଥିଲେ । ପରେ ୧୯୬୯ରେ ପୁଅଟିଏ ହେଲା– ତା' ନାଁ ମଧ୍ୟ ସେଇ ଦେଇଥିଲେ ଅମିତାଭ । ମୁଁ ଟେଲିଫୋନ ବିଭାଗରେ ଛ'ବର୍ଷ ଚାକିରି କଲି । ଦରମା ସେତେବେଳେ କମ୍ । ମୋ ସ୍ତ୍ରୀକୁ କଟକ ଆଣିପାରିଲି ନାହିଁ । ଦୁର୍ଗାପୂଜା ଅବକାଶରେ ଥରେ ବୁଲାଇ ଆଣିଥିଲି । ଦୁଇମାସ ରହିଲା । କଟକ ଦୁର୍ଗାପୂଜା ବୁଲାଇ ଦେଖାଇଲି । ପ୍ରଭାତ ସିନେମା, କାପିଟାଲ ସିନେମା, ହିନ୍ଦ୍ ସିନେମା ହଲ୍‌କୁ ନେଇ ସିନେମା ଦେଖାଇଲି । ଜନତା ଥିଏଟର, ଅନ୍ନପୂର୍ଣ୍ଣା ଥିଏଟର୍ ହଲ୍‌କୁ ନେଇ ନାଟକ ଦେଖାଇଲି । ଫକୀରମୋହନ କଲେଜରେ ଅଧ୍ୟାପକ ହେଲି । ସେତେବେଳେ ମଧ୍ୟ ଦରମା କମ୍ । ସ୍ତ୍ରୀକୁ ନେଇପାରିଲି ନାହିଁ । ମୋର ଯୁବକ ବୟସ । ଚେହେରା ମଧ୍ୟ ସୁନ୍ଦର ଥାଏ । ବାଲେଶ୍ୱରରେ ଝିଅମାନେ ତଥା କେତେକ ଲୋକ ଭାବିଲେ ମୁଁ ବାହା ହୋଇ ନାହିଁ । ତେଣୁ ମୋର ବିବାହ ପ୍ରସ୍ତାବ ଆସିଲା । ବାଧ୍ୟ ହୋଇ ମୁଁ ଘରକୁ ଆସି ମୋ ଝିଅକୁ ସାଙ୍ଗରେ ନେଇଗଲି । ତିନି/ଚାରି ବର୍ଷର ଝିଅ । ସେତେବେଳେ ଆଇ.ଏ. ଶ୍ରେଣୀର ଗୋଟିଏ ଝିଅ ମୋତେ ଭଲ ପାଇବସିଲା । ମୁଁ ତାଙ୍କ ଘରକୁ ଯାଇ ତାକୁ ମହାପ୍ରସାଦ ଦେଇ ଧରମଭଉଣୀ କରିଦେଲି । ସେ ଝିଅଘର ମୋ ଝିଅକୁ ତାଙ୍କ ଘରକୁ ନେଇଗଲେ । ତାଙ୍କ ମା' ମୋତେ ଧରମପୁଅ କଲା । ସେ ଝିଅ ସହିତ ମୋର ଏକ ଦିବ୍ୟ ସଂପର୍କ ଗଢ଼ିଉଠିଲା । ମୁଁ କଟକ ଆସିବା ପରେ ତାଙ୍କ ବାପା, ମା', ଭାଇଭଉଣୀ ଓ ନିଜେ ଆମ ବସାକୁ ଆସିଲେ । ମୋ ସ୍ତ୍ରୀର ଆନନ୍ଦ ଦେଖେ କିଏ । କିଛି ଦିନ ସଂପର୍କ ରହିଲା । ତାହା ପରେ ଆଉ ସଂପର୍କ ରହିଲା ନାହିଁ । ଏବେ ମଧ୍ୟ ସେହି ସାନଭଉଣୀ ପ୍ରତି ମୋର ଅନାବିଳ ସ୍ନେହ ଅତୁଟ ରହିଛି । ସେ ଜଣେ ସୁଲେଖିକା ।

ଫକୀରମୋହନ କଲେଜରେ ମୁଁ ଉଭୟ ବିଜ୍ଞାନ ଓ କଳା ଶ୍ରେଣୀରେ ଏମ.ଆଇ.ଏଲ. ପଢ଼ାଏ । ଆଇ.ଏ. ଓ ବି.ଏ. ଶ୍ରେଣୀରେ ଅପ୍‌ସନାଲ ଓଡ଼ିଆ ବିଷୟ ପଢ଼ାଏ । ପ୍ରଥମ ଦିନ ମୋତେ ଶ୍ରୀଯୁକ୍ତ ଚିନ୍ତାମଣି ବେହେରା ସାନ୍ଧ୍ୟ କଲେଜରେ କ୍ଲାସ ନେବାକୁ କହିଲେ ଓ ମୋତେ ନେଇ ଶ୍ରେଣୀରେ ପରିଚିତ କରାଇଦେଇ ଆସିଲେ । ମୁଁ ତାଙ୍କୁ ପୂର୍ବରୁ ଦେଖି ନ ଥିଲି । ତାଙ୍କ କବିତା ଓ ସମାଲୋଚନା ପଢ଼ିଥିଲି । ସେ ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ କବି ଓ ସମାଲୋଚକ । ମୋତେ କହିଆସିଲେ– 'ଭୟ କରିବ ନାହିଁ । ମନେକରିବ ତୁମ ଆଗରେ ଯେଉଁମାନେ ଅଛନ୍ତି ସେମାନେ ଅଜ୍ଞ ।' ସେ ଚାଲିଗଲା ପରେ ମୁଁ ଶ୍ରେଣୀଗୃହକୁ ଅନାଇଲି । ସମସ୍ତେ ବୟସ୍କ । କିଏ କିଏ ଶିକ୍ଷକ ତ ଅନ୍ୟ କିଏ କିଏ ସରକାରୀ ଅଫିସର କିରାଣି । ଯେତେବେଳେ ମୁଁ ଉପସ୍ଥାନ ନେଲି, ଦେଖିଲି ମୋର ଇନ୍ଦୁପୁର ହାଇସ୍କୁଲର ଖେଳଶିକ୍ଷକ ସେକ ଅତରଅଲି ବସିଛନ୍ତି । ମୁଁ ବିସ୍ମିତ ହେଲି । ପରେ ଜାଣିଲି ସେ ବାଲେଶ୍ୱରର ଆଇ.ଆଇ.ଟି.ର ସୁପରିଣ୍ଟେଣ୍ଡେଣ୍ଟ ଅଛନ୍ତି । ମୋତେ ତାଙ୍କ ବସାକୁ ଡାକିଛନ୍ତି । ଆଗ୍ରହରେ ଖାଇବାକୁ ଦେଇଛନ୍ତି । ମୁଁ କ୍ଲାସରେ ତାଙ୍କ ରୋଲ ନମ୍ବର ଡାକେ ନାହିଁ । ସେହି ସାନ୍ଧ୍ୟ କଲେଜରେ ମୁଁ ଦୁଇମାସ ଖଣ୍ଡ କ୍ଲାସ ନେଇଛି । ସେମାନଙ୍କଠ ସ୍ନେହ ଶ୍ରଦ୍ଧା ଭକ୍ତି ମୋତେ ବିସ୍ମିତ କରିଛି । ବାଟରେ ଦେଖା ହେଲେ ମୁଣ୍ଡ ନୁଆଁଇ ଓ ପାଦ ଛୁଇଁ ପ୍ରଣାମ କରନ୍ତି । ଫକୀରମୋହନ କଲେଜରୁ ବଦଳି ହୋଇଆସିଲା ପରେ ମଧ୍ୟ ମୁଁ ବାରମ୍ବାର ବାଲେଶ୍ୱର କଲେଜ ଓ ଫକୀରମୋହନ ଜୟନ୍ତୀ ତଥା ଅନ୍ୟାନ୍ୟ ସାଂସ୍କୃତିକ ଉତ୍ସବକୁ ବକ୍ତୃତା ଦେବାକୁ ଯାଇଛି । ସେହି ପୁରାତନ ଛାତ୍ରମାନେ ମୋତେ ଦେଖି ବିହ୍ୱଳ ହୋଇଯାଆନ୍ତି । ଜଣେ ଛାତ୍ର ଭବନାଥ । ସେ ଜଣେ ଶିକ୍ଷକ ଥାଆନ୍ତି । 'ବାର୍ତ୍ତା–ଉର୍ମି' ନାମରେ ଗୋଟିଏ ପତ୍ରିକା ପ୍ରକାଶ କରୁଥାନ୍ତି । ତାହାର ବାର୍ଷିକୋତ୍ସବରେ ମୋତେ ସମ୍ମାନିତ କରିଥିଲେ ।

ଯେତେବେଳେ ମୁଁ ଦିବା କଲେଜରେ ଯୋଗ ଦେଲି ସେତେବେଳେ ଛାତ୍ରମାନଙ୍କର ମୋ ପ୍ରତି ଥିବା ଗଭୀର ଶ୍ରଦ୍ଧାକୁ ଅନୁଭବ କଲି । ବାଟରେ ଅଧ୍ୟାପକ ବନ୍ଧୁଙ୍କ ସହିତ ଯାଉଥିଲାବେଳେ ଛାତ୍ରମାନେ ଦେଖିଲେ ମୋତେ ନମସ୍କାର କରନ୍ତି । ଅନ୍ୟମାନଙ୍କୁ କରନ୍ତି ନାହିଁ । ମୋତେ ଇଂରାଜୀ ଅଧ୍ୟାପକ ପ୍ରଭାକରବାବୁ ଥରେ କହିଲେ– 'ତମ ସହିତ ଯିବି ନାହିଁ । ପିଲାଏ ଆମକୁ ପଚାରୁ ନାହାନ୍ତି । ତମକୁ ନମସ୍କାର ହେଉଛନ୍ତି ।' ମୁଁ ପାଠ ପଢ଼ାଇବା ସହିତ ସେହି କଲେଜରେ ଥିଲାବେଳେ ଲାଇବ୍ରେରୀରୁ ବହୁତ ବହି ଆଣି ପଢ଼ିଲି । ପ୍ରଫେସର ବିଯୋତ୍‌କେଶ ତ୍ରିପାଠୀ ଇଂରାଜୀ ବିଭାଗର ଅଭିଜ୍ଞ ବ୍ୟକ୍ତି । ତାଙ୍କ ପାଖକୁ ଯାଇ ଟି.ଏସ୍. ଇଲିୟଟଙ୍କ କବିତା ପଢ଼ିଲି । ତାଙ୍କର ବିଦ୍‌ବତ୍ତା ମୋତେ ମୁଗ୍ଧ କରେ । ବେଦବେଦାନ୍ତ, ଭାଗବତ ଓ ଗୀତା ମଧ୍ୟ ପଢ଼ିଲି । ସାରଳା ଦାସଙ୍କ

ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ଆଦି ପଢ଼ିଲି । ସେତେବେଳେ ମୁଁ କବିତା ଲେଖୁଥାଏ । ସମାଲୋଚନା ମଧ୍ୟ ଲେଖିଲି । ୧୯୬୮ ମସିହାରେ ନଳିନୀ ଦେବୀଙ୍କ ସଂପାଦିତ 'ମରୁତୀର୍ଥ' ପତ୍ରିକାରେ 'ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁଚେତନା' ଶୀର୍ଷକ ପ୍ରବନ୍ଧ ପ୍ରକାଶ କଲି । 'ଲେଖା' ପତ୍ରିକାରେ 'ସୁରେନ୍ଦ୍ର-ଗଳ୍ପ-ମାନସ' ମଧ୍ୟ ପ୍ରକାଶ ପାଇଲା ସେହି ବର୍ଷ । ତାହା ପରେ ଆଧୁନିକ କବିତାର ଭାବପକ୍ଷକୁ ନେଇ ନାନା ପ୍ରବନ୍ଧ ଲେଖିଲି ଓ ୧୯୭୦ ମସିହାରେ ରେଭେନ୍ସା କଲେଜକୁ ଆସିଲା ପରେ ମୋର ଲେଖାଲେଖି ଅବ୍ୟାହତ ରହିଲା ।

ବାଲେଶ୍ୱରରେ ଗୋଟିଏ ଭବ୍ୟ ଲେଖକମଣ୍ଡଳୀ ଥିଲା । କବି ବ୍ରଜନାଥ ରଥ ଥିଲେ ତାହାର କେନ୍ଦ୍ର । ତାଙ୍କର ମୋତିଗଞ୍ଜ ଛକ ପାଖରେ ଥାଏ ବିଶ୍ୱଶ୍ରୀ ପ୍ରେସ୍ । ସେ ନିଜେ ଟେଡ଼ଲ ମେସିନ୍‌ରେ ବହି ଛାପୁଥିଲେ । ବାହାରେ ଦୁଇଟି ବେଞ୍ଚ ଓ ଚେୟାର ପଡ଼ିଥାଏ । ସନ୍ଧ୍ୟାବେଳକୁ ସେଇଠି ସାହିତ୍ୟ ଆସର ଜମେ । ସେଠିକୁ ଆସନ୍ତି ଚିନ୍ତାମଣି ବେହେରା, ବସନ୍ତ କୁମାର ଶତପଥୀ, ଶୁଭେନ୍ଦୁ ମୋହନ ଦାସ, ଚନ୍ଦ୍ର କୁମାର ମହାନ୍ତି, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ଚଣ୍ଡୀଚରଣ କର ପ୍ରମୁଖ ବହୁତ ଲେଖକ । ମୁଁ ମଧ୍ୟ ସେହି ଆସରରେ ଯୋଗ ଦିଏ । ବ୍ରଜବାବୁଙ୍କର 'ମରୁଗୋଲାପ', 'ତିନୋଟି ନିଃଶ୍ୱାସର ଆକାଶ', 'ନିଜସ୍ୱ ସଂଳାପ' ଆଦି କେତୋଟି କବିତା ବହି ବାହାରିଥାଏ । ସେ ମଧ୍ୟ 'କାବ୍ୟ' ଶୀର୍ଷକରେ ପତ୍ରିକାଟିଏ ବାହାର କରୁଥାନ୍ତି । ସେଥିରେ ସେ ମୋତେ କେତେକ କବିତା ପୁସ୍ତକର ସମୀକ୍ଷା ଲେଖିବାକୁ ଦେଇଥିଲେ । ମୁଁ ଲେଖିଥିଲି । ସେ ଭାରି ଖୁସି ହୁଅନ୍ତି । ମୋତେ ସାନଭାଇ ପରି ଦେଖନ୍ତି । ଅନ୍ୟମାନଙ୍କ ଆଗରେ ସେ ମୋର ଭୂରି ଭୂରି ପ୍ରଶଂସା କରନ୍ତି । ଆମେ ସ୍ଥିର କଲୁ ଫକୀରମୋହନ କଲେଜରେ ପ୍ରତି ରବିବାର ଦିନ ସାହିତ୍ୟ ଆସର କରିବୁ । ତାହା ମଧ୍ୟ ହେଲା । ସେଠି ଝଙ୍କାରରେ ବାହାରିଥିବା କବିତାମାନ ପଢ଼ାଯାଏ । ତାହାର ଆଲୋଚନା ହୁଏ । ବସନ୍ତବାବୁ ରମାକାନ୍ତ ରଥଙ୍କର 'ମାଷ୍ଟ୍ରାଣୀ' କବିତାକୁ ଇଂରାଜୀରେ ଅନୁବାଦ କରି ପଢ଼ିଥିଲେ । ବେଶ୍ ଜମୁଥିଲା ସେହି ଆସର । ଏହି ସମୟରେ 'ସ୍ୱାକ୍ଷର' ପତ୍ରିକାରେ ମୋର ଗୋଟିଏ ଆଭାସ ଗଳ୍ପ 'ଭଙ୍ଗା ଦର୍ପଣ' ବାହାରିଥାଏ । ବସନ୍ତବାବୁ ତାକୁ ପଢ଼ି ମୋ ଉପରେ ଖପ୍‌ପା ହୋଇଗଲେ । ମୁଁ କୁଆଡ଼େ ତାଙ୍କୁ ଆକ୍ଷେପ କରି ଲେଖିଛି । ଇତିହାସ ବିଭାଗର ପ୍ରଫେସର ରାଜେନ୍ଦ୍ର କୁମାର ଦାସ ସେହି ଗପକୁ ପଢ଼ି ମୋତେ ତାରିଫ କଲେ । ବସନ୍ତବାବୁଙ୍କୁ ବୁଝାଇ ଦେଲେ । ରାଗ ଶାନ୍ତ ହେଲା ।

ଆଉ ଗୋଟିଏ କରୁଣ ଘଟଣା ଘଟିଗଲା । ବି.ଏ. ପରୀକ୍ଷାରେ ଜଣେ ବଙ୍ଗାଳୀ ଝିଅ ଫେଲ ହୋଇଗଲା । ତା'ର ଅର୍ଥନୀତି ଅନର୍ସ ଥିଲା । ତାକୁ କଲେଜ କ୍ୱିଇନ

ବୋଲି ଡାକୁଥିଲେ । ସେ ଘରେ ରହୁଥାଏ । କ'ଣ କରିବ ବାଟ ପାଉ ନ ଥାଏ । ଆଗରପଡ଼ା ସିଟି ଟ୍ରେନିଂ କଲେଜରେ ପଢୁଥାଏ । ଦିନେ ସେ ମୋତେ ତାଙ୍କ ଘରକୁ ତାଙ୍କର ଜଣେ ବନ୍ଧୁଙ୍କ ହାତରେ ଡକାଇଲେ । ମୁଁ ତାଙ୍କ ଘରକୁ ଗଲି । ସେ ବି.ଏ. ଘରୋଇ ଭାବରେ ପରୀକ୍ଷା ଦେବାକୁ ଚାହିଁଲେ । ଓଡ଼ିଆ ଅପ୍‌ସନାଲ ନେବାକୁ ସ୍ଥିର କଲେ । ମୁଁ ମଧ୍ୟ ସମୟେ ସମୟେ ଯାଇ ତାଙ୍କୁ ଓଡ଼ିଆ ବିଷୟ ବୁଝାଇଦେଲି । ସେ ପରୀକ୍ଷା ଦେଲା । ସେତେବେଳେ ଭୀଷଣ କପି ହେଉଥାଏ । ତାଙ୍କ ରୁମରେ କଳା ସୂତାରେ କପି ବନ୍ଧା ହୋଇ ସବୁ ଟେବୁଲ ପାଖକୁ ଆସୁଥାଏ । ତାଙ୍କ ପାଖକୁ ମଧ୍ୟ ଆସିଲା । ସେ କପିଟିକୁ ନ ଦେଖି ଫୋପାଡ଼ି ଦେଲେ । ନିରୀକ୍ଷକ ଥାଆନ୍ତି ଦର୍ଶନ ବିଭାଗର ଅଧ୍ୟାପକ ଭଟ୍ଟାଚାର୍ଯ୍ୟବାବୁ । ସେ କାହାରିକୁ ନ ଧରି ସେଇ ଝିଅଟିକୁ ଧରି ପ୍ରିନ୍‌ସପାଲଙ୍କୁ ରିପୋର୍ଟ କରିଦେଲେ । ଝିଅଟି ପ୍ରିନ୍‌ସିପାଲଙ୍କ ଅଫିସ ଆଗରେ ଛିଡ଼ାହୋଇ କଇଁ କଇଁ ହୋଇ କାନ୍ଦୁଥାଏ । ମୁଁ ଏତିକିବେଳେ ସେଠି ପହଞ୍ଚି ତାଙ୍କୁ କାନ୍ଦିବାର କାରଣ ପଚାରିଲି । ସେ ସବୁ କଥା ମୋତେ କହିବାରୁ ମୁଁ ପ୍ରିନ୍‌ସପାଲଙ୍କୁ ଯାଇ କହିଲି । ପ୍ରିନ୍‌ସିପାଲ କେ.ପି.ଏ. ପିଲାଇ । ସେ ମୋତେ ଆଗରୁ ଛାତ୍ରମାନଙ୍କ ଷ୍ଟ୍ରାଇକ ବେଳୁ ଜାଣିଥିଲେ । ତେଣୁ ସେ କହିଲେ– 'ମୁଁ ଝିଅଟିର ରିପୋର୍ଟ ପଠାଉ ନାହିଁ । ମୁଁ ଜାଣେ ସମସ୍ତେ କପି କରୁଛନ୍ତି । ଅଯଥାରେ ଝିଅଟିକୁ ହଇରାଣ କରିବା ମୋର ଉଦ୍ଦେଶ୍ୟ ନୁହେଁ । ବରଂ ଭଟ୍ଟାଚାର୍ଯ୍ୟବାବୁଙ୍କୁ କୁହ ସେ ରିପୋର୍ଟଟି ଫେରାଇ ନିଅନ୍ତୁ ।' ମୁଁ ସନ୍ଧ୍ୟାବେଳେ ଭଟ୍ଟାଚାର୍ଯ୍ୟବାବୁଙ୍କୁ ଯାଇ ତାଙ୍କୁ ଅନୁରୋଧ କଲି । ସେ କିନ୍ତୁ ମୋତେ କହିଲେ– 'ବୈଷ୍ଣବବାବୁ, ମୋର ଆପଣଙ୍କ ପ୍ରତି ବହୁତ ଭଲ ଧାରଣା ଥିଲା । ଆପଣ ଗୋଟାଏ ବାଜେ ଚରିତ୍ରର ଝିଅ ପାଇଁ ମୋତେ କହୁଛନ୍ତି ।' ମୁଁ ତାଙ୍କୁ ଧନ୍ୟବାଦ ଜଣାଇ ଚାଲିଆସିଲି ଓ ସେ ଝିଅକୁ କହିଲି ଆଉ ପରୀକ୍ଷା ନ ଦେବାକୁ । ସେହି ରାତିରେ ଗଳ୍ପଟିଏ ଲେଖିଲି– 'ଚରିତ୍ରର ସଂଜ୍ଞା' । କଳିଙ୍ଗ ଖବରକାଗଜର ସଂପାଦକ ଥାଆନ୍ତି ପ୍ରଖ୍ୟାତ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି । ତାଙ୍କ ପାଖକୁ ଗଳ୍ପଟିକୁ ପଠାଇ ଦେଲି । ସେ ଗଳ୍ପଟିକୁ ବର୍ଡର ଲାଇନ୍ ଦେଇ ମଝିପୃଷ୍ଠାରେ ଛାପି ଦେଲେ । ମୁଁ ସେହି କାଗଜରୁ ଦଶବାର ଖଣ୍ଡ କିଣି ଗୋଟିଏ ଭଟ୍ଟାଚାର୍ଯ୍ୟବାବୁଙ୍କୁ ଦେଲି । ଆଉ ଗୋଟିଏ କମନ୍‌ରୁମରେ ରଖିଦେଲି । ଆଉ କେତୋଟି ବନ୍ଧୁମାନଙ୍କୁ ବାଣ୍ଟି ଦେଲି । ମୁଁ ଭାବିଲି କାହାକୁ ସହାନୁଭୂତି ଦେଖାଇଲେ କ'ଣ ଚରିତ୍ର ଖରାପ ହୋଇଯାଏ ? ସେ ଝିଅ ସିଟି ପାସ୍ କରି ଶିକ୍ଷୟିତ୍ରୀ ହେଲା ।

ସେହି ସମୟରେ ଆଉ ଗୋଟିଏ ଘଟଣା ଘଟିଲା । ନିଖିଳ ଉତ୍କଳ ଛାତ୍ର ସମାଜ ଷ୍ଟ୍ରାଇକ୍ କରିଥାନ୍ତି । ରେଭେନ୍ସା କଲେଜର ଅଧ୍ୟକ୍ଷ ପ୍ରଫେସର ଦେବେନ୍ଦ୍ରଚନ୍ଦ୍ର ମିଶ୍ର ଓ ଇଂରାଜୀ ଅଧ୍ୟାପକ ସର୍ବେଶ୍ୱର ଦାଶଙ୍କୁ ପୋଲିସ ବାଡ଼େଇଥାଏ । ଏହି ଘଟଣାର

ପ୍ରତିବାଦରେ ଫକୀରମୋହନ କଲେଜରେ ମଧ୍ୟ ଷ୍ଟ୍ରାଇକ ହେଲା । ନେତୃତ୍ୱ ନେଇଥାନ୍ତି ଅରୁଣ ଦେ, ପ୍ରବୋଧ ମହାପାତ୍ର ପ୍ରମୁଖ । ଫକୀରମୋହନ କଲେଜର ଘର ଅଭାବରୁ ସକାଳୁ ସନ୍ଧ୍ୟାଯାଏ କ୍ଲାସ ହୁଏ । ସେଦିନ ଗଣିତ ଅଧ୍ୟାପକ ଦେବକୀନନ୍ଦନ ମହାନ୍ତି ପ୍ରଥମ ବର୍ଷ ଆଇ.ଏସ୍‌ସି. ଶ୍ରେଣୀରେ ମାଥମେଟିକ୍‌ସ ପଢ଼ାଉଥାନ୍ତି । ଏତିକିବେଳେ ଛାତ୍ରମାନେ ଶ୍ରେଣୀ ପାଖରେ ଛିଡ଼ାହୋଇ ପାଟି କଲେ ଓ କ୍ଲାସରୁ ବାହାରି ଆସିବାକୁ ଆହ୍ୱାନ ଦେଲେ । ଗୋଟିଏ ହାପ୍‌ପ୍ୟାଣ୍ଟ ପିନ୍ଧା ଛାତ୍ରଟିଏ ଯିବାପାଇଁ ଛିଡ଼ା ହୋଇପଡ଼ିଲା । ଦେବକୀବାବୁ ତା' କାନ୍ଧକୁ ମାଡ଼ିଦେଇ ବସିବାକୁ କହିଲେ । ଏତିକିରେ ଛାତ୍ରମାନେ ଉତ୍ତ୍ୟକ୍ତ ହୋଇଗଲେ । ଦେବକୀବାବୁ କମନରୁମକୁ ଆସିଲେ । ସେତେବେଳେ କମନରୁମରେ ମୁଁ, ଇଂରାଜୀ ଅଧ୍ୟାପକ ନିତାଇଦାସ ମୁଖାର୍ଜୀ ଏବଂ ବିଜ୍ଞାନ ଅଧ୍ୟାପକ ବଂଶୀଧର ସାହୁ ଥାଉଁ । ମୁଁ କମନରୁମର ପ୍ରଥମ ଦରଜା ପାଖରେ ହାତ ଦେଇ ଛିଡ଼ାହେଲି । ପିଲାଏ ମୋ ଗୋଡ଼ ଧରି ଭିତରକୁ ଯିବାପାଇଁ ଛାଡ଼ିଦେବାକୁ କହିଲେ । ଦେବକୀବାବୁଙ୍କୁ କଦର୍ଯ୍ୟ ଭାଷାରେ ଗାଳି ଦେଉଥାନ୍ତି । ଟେକା ଚପଲ ମାଡ଼ ହେଉଥାଏ । ମୁଁ ସେମାନଙ୍କୁ ଉଦ୍‌ବୋଧନ ଦେଲି । କଟକରେ ଦୁଇଜଣ ଅଧ୍ୟାପକଙ୍କୁ ପୋଲିସ ମାରିଛି ବୋଲି ତମେ ଷ୍ଟ୍ରାଇକ କରିଛ, ଅଥଚ ତୁମର ନିଜର ଜଣେ ଅଧ୍ୟାପକଙ୍କୁ ମାରିବାକୁ କହୁଛ । ଏହା କ'ଣ ଠିକ୍ ? ପିଲାଏ କ'ଣ ବୁଝିଲେ କେଜାଣି ସମସ୍ତେ ପଳାଇଯାଇ କଲେଜ ହତାରେ ଥିବା ଶିବମନ୍ଦିର ପାଖରେ ବରଗଛ ଛାଇରେ ସଭା କଲେ । ସେତେବେଳେ ସେହି କଲେଜର ଗୋଟିଏ ପରଂପରା ଥିଲା ଯେ ପିଲାଏ କୌଣସି କଥାରେ ଗଣ୍ଡଗୋଳ କଲେ ବା ଷ୍ଟ୍ରାଇକ୍ କଲେ ବାଲେଶ୍ୱର ସହରର ରାଜନେତା ଓ ଅନ୍ୟ ଲୋକମାନେ ଆସି ପିଲାଙ୍କ ସହିତ ମିଶି ଆନ୍ଦୋଳନ କରନ୍ତି । ଏପରିକି ପିକ୍‌ନିକ୍‌କୁ ଗଲେ ମଧ୍ୟ ସେମାନେ ଧସେଇ ପଶିଯାଆନ୍ତି । ପ୍ରିନ୍‌ସିପାଲ ଆସି ନ ଥାନ୍ତି । କୌଣସି ଅଧ୍ୟାପକ ମଧ୍ୟ ପିଲାଙ୍କ ପାଖକୁ ଯାଉ ନ ଥାନ୍ତି । ମୁଁ ପ୍ରିନ୍‌ସିପାଲଙ୍କ ଅଫିସ ବାରଣ୍ଡାରେ ଛିଡ଼ାହୋଇ ଦୁଇଜଣ ନେତାଳିଆ ପିଲାଙ୍କୁ ଡାକି କହିଲି ଯେ ତୁମେ ଆମକୁ ଗାଳି ଦିଅ ବା ମାର ମାତ୍ର ବାହାର ଲୋକଙ୍କ ଦ୍ୱାରା ଆମକୁ ଗାଳି ଓ ମାଡ଼ ଦେଲେ କ'ଣ ଭଲ ହେବ ? ତୁମ ଘରେ ତୁମ ବାପା ବା ଭାଇଙ୍କୁ ଯଦି ବାହାର ଲୋକେ ପଶି ଗାଳିମନ୍ଦ କରନ୍ତି ତୁମେ କ'ଣ ସହିବ ? ଏତିକି କଥାରେ ସେ ପିଲା ଦୁଇଜଣ ଭାଷଣବାଜି ଦେଉଥିବା ସ୍ଥାନକୁ ଯାଇ ମାଇକ ବନ୍ଦ କରିଦେଲେ ଓ ସମସ୍ତଙ୍କୁ କଲେଜ ହତା ଛାଡ଼ି ଚାଲିଯିବାକୁ କହିଲେ । ସମସ୍ତେ ପଳାଇଗଲେ । କଲେଜ ଶାନ୍ତ ହେଲା । ପ୍ରିନ୍‌ସିପାଲ ଆସି ସବୁ କଥା ଶୁଣି ମୋତେ ଖୁବ୍ ପ୍ରଶଂସା କଲେ ।

ଆଉ ଥରେ କଲେଜର ବାର୍ଷିକ ଉତ୍ସବ ଉପଲକ୍ଷେ ହଲରେ ନାଟକ ହେଉଥାଏ । ଅଧ୍ୟାପକ/ଅଧ୍ୟାପିକା, ଛାତ୍ରଛାତ୍ରୀମାନେ ନାଟକ ଦେଖୁଥାନ୍ତି । ଏହି ସମୟରେ ମୁଁ ମୋ ବସାରୁ ନାଟକ ଦେଖିବାକୁ ଆସିଲି । ଗେଟ୍ ପାଖରେ ମିକ୍ସଚର ଦୋକାନ, ଚା' ଦୋକାନ ସବୁ ପଡ଼ିଥାଏ । ପିଲାଏ ଖାଉଥାନ୍ତି । ସେଠି ଦୁଇଜଣ ପିଲା ଗୋଲୋକ ଓ ବିରଞ୍ଚି ମଦ ପିଇଦେଇ ରସାୟନ ବିଭାଗର ଅଧ୍ୟାପକ ବ୍ରଜକିଶୋର ସାହୁଙ୍କୁ କୁତ୍ସିତ ଭାଷାରେ ଗାଳି ଦେଉଥାନ୍ତି । ସେହି ଦୁଇଜଣଙ୍କୁ ମୁଁ ଆଗରୁ ଜାଣିଥାଏ । ସେମାନେ ମୋତେ ମାନନ୍ତି । ମୁଁ ଦେଖିଲି ପରିସ୍ଥିତି ଭଲ ନୁହେଁ । ଏ ଦୁଇଜଣ– ଜଣେ ଡେଙ୍ଗା ଓ ଅନ୍ୟ ଜଣେ ଗେଡ଼ା । କଲେଜରେ କେବଳ ଆତଙ୍କ ନୁହନ୍ତି, ବାହାରେ ମଧ୍ୟ ଛାତ୍ରୀମାନଙ୍କ ବେଣୀ ଟାଣି ପକାଇ ଦେଇ ଚାଲିଯାଆନ୍ତି । ସେ ଦୁଇଜଣଙ୍କର ସ୍ଥାନ ଜ୍ଞାନ ନ ଥାଏ । ମୁଁ ସେମାନଙ୍କୁ ପାଖକୁ ଡାକି ମିକ୍ସଚର କିଣି ଖାଇବାକୁ ଦେଲି । ହସକଥା କହି ହସେଇଲି । ତା'ପରେ କହିଲି ଘରେ ତମ ବାପା କି ଦାଦା କି ବଡ଼ଭାଇ ଭୁଲରେ ଯଦି ତମକୁ ଗାଳି ଦିଅନ୍ତି କି ମାରନ୍ତି ତମେ କ'ଣ ସେମାନଙ୍କୁ ଗାଳି ଦେବ ବା ମାରିବ ? ସେମାନେ ମନା କଲେ । ତା'ପରେ କହିଲି ଶିକ୍ଷକ କ'ଣ ତମର ପିତୃସମାନ ନୁହନ୍ତି ? ଯଦି କିଛି ସେ ଭୁଲ କରିଛନ୍ତି ତମେ ତାଙ୍କୁ ମାରିବା କ'ଣ ଠିକ୍ ହେବ ? ସେମାନେ ବୁଝିଗଲେ ଓ ସଙ୍ଗେସଙ୍ଗେ ବ୍ରଜବାବୁଙ୍କୁ ଭୁଲ ମାଗିବାକୁ ଗଲେ । ମୁଁ ସେମାନଙ୍କୁ ମନାକଲି ଓ ପରେ ଭୁଲ ମାଗିବାକୁ କହିଲି । ମୁଁ ନାଟକ ନ ଦେଖି ବସାକୁ ଚାଲିଆସିଲି । ସେମାନେ ଯାଇଁ ସେଇଦିନ ବ୍ରଜବାବୁଙ୍କୁ ଭୁଲ ମାଗିଲେ । ଏକଥା କମନ୍‌ରୁମରେ ଆଲୋଚନା ହେଲା ଓ ସମସ୍ତେ କୌତୁକ ଅନୁଭବ କଲେ ।

ଫକୀରମୋହନ କଲେଜରେ ଥିଲାବେଳେ ମୁଁ ପ୍ରଥମଥର ପାଇଁ ଠକିଗଲି । କଲେଜର ଦକ୍ଷିଣପଟ ରାସ୍ତାକୁ ଲାଗି ଗୋଟିଏ ବଡ଼ ଦୋମହଲା ଘର ଥାଏ । ଉପର ମହଲାର ଗୋଟିଏ ପଟରେ ପ୍ରଫେସର ବିୟୋତ୍‌କେଶ ତ୍ରିପାଠୀ ଓ ଅନ୍ୟ ପଟରେ ପ୍ରଫେସର ଅଜିତ କୁମାର ସେନ୍ ସପରିବାର ରହୁଥାଆନ୍ତି । ତଳପଟେ ଗୋଟିଏ ପାଖରେ ମୁଁ, ପଦାର୍ଥ ବିଜ୍ଞାନ ବିଭାଗର ଶଶିଭୂଷଣ ପ୍ରଧାନ, ଇଂରାଜୀ ବିଭାଗର ଗୌରୀପଦ ତ୍ରିପାଠୀ ଓ ଅର୍ଥନୀତି ବିଭାଗର ବୀରେଶ୍ୱର ଶୁକ୍ଳା ରହୁଥାଉ । ଚାରି ପାଞ୍ଚ ବଖରା ଘର । ଗାଧୁଆଘର, ରୋଷେଇଘର, ବାହାରଘର ଥାଏ । ଆମର ଜଣେ ପୂଜାରୀ ଦରକାର ହେଉଥାଏ । କଲେଜର ଛାତ୍ରମାନେ ମଧ୍ୟ ଆମ ପାଇଁ ପୂଜାରୀ ଖୋଜୁଥାଆନ୍ତି । ଏକଦା ସନ୍ଧ୍ୟା ସମୟରେ ବାହାର ବାରଣ୍ଡାରେ ଗୋଟିଏ ଚେୟାର୍ ପକାଇ ମୁଁ ବସିଥାଏ । ଅନ୍ୟମାନେ ନ ଥାନ୍ତି । ଏହି ସମୟରେ ଜଣେ ଲୋକ ପହଞ୍ଚିଗଲା । ସେ ଖଣ୍ଡେ ନେଳିଆ ଲୁଙ୍ଗି କଛା ମାରି ପିନ୍ଧିଥାଏ । ଦେହରେ ଜାମାପଟା ନ ଥାଏ । ହାତରେ ଗୋଟିଏ ଛୋଟ

ବ୍ୟାଗ । ସେ ମୋତେ ନମସ୍କାର କରି କହିଲା ହଷ୍ଟେଲର ପିଲାଏ ତାକୁ ପଠାଇଛନ୍ତି । ସେ ରୋଷେଇ କରିବ । ମୁଁ ଖୁସି ହୋଇଗଲି ଓ ତା'ର ପରିଚୟ ପଚାରିଲି । ସେ ତା' ନାଁ ଗୋଲୋକ ମହାନ୍ତି ଓ ଘର ଯାଜପୁରର ଅହିୟାସ ଗାଁ ବୋଲି କହିଲା । ମୁଁ ତାକୁ ସେଇ ଗାଁର କେଶବଚନ୍ଦ୍ର ସାମଲ ଓ ତାଙ୍କ ଝିଅ କିଶୋରୀ କଥା ପଚାରିଲି । ସେ ସେମାନଙ୍କୁ ଜାଣିଛି ବୋଲି କହିବାରୁ ମୋର ବିଶ୍ୱାସ ହୋଇଗଲା ଓ ତାକୁ ରୋଷେଇବାସ କରିବାକୁ କହିଲି । ମୁଁ ତାକୁ ତିରିଶ ଟଙ୍କା ଦେଲି ବଜାରରୁ ପନିପରିବା ଓ ଚାଉଳ ଆଦି କିଣି ଆଣିବାକୁ । ଏତିକିବେଳେ ଶଶିବାବୁ ପହଞ୍ଚିଗଲେ । ସେ ମୋ'ଠାରୁ ଶୁଣି ତାକୁ ଆହୁରି କୋଡ଼ିଏ ଟଙ୍କା ଦେଲେ । ସେ ବଜାରକୁ ଗଲା । ଜିନିଷପତ୍ର କିଣି ଟିକେ ବିଳମ୍ବରେ ଆସିଲା । ଗୌରୀପଦବାବୁ ଓ ବୀରେଶ୍ୱର ଶୁକ୍ଳା ପହଞ୍ଚିଗଲେ । ଗୌରୀପଦବାବୁ ତ ନାଟକ କରନ୍ତି । ତେଣୁ ସେ ନାଟକୀୟ ଭଙ୍ଗୀରେ ଖୁସି ହୋଇ ସଂଳାପ ଶୁଣାଇଲେ । ବୀରେଶ୍ୱରବାବୁ ତାକୁ ବିଶ୍ୱାସ କଲେ ନାହିଁ । ବରଂ କହିଲେ ସେ ଟଙ୍କାପଇସା ଦେବ ନାହିଁ । ଆମ ସାଙ୍ଗରେ ଖାଇବ ଓ ଦେଖିବ କେଉଁଦିନ ସେ ଆମକୁ ନାଲି ଗାମୁଛା ପିନ୍ଧାଇ ଚମ୍ପଟ ମାରିବ । ସେ ଆମ ବସାରେ ସାତଦିନ ରହିଲା । ଏହା ମଧ୍ୟରେ ତାକୁ ଆମେ ମଶୁରି, ଲୁଙ୍ଗି, ଲୁଗା, ତଉଲିଆ କିଣିଦେଲୁ । ସେ ଭଲ ରୋଷେଇ କଲା । ସମସ୍ତଙ୍କ ଘର ପରିଷ୍କାର ପରିଚ୍ଛନ୍ନ କଲା । ଆମର ବିଶ୍ୱାସ ଜନ୍ମାଇଦେଲା । ବାହାର ଘରେ ସେ ଶୁଏ । ପ୍ରତିଦିନ ତା' ବିଛଣାପତ୍ର ଭଙ୍ଗାଭଙ୍ଗି କରି ଖଟିଆର ଗୋଟିଏ ମୁଣ୍ଡରେ ସଜେଇ ରଖେ ଓ ସେ ପିନ୍ଧି କରି ଆସିଥିବା ଛିଣ୍ଡା ଲୁଙ୍ଗିକୁ ତା' ଉପରେ ଚିକ୍କଣ କରି ରଖେ ।

ସେ ଆମଠାରୁ ଟଙ୍କା ନେଲା ମାସକ ପାଇଁ ଚାଳ ଓ ସଉଦା କିଣି ଆଣିବାକୁ । କେବଳ ପ୍ରତିଦିନ ଟଙ୍କା ନିଏ ପନିପରିବା ଓ ମାଛ ଆଦି ଆଣିବାକୁ । କ୍ରମେ ସେ ପାଞ୍ଚଶହ ଟଙ୍କା ନେଇଗଲା । ମୋର ନୂଆ ବାଟା ଛତା ବର୍ଷା ହୋଇଥିବାରୁ ଓ ପାରକର ପେନ୍ ମଧ୍ୟ ନେଲା କ'ଣ ହିସାବ ଲେଖିବ ବୋଲି । ସେତେବେଳକୁ ତା' ପାଖରେ ପାଞ୍ଚଶହ/ଛ'ଶହ ଟଙ୍କା ରହିଗଲାଣି । ସଉଦା ଆଣୁ ନ ଥାଏ । ଆମେ ପଚାରିଲେ ସେ କହେ– ଆଜି ଭଲ ସଉଦା ମିଳିଲା ନାହିଁ । ଆସନ୍ତାକାଲି ଆଣିବ । ସେଦିନ ଉପରଓଳି ସେ ଆମକୁ ଜଳଖିଆ ଓ ଚାହା ଦେଇ ସଉଦା ପାଇଁ ଗଲା । ସନ୍ଧ୍ୟା ଗଡ଼ିଲା । ନଅଟା/ଦଶଟା ବାଜିଲା । ଗୋଲୋକର ଦେଖା ନାହିଁ । ବୀରେଶ୍ୱର ଥଟ୍ଟା କରୁଥାଏ– ଆଜି ସେ ନାଲି ଗାମୁଛା ପିନ୍ଧାଇଲା । ଆମେ ବ୍ୟସ୍ତ ହୋଇ ତା' ବିଛଣା ଟେକି ଦେବାରୁ ଦେଖିଲୁ ସବୁ ଜିନିଷ ସେ ନେଇଯାଇଛି । ଭିତରେ ଅଖା ପୂରାଇ ସାଇଜ୍ କରି ରଖିଛି । ଆମେ ତାକୁ ଖୋଜିଲୁ । ପିଲାଏ ମଧ୍ୟ ଖୋଜିଲେ । ଆଉ ସେ ମିଳିଲା ନାହିଁ । ମୋଠୁଁ ସେ

ସବୁଠାରୁ ବେଶି ଟଙ୍କା, କଲମ ଓ ଛତା ନେଇଯାଇଥିଲା । ସେଦିନ ମୁଁ ଭାବିଲି କ'ଣ ମଣିଷଙ୍କୁ ବିଶ୍ୱାସ କରିବା ଭୁଲ୍ ? ପିଲାଦିନେ ଗାଁରେ ଶୁଣିଥିଲି କଳାମୁଣ୍ଡିଆକୁ ବିଶ୍ୱାସ ନାହିଁ । ଭାଗବତରେ ଲେଖା ଅଛି ମଣିଷ ଶ୍ରେଷ୍ଠ ଜୀବ । ତା' ଦେହରେ ଭଗବାନ୍ ଅଛନ୍ତି । ତଥାପି ମଣିଷ ଏତେ ବିଶ୍ୱାସଘାତକ ହେଉଛି କିପରି ? ମୋ ଜୀବନସାରା ଏଇମିତି ବିଶ୍ୱାସ କରି କେତେ ଅସୁବିଧା ଭୋଗିଛି । ତଥାପି ମୁଁ ମଣିଷଙ୍କୁ ଭଲ ପାଏ । ପ୍ରକୃତି ତ ମୋର ଏଇଆ, ତୁଟିବ କିପରି ?

ଆଉ ଥରେ ସେହି ସନ୍ଧ୍ୟାବେଳେ ଗୋଟିଏ ଲୋକ ଆସି ମୋ ପାଖରେ କାନ୍ଦିଲା । ତା' ପୁଅ ମରିଯାଇଛି । ଶୁଦ୍ଧି ହେବାକୁ ଟଙ୍କାପଇସା ନାହିଁ । ମୋତେ ବିକଳ ଲାଗିଲା । ତାକୁ କିଛି ଟଙ୍କା ଦେଲି । କିଛିଦିନ ଗଲା ପରେ ସେଇ ଲୋକ ପୁଣି ଆସିଲା । ପୁଅ ମରିଯାଇଛି ବୋଲି କହିଲା, କାନ୍ଥରେ ମୁଣ୍ଡ ବାଡ଼େଇଲା । ମୁଁ ତାକୁ ଦେଖୁଥାଏ । ପଚାରିଲି ତମର କେତେ ପୁଅ କି ? ଏଇ ଅଳ୍ପଦିନ ତଳେ ତୁମେ ଆସି ପୁଅ ମରିଯାଇଛି ବୋଲି କହି ଟଙ୍କା ନେଲ, ଏବେ କ'ଣ ପୁଣି ପୁଅ ମରିଗଲା ? ସେତେବେଳକୁ ଆମ ପାଖରେ ଗୋଟିଏ ପିଲା, ନାଁ ପ୍ରଫୁଲ୍ଲ ଥାଏ । ସେ ଖୁବ୍ ଭଲ ପିଲା ଓ ମୋର ତା' ପ୍ରତି ଗଭୀର ଶ୍ରଦ୍ଧା । ତାକୁ ଡାକିଲି ଓ କହିଲି ଏ ଲୋକକୁ ବାନ୍ଧି ପକା, ପୋଲିସକୁ ଦେବା । ସେ ଯେମିତି ଶୁଣିଲା ଦଉଡ଼ି ଦଉଡ଼ି ପଳାଇଲା । ଆଜିର ଯୁଗରେ ଏଇପରି କେତେ ଲୋକ ନାନା ରୂପରେ ଆସି ଲୋକଙ୍କୁ ଠକନ୍ତି । ମୁଁ ପ୍ରଥମେ ସେଇ ବାଲେଶ୍ୱରରେ ଠକ ହାତୁଡ଼ରେ ପଡ଼ିଲି । ଏବେ ଯେ ନ ପଡୁଛି ନୁହେଁ । ତଥାପି ଚାଲିଛି । ପ୍ରଫୁଲ୍ଲ ଆମ ପାଖରେ ରହିଲା । ତାକୁ ମୁଁ ସାନଭାଇ ପରି ଶ୍ରଦ୍ଧା କରେ । ମୁଁ ଆସିବା ପୂର୍ବରୁ ତାକୁ ବାଲେଶ୍ୱର ଟେଲିଫୋନ ଏକ୍ସ୍‌ଚେଞ୍ଜରେ ଦୈନିକ ଶ୍ରମିକ ଭାବରେ ରଖିଦେଲି ଓ ପରେ ସେ ସ୍ଥାୟୀ ହୋଇଗଲା । ସେ ବିବାହ କଲା ବି.ଏ., ବି.ଇଡ଼ି. ପାଶ୍ କରି ଶିକ୍ଷୟିତ୍ରୀ ଥିବା ଜନୈକା ଶିକ୍ଷୟିତ୍ରୀଙ୍କୁ । ଏବେ ସେ ଖୁବ୍ ଭଲରେ ଅଛି ଓ କେତେବେଳେ କେମିତି ମୋ କଟକ ବସାକୁ ଆସେ ।

ବାଲେଶ୍ୱରରେ ଥିଲାବେଳେ ମୁଁ କବିତା ଓ ସମାଲୋଚନା ଲେଖାଲେଖି କରୁଥାଏ । 'ଡଗର' ପତ୍ରିକାରେ ସଂସ୍କୃତି ଓ ସାହିତ୍ୟ ସଂପର୍କରେ ଧାରାବାହିକ ଲେଖା ପ୍ରକାଶ ପାଉଥାଏ । ସଂସ୍କୃତି ଓ ସାହିତ୍ୟ, ବିଶ୍ୱସଂସ୍କୃତି ଓ ସାହିତ୍ୟ, ଭାରତୀୟ ସଂସ୍କୃତି ଓ ସାହିତ୍ୟ, ଓଡ଼ିଶାର ସଂସ୍କୃତି ଓ ସାହିତ୍ୟ, ଆଦିବାସୀ ସଂସ୍କୃତି ଓ ସାହିତ୍ୟ, ହୋ ସଂସ୍କୃତି : ଏକ ଅଧ୍ୟୟନ ଇତ୍ୟାଦି ଲେଖା ପ୍ରକାଶ ପାଇ ପାଠକୀୟ ଶ୍ରଦ୍ଧା ଲାଭ କରିଥାଏ । ମୁଁ ୧୯୭୦ ମସିହାରେ ରେଭେନ୍ସା କଲେଜକୁ ବଦଳି ହୋଇ ଆସିଲା ପରେ ଦିନେ ମୋତେ ବିଭାଗର ଅଧ୍ୟାପକ ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି କହିଲେ ଯେ ମୋତେ ସରଳାଦେବୀ

ଦେଖା କରିବାକୁ ଚାହୁଁଛନ୍ତି । ସେ ମୋର ଡଗରର ଲେଖାଗୁଡ଼ିକ ପଢ଼ି ମୋତେ ବୟସ୍କ ଲୋକ ବୋଲି ଭାବିଥାନ୍ତି । ବିଚିତ୍ରାନନ୍ଦବାବୁ ମୋତେ ତାଙ୍କ ଘରକୁ ନେଇଗଲେ । ଆମେ ଛିଡ଼ା ହୋଇଥାଉ । ସରଳାଦେବୀ ଦରଜା ଖୋଲି ବିଚିବାବୁଙ୍କୁ କହିଲେ– 'ବୈଷ୍ଣବବାବୁଙ୍କୁ ଆଣିଲେ ନାହିଁ ?' ବିଚିବାବୁ ମଜାଳିଆ ଲୋକ । ସେ କହିଲେ– 'ହଁ ଆଣିଛି ।' ସରଳାଦେବୀ ମୋତେ ଅନାଇ ବିସ୍ମିତ ହେଲେ । କହିଲେ– 'ମୁଁ ଭାବିଥିଲି ତୁମେ ବୁଢ଼ାଲୋକ ହୋଇଥିବ । ତମେ ତ ଯୁବକ ! ସଂସ୍କୃତି ବିଷୟରେ ଲେଖୁଛ କେମିତି ?' ସେଦିନ ସରଳାଦେବୀଙ୍କ ପ୍ରଶଂସା ମୋ ଭିତରେ ପୁଲକ ସୃଷ୍ଟି କଲା ।

ମୁଁ ପୂର୍ବରୁ ସରଳାଦେବୀଙ୍କ ନାଁ ଶୁଣିଥାଏ । ତାଙ୍କର 'ସାରଳା ମହାଭାରତରେ ନାରୀ' ପୁସ୍ତକ ପଢ଼ିଥାଏ । ସେ ଯେ 'ବାସନ୍ତୀ' ଉପନ୍ୟାସର ଅନ୍ୟତମ ଲେଖିକା, ତାହା ମଧ୍ୟ ଜାଣିଥାଏ । ସେ ଥିଲେ ସ୍ୱାଧୀନତା ସଂଗ୍ରାମ କାଳର ଅଗ୍ନିକନ୍ୟା । ବଡ଼ ନିର୍ଭୀକା । ତାଙ୍କର ସ୍ୱାମୀ ଭାଗୀରଥି ମହାପାତ୍ର । ସେ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ । ତାଙ୍କର ଉତ୍ସାହ ପାଇ ମୁଁ ନିଜକୁ ଧନ୍ୟ ମନେକଲି । ସେହି ବାଲେଶ୍ୱରରେ ଥିଲାବେଳେ ସହରର ବହୁ ବିଶିଷ୍ଟ ଲୋକଙ୍କ ସହିତ ମୋର ସଂପର୍କ ବଢ଼ିଲା । ଫକୀରମୋହନଙ୍କ ଦ୍ୱାରା ପ୍ରକାଶ ପାଇଥିବା 'ବାଲେଶ୍ୱର ସମ୍ବାଦ ବାହିକା'ର ନୂତନ ପ୍ରସ୍ତ ସାମ୍ବାଦିକ ମିହିର ଆଚାର୍ଯ୍ୟଙ୍କ ସଂପାଦନାରେ ବାହାରିଲା । ସେଥିରେ ମଧ୍ୟ ମୋର ଲେଖା ପ୍ରକାଶ ପାଇଲା । ଏଣେ ଆଧୁନିକ କବିତା ଓ ଗଳ୍ପର ବିଭିନ୍ନ ଦିଗ ଉପରେ ଆଲୋଚନା ଲେଖିବା ସହିତ ସୁରେନ୍ଦ୍ର ଗଳ୍ପ-ମାନସ ଲେଖା ପ୍ରକାଶ କଲି । ଆହୁରି କେତେ କେତେ ଲେଖା ସେହି ଚାରିବର୍ଷ ମଧ୍ୟରେ ମୁଁ ପ୍ରକାଶ କରିଥାଏ । ଚଣ୍ଡୀଚରଣ କର 'ଏବଂ' ବୋଲି ଗୋଟିଏ ପତ୍ରିକା ବାହାର କଲେ । ସେହି ସମୟରେ ଅର୍ଥହୀନ ଓ କିଛି ଅବ୍ୟୟ ପଦକୁ ନେଇ ପତ୍ରିକାମାନଙ୍କର ନାମକରଣ କରାଯାଉଥାଏ । ଡଞ୍ଚଠ, ଏବଂ, କିନ୍ତୁ, ତଥାପି, ଅଥବା, ଉବାଚ– ଏଇପରି କେତେ ନାଁ । 'ଏବଂ' ପତ୍ରିକା ସହିତ ମୁଁ ସଂପୃକ୍ତ ହେଲି । ସେହି ପତ୍ରିକାରେ ଆମେ ପ୍ରାୟୋଗିକ ଆଲୋଚନା କଲୁ । ଅନେକ କବିତା, ଗଳ୍ପ ଇତ୍ୟାଦିର ପ୍ରାୟୋଗିକ ଆଲୋଚନା କରି ଓଡ଼ିଆ ସମାଲୋଚନାରେ ଗୋଟିଏ ନୂତନ ଧାରା ସୃଷ୍ଟି କରିଥିଲୁ । ଚଣ୍ଡୀବାବୁ ମୋର ପ୍ରିୟ ବନ୍ଧୁ । ସେ କବି । ସପ୍ତଶତୀ ଚଣ୍ଡୀ ତାଙ୍କର ମୁଖସ୍ଥ । ମିତ୍ରସେନପୁର ହାଇସ୍କୁଲରେ ସେ ପ୍ରଧାନଶିକ୍ଷକ ଥାଆନ୍ତି । ସେ ଚାହିଁଲେ ଓଡ଼ିଆ ସାହିତ୍ୟରେ ଘରୋଇ ଭାବରେ ଏମ୍.ଏ. ପରୀକ୍ଷା ଦେବାକୁ । ମୁଁ ତାଙ୍କୁ ସାହାଯ୍ୟ କଲି ଓ ସେ ଏମ୍.ଏ. ପାସ୍ କରି ଫକୀରମୋହନ କଲେଜରେ ଅଧ୍ୟାପକ ହେଲେ । ଗବେଷଣା କରିବାକୁ ମୋ ଅଧୀନରେ ରେଜିଷ୍ଟ୍ରେସନ କରିଥିଲେ ମାତ୍ର ସେ ତାହା କରିପାରିଲେ ନାହିଁ । ସେ ବଡ଼ ଅମାୟିକ ଓ ଉଦାର ଲୋକ । ସେତେବେଳେ ଶୁଭେନ୍ଦୁ ମୋହନ

ଦାସ, ପ୍ରଣବ କୁମାର ଦାସ, କୁଞ୍ଜ ରାୟ, ପ୍ରହରାଜ ସତ୍ୟନାରାୟଣ ନନ୍ଦ ପ୍ରମୁଖଙ୍କ ସହିତ ମୋର ଘନିଷ୍ଠ ବନ୍ଧୁତା ଥାଏ । ସେମାନଙ୍କର ସ୍ନେହ ଶ୍ରଦ୍ଧା ଭୁଲିପାରେ ନାହିଁ ।

ମୁଁ ବାଲେଶ୍ୱରରେ ଥିଲାବେଳେ ସେକାଳର ବୃହତ୍ତର ବାଲେଶ୍ୱର ଜିଲାରେ ମାତ୍ର ଗୋଟିଏ ସରକାରୀ ମହାବିଦ୍ୟାଳୟ ଥିଲା– ତାହା ଫକୀରମୋହନ କଲେଜ । ପୁରାତନ ଜିଲା ସ୍କୁଲରେ କଲେଜ ହେଉଥାଏ । ପରେ କେତେକ ନୂତନ କୋଠା ନିର୍ମିତ ହେଲା । ଭଦ୍ରକରେ ଗୋଟିଏ ଘରୋଇ କଲେଜ ହୋଇଥାଏ । ପ୍ରାୟ ସତୁରୀ ମସିହା ବେଳକୁ ଜଳେଶ୍ୱରରେ ଦୀନକୃଷ୍ଣ ମହାବିଦ୍ୟାଳୟ ଓ ସୋରୋରେ ଉପେନ୍ଦ୍ରନାଥ ମହାବିଦ୍ୟାଳୟ ନୂଆ କରି ଆରମ୍ଭ ହେଲା । ତେଣୁ ସମଗ୍ର ବାଲେଶ୍ୱର ଜିଲ୍ଲାରୁ ଛାତ୍ରଛାତ୍ରୀମାନେ ଆସି ଫକୀରମୋହନ କଲେଜରେ ପଢୁଥିଲେ । ମୁଁ ଭୋଗରାଇ, ଜଳେଶ୍ୱର, ରାଇବଣିଆ, ରୂପ୍‌ସାଠାରୁ ଆରମ୍ଭ କରି ସୋରୋ, ଭଦ୍ରକ, ବାସୁଦେବପୁର, ଅଭଣା ଆଦି ନାନା ସ୍ଥାନକୁ ସଭାସମିତିକୁ ଯାଉଥାଏ । ମୋର ପ୍ରଶଂସା ସମସ୍ତେ କରନ୍ତି । ମୁଁ ମଧ୍ୟ ସମାଜବାଦୀ ନେତା ରବୀନ୍ଦ୍ରମୋହନ ଦାସ, ଶ୍ୟାମସୁନ୍ଦର ମହାପାତ୍ର, ଡାକ୍ତର ରାଧାଦେବୀ ପ୍ରମୁଖଙ୍କ ସଂପର୍କରେ ଆସିଥାଏ । ବାଲେଶ୍ୱରରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ପ୍ରଭାବ ଥାଏ । ମୋତେ କେତେଜଣ ପିଲା ଆସି ବିଦ୍ୟାର୍ଥୀ ପରିଷଦର ସଭାପତି ହେବାକୁ ଅନୁରୋଧ କଲେ । ମୁଁ ସମ୍ମତି ଦେଲି । ସଭାପତି ହେଲା ପରେ କମ୍ୟୁନିଷ୍ଟ ଦଳ ସମର୍ଥିତ ଛାତ୍ରମାନେ ମୋତେ ଆସି ଅନୁରୋଧ କଲେ ବିଦ୍ୟାର୍ଥୀ ପରିଷଦରୁ ଦୂରେଇଆସିବା ପାଇଁ । ମୁଁ କିନ୍ତୁ ସଭାପତି ରହିଥାଏ । ଏକଦା ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ସର୍ବଭାରତୀୟ ଗୁରୁ ଗୋଲେଲୱାଲକର ବାଲେଶ୍ୱରକୁ ଆସିଥାନ୍ତି । ବାଲେଶ୍ୱର ଷ୍ଟେଡ଼ିୟମରେ ଏକ ବିରାଟ ଜନସଭାରେ ସେ ଭାଷଣ ଦେଲେ । ବିଭିନ୍ନ ରାଜନେତାଙ୍କୁ ସେ ନିମନ୍ତ୍ରଣ କରିଥାନ୍ତି । ତାଙ୍କ ସହିତ ଆଲୋଚନା କରିବା ପାଇଁ କଂଗ୍ରେସ, କମ୍ୟୁନିଷ୍ଟ ଆଦି ଦଳର ବହୁ ବିଶିଷ୍ଟ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସିଥାନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ତାଙ୍କୁ ପ୍ରଶ୍ନ କଲେ । ମୁଁ ବିଦ୍ୟାର୍ଥୀ ପରିଷଦର ସଭାପତି ଭାବରେ ତାଙ୍କ ପାଖରେ ବସିଥାଏ । ସେହି ଶ୍ମଶ୍ରୁଧାରୀ ତେଜୋଦୀପ୍ତ ମଣିଷଟି ସମସ୍ତ ପ୍ରଶ୍ନର ଉତ୍ତର ଏପରି ଚମତ୍କାର ଢଙ୍ଗରେ ଦେଲେ ଯେ କୌଣସି ନେତା ଦ୍ୱିତୀୟଥର ପ୍ରଶ୍ନ କରିପାରିଲେ ନାହିଁ । ସେଦିନ ସେ ମୋତେ ତାଙ୍କ ରଚିତ 'Bunch of thoughts' ପୁସ୍ତକ ଖଣ୍ଡେ ଦେଲେ । ସେହି ବହିଟି ମୋତେ ଅନେକ ବିଷୟରେ ଆଲୋକିତ କରିଥିଲା ।

କଲେଜରେ ବିଦ୍ୟାର୍ଥୀ ପରିଷଦର ପିଲାଙ୍କୁ କମ୍ୟୁନିଷ୍ଟ ସମର୍ଥିତ ପିଲାଏ ମାରଧର କରନ୍ତି । ସେମାନେ କିଛି କହନ୍ତି ନାହିଁ । ଥରେ ରବିବାର ଦିନ ବିଦ୍ୟାର୍ଥୀ ପରିଷଦର ପିଲାଏ ଏକଜୁଟ ହୋଇ ଖୋଲାଖୋଲି ପିଟାପିଟି ହେବାକୁ ଆହ୍ୱାନ ଦେଲେ । ସେହି

ଦିନରୁ ସେମାନଙ୍କ ମଧ୍ୟରେ ଗଣ୍ଡଗୋଳ ବନ୍ଦ ହୋଇଗଲା । ବାଲେଶ୍ୱର କଲେଜରେ ବସନ୍ତବାବୁ ଇଂରାଜୀ ପଢ଼ାଇବାବେଳେ ବଡ଼ କୌତୁକ କରନ୍ତି । ହସେଇ ରସେଇ ଇଂରାଜୀ ପାଠ ପଢ଼ାନ୍ତି । ସେ ମଧ୍ୟ ଜଣେ ଉଚ୍ଚକୋଟୀର ଗାଳ୍ପିକ । ତାଙ୍କର ପ୍ରଥମ ଗଳ୍ପ ବହି 'ଏଣ୍ଟିରୋମାଣ୍ଟିକ' ବାହାରିଥାଏ ଓ ତାହା ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଲା । ସେ ମଧ୍ୟ ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠର ଚମ୍ପା ଚରିତ୍ରକୁ ନେଇ ଗୋଟିଏ ନାଟକ ଲେଖିଲେ । ତାହା କଲେଜରେ ଅଭିନୀତ ହେଲା । ତାଙ୍କ ଗଳ୍ପଗୁଡ଼ିକ ହାସ୍ୟ ଓ ବ୍ୟଙ୍ଗାତ୍ମକ । ତା' ଭିତରେ ମଧ୍ୟ ଥାଏ କାରୁଣ୍ୟ । ମୁଁ ବାଲେଶ୍ୱର କଲେଜରୁ ବଦଳି ହୋଇ ରେଭେନ୍ସା କଲେଜକୁ ଆସିଲି । ଥରେ ମୁଁ ଫକୀରମୋହନ କଲେଜକୁ ଭାଷଣ ଦେବାକୁ ଯାଇଥାଏ । ବସନ୍ତବାବୁ ଅବସର ନେଇ ସହଦେବ ଖୁଣ୍ଟାରେ ରହୁଥାନ୍ତି । ସେ ମୋତେ ତାଙ୍କ ଘରକୁ ଡାକିନେଲେ । ତାଙ୍କର ପତ୍ନୀ ବିୟୋଗ ହୋଇଯାଇଥାଏ । ଘରେ ଗୋଟିଏ ଚାକରାଣୀ ଥାଏ । ସେହି ସ୍ତ୍ରୀଲୋକକୁ ନେଇ ଲୋକେ ନାନା କଥା ତାଙ୍କୁ କହୁଥାନ୍ତି । ବସନ୍ତବାବୁ ନିର୍ବିକାର । ସେଦିନ ମୁଁ ଦେଖିଲି ସେହି ଚାକରାଣୀଟି ଯେମିତି ବସନ୍ତବାବୁଙ୍କର ପାଲଟି ଯାଇଛି ମା'ଟିଏ, ଝିଅଟିଏ । ବସନ୍ତବାବୁଙ୍କ ହାତର ଆଙ୍ଗୁଠି ବଙ୍କା ହୋଇଯାଇଥାଏ । ସେ ହାତରେ ମାଛ ଛଡ଼ାଇ ଖାଇପାରନ୍ତି ନାହିଁ । ସେଇ ସ୍ତ୍ରୀଲୋକଟି ମାଛ ଛଡ଼ାଇ ତାକୁ ଖୋଇ ଦେଉଥାଏ । ସେ ତାଙ୍କର ସମସ୍ତ ଲେଖାକୁ ସଜାଇ ରଖେ । ଗୋଟିଏ ଗୋଟିଏ ଫାଇଲରେ ସେହି ଚାକରାଣୀ ସାଇତି ରଖିଥାଏ । ବସନ୍ତବାବୁ କହିଲେ- 'ବୈଷ୍ଣବବାବୁ ! ମୋର ଛ'ଜଣ ଝିଅ ବାହା ହୋଇପାରି ନାହାନ୍ତି । କ'ଣ କରିବା ?' ମୁଁ କହିଲି- 'ସାର୍ ! ମୋତେ ଦିଅନ୍ତୁ, ମୁଁ ନେଇ ଉପଯୁକ୍ତ ପାତ୍ର ଦେଖି ବାହା କରାଇଦେବି ।' ସେ ରାଜି ହୋଇଗଲେ । ଚାକରାଣୀକୁ କହିଲେ- 'ମୋ ଛ'ଝିଅଙ୍କୁ ବୈଷ୍ଣବବାବୁଙ୍କୁ ଦେଇଦେ ।' ସେ ମୋତେ ଗଳ୍ପର ଛଅଟି ଫାଇଲ ଦେଲେ । ମୁଁ ଆଣି ଫ୍ରେଣ୍ଡସ୍ ପବ୍ଲିଶର୍ସକୁ ଦୁଇଟି, ଜଗନ୍ନାଥ ରଥଙ୍କୁ ଗୋଟିଏ, ଓଡ଼ିଶା ବୁକ୍‌ଷ୍ଟୋରକୁ ଦୁଇଟି ଓ ଗ୍ରନ୍ଥମନ୍ଦିରକୁ ଗୋଟିଏ ଲେଖା ଗଳ୍ପ ଫାଇଲ ଦେଇଦେଲି । ସମସ୍ତ ବହିର ପଛ ମଲାଟରେ ବସନ୍ତବାବୁଙ୍କ ଫଟୋ ରହିଲା ଓ ତାଙ୍କ ଗଳ୍ପ ସଂପର୍କିତ ଟିପ୍ପଣୀ ମୁଁ ଲେଖିଲି । ବହିଗୁଡ଼ିକର ନାଁ ଅଦ୍ଭୁତ- ଗୋଟିଏ ଆଳୁ, ହାଇଦରାବାଦ ଅଙ୍ଗୁର, ଗଙ୍ଗା ଓ ଗାଙ୍ଗୀ, ଆକାଶୀଫୁଲ, ମାଂସାଶୀମାନଙ୍କ ସପକ୍ଷରେ, ନୀଡ଼ାଶ୍ରୟୀ ଇତ୍ୟାଦି । ଏହାପରେ ତାଙ୍କର ଅନ୍ୟ କେତୋଟି ଗଳ୍ପ ବହି ମଧ୍ୟ ପ୍ରକାଶ ପାଇଥିଲା ।

ଇମିତି ଛ'ଟି ଗଳ୍ପ ପୁସ୍ତକର ନାଁ । ବସନ୍ତବାବୁ ଖୁସି ହେଲେ । ମୁଁ ତାଙ୍କ ପ୍ରବନ୍ଧ ଓ ରମ୍ୟରଚନା ଏବଂ ଗଳ୍ପ ସଂପର୍କରେ ଆଲୋଚନା ଲେଖିଲି । ତାଙ୍କର ମୃତ୍ୟୁ ପରେ ବାରିପଦାରେ ଥିବା ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ବସନ୍ତ ସ୍ମାରକୀ ବକ୍ତୃତା

ଦେଇଥିଲି । ସେହି ଲେଖା ମଧ୍ୟ ବାହାରିଥିଲା । ମୋ ପାଖରେ ଶ୍ରଦ୍ଧେୟ ଜଗବନ୍ଧୁ ଆଚାର୍ଯ୍ୟ ବସନ୍ତ ଶତପଥୀଙ୍କ ଗଳ୍ପ ଉପରେ ଗବେଷଣା କରି ପିଏଚ.ଡି. ଉପାଧି ପାଇଥିଲେ । ଫକୀରମୋହନ କଲେଜରୁ ବଦଳି ହୋଇ ରେଭେନ୍ସା କଲେଜକୁ ଆସିଲି । ଏକ ବୃହତ୍ତର ପରିବେଶରେ ମୋର ଅଧ୍ୟାପକ ଜୀବନ ଆଠବର୍ଷ କଟିଲା ।

ଫକୀରମୋହନ କଲେଜରେ ଥିଲାବେଳେ ଅଧ୍ୟାପକମାନଙ୍କ ବିଶ୍ରାମାଗାରରେ ପ୍ରାୟ ସମସ୍ତ ବିଭାଗର ଅଧ୍ୟାପକ/ଅଧ୍ୟାପିକା ବସୁଥିଲେ । ସମସ୍ତଙ୍କ ଭିତରେ ଥିଲା ସୁସଂପର୍କ । ମନେହେଉଥିଲା ମହାବିଦ୍ୟାଳୟଟି ଗୋଟିଏ ପରିବାର ସଦୃଶ । ବରିଷ୍ଠମାନଙ୍କର ସ୍ନେହ ମୋର ଭୁଲିବାର ନୁହେଁ । ସେଇଠି ଥିଲାବେଳେ ମୁଁ ଅନେକ ପୁସ୍ତକ ପଢ଼ିଛି; ଲେଖିଛି ମଧ୍ୟ ଅନେକ । ସେତେବେଳେ ଭଦ୍ରକଠାରୁ ଆରମ୍ଭ କରି ଚନ୍ଦନନଗର, ଭୋଗରାଇ, ଜଳେଶ୍ୱର ପର୍ଯ୍ୟନ୍ତ ବାଲେଶ୍ୱର ଜିଲ୍ଲା ଥିଲା । ସମଗ୍ର ଅଞ୍ଚଳରୁ ଛାତ୍ରଛାତ୍ରୀମାନେ ଆସି ଫକୀରମୋହନ କଲେଜରେ ପଢୁଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଥିଲା ଗଭୀର ମମତା । ଏହି ଜିଲ୍ଲାରେ ଦୀନକୃଷ୍ଣ ଦାସ ସର୍ବପ୍ରଥମେ କବିର ସ୍ୱାଭିମାନ ଉପରେ ଗୁରୁତ୍ୱ ଦେଇଥିଲେ । ଜଳେଶ୍ୱରର ଦୀନକୃଷ୍ଣ ଜୟନ୍ତୀକୁ ମୁଁ ସେ କାଳରେ ଓ ସେଠାରୁ ଆସିଲା ପରେ ଏପର୍ଯ୍ୟନ୍ତ ମଧ୍ୟ ବହୁବାର ଯାଇଛି ବକ୍ତୃତା ଦେବାକୁ । ବାଲେଶ୍ୱରର ବିଭିନ୍ନ ସ୍ଥାନକୁ ଯାଇଛି । ନାନା ସାହିତ୍ୟିକ, ସାଂସ୍କୃତିକ ଓ ଧାର୍ମିକ ସଭାକୁ ମଧ୍ୟ ଯାଇଛି । କବି ବ୍ରଜନାଥ ରଥଙ୍କ ଘରକୁ ଯାଇଛି । ଦେଖିଛି ସେ ସାଇତି ରଖିଥିବା ପୁରାତନ ପତ୍ରପତ୍ରିକା, ଦେଖିଛି ତାଙ୍କର ବିରାଟ ପାଠାଗାର । ଅନୁଭବିଛି ତାଙ୍କର ମଣିଷପଣିଆ ଓ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ତାଙ୍କର ଗଭୀର ମମତ୍ୱବୋଧକୁ । ଅନୁଭବିଛି ମଧ୍ୟ ଡ. ପ୍ରହ୍ଲାଦଚନ୍ଦ୍ର ମହାନ୍ତିଙ୍କର ବାଲେଶ୍ୱର ପ୍ରୀତିକୁ, ସେହି କାଳରୁ ବାଲେଶ୍ୱରରେ ଫକୀରମୋହନଙ୍କ ନାମରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାର ଆନ୍ତରିକ ଶ୍ରଦ୍ଧାକୁ । ବହୁଦିନ ବ୍ୟବଧାନ ପରେ ବାଲେଶ୍ୱରଠାରେ ଫକୀରମୋହନ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା । ଓଡ଼ିଆ ଜାତିର ଜୀବନ୍ତ ସ୍ୱାଭିମାନର ପ୍ରତୀକ ଫକୀରମୋହନଙ୍କ ପ୍ରତି ବାଲେଶ୍ୱରବାସୀଙ୍କର ଗଭୀର ଶ୍ରଦ୍ଧାକୁ ମୁଁ ଅନ୍ତରର ଅଭିନନ୍ଦନ ଜଣାଉଛି ବାରମ୍ବାର । କଟୁ ସମାଲୋଚନା କରିଦେଲେ ବା ଫକୀରମୋହନଙ୍କ ଆତ୍ମଚରିତକୁ ମିଥ୍ୟା କହିଦେଲେ, ବାଲେଶ୍ୱରର ସାହିତ୍ୟିକମାନେ ସହିପାରନ୍ତି ନାହିଁ । ଫକୀରମୋହନଙ୍କ ଦୁଷ୍ପ୍ରାପ୍ୟ ରଚନାବଳୀକୁ ସଂଗ୍ରହ କରି ଡ. ଅରବିନ୍ଦ ଗିରି ପ୍ରକାଶ କରିଛନ୍ତି । ତାଙ୍କ ସଂପର୍କରେ ବହୁ ତଥ୍ୟ ପ୍ରକାଶ କରିଛନ୍ତି । ଏପରିକି କେନ୍ଦୁଝର ଭୂୟାଁ ମେଳିକୁ କେତେକ କପୋଳକଳ୍ପିତ କହୁଥିଲାବେଳେ ସେ ତାହାର ଐତିହାସିକ ତଥ୍ୟ ଦେଇ ତାହାକୁ ସତ୍ୟ ବୋଲି ପ୍ରମାଣ କରିଛନ୍ତି । ଅତ୍ୟନ୍ତ ନମ୍ର ଓ ସ୍ନେହୀ ମଣିଷଟିଏ । ସେ ମଧ୍ୟ ଚନ୍ଦ୍ରମୋହନ ମହାରଣାଙ୍କ

ରଚନାବଳୀ ସଂଗ୍ରହ କରି ପ୍ରକାଶ କରିବା ସହିତ ତାଙ୍କ ଉପରେ ଗବେଷଣା କରି ପିଏଚ.ଡି. ପାଇଛନ୍ତି । 'ଉତ୍କଳଦର୍ପଣ'ର ପ୍ରଥମ ସଂଖ୍ୟାକୁ ସଂପାଦନା କରି ପ୍ରକାଶ କରିଛନ୍ତି । ମୋ ସହିତ ତାଙ୍କର ସଂପର୍କ ଯେମିତି ଗୁରୁ ଶିଷ୍ୟର ସଂପର୍କ ।

ବାଲେଶ୍ୱରରେ ଅନେକ ଲୋକଙ୍କ ସହିତ ମୋର ବନ୍ଧୁତା ଗଢ଼ିଉଠିଥିଲା । ବହୁ ବୟସ୍କ ବ୍ୟକ୍ତିଙ୍କର ମୁଁ ଶ୍ରଦ୍ଧା ପାଇଛି । ରବୀନ୍ଦ୍ରମୋହନ ଦାସ, ଜ୍ଞାନ ପଟ୍ଟନାୟକ, ଶ୍ୟାମସୁନ୍ଦର ମହାପାତ୍ର, ଯଦୁନାଥ ଦାଶମହାପାତ୍ର, ମିହିର ଆଚାର୍ଯ୍ୟ, ବିଜୟକୃଷ୍ଣ ଦେ, ବ୍ରଜନାଥ ରଥ, ଚିନ୍ତାମଣି ବେହେରା, ଗଙ୍ଗାଧର ବଳ, ଯଦୁମଣି ମହାପାତ୍ର, ଡ. ଦୁର୍ଗାପ୍ରସନ୍ନ ପଣ୍ଡା, ଗାଳ୍ପିକ ସଦାନନ୍ଦ ଦାସ, ରାଜେନ୍ଦ୍ର ପ୍ରସାଦ ଦାସ, ରାମଚନ୍ଦ୍ର ପଟ୍ଟନାୟକ, ଡ. କାର୍ତ୍ତିକେଶ୍ୱର ପାତ୍ର, ଡ. ଭାଗୀରଥି ନାୟକ, ସୁଶାନ୍ତ ଚାନ୍ଦ, ଅରୁଣ ଦେ, ଡ. ହରିଶଚନ୍ଦ୍ର ବେହେରା, ଅରୁଣା ରାୟ, ଦୀପ୍ତି ଦାସ, ଶୁଭେନ୍ଦୁ ମୋହନ ଦାସ ପ୍ରମୁଖ ବହୁ ବ୍ୟକ୍ତିଙ୍କ ସହିତ ମୋର ସଂପର୍କ ବେଶ୍ ଆନନ୍ଦଦାୟକ ଥିଲା । ଆଜକୁ ଚାଳିଶ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ମୁଁ ସେଠାରୁ ଆସିଥିଲେହେଁ ମୋର ମନେହୁଏ ସତେଯେପରି ବାଲେଶ୍ୱରର ସଂସ୍କୃତି ମୋ ଭିତରେ ଏବେ ମଧ୍ୟ ଜୀବନ୍ତ ହୋଇ ରହିଛି । ଏବେ ଯେତେବେଳେ ମୋର ପ୍ରାକ୍ତନ ଛାତ୍ର ଅରୁଣ ଦେ, ସୁଶାନ୍ତ ଚାନ୍ଦ, ସୃଷ୍ଟିଧର ପଣ୍ଡା ପ୍ରମୁଖଙ୍କୁ କୌଣସି କୌଣସି ସଭାସମିତିରେ ଦେଖେ ମୁଁ ଗଭୀର ଆନନ୍ଦ ପ୍ରକାଶ କରେ ।

ବାଲେଶ୍ୱରକୁ ମୁଁ ଭୁଲି ନାହିଁ, ଭୁଲିବାର ନୁହେଁ । ବାଲେଶ୍ୱରହିଁ ମୋତେ ପ୍ରେରଣା ଦେଇଛି ପଢ଼ିବା ପାଇଁ ଓ ଲେଖିବା ପାଇଁ । ଯାହା କିଛି ମୁଁ ହୋଇଛି ତାହା ବାଲେଶ୍ୱରର ଅବଦାନ । ସେକାଳରେ ସୋରୋର ରାଧାନାଥ ପାଠାଗାର ଓ ବାଲେଶ୍ୱରର ଫକୀରମୋହନ ସାହିତ୍ୟ ପରିଷଦ ଦୁଇଟି ଥିଲା ପ୍ରମୁଖ ସାରସ୍ୱତ ପ୍ରାଣକେନ୍ଦ୍ର । ତାହା ପରେ ଜଲେଶ୍ୱରର ଦୀନକୃଷ୍ଣ ସାହିତ୍ୟ ପରିଷଦ ଗଢ଼ିଉଠିଲା । ସେତେବେଳେ ଏହି ସମସ୍ତ ସାରସ୍ୱତ ଅନୁଷ୍ଠାନକୁ ମୁଁ ଯାଇଛି; ପରେ ମଧ୍ୟ ବାରମ୍ବାର ଯାଇଛି ଓ ଏବେ ମଧ୍ୟ ଯାଉଛି । ସୋରୋ ରାଧାନାଥ ଜୟନ୍ତୀରେ ଥରେ ଭାଷଣ ଦେଇସାରିଲା ପରେ ଶ୍ରୋତା ମଞ୍ଚରେ ବସିଥିବା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ପୂର୍ବତନ ବାଚସ୍ପତି ନନ୍ଦକିଶୋର ଦାସ ମଞ୍ଚ ଉପରକୁ ଉଠିଆସି ମୋତେ ଆଲିଙ୍ଗନ କରି ଯେପରି ବିହ୍ୱଳିତ ହେଲେ ତାହା ମୋର ଭୁଲିବାର ନୁହେଁ । ସୋରୋ ଅଞ୍ଚଳରେ ଗାନ୍ଧୀ କୁହାଯାଉଥିବା ନୀଳାମ୍ବର ଦାସଙ୍କୁ ମଧ୍ୟ ଦେଖିଛି ଓ ତାଙ୍କ ବାସଭବନକୁ ଯାଇ ତାଙ୍କର ଦିବ୍ୟ ସ୍ନେହ ଉପଲବ୍ଧି କରିଛି । ସେହି ରାଧାନାଥ ପାଠାଗାର ମୋତେ ଭବ୍ୟ ସମ୍ବର୍ଦ୍ଧନା ଦେଇଛନ୍ତି ୨୦୦୪ ମସିହାରେ । ଫକୀରମୋହନ କଲେଜର ପୁରାତନ ଛାତ୍ର ସଂସଦ ମୋତେ ଶ୍ରେଷ୍ଠ ଶିକ୍ଷକର ଗୌରବରେ ମଣ୍ଡିତ କରିଛନ୍ତି । ଦୀନକୃଷ୍ଣ ସାହିତ୍ୟ ପରିଷଦ, ଜଲେଶ୍ୱର ମଧ୍ୟ ମୋତେ ପୁରସ୍କୃତ

କରିଛନ୍ତି । ଭଦ୍ରକରେ ପୀତାମ୍ବର ସ୍ୱାଇଁ ସ୍ମୃତି ପରିଷଦ ମୋତେ ନିଖିଳ ଉତ୍କଳ ବାଗ୍ମୀ ପୁରସ୍କାର ପ୍ରଦାନ କରିଛନ୍ତି । ବାଲେଶ୍ୱରର ବାର୍ତ୍ତା–ଉର୍ମି ପତ୍ରିକା ମଧ୍ୟ ମୋତେ ସମ୍ମାନିତ କରିଛନ୍ତି । ମୋ ଜୀବନରେ ବାଲେଶ୍ୱର ଯେ କେତେ ପ୍ରଭାବ ପକାଇଛି ତାହା ମୁଁ ଭାଷାରେ ପ୍ରକାଶ କରିପାରୁ ନାହିଁ । ସର୍ବତ୍ର ମୁଁ ପାଇଛି ଶ୍ରଦ୍ଧା ଓ ସମ୍ମାନ । ଏବେ ମଧ୍ୟ ତାହାର ଅଭାବ ମୁଁ ଲକ୍ଷ୍ୟ କରେ ନାହିଁ ।

ବାଲେଶ୍ୱର ମାଟି ସାରସ୍ୱତ ମାଟି । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ଅଗ୍ନିଗର୍ଭ ଭୂମି । ସେହି ମାଟିକୁ ମୋର ଅନ୍ତରର ପ୍ରଣାମ ।

## ରେଭେନ୍ସା ମହାବିଦ୍ୟାଳୟରେ ମୋର ଅଧ୍ୟାପନା

୧୯୭୦ ମସିହା ମେ ମାସରେ ମୁଁ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗ ଦେଲି । ସେତେବେଳେ ମୋ ମନରେ ଏକପ୍ରକାର ପୁଲକ ଜାତ ହେଲା ଯେ ଓଡ଼ିଶାର କେବଳ ନୁହେଁ; ଭାରତବର୍ଷର ଏକ ଗୌରବମୟ ଶିକ୍ଷାନୁଷ୍ଠାନରେ ମୁଁ ଅଧ୍ୟାପକ ହେବାର ସୁଯୋଗ ପାଇଲି । ଏଠିକୁ ଆସିବାରେ ସେ କାଳର ଡି.ପି.ଆଇ. ଅଫିସର ଦକ୍ଷ ପ୍ରଶାସକ ସହକାରୀ ରବୀନ୍ଦ୍ରନାଥ ଜେନାଙ୍କର ସାହାଯ୍ୟ ମୋର ଭୁଲିବାର ନୁହେଁ । ସେ ମଧ୍ୟ ଇନ୍ଦୁପୁର ହାଇସ୍କୁଲର ଛାତ୍ର ଥିଲେ, ସେଇ ହାଇସ୍କୁଲର ପୁରାତନ ଛାତ୍ରସଂସଦର ସଂପାଦକ ଥିଲେ । ପରେ ସେ ନିଜ ଗ୍ରାମ ନିକିରାଇରେ ବାଳିକା ଉଚ୍ଚବିଦ୍ୟାଳୟ, ହାଇସ୍କୁଲ ଓ କଲେଜ କରିଥିଲେ । ଡି.ପି.ଆଇ. ଥିଲେ ବିଶିଷ୍ଟ ଶିକ୍ଷାବିତ୍ ଓ ଇଂରାଜୀ ସାହିତ୍ୟର ପ୍ରବୀଣ ପ୍ରଫେସର ବିଧୁଭୂଷଣ ଦାସ । ସେ ମହାଶୟ ଏକଦା ଫକୀରମୋହନ କଲେଜକୁ ପରିଦର୍ଶନରେ ଯାଇଥିଲାବେଳେ ତାଙ୍କୁ ମୁଁ ସାକ୍ଷାତ୍ କରି ରେଭେନ୍ସା କଲେଜକୁ ଯିବାପାଇଁ ଅନୁରୋଧ କରିଥିଲି । ଯାହା ହେଉ ମୁଁ ରେଭେନ୍ସା କଲେଜକୁ ଆସିଲି । ପ୍ରଥମେ ସାନ୍ଧ୍ୟ ମହାବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟ ଆରମ୍ଭ କଲି । କିଛି ଦିନ ପରେ ମୁଁ ଯୋଗ ଦେଲି ଦିବା କଲେଜରେ । ସେହି ସମୟରେ ମୁଁ ଘରଭଡ଼ା ଖୋଜି ଖୋଜି ଚାଉଳିଆଗଞ୍ଜର ବିଶିଷ୍ଟ ବ୍ୟକ୍ତି ଲୋକନାଥ ପାତ୍ରଙ୍କ ଘରେ ପହଞ୍ଚିଲି । ସେ ମହାଶୟଙ୍କର କେତୋଟି କ୍ୱାର୍ଟର ଟାଇପ୍ ଘର ଥାଏ । ତାଙ୍କ ସହିତ କଥାବାର୍ତ୍ତା ହେଲା ପରେ ତାଙ୍କର ମୋ ପ୍ରତି ଗଭୀର ଶ୍ରଦ୍ଧା ଅନୁଭବ କଲି । ସେ ମୋତେ ଗୋଟିଏ ଘରର ଚାବି ଦେଇ ଦେଲେ । ସେହି ଘରେ ମୁଁ ୧୯୭୦ରୁ ୧୯୮୪ ମସିହା ପର୍ଯ୍ୟନ୍ତ ରହିଲି । ଦିନେ ହେଲେ ସେ ମୋତେ ଭଡ଼ା ଟଙ୍କା ମାଗନ୍ତି ନାହିଁ ବା ଘରଭଡ଼ା ବଢ଼ାଇବା କଥା କହନ୍ତି ନାହିଁ । ସେତେବେଳେ ମାସକୁ ମାତ୍ର ୮୦ ଟଙ୍କା ଘରଭଡ଼ା । ମୋ ସ୍ତ୍ରୀ ଓ ପିଲାମାନେ ସେହି

ଦିନରୁ ମୋ ସହିତ କଟକରେ ରହିଲେ । ଦୁଇ ତିନି ବର୍ଷ ବିତିଗଲେ ମୁଁ ସ୍ୱତଃ ମୋ ପୁଅ (ସେତେବେଳେ ଛୋଟ ହୋଇଥାଏ) ତା'ରି ହାତରେ କୋଡ଼ିଏ ଟଙ୍କା ବା ଦଶ ଟଙ୍କା ବଢ଼ାଇ ଦେଇଦିଏ । ସିଏ ପୁଅକୁ କହନ୍ତି– 'ଆରେ ଏ ଅଧିକା ଟଙ୍କା କ'ଣ ?' ପୁଅ କହେ– 'ବାପା ଦେଇଛନ୍ତି । ମୁଁ ଜାଣେନା ।' ଏଇମିତି ରହିଲି ତାଙ୍କ ଘରେ । ତାଙ୍କ ଦୋକାନଘର ତାଙ୍କର ବୈଠକଖାନା । ସେଇଠିକି କେତେ ବିଦ୍ୱାନ୍ ଲୋକ ଆସନ୍ତି । ମୁଁ ମଧ୍ୟ ଯାଏ । ଆଲୋଚନା ହୁଏ ନାନା କଥା । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର ଅନାମ ଚରଣ ସ୍ୱାଇଁ, ଅବସରପ୍ରାପ୍ତ ଅଫିସର ନିରଞ୍ଜନ ବିଶ୍ୱାଳ, ମୋହନଚନ୍ଦ୍ର ସାହୁ, ପରମ ଭାଗବତ ବିଷ୍ଣୁଚରଣ ମହାନ୍ତି, ଦୋଳଗୋବିନ୍ଦ ପ୍ରଧାନ ତଥା ସାହିର ବହୁ ବିଶିଷ୍ଟ ବ୍ୟକ୍ତି ଆସନ୍ତି । ସେଠି ଅନେକ ସମୟରେ ଆଲୋଚନା ଜମେ । ସାହିର ରାମଚନ୍ଦ୍ର ପୃଷ୍ଟି, ଶ୍ରୀନିବାସ ସାହୁ, କୃଷ୍ଣଚନ୍ଦ୍ର ପାତ୍ର ଓ ଭୀମଚରଣ ପାତ୍ର ପ୍ରମୁଖ ମଧ୍ୟ ଆସନ୍ତି । ମୋତେ ସାରା ଚାଉଳିଆଗଞ୍ଜରେ ସମସ୍ତେ 'ସାର୍' ଡାକିଲେ । ମୁଁ ହୋଇଗଲି ଜେଜେବାପା, ଜେଜେମା', ବାପା, ବୋଉ, ଦାଦା, ଖୁଡ଼ୀ, ଭାଇଭଉଣୀ, ପୁଅଝିଅ ସମସ୍ତଙ୍କର 'ସାର୍' । କେହି ମୋତେ ଖୋଜିବାକୁ ଆସିଲେ ମୋ ନାଁ ନ କହି 'ସାର୍' କହିଦେଲେ ଲୋକେ ତାଙ୍କୁ ନେଇ ମୋ ଘରେ ପହଞ୍ଚାଇ ଦେଉଥିଲେ ।

ରେଭେନ୍ସା କଲେଜରେ ମୁଁ ଅଧ୍ୟାପନା କାର୍ଯ୍ୟ କରୁଥାଏ । ସେହି ମହାବିଦ୍ୟାଳୟରେ ଏମ୍.ଏ. ପଢୁଥିଲାବେଳେ ମୁଁ ଦେଖିଥିଲି ଅଧ୍ୟକ୍ଷ ପ୍ରଫେସର ବଂଶୀଧର ସାମନ୍ତରାୟ ଓ ପ୍ରଫେସର ରମାନାଥ ମହାନ୍ତିଙ୍କୁ । ବଂଶୀଧର ସାମନ୍ତରାୟଙ୍କ ସମୟରେ ରେଭେନ୍ସା କଲେଜର କନିକା ଲାଇବ୍ରେରୀ ଓ ମୁଖ୍ୟ ପ୍ରାସାଦ ମଧ୍ୟଭାଗ ବର୍ଷ ସାରା ନାନା ଫୁଲରେ ହସିଉଠୁଥିଲା । କୌଣସି ମାଳୀ ଯଦି ତା'ର ଦାୟିତ୍ୱ ପାଳନରେ ତ୍ରୁଟି କରୁଥିଲା ତାହା ଅକ୍ଷମଣୀୟ ଅପରାଧ ହୋଇଯାଉଥିଲା । କୌଣସି ଛାତ୍ର ବା ଛାତ୍ରୀ ଫୁଲ ଛିଣ୍ଡାଇବା ମୁଁ ଦେଖି ନ ଥିଲି । ମଧ୍ୟଭାଗରେ ଥିବା ବ୍ରିଟିଶ ଅମଳରେ ତିଆରି ସୂର୍ଯ୍ୟଘଡ଼ି ବେଶ୍ ଆକର୍ଷଣୀୟ ଥିଲା । ଏବେ ସେହି ବଗିଚାର ମାଧୁର୍ଯ୍ୟ ଆଉ ନାହିଁ । ସୂର୍ଯ୍ୟଘଡ଼ି ମଧ୍ୟ ଶ୍ରୀହୀନ । ଯେତେବେଳେ ପ୍ରଫେସର ଦେବେନ୍ଦ୍ରଚନ୍ଦ୍ର ମିଶ୍ର କଲେଜର ଅଧ୍ୟକ୍ଷ ହେଲେ ସେହି ସମୟରେ ମୁଁ ଆସିଲି ରେଭେନ୍ସା କଲେଜକୁ । ସେ ଦେବପ୍ରତିମ ମଣିଷ । ବିଶିଷ୍ଟ ଜ୍ଞାନୀ ମାତ୍ର ତାଙ୍କର ଶାସନ ଟିକେ ଢିଲା । ସେହି ସମୟରେ କଲେଜରେ କପି ବଢ଼ିଲା । ଅଧ୍ୟାପକ ଓ କର୍ମଚାରୀମାନେ ଢିଲା ହୋଇଗଲେ । ତାଙ୍କ ପରେ ଅଧ୍ୟକ୍ଷ ହେଲେ ବିଶିଷ୍ଟ ରସାୟନ ବିଜ୍ଞାନ ପ୍ରଫେସର ମହେନ୍ଦ୍ର କୁମାର ରାଉତ । ତାଙ୍କରି ସମୟରେ ମହାବିଦ୍ୟାଳୟ ଶୃଙ୍ଖଳିତ ହେଲା । ସେ ଅଫିସ କାର୍ଯ୍ୟ କରିବା ସହିତ ସାରା କଲେଜର ବିଭିନ୍ନ ଶ୍ରେଣୀ ବୁଲି ଦେଖନ୍ତି, କେଉଁଠି କେଉଁ ଅଧ୍ୟାପକ ଶ୍ରେଣୀରେ ନାହାନ୍ତି, କେଉଁଠି ପିଲାଏ ପାଟିତୁଣ୍ଡ

କରୁଛନ୍ତି, କେଉଁ ଅଧ୍ୟାପକ କିପରି ପଢ଼ାଉଛନ୍ତି ଓ ଛାତ୍ରମାନଙ୍କୁ କିପରି ନିୟନ୍ତ୍ରଣ କରୁଛନ୍ତି ବୁଲି ବୁଲି ଦେଖନ୍ତି । ଅଫିସର ପିଅନ, କିରାଣି, ଛାତ୍ରଛାତ୍ରୀ, ଅଧ୍ୟାପକ, ଯାହାଙ୍କ ଉପରେ ତାଙ୍କର ବିଶ୍ୱାସ ଥାଏ, ଡାକି ଖବର ନିଅନ୍ତି ଓ ସେହି ଅନୁସାରେ କାର୍ଯ୍ୟ କରନ୍ତି । ସେ ମଧ୍ୟ ପ୍ରତିଦିନ ରାତି ସାଢ଼େଚାରିଟାରୁ ଉଠି ନିତ୍ୟକର୍ମ ସାରି ଚା' କପେ ଖାଇ ରସାୟନ ବିଭାଗକୁ ଆସି ଗବେଷଣାଗାରରେ ଗବେଷଣା କରନ୍ତି, ତାଙ୍କ ଅଧୀନରେ ଗବେଷଣା କରୁଥିବା ଅଧ୍ୟାପକ-ଅଧ୍ୟାପିକା ଓ ଛାତ୍ରମାନଙ୍କୁ ସାହାଯ୍ୟ କରନ୍ତି । ଆଇ.ଏସ୍‌ସି. ଶ୍ରେଣୀରେ ସେ କ୍ଲାସ ନିଅନ୍ତି ଓ ଅନ୍ୟାନ୍ୟ ପ୍ରଫେସରମାନଙ୍କୁ କହନ୍ତି ତଳ ଶ୍ରେଣୀରେ କ୍ଲାସ ନେବାକୁ । ତାଙ୍କ ସମୟରେ କଲେଜ ସୁନିୟନ୍ତ୍ରିତ ହୋଇଗଲା ।

ମୁଁ ରାତ୍ରି କଲେଜରୁ ବଦଳି ହୋଇ ଦିବା କଲେଜରେ ଯେଉଁ ଦିନ ଯୋଗ ଦେଲି ସେହି ଦିନ ବିଭାଗୀୟ ମୁଖ୍ୟ ମୋତେ କମର୍ସ ବ୍ଲକରେ ଆଇ.ଏ. ବି ସେକ୍ସନ୍‌ରେ ଏମ.ଆଇ.ଏଲ୍. ପଢ଼ାଇବାକୁ କହିଲେ । ସେତେବେଳେ ମୁଁ ଧୋତି ପଞ୍ଜାବି ପିନ୍ଧୁଥାଏ । ମୁଁ ଗଲି ସେହି ଶ୍ରେଣୀକୁ । ମାତ୍ର କନିକା ଲାଇବ୍ରେରୀ ପାଖରେ ପଦାର୍ଥ ବିଜ୍ଞାନର ଅଧ୍ୟାପକ ଡ. ଦେବକାନ୍ତ ମିଶ୍ର ଦେଖା ହେଲେ । ସେ ମୋତେ ବାରଣ କଲେ ପ୍ରଥମ ଦିନରେ ସେହି କ୍ଲାସକୁ ଯିବାପାଇଁ । ମୋର ସେହି ଶ୍ରେଣୀ ସଂପର୍କରେ କିଛି ଧାରଣା ନ ଥାଏ । ତଥାପି ସେ କ୍ଲାସକୁ ଗଲି । ଦେଖିଲି ଅବସ୍ଥା ଅସମ୍ଭାଳ । ମୋ ଅଧ୍ୟାପକ ଜୀବନର ଏହାହିଁ ଥିଲା ପ୍ରଥମ ଓ ଶେଷ ଘଟଣା । ମୁଁ ଟେବୁଲ ପାଖରେ ଛିଡ଼ାହୋଇ ଉପସ୍ଥାପନ ପକାଇଲି । ମୁଁ ରୋଲନମ୍ବର ଡାକୁଥିଲାବେଳେ ଏକ ସମୟରେ ବହୁ କଣ୍ଠରୁ ଆୱାଜ ଆସୁଥାଏ- ଇଏସ୍ ସାର୍, ହଁ ସାର୍, ହଁ ବେ ସାର୍ ଇତ୍ୟାଦି । ମୁଁ ଆଉ ରୋଲନମ୍ବର ନ ଡାକି ସମସ୍ତେ ଉପସ୍ଥିତ ବୋଲି କହିଲି । କିଛି ସମୟ ନୀରବରେ ଛିଡ଼ାହୋଇ ପିଲାମାନଙ୍କୁ ଦେଖିଲି । ଗୋଟିଏ ପଟରେ ଝିଅମାନେ ବସିଥାନ୍ତି । ସେମାନଙ୍କ ସଂଖ୍ୟା ଗଣିଲି ୫୨ ଜଣ । ସମ୍ମୁଖଭାଗରେ ପ୍ରାୟ ଶହେ ପାଖାପାଖି ପିଲା । ଛୋଟ ଛୋଟ କାଗଜରେ ଝିଅଙ୍କ ନାଁ ଓ ଅଶ୍ଳୀଳ କଥା ଲେଖି ତା' ଭିତରେ ଗୋଡ଼ି ପୂରାଇ ବଲ୍ ଖେଳିଲା ପରି ଝିଅଙ୍କ ପାଖକୁ ପକାଉଥାନ୍ତି । ମୋ ପାଖରେ ମଧ୍ୟ କେତେଟା ପଡୁଥାଏ । କିଛି ସମୟ ପରେ ମୁଁ ଚାଲିଆସିଲି । ମୋ ଭିତରେ ତୀବ୍ର ପ୍ରତିକ୍ରିୟା ଦେଖାଦେଲା । ମୁଁ ପଚାରି ବୁଝିଲି ମୋ ପୂର୍ବରୁ ଶ୍ରୀଯୁକ୍ତ ବିଚିତ୍ରାନନ୍ଦ ମହାନ୍ତି, ଅଭିନ୍ନ ଚନ୍ଦ୍ର ଦାଶ, ନବ କୁମାର ପୃଷ୍ଟି ଓ ପ୍ରତିଭା ଶତପଥୀ ସେହି କ୍ଲାସକୁ ଯାଇ ଫେରିଆସିଛନ୍ତି । ମୁଁ ତ ନୂଆ । ତେଣୁ ସେମାନେ ମୋତେ ସେହି କ୍ଲାସ ନେବାକୁ ଦେଇଥାନ୍ତି । ରାଜନୀତି ବିଜ୍ଞାନ, ଲଜିକ୍, ଇଂରାଜୀ ପ୍ରଭୃତି କ୍ଲାସକୁ ସସ୍‌ପେଣ୍ଡ କରି ଦିଆଯାଇଥାଏ । ଏସବୁ ଦେଖି ମୋ ଭିତରେ ମୋ ସ୍ୱାଭିମାନ ଜାଗ୍ରତ ହୋଇଉଠିଲା । ଫକୀରମୋହନ କଲେଜରୁ ରେଭେନ୍ସା

ସାନ୍ଧ୍ୟକଲେଜ ପର୍ଯ୍ୟନ୍ତ କେବେ ମୁଁ ଏପରି ବିଶୃଙ୍ଖଳିତ ବାତାବରଣ ଦେଖି ନାହିଁ । ଅଥଚ ସାମାନ୍ୟ ଆଇ.ଏ. ଶ୍ରେଣୀର ଛାତ୍ର ମୋତେ ବୁକେଇଯିବେ ? ପର ସପ୍ତାହରେ ମୁଁ ପୁଣି ସେହି କ୍ଲାସକୁ ଗଲି । ଅବସ୍ଥା ତଦ୍ରୂପ । ମୁଁ ଉପସ୍ଥାନ ନେଲାବେଳେ ପୂର୍ବପରି ବିକୃତ ଧ୍ୱନି ଶୁଣିଲି । ତେଣୁ ମୁଁ ସମସ୍ତଙ୍କର ଅନୁପସ୍ଥିତି ପକାଇଦେଲି । ଶ୍ରେଣୀ କକ୍ଷର ପାଞ୍ଚୋଟି ସ୍ଥାନରେ ବସିଥିବା ପାଞ୍ଚଜଣ ଛାତ୍ରଙ୍କୁ ନୀରବରେ ଲକ୍ଷ୍ୟ କଲି ଓ ଭାବିଲି ଏହି ପାଞ୍ଚଜଣଙ୍କ ପାଇଁ ଅନ୍ୟାନ୍ୟ ସମସ୍ତ ପିଲା ବିଶୃଙ୍ଖଳିତ ହେଉଛନ୍ତି । ମୁଁ ସେହି ପାଞ୍ଚଜଣଙ୍କୁ ଛିଡ଼ା କରାଇ ସେମାନଙ୍କର ନାମ ଓ ରୋଲନମ୍ବର ପଚାରିଲି ଏବଂ ସେହି ରୋଲନମ୍ବର ପାଖରେ ସେମାନଙ୍କ ନାମ ଲେଖିଲି । ଜଣେ ମୁଁ 'ସାମଲ' ଥିବାରୁ ତା'ର ନାମ ଫକୀରମୋହନ ସାମଲ କହିଲା । ସେମାନଙ୍କୁ କହିଆସିଲି ଆସନ୍ତା ଶ୍ରେଣୀରେ ସାକ୍ଷାତ୍ ହେବ । ପରବର୍ତ୍ତୀ ସପ୍ତାହରେ ଏମ.ଆଇ.ଏଲ. କ୍ଲାସର ଯେତେ ଟିଉଟରିଆଲ କ୍ଲାସ ଥିଲା ମୁଁ ସବୁ ନେଲି ଓ ଅନ୍ୟ ଅଧ୍ୟାପକମାନଙ୍କୁ ମୋର ଅନ୍ୟ କ୍ଲାସ ନେବାକୁ କହିଲି । ଟିଉଟରିଆଲ କ୍ଲାସରେ ପୁଅପିଲାଙ୍କୁ ବିଦା କରି ଦେଇ ଝିଅପିଲାଙ୍କୁ ରଖିଲି । ସେମାନଙ୍କ ମଧ୍ୟରୁ ଯିଏ ଯିବାକୁ ଚାହିଁଲା ବିଦା କରିଦେଲି । ଶେଷକୁ ଦୁଇ/ତିନିଜଣ ଝିଅ ପିଲା ରୁହନ୍ତି । ସେମାନଙ୍କୁ ସେହି ପାଞ୍ଚଜଣ ପିଲାଙ୍କର ପ୍ରକୃତ ନାମ ଓ ରୋଲନମ୍ବର ପଚାରିଲି । ସେମାନେ କହିଲେ ଯଦି ସତକଥା କହିଦେବେ ଆଉ ସେମାନେ କଲେଜକୁ ଆସିପାରିବେ ନାହିଁ । କାରଣ ସେମାନେ ବଡ଼ ଦୁର୍ଦ୍ଦାନ୍ତ । ମୁଁ ସେମାନଙ୍କୁ ବୁଝାଇ ଶୁଝାଇ ସେହି ପାଞ୍ଚଜଣଙ୍କ ପ୍ରକୃତ ନାମ ଓ ରୋଲନମ୍ବର ଜାଣିଲି । ସେତେବେଳେ ଡି.ପି.ଆଇ. ପ୍ରଫେସର ବିଧୁଭୂଷଣ ଦାସ ନୂଆ କରି ପ୍ରକ୍ଟୋରିଆଲ କ୍ଲାସ ସବୁ କଲେଜରେ ଚଳାଇଥାନ୍ତି । ସେଥିରେ ଛାତ୍ରଛାତ୍ରୀମାନଙ୍କର ସମସ୍ତ ବିବରଣୀ ଥାଏ । ପିତାମାତା, ପିତାମାତାଙ୍କ ବୃତ୍ତି, ଘରଠିକଣା ଇତ୍ୟାଦି ଥାଏ । ମୁଁ ଅଫିସକୁ ଯାଇ ସେହି ପାଞ୍ଚଜଣଙ୍କ ପ୍ରକ୍ଟୋରିଆଲ ଫାଇଲ ଦେଖିଲି । ସେମାନଙ୍କ ଘର ଠିକଣା ଜାଣିଲି । ସେମାନଙ୍କ ବାପାମାନେ ବଡ଼ ବଡ଼ ପଦପଦବୀରେ ଥାଆନ୍ତି । ଜଣେ ଫୁଡ଼-କରପୋରେସନ ଡାଇରେକ୍ଟର, ଅନ୍ୟ ଜଣେ ଓଡ଼ିଶା ଉଚ୍ଚନ୍ୟାୟାଳୟର ବିଚାରପତି । ଆଉ ଜଣେ ପୋଲିସ ବିଭାଗର ଡିଆଇଜି । ଅନ୍ୟ ବ୍ୟକ୍ତି ହେଲେ ସେକାଳର କଂଗ୍ରେସ ଦଳର ରାଉରକେଲା ଶାଖାର ସଭାପତି ଇତ୍ୟାଦି । ମୁଁ ସନ୍ଧ୍ୟାବେଳେ କଟକରେ ଥିବା ସେହି ବ୍ୟକ୍ତିମାନଙ୍କର ବିରାଟ ବିରାଟ ଘର ଦେଖିଆସିଲି ।

ପରଦିନ ଏମ୍.ଆଇ.ଏଲ୍. କ୍ଲାସ ନେବାକୁ ଗଲି । ମୋର ଏମ୍.ଏ. ଛାତ୍ର ବିପିନ ବିହାରୀ ନାୟକ ଓ ଶ୍ରୀନିବାସ ମିଶ୍ରଙ୍କୁ କହିଗଲି କମର୍ସ ବ୍ଲକର ବାରଣ୍ଡାରେ ବୁଲିବା ପାଇଁ । ସେମାନେ ମଧ୍ୟ ଗଲେ ଓ ଶ୍ରେଣୀକକ୍ଷକୁ ଅନାଇ ଦେଇ ବାହାରେ ବୁଲିଲେ । ସେତେବେଳକୁ ମୁଁ ସେହି ପାଞ୍ଚଜଣ ପିଲାଙ୍କୁ ଛିଡ଼ା କରାଇ ଭର୍ତ୍ସନା କରୁଥାଏ ଓ କହୁଥାଏ

ବାପାମାନଙ୍କର କଳାପଇସା କରାମତି ଯୋଗୁଁ ଶ୍ରେଣୀରେ ସେମାନେ କଦର୍ଯ୍ୟ ବ୍ୟବହାର ଦେଖାଉଛନ୍ତି ବୋଲି । ମୁଁ ସେମାନଙ୍କୁ ଖୁବ୍ କଡ଼ା ଭାଷାରେ ଗାଳି ଦେଉଥାଏ ଓ କହୁଥାଏ ଜଣେ ଅଧ୍ୟାପକ ଶ୍ରେଣୀ ଭିତରେ ଗଭର୍ଣ୍ଣର । ଏହି ଘଟଣାରେ ସେମାନେ ତଟସ୍ଥ ହୋଇଗଲେ । ପରେପରେ ଶ୍ରେଣୀକକ୍ଷ ସଂପୂର୍ଣ୍ଣ ନୀରବ ହୋଇଗଲା । ମୁଁ ପଢ଼ାଇଲି ସବୁଠୁଁ ନୀରସ ବିଷୟଟିଏ 'ମାଦଳାପାଞ୍ଜି' । ଘଣ୍ଟା ବାଜିବା ପରେ କେତେ ସମୟ ପଢ଼ାଇ ମୁଁ ଆସିଲି । ତପ୍ରରେ ଅଧ୍ୟକ୍ଷ ଡ. ମହେନ୍ଦ୍ର କୁମାର ରାଉତଙ୍କ ନିକଟକୁ ସେହି ପାଞ୍ଚଜଣ ପିଲାଙ୍କ ସଂପର୍କରେ ରିପୋର୍ଟ ଲେଖିଲି । ଅଧ୍ୟକ୍ଷ ମହୋଦୟ ମୋ ରିପୋର୍ଟ ପାଇବା ମାତ୍ରେ ନୋଟିସ ବାହାର କରି କଲେଜର ବିଭିନ୍ନ ଶ୍ରେଣୀର ଦ୍ୱାରଦେଶରେ ମାରିଦେଲେ । ଦୁଇଜଣଙ୍କୁ ବାଧ୍ୟତାମୂଳକ ଟି.ସି. ଦେବାକୁ ଓ ତିନିଜଣଙ୍କର ମୁରବିଙ୍କୁ ଡକାଇବାକୁ ନୋଟିସରେ ଉଲ୍ଲେଖ କଲେ । ସମସ୍ତ ମୁରବି ଆସି ଅଧ୍ୟକ୍ଷଙ୍କୁ କ୍ଷମା ମାଗି, ଭବିଷ୍ୟତରେ ଆଉ ଏପରି ହେବ ନାହିଁ ବୋଲି ଲେଖି ଦେଇଗଲେ । ସେହି ପାଞ୍ଚଜଣ ମଧ୍ୟ ପଢ଼ିଲେ । ମୁଁ ଲକ୍ଷ୍ୟ କଲି କୌଣସି କ୍ଲାସରେ ଆଉ ଗଣ୍ଡଗୋଳ ହେଲା ନାହିଁ । ସେହି ପିଲାମାନେ ମୋତେ ବାଟରେ ଦେଖିଲେ ମୋଟର ସାଇକେଲରୁ ଓହ୍ଲାଇ ପ୍ରଣାମ କରି ଯାଆନ୍ତି । ଷ୍ଟାଫମାନଙ୍କ ଭୋଜି ସଭାରେ ଡ. ରାଉତ ମୋର ପ୍ରଶଂସା କରୁଥିବା ଶୁଣିଲି ପ୍ରଫେସର ଆଲତୁବ ହୋସେନଙ୍କଠାରୁ ।

ମୁଁ ଅନୁଭବ କଲି ପିଲାମାନଙ୍କ ପ୍ରତି ଶିକ୍ଷକମାନଙ୍କର ଭିତରେ ସ୍ନେହ ରହିବା ଉଚିତ ମାତ୍ର ବାହାରକୁ କଡ଼ା ଦୃଷ୍ଟି ରଖିବା ସେମାନଙ୍କ ପାଇଁ କଲ୍ୟାଣକର । ସେତେବେଳେ ଟିଉଟରିଆଲ କ୍ଲାସ ଓ ପ୍ରୋକ୍ଟୋରିଆଲ କ୍ଲାସର ମହତ୍ତ୍ୱକୁ ମୁଁ ଉପଲବ୍ଧି କଲି । ବିଧୁବାବୁ ଡି.ପି.ଆଇ.ରୁ ଯିବା ପରେ ପ୍ରକ୍ଟୋରିଆଲ କ୍ଲାସ ଉଠିଗଲା । ଏବେ କେତେ ବର୍ଷ ହେଲା ଟିଉଟରିଆଲ କ୍ଲାସ ମଧ୍ୟ ଉଠିଗଲାଣି । ସରକାର ଭାବିଲେ ଏସବୁ ଅନାବଶ୍ୟକ । କାରଣ ଏହାଦ୍ୱାରା ଅଧିକସଂଖ୍ୟକ ଅଧ୍ୟାପକ ଦରକାର । ତେଣୁ ମୂଳୁ ମାଇଲେ ଯିବ ସରି/ ଦେବଙ୍କ ସଙ୍ଗେ କିଂପା କଳି ନ୍ୟାୟରେ ଏସବୁ କ୍ଲାସକୁ ଉଠାଇ ଦିଆଗଲା । ଏଥିରେ ରାଜନେତା ଓ ପ୍ରଶାସକ ଗୋଷ୍ଠୀ ପରସ୍ପର ସହିତ ହାତ ମିଳାଇ ଏପରି ଏକ ମହତ ବ୍ୟବସ୍ଥାରେ ପୂର୍ଣ୍ଣଚ୍ଛେଦ ଟାଣିଦେଲେ । ଏପରି ବ୍ୟବସ୍ଥା ଦ୍ୱାରା ଯେ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ସୁସଂପର୍କ ରହୁଥିଲା ଓ ଛାତ୍ରଛାତ୍ରୀମାନଙ୍କର ସନ୍ଦେହ ବିମୋଚନ ହେଉଥିଲା, ତାହା ବିଜ୍ଞଂମନ୍ୟମାନେ ବୁଝିଲେ ନାହିଁ ।

ରେଭେନ୍ସା କଲେଜରେ ମୁଁ ଦୀର୍ଘ ଆଠବର୍ଷ କଟାଇଛି । ସେଠାରୁ ମୋର ବଦଳି ହୋଇଛି ଢେଙ୍କାନାଳ ମାତ୍ର ଅଧ୍ୟକ୍ଷ ମହେନ୍ଦ୍ରବାବୁ ମୋତେ ଛାଡ଼ି ନାହାନ୍ତି । ସେତେବେଳକୁ ନିଯୁକ୍ତି ଓ ବଦଳି କରିବାର କ୍ଷମତା ଡି.ପି.ଆଇ.ଙ୍କଠାରୁ ଚାଲିଗଲାଣି ସଚିବାଳୟକୁ ଓ

ମନ୍ତ୍ରୀଙ୍କ ପାଖକୁ । ଅଧ୍ୟାପକ/ଅଧ୍ୟାପିକାମାନେ ଧାଡ଼ି ଦେଲେଣି ସେଠାରେ । ପ୍ରଚୁର ଅର୍ଥ ମଧ୍ୟ ଲୋଡ଼ା ହେଲାଣି । ମୁଁ ମଧ୍ୟ ଅଧ୍ୟକ୍ଷଙ୍କ ନିର୍ଦ୍ଦେଶକ୍ରମେ ଶିକ୍ଷାମନ୍ତ୍ରୀ ଯଦୁନାଥ ଦାଶମହାପାତ୍ର ଓ ଅନ୍ୟତମ ମନ୍ତ୍ରୀ ମୋର ବନ୍ଧୁ ସେକ୍ ମତଲୁବ ଅଲ୍ଲୀଙ୍କ ପାଖକୁ ଗଲି । ମୋର ବଦଳି ରଦ୍ଦ ହେଲା । ମୁଁ ରହିଲି ରେଭେନ୍ସା କଲେଜରେ । ସେ କାଳରେ ଏମ୍.ଏ. ଶ୍ରେଣୀରେ ମୁଁ ଉପନ୍ୟାସ, ଭାଷା, କ୍ଷୁଦ୍ରଗଳ୍ପ, ଆଧୁନିକ କବିତା ଇତ୍ୟାଦି ବିଭିନ୍ନ ବିଷୟରେ ପଢ଼ାଉଥାଏ । ପିଲାଏ ମଧ୍ୟ ମୋ ବସାକୁ ଆସି ବୁଝାବୁଝି କରନ୍ତି । ବାଟରେ ଘାଟରେ ଯେଉଁଠି ଦେଖାହୁଅନ୍ତି ମୋତେ ନାନା ବିଷୟରେ ପଚାରନ୍ତି । ମୁଁ ମଧ୍ୟ ସେମାନଙ୍କୁ ବୁଝାଇଦିଏ । ଛାତ୍ରମାନଙ୍କର ମୋ ପ୍ରତି ଥିଲା ଅଖଣ୍ଡ ଶ୍ରଦ୍ଧା ।

ସେତେବେଳେ ରେଭେନ୍ସା କଲେଜ ଛକ ଓ ସେହି ରାସ୍ତା ଏତେ ପ୍ରଶସ୍ତ ନ ଥିଲା । ଛକ ପାଖରେ ଥାଏ ଗୋଟିଏ ସାଉଥ ଇଣ୍ଡିଆନ ରେଷ୍ଟୁରାଣ୍ଟ । ସେଠି ସକାଳବେଳା ଓ ସନ୍ଧ୍ୟାବେଳା ବହୁତ ଭିଡ଼ ହୁଏ । ଆମ୍ଭେମାନେ ମଧ୍ୟ ସେଇଠି ଜଳଖିଆ ଖାଉ । ସେ ସମୟରେ ରେଭେନ୍ସା କଲେଜରେ ବହୁ ବିଦ୍ୱାନ୍ ଅଧ୍ୟାପକ ଥିଲେ । ପଦାର୍ଥ ବିଜ୍ଞାନର ପ୍ରଫେସର ଡ. କେ.ଏସ.ଆର. ମୂର୍ତ୍ତି, ଅର୍ଥନୀତି ବିଭାଗର ପ୍ରଫେସର କ୍ଷେତ୍ରମୋହନ ପଟ୍ଟନାୟକ, ପ୍ରଫେସର ବୈଷ୍ଣବଚରଣ ପରିଡ଼ା, ଭବାନୀଶଙ୍କର ଦାଶ, ଇତିହାସ ବିଭାଗର ପ୍ରଫେସର ଆଲତୁବ ହୋସେନ, ବଙ୍ଗଳା ବିଭାଗର ପ୍ରଫେସର ବିବେକାନନ୍ଦ ମୁଖାର୍ଜୀ, ରସାୟନ ବିଭାଗର ପ୍ରଫେସର ବିଚିତ୍ରାନନ୍ଦ ଚୌଧୁରୀ, ପଦାର୍ଥ ବିଜ୍ଞାନ ବିଭାଗର ଡ. ଦେବକାନ୍ତ ମିଶ୍ର, ଇଂରାଜୀ ବିଭାଗର ପ୍ରଫେସର ସର୍ବେଶ୍ୱର ଦାଶ, ଇତିହାସ ବିଭାଗର ପ୍ରଫେସର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଗୋରାଚାନ୍ଦ ପଟ୍ଟନାୟକ ପ୍ରମୁଖଙ୍କ ସହିତ ମୋର ଥିଲା ଗଭୀର ସଂପର୍କ । ସେମାନଙ୍କଠାରୁ ମୁଁ ଅନେକ ଶିକ୍ଷା କରିଛି । ଓଡ଼ିଆ ବିଭାଗର ପ୍ରଫେସର ଥିଲେ କୁଞ୍ଜବିହାରୀ ତ୍ରିପାଠୀ । ବଡ଼ ଛାତ୍ରବତ୍ସଳ ଓ ଅମାୟିକ ବ୍ୟକ୍ତି । ପ୍ରାଧ୍ୟାପକ ଥିଲେ ଡକ୍ଟର କୁଞ୍ଜବିହାରୀ ଦାଶ, ଡକ୍ଟର କାହ୍ନୁଚରଣ ମିଶ୍ର, ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର, ଡ. ଶରତଚନ୍ଦ୍ର ମିଶ୍ର, ଡ. ନଟବର ସାମନ୍ତରାୟ, ଡ. ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଡ. ଧନେଶ୍ୱର ମହାପାତ୍ର, ବେଣୁଧର ରାଉତ, ମହାପାତ୍ର ନୀଳମଣି ସାହୁ, ଡ. ଶ୍ରୀନିବାସ ମିଶ୍ର, ନବକୁମାର ପୃଷ୍ଟି, ଡ. ବିଚିତ୍ରାନନ୍ଦ ମହାନ୍ତି, ଡ. ଅସିତ କବି, ଡ. ଦୋଳଗୋବିନ୍ଦ ଶାସ୍ତ୍ରୀ ପ୍ରମୁଖ । କୁଞ୍ଜବିହାରୀ ଦାଶଙ୍କର ସ୍ନେହ ମୋର ଭୁଲିବାର ନୁହେଁ । ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି 'ଭରଦ୍ୱାଜ' ରେଭେନ୍ସା କଲେଜର ଓଡ଼ିଆ ବିଭାଗର ପ୍ରଫେସର ହେଲେ ପ୍ରଫେସର କୁଞ୍ଜବିହାରୀ ଦାଶଙ୍କ ଅବସର ପରେ ।

ମୁଁ ଯେତେବେଳେ ସାନ୍ଧ୍ୟକଲେଜରେ ଥିଲି ସେତେବେଳେ ପ୍ରଫେସର ଗୋଲୋକ ବିହାରୀ ଧଳ ପୁରୀ ସାମନ୍ତଚନ୍ଦ୍ରଶେଖର କଲେଜରୁ ବଦଳି ହୋଇ ରେଭେନ୍ସା କଲେଜକୁ

ଆସିଲେ । ତାଙ୍କର ଥିଲା ପ୍ରଚଣ୍ଡ ସ୍ୱାଭିମାନବୋଧ ଓ ଭବ୍ୟ ବ୍ୟକ୍ତିତ୍ୱ । ରେଭେନ୍ସା କଲେଜରେ ଓଡ଼ିଆ ଅଧ୍ୟାପକମାନଙ୍କର ସମ୍ମିଳନୀ ହେଉଥାଏ । ଗୋଲୋକବାବୁ ସଭାପତି ହୋଇଥାଆନ୍ତି । ପାଖରେ ବସିଥାନ୍ତି ବେଣୁଧର ରାଉତ ଓ ମହାପାତ୍ର ନୀଳମଣି ସାହୁ । ଡକ୍ଟର ଅସିତ କବି ନିଜର ବକ୍ତବ୍ୟ ଦେଲାବେଳେ ତାଙ୍କୁ ଆକ୍ଷେପ କରି କହିଦେଲେ ଯେ ପଣ୍ଡାଗିରି ଚଳିବ ନାହିଁ । ଗୋଲୋକବାବୁ ରାଗିଯାଇ ତାଙ୍କୁ ବାହାରିଯିବାକୁ କହିଲେ ଓ ସେ ପଦାକୁ ଚାଲିଗଲେ । ମୋତେ ଏ ଘଟଣା ଆଦୌ ଭଲ ଲାଗିଲା ନାହିଁ । ଗୋଲୋକବାବୁ ଯେପରି ଭାଷାରେ ତାଙ୍କୁ ଅପମାନିତ କଲେ ତାହା ମୋତେ ବାଧିଲା । ସେତେବେଳକୁ ଅସିତବାବୁଙ୍କ ସହିତ ମୋର ମୋଟେ ପଡୁନଥାଏ । ତଥାପି ମୁଁ ଛିଡ଼ା ହୋଇ ପ୍ରଥମେ ନମ୍ର ଭାବରେ ସଭାପତିଙ୍କୁ କହିଲି କ୍ଷମା ମାଗି ଡ. କବିଙ୍କୁ ଡକାଇବା ପାଇଁ । ସେ ମୋତେ କଡ଼ା ଭାଷାରେ କହିବାରୁ ମୁଁ ଟେବୁଲ ପାଖକୁ ଯାଇ ତାଙ୍କୁ ଭର୍ତ୍ସନା କଲି ଓ ସେ କ୍ଷମା ନ ମାଗିବା ପର୍ଯ୍ୟନ୍ତ ସଭା କରାଇଦେବୁ ନାହିଁ ବୋଲି କହିଲି । ମୋତେ ସମସ୍ତ ଅଧ୍ୟାପକ–ଅଧ୍ୟାପିକା ସମର୍ଥନ କଲେ । ପ୍ରଫେସର ଡ. ଖଗେଶ୍ୱର ମହାପାତ୍ର, ଡ. କୃଷ୍ଣଚରଣ ବେହେରା ଓ ଡ. ଶ୍ରୀନିବାସ ମିଶ୍ର ଛିଡ଼ାହୋଇ ଗୋଲୋକବାବୁଙ୍କୁ କହିବା ପରେ ସେ କ୍ଷମା ମାଗିଲେ । ଅସିତବାବୁ ବାହାରୁ ଦଉଡ଼ି ଆସି ମୋତେ କୁଣ୍ଢାଇ ପକାଇ କହିଲେ, 'ତମେ ମୋର ଯଥାର୍ଥ ସାନଭାଇ' । ସେହି ଦିନରୁ ତାଙ୍କର ଦେହାନ୍ତ ପର୍ଯ୍ୟନ୍ତ ମୋତେ ସେ ସାନଭାଇ ପରି ଶ୍ରଦ୍ଧା କରିଆସିଥିଲେ । ପରବର୍ଷ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ରଙ୍କ ଆବାହକତ୍ୱରେ ହେଲା ଓଡ଼ିଆ ଅଧ୍ୟାପକ ସମ୍ମିଳନୀ । ସେଠାକୁ ଆମେ ଯାଇଥାଉଁ ଓ ଆମେ ସ୍ଥିର କରିଥାଉଁ ଗୋଲୋକବିହାରୀ ଧଳଙ୍କୁ ବିରୋଧ କରିବା ପାଇଁ । ଏକଥା ଗୋଲୋକବାବୁ ଜାଣି ହଠାତ୍ ମୋତେ ଦେଖି ପଚାରିଦେଲେ– 'ବୈଷ୍ଣବ : ମୁଁ ତୁମର ପିତୃସମାନ । ତମେ ମୋତେ ବିରୋଧ କରିବ ?' ଏଇ ପଦେ କଥାରେ ମୋର ରାଗ କୁଆଡ଼େ ପାଣି ଫାଟିଗଲା । ଆମେ ସମସ୍ତେ ଏକତ୍ର ହୋଇ ଗୋଲୋକବାବୁଙ୍କୁ ସଭାପତି କଲୁ । ପରେ ତାଙ୍କ ଘରକୁ ମୁଁ କେତେଥର ଯାଇଛି । ତାଙ୍କର ପ୍ରଚଣ୍ଡ ସ୍ୱାଭିମାନବୋଧକ ଉପଲବ୍ଧି କରିଛି । ମନେପଡୁଛି ସେ ଦିବା କଲେଜରେ ଓଡ଼ିଆ ବିଭାଗର ପ୍ରଫେସର ଥିଲାବେଳେ ଆଧୁନିକ କବିତା ସ୍ୱତନ୍ତ୍ର ପତ୍ର ପଢ଼ାଇବା ପାଇଁ କେହି ନ ଥିବାରୁ ମୋତେ ତାଙ୍କ ଅଫିସକୁ ଡକାଇ ଅନନ୍ତ ପଟ୍ଟନାୟକଙ୍କ 'ଆସିଚି ମୁଁ ଆସିଚି' କବିତାଟି ବୁଝାଇ ଦେବାକୁ କହିଲେ । ମୁଁ ତାଙ୍କୁ ବୁଝାଇଦେଲି । ପରଦିନ ସେ ମୋତେ ଗୋଟିଏ ଚିଠି ଦେଇ ଦିବା କଲେଜରେ ଆଧୁନିକ କବିତା ପଢ଼ାଇବାକୁ କହିଲେ । କିଛି ଦିନ ପରେ ମୁଁ ଦିବା କଲେଜକୁ ବଦଳି ହୋଇ ଆସିଲି ।

ଫକୀରମୋହନ କଲେଜ ମୋ ପାଇଁ ଯଦି ହୁଏ ସ୍ୱର୍ଗରାଜ୍ୟ, ରେଭେନ୍ସା କଲେଜ ମଧ୍ୟ ତାହାଠାରୁ ମୋ ପାଇଁ କମ୍ ନ ଥିଲା । ଏହି ସମୟରେ ମୁଁ ବିଭିନ୍ନ ସଭାସମିତିକୁ ଯାଉଥିଲି । ଛାତ୍ରମାନଙ୍କ ପ୍ରତି ତ ମୋର ଥିଲା ଗଭୀର ସ୍ନେହ । ସେହି ସମୟରେ କଲେଜଛକ ଭଙ୍ଗାରୁଜା ହୋଇ ନ ଥାଏ । କିତାବ ମହଲ ଥିଲା ସେଠି ଏକ ପ୍ରସିଦ୍ଧ ପୁସ୍ତକ ପ୍ରକାଶନ ଓ ବିକ୍ରୟ ଅନୁଷ୍ଠାନ । ପ୍ରାୟ ଅଧ୍ୟାପକ/ଅଧ୍ୟାପିକା ଓ ଛାତ୍ରଛାତ୍ରୀ ସେଠାକୁ ଯାଇ ବହି ଆଣୁଥିଲେ । ସେହି ବହି ଦୋକାନର ସମ୍ମୁଖଭାଗରେ ଥିଲା ଜୟଶ୍ରୀ ପ୍ରେସ୍ । ଶ୍ରଦ୍ଧେୟ ବିପିନ ବିହାରୀ ନାୟକ ସେହି ପ୍ରେସ୍‌କୁ ବୁଝାବୁଝି କରନ୍ତି ଓ ଏଣେ ଏମ୍.ଏ. ଓଡ଼ିଆ ଶ୍ରେଣୀରେ ପଢ଼ନ୍ତି । ତାଙ୍କର ତତ୍‌କାଳୀନ ରେଭେନ୍ସା କଲେଜର ସମସ୍ତ ଅଧ୍ୟାପକଙ୍କ ସହିତ ଥିଲା ଉତ୍ତମ ସଂପର୍କ । ସନ୍ଧ୍ୟାବେଳେ ତାଙ୍କ ପ୍ରେସ ଆଗରେ ଚେୟାର ଓ ବେଞ୍ଚ ପଡ଼ିଥାଏ । ସେଠି କେତେ ଅଧ୍ୟାପକ, ରାଜନେତା ଓ ଲେଖକ ଜୁଟନ୍ତି । ସେତେବେଳେ ସେଠି ମୁଁ ଦେଖିଥିଲି ଶ୍ରୀକାନ୍ତ ଜେନା, ତ୍ରିଲୋଚନ କାନୁନ୍‌ଗୋ, ବିଜୟ ମହାପାତ୍ର, ନଳିନୀକାନ୍ତ ମହାନ୍ତି, ପଞ୍ଚାନନ କାନୁନ୍‌ଗୋ ପ୍ରମୁଖ କେତେକଙ୍କୁ । ଏମାନେ ସମସ୍ତେ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କର ଶିଷ୍ୟ ଥାଆନ୍ତି । ବମ୍ବେ ହୋଟେଲରେ ରୁମ ନେଇ ରହୁଥାନ୍ତି ଓ ବିଜୁବାବୁ ସେମାନଙ୍କୁ ସାହାଯ୍ୟ କରୁଥାନ୍ତି । ସମସ୍ତେ ବିପିନକୁ ଡାକନ୍ତି 'ମାମା' ବୋଲି । କାହିଁକି ଡାକନ୍ତି ମୁଁ ଜାଣେନା । ବିପିନ ମୋତେ ଏତେ ଶ୍ରଦ୍ଧା ଓ ଭକ୍ତି କରେ ଯେ ତାହା କେବେ ଭୁଲିହେବ ନାହିଁ । ମୁଁ ତାକୁ ଏମ.ଏ.ର ସମସ୍ତ ପାଠ୍ୟ ପଢ଼ାଇଦିଏ । ସେ ଏମ୍.ଏ. ପ୍ରଥମ ଶ୍ରେଣୀରେ ପାସ୍ କରି ମଧ୍ୟ ଚାକିରି ନ କରି ସେହି ପ୍ରେସ୍ କଥା ବୁଝିଲେ । ଘର କଲେ । ଭଉଣୀ ବାହାଘର କଲେ । ନିଜେ ମଧ୍ୟ ବାହା ହେଲେ । ମୋ ଝିଅ ଓ ପୁଅ ବାହାଘରକୁ ସସ୍ତ୍ରୀକ ଆସି ଯେପରି ସାହାଯ୍ୟ କରିଛନ୍ତି ତାହା ମୋର ଅଭୁଲା ସ୍ମୃତି ହୋଇ ରହିବ । ସେ ଓକିଲାତି ପାସ୍ କରି ମଧ୍ୟ ଓକିଲ ହେଲା ନାହିଁ । ଡି.ଲିଟ. କରି ମଧ୍ୟ ଅଧ୍ୟାପକ ହେଲେ ନାହିଁ । ସେ ଥିଲେ ସ୍ୱାଧୀନଚେତା ଓ ସ୍ୱାବଲମ୍ବୀ । ଏବେ ସେ ରୋଗାକୀର୍ଣ୍ଣ । ତଥାପି ତାଙ୍କର ସମ୍ବେଦନଶୀଳ ବ୍ୟକ୍ତିତ୍ୱ ମୋତେ ମୁଗ୍ଧ କରେ ।

ରେଭେନ୍ସା କଲେଜରେ ଥିଲାବେଳେ କେତେ ଛାତ୍ରଙ୍କୁ ମୁଁ ସାହାଯ୍ୟ କରିଛି । ସେମାନଙ୍କୁ ଦୁନିଆର ବଡ଼ଦାଣ୍ଡରେ ମେରୁଦଣ୍ଡ ସଳଖି ଛିଡ଼ା ହେବାକୁ ପ୍ରେରଣା ଦେଇଛି । ରେଭେନ୍ସା କଲେଜର ନାନା ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେଇଛି । ଛାତ୍ରମାନଙ୍କର ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତାର ଶେଷାଂଶରେ ଅଧ୍ୟକ୍ଷଙ୍କ ସମେତ ସମସ୍ତ ଅଧ୍ୟାପକମାନଙ୍କର ଦୌଡ଼ ପ୍ରତିଯୋଗିତା ହୁଏ । ଫକୀରମୋହନ କଲେଜରେ ଅଧ୍ୟାପକମାନଙ୍କ ଦୌଡ଼ ପ୍ରତିଯୋଗିତାରେ ମୁଁ ପ୍ରଥମ ହେଉଥିଲି । ରେଭେନ୍ସା କଲେଜରେ ମଧ୍ୟ ମୁଁ ପ୍ରଥମ ହୁଏ ।

ପାଏ ଗୋଟିଏ ବଡ଼ ଲଜେନ୍ସ ପକେଟ ଓ ବିସ୍କୁଟ ପକେଟ । ପିଲାଏ ସେଇଠୁ ଝାମ୍ପି ନେଇଯାଆନ୍ତି । ଆଜିକାଲି ଆଉ ସେହି ଦୌଡ଼ ନାହିଁ । ତାହା ସେତେବେଳେ ଯେ କେତେ ଆନନ୍ଦ ଦେଉଥିଲା, କହିବାର ନୁହେଁ । ରେଭେନ୍ସା କଲେଜର ଛାତ୍ରମାନଙ୍କ ମଧ୍ୟରେ ଡକ୍ଟର ବିପିନ ବିହାରୀ ନାୟକ, ଅଧ୍ୟାପକ ଶ୍ରୀନିବାସ ମିଶ୍ର (ମାଟିଆ), ଡକ୍ଟର କୈଳାସଚନ୍ଦ୍ର ଟିକାୟତରାୟ, ଡକ୍ଟର ଖଗେନ୍ଦ୍ରନାଥ ମଲ୍ଲିକ, ଡକ୍ଟର ଗୌରାଙ୍ଗ ଚରଣ ଦାଶ, ଶ୍ରୀ ଗିରିଜା କୁମାର ବଳିୟାରସିଂହ, (ସଂପ୍ରତି ଜଣେ ବିଶିଷ୍ଟ କବି ଓ ପ୍ରକାଶକ), ଡକ୍ଟର ବାବାଜୀ ପଟ୍ଟନାୟକ, ଡକ୍ଟର ଗୋବିନ୍ଦ ଭୂୟାଁ, ଡକ୍ଟର ଅପର୍ଣ୍ଣା ମହାନ୍ତି ପ୍ରମୁଖ ମୋ ମାନସପଟ୍ଟରେ ସତତ ବିଦ୍ୟମାନ ।

ରେଭେନ୍ସାକୁ ଆସିଲା ପରେ ମୋର ଲେଖାଲେଖି କରିବା, ରେଡ଼ିଓରେ ବକ୍ତବ୍ୟ ଦେବା, ସଭାସମିତିକୁ ଯିବା ବଢ଼ିଗଲା । ଅନେକ ପ୍ରବନ୍ଧ, କବିତା ଓ ସମାଲୋଚନା ବାହାରିଲା । ବହିଟିଏ ପ୍ରକାଶ କରିପାରୁ ନ ଥାଏ । ପ୍ରକାଶକମାନେ ମୋର ପରିଚିତ ନ ଥିଲେ । ଏହି ସମୟରେ କଲେଜଛକ ପାଖରେ ଥାଏ 'ପ୍ରକାଶ ବୁକ୍‌ଷ୍ଟୋର' । ତା'ର ମାଲିକ ଶୁକଦେବ ସାହୁ । ସେ ମଧ୍ୟ ଜଣେ ଲେଖକ । ତାଙ୍କ ଗ୍ରାମ ଧୂମାତ୍, ମୋ ଗ୍ରାମକୁ ଲାଗି । ସେହି ସୂତ୍ରରେ ମୁଁ ତାଙ୍କ ପାଖକୁ ଯାଇ ମୋର ଗୋଟିଏ ବହି ଛାପିବାକୁ କହିଲି । ସେ ମନା କରିଦେଲେ । କହିଲେ ଗୌରୀ କୁମାର ବ୍ରହ୍ମା, ପଠାଣି ପଟ୍ଟନାୟକ ଆଦି ବଡ଼ ବଡ଼ ଲେଖକମାନଙ୍କର ସେ ଛାପୁଛନ୍ତି । ତମେ ପିଲାଲୋକ । ତମ ବହି କିଏ ପଢ଼ିବ ? କଥାଟା ମୋତେ ବାଧିଲା । ମୁଁ ଚାଲିଆସିଲି । ତାଙ୍କ ଦୋକାନ ନନ୍ଦିନୀଦେବୀଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଭାଙ୍ଗିଗଲା । କଲେଜଛକ ଦେଇ ବକ୍ସିବଜାର ପର୍ଯ୍ୟନ୍ତ ରାସ୍ତା ପ୍ରଶସ୍ତ ହେଲା । ଶୁକବାବୁଙ୍କର ବିନୋଦ ବିହାରୀରେ 'ନାଳନ୍ଦା' ବହି ଦୋକାନ ହେଲା । ମୁଁ ତାଙ୍କ ଦୋକାନକୁ ଯାଇ ନାହିଁ । ମୃତ୍ୟୁ ପୂର୍ବରୁ ସେ ଆମ ଘରକୁ ଆସି ମୋତେ ତାଙ୍କ ଘରେ ହେଉଥିବା ଏକ ଉତ୍ସବକୁ ଡାକିଲେ । ମୁଁ ମଧ୍ୟ ଯାଇ ସେଠି ଭାଷଣ ଦେଇଥିଲି । ଏବେ ସେ ସ୍ୱର୍ଗପୁରକୁ ଚାଲିଗଲେଣି । ଇନ୍ଦ୍ରପୁର/ଧୂମାତ୍‌ର ସେ ରକ୍ତତୀର୍ଥର କାହାଣୀ ଲେଖିଛନ୍ତି । ଗାଁ ପାଇଁ ଅନେକ କିଛି କରିଛନ୍ତି । ତାଙ୍କ ଅମର ଆତ୍ମା ପ୍ରତି ମୁଁ ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି ।

ଶୁକବାବୁଙ୍କ ପାଖରୁ ନିରାଶ ହୋଇ ମୁଁ ଯାଇଛି ଜଗନ୍ନାଥ ରଥଙ୍କ ପାଖକୁ । ତାଙ୍କର ମୋ ପ୍ରତି ଗଭୀର ଶ୍ରଦ୍ଧାକୁ ମୁଁ ଉପଲବ୍ଧି କଲି । ସେ ୧୯୭୧ ମସିହାରେ ଛାପିଲେ ମୋର ପ୍ରଥମ ସମାଲୋଚନା ବହି 'କଳା ସଂସ୍କୃତି ଓ ସାହିତ୍ୟ' । ଏହି ସମୟରେ ମୋର ପରିଚୟ ହେଲା 'ବୁକ୍ସ ଏଣ୍ଡ ବୁକ୍ସ'ର ମାଲିକ କୃଷ୍ଣଚନ୍ଦ୍ର ବେହେରାଙ୍କ ସହିତ । ସେ ଛାପିଲେ ମୋର ପ୍ରଥମ କବିତା ବହି 'ସମୟର ଲିପି' । ତା'ର ମୁଖବନ୍ଧ ଲେଖିଥିଲେ

ଇଂରାଜୀ ଅଧାପକ ସଦାନନ୍ଦ ମିଶ୍ର । ପରେ ସେ ମୋର ଅନେକ ବହି ଛାପିଥିଲେ । 'ବିଶ୍ୱବିଦ୍ୟାଳୟ ପ୍ରବନ୍ଧମାଳା' ପ୍ରଥମେ ବାହାରିଲା ୧୯୭୨ ମସିହାରେ । ଏହା ପରେ ବାରଟି ସଂସ୍କରଣ ହେଲା । ପ୍ରତ୍ୟେକ ସଂସ୍କରଣରେ ନୂଆ ନୂଆ ବିଷୟ ଯୋଗ ହୁଏ । ମାତ୍ର ସେ ଆଉ ଉତ୍ସାହ ପ୍ରକାଶ କଲେ ନାହିଁ । ତାହା ବନ୍ଦ ହୋଇଗଲା । ସେ ମଧ ୧୯୭୮ ମସିହାରେ ମୋର 'କ୍ଷୁଦ୍ରଗଳ୍ପ : ସ୍ରଷ୍ଟା ମାନସ', 'ଦୃଷ୍ଟି ଓ ଦିଗନ୍ତ', 'ସମାଲୋଚନା: ପାଞ୍ଚଜନ୍ୟ', 'ଯଦୁ ଅବଧୂତ ସମ୍ବାଦ', 'ମହାପୁରୁଷ ବାହୁଡ଼ାଦାସ ରଚନାବଳୀ', 'ଓଡ଼ିଆ ଯାତ୍ରା ଓ ଲୋକନାଟ୍ୟ ପରିକ୍ରମା' ଇତ୍ୟାଦି କେତେକ ପୁସ୍ତକ ଛାପିଲେ । ପରେ ଛାପିଲେ ମୋର 'ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ' ଦୁଇଟି ଭାଗରେ । ମୁଁ କେବେ ତାଙ୍କୁ ଟଙ୍କା ମାଗେ ନାହିଁ । ତାଙ୍କ ମନ ହେଲେ ଯତ୍‌କିଞ୍ଚିତ୍ ଦିଅନ୍ତି । ମୁଁ ତାଙ୍କର ବନ୍ଧୁ ପାଲଟିଗଲି । ତାଙ୍କର ସୁଖଦୁଃଖର ସାଥୀ ହେଲି । କେତେ କେତେ ସଂକଟରୁ ମୁଁ ତାଙ୍କୁ ଉଦ୍ଧାର କଲି । ହେଲେ ଯେଉଁଦିନ ସେ ମୋତେ କହିଦେଲେ ତାଙ୍କ ସହିତ ମୋର ବ୍ୟାବସାୟିକ ସଂପର୍କ ସେହି ଦିନରୁ ମୋ ମନ ଛାଡ଼ି ଗଲା । ଏଇ କେତେ ଦିନ ତଳେ ତାଙ୍କର ଦେହାନ୍ତ ହୋଇଗଲା, ତାଙ୍କ ମୃତ୍ୟୁରେ ମୁଁ ମର୍ମାହତ ।

ଇତିମଧ୍ୟରେ ଫ୍ରେଣ୍ଡସ୍ ପବ୍ଲିଶର୍ସର ସ୍ୱତ୍ୱାଧିକାରୀ ମୋର ଅଗ୍ରଜତୁଲ୍ୟ ସହଦେବ ପ୍ରଧାନଙ୍କ ସହିତ ସଂପର୍କ ବଢ଼ିଉଠିଲା । ସେ ପ୍ରଚଣ୍ଡ ସ୍ୱାଭିମାନୀ । କାହାର ଆଡ଼ବାଙ୍କ କଥା ସେ ସହିପାରନ୍ତି ନାହିଁ । ସେ ମୋତେ ସାନଭାଇ ପରି ଦେଖନ୍ତି । ମୋର ଅନେକ ବହି ସେ ଛାପିଲେ । ସାହିତ୍ୟ-ସମ୍ବାଦ, ସମୀକ୍ଷାଲୋକ, ଓଡ଼ିଆ ଗଳ୍ପ: ଉନ୍ମେଷ ଓ ଉତ୍ତରଣ, ଓଡ଼ିଆ ସାହିତ୍ୟର ଇତିହାସ, ଗଣକବି ସାହିତ୍ୟ ସମୀକ୍ଷା, ଏକା ଏକା ନକ୍ଷତ୍ର (ଗଳ୍ପ), ଅନ୍ୟ ଏକ ପୃଥିବୀ (କବିତା), ଭକ୍ତ କଥା ଭକ୍ତଚରିତ ଆଦି ପୁସ୍ତକ ସେ ପ୍ରକାଶ କରିଛନ୍ତି । ତାଙ୍କର ଦୁଇପୁତ୍ର- ହିମାଂଶୁ ଓ ସୁଧାଂଶୁ । ସେମାନେ ବହି ଦୋକାନ ଚଳାଉଛନ୍ତି । ସହଦେବବାବୁଙ୍କ ବ୍ୟକ୍ତିତ୍ୱରେ ଆକୃଷ୍ଟ ହୋଇ କେତେ କେତେ ଲେଖକ/ ଲେଖିକା ତାଙ୍କ ଦୋକାନକୁ ଆସନ୍ତି । ଏକପ୍ରକାର ସାହିତ୍ୟ ଆସର ସେଠି ଚାଲେ । ସେହି ସମୟରେ ସାଥୀ ମହଲ ମୋର 'ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି' ପ୍ରକାଶ କଲେ । ଦୁଇଟି ସଂସ୍କରଣ ପରେ ଗୋଟିଏ ପଇସା ନ ଦେବାରୁ ବନ୍ଦ କରିଦେଲି । ଓଡ଼ିଶା ବୁକ୍‌ଷ୍ଟୋରର ମାଲିକ ଗୋବିନ୍ଦଚନ୍ଦ୍ର ପାତ୍ର- ଜଣେ ସଂସ୍କୃତି ଓ ସାହିତ୍ୟପ୍ରେମୀ ବ୍ୟକ୍ତି । ସେ ମୋର 'ନାରୀର ମୁହଁ', 'ଆଜ ଦେଖିଲିରେ', 'ସମାଲୋଚନା : ମଧୁପର୍କ', 'ସ୍ୱାଧୀନତୋତ୍ତର ଓଡ଼ିଆ ସାହିତ୍ୟ : ଭୂମି ଓ ଭୂମିକା' ଛାପିଥିଲେ । ତାଙ୍କର ମଧ ତିରୋଧାନ ହୋଇଗଲାଣି । ଏହିପରି ଅନେକ ପ୍ରକାଶକମାନଙ୍କ ସଂପର୍କରେ ଆସିଛି । ପାଇଛି ସେମାନଙ୍କଠାରୁ ସ୍ନେହ ଓ ଶ୍ରଦ୍ଧା ।

ଫକୀରମୋହନ କଲେଜ ମୋତେ ଲେଖକ କରାଇଥିଲା । ରେଭେନ୍ସା କଲେଜ ମୋତେ ଲେଖକ ଭାବରେ ପ୍ରତିଷ୍ଠା ଦେଲା । ମୁଁ ବାଣୀବିହାରକୁ ଗଲା ପରେ କିଛି ବର୍ଷ ପର୍ଯ୍ୟନ୍ତ ମୋତେ ବନ୍ଧୁମାନେ କହୁଥିଲେ ଯେ ମୁଁ ରେଭେନ୍ସା କଲେଜର ମୋହ ଛାଡ଼ିପାରୁ ନାହିଁ ।

ପ୍ରକୃତରେ ମୁଁ ଫକୀରମୋହନ କଲେଜ ଓ ରେଭେନ୍ସା କଲେଜର ମୋହ ଛାଡ଼ି ନାହିଁ, ଛାଡ଼ିପାରୁ ନାହିଁ ମଧ୍ୟ । ସେହି ଦୁଇଟି କଲେଜକୁ ଗଲେ ମୋ ଛାତି କୁଣ୍ଢେମୋଟ ହୋଇଯାଏ । କେତେ କେତେ ଜ୍ଞାନୀ ଗୁଣୀ ଅଧ୍ୟାପକଙ୍କଠାରୁ ମୁଁ ପାଇଛି ଅମାପ ସ୍ନେହ । ଅନୁଭବିଛି ସେମାନଙ୍କର ମର୍ଯ୍ୟାଦାବୋଧକୁ । ଏବେ ରେଭେନ୍ସା କଲେଜ ବିଶ୍ୱବିଦ୍ୟାଳୟ ହୋଇଯାଇଛି । ତା'ର ବାଉଣ୍ଡରି ଭଙ୍ଗାଯାଇ ଲୁହାବାଡ଼ ହୋଇଛି । ଗଛ ସବୁ କଟା ହୋଇଯାଇଛି । ମାତ୍ର ଅତୀତର ସେହି ଗାମ୍ଭୀର୍ଯ୍ୟ, ମର୍ଯ୍ୟାଦା ଓ ସୌନ୍ଦର୍ଯ୍ୟ କାହିଁ ? ସବୁ ନିର୍ଭର କରେ ଅଧ୍ୟାପକ/ଅଧ୍ୟାପିକାଙ୍କ ଉପରେ । ଅଥଚ ସରକାର ଓ ରାଜନେତା ଅଧ୍ୟାପକ/ଅଧ୍ୟାପିକାଙ୍କୁ ସେମାନଙ୍କ ହାତରେ ନଚେଇଲେ । କେତେ ଜଣ ମଧ୍ୟ ମର୍ଯ୍ୟାଦା ଭୁଲି ସେମାନଙ୍କ ହାତର ସଖୀ କଣ୍ଢେଇ ହେଲେ । ଅଧ୍ୟାପକ/ଅଧ୍ୟାପିକା ବିଦ୍ୟା ସାଧନାକୁ ଛାଡ଼ି ବୃତ୍ତିଜୀବୀ ହେଲେ । ବୃତ୍ତି ପ୍ରବୃତ୍ତିକୁ ଗ୍ରାସ କରିଗଲା । ଫଳରେ ସେମାନଙ୍କ ଉପରେ ରାଜନେତା ଓ ପଦସ୍ଥ ପ୍ରଶାସକ ଗୋଷ୍ଠୀ ମାଲିକ ହେଲେ । ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଲା ଶିକ୍ଷା ବିଭାଗ । ସ୍ୱାଭିମାନ ଭୁଲି ଅଧ୍ୟାପକ ଗୋଷ୍ଠୀ ବଚସ୍କର ପାଲଟିଗଲେ । ପ୍ରଶାସକ ଗୋଷ୍ଠୀ ଶିକ୍ଷକ ସମାଜ ଉପରେ ସବାର ହେଲେ । ସେମାନେ କାଲି ସକାଳର ହୋଇ ମଧ୍ୟ ଉପରେ ବସିଲେ । ପ୍ରବୀଣମାନେ ନତମସ୍ତକ ହୋଇ ରହିଲେ । ଏହାହିଁ ହେଉଛି ଆଜିର ଶିକ୍ଷା ଅବସ୍ଥା । କାହାକୁ କହିବା କପାଳରେ ସିନା କର ମାରିବା ।

## ଉତ୍କଳ ବିଶ୍ୱବିଦ୍ୟାଳୟରେ ମୋର ଅଧ୍ୟାପନା

୧୯୭୮ ମସିହା ଜୁଲାଇ ୨୪ ତାରିଖରେ ରେଭେନ୍ସା କଲେଜ ଛାଡ଼ି ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଯୋଗ ଦେଲି ଅଧ୍ୟାପକ ଭାବରେ । ସରକାରୀ ମହାବିଦ୍ୟାଳୟର ବାରବର୍ଷ ଚାକିରି (ଫକୀରମୋହନ ଓ ରେଭେନ୍ସା କଲେଜ) ଛାଡ଼ି ବିଶ୍ୱବିଦ୍ୟାଳୟ ଚାକିରିରେ ସାମିଲ ହୋଇଗଲି । ଏଠିକୁ ଆସିବା ପୂର୍ବରୁ ରେଭେନ୍ସା କଲେଜର ଅଧ୍ୟକ୍ଷ ପ୍ରସିଦ୍ଧ ରସାୟନବିତ୍ ପ୍ରଫେସର ମହେନ୍ଦ୍ର କୁମାର ରାଉତଙ୍କ ସହିତ ଦିନେ ସନ୍ଧ୍ୟା ସମୟରେ ମୋର ଭେଟ ହୋଇଗଲା ଅଚାନକ କଲେଜ ଭିତରପଟେ ଥିବା ବଗିଚାରେ । ସେ ମୋତେ ଡାକି କହିଲେ– 'ତମେ କ'ଣ ସରକାରୀ ଚାକିରି ଛାଡ଼ି

ବିଶ୍ୱବିଦ୍ୟାଳୟକୁ ଯାଉଛ ?' 'ହଁ' କହିବାରୁ ସେ ମୋତେ ବୁଝାଇଲେ– 'ଏ ଭୁଲ କର ନାହିଁ । ସରକାରୀ କଲେଜରେ ଆଜି ଏଠି ଅଛ, କୌଣସି ଅସୁବିଧା ହେଲେ କାଲି ଅନ୍ୟତ୍ର ବଦଳି ହୋଇଯିବ । ସରକାରୀ କଲେଜରେ କ୍ଷୁଦ୍ରତା ନାହିଁ; ଅଛି ପ୍ରସାରିତ ଦୃଷ୍ଟିଭଙ୍ଗୀ । ବିଶ୍ୱବିଦ୍ୟାଳୟରେ ପ୍ରତ୍ୟେକ ବିଭାଗ ସ୍ୱତନ୍ତ୍ର ଓ ସେସବୁ ଗୋଟିଏ ଗୋଟିଏ କ୍ଷୁଦ୍ର କୋଠରି । ସେହି କ୍ଷୁଦ୍ର ପରିବେଶ ଭିତରେ ଅଧ୍ୟାପକମାନଙ୍କ ଭିତରେ ଥାଏ କ୍ଷୁଦ୍ରତା । ପ୍ରତ୍ୟେକଙ୍କ ଭିତରେ ଚାଲେ ପ୍ରତିଯୋଗିତା । କେବଳ 'ମୁଁ' 'ମୁଁ' ଭାବ । ସେଠି ତମେ ତିଷ୍ଠିପାରିବ ନାହିଁ । ତମକୁ ମୁଁ ଯେପରି ଜାଣିଛି ସେଥିରେ ତମେ କାହା ସହିତ ସଂଘର୍ଷ କରିପାରିବ ନାହିଁ । ଅଧିକନ୍ତୁ ସରକାରୀ କଲେଜରେ ଚାକିରି କରି ଅବସର ନେଲା ପରେ ତମର ସମସ୍ତ ଟଙ୍କାପଇସା ସଙ୍ଗେସଙ୍ଗେ ପାଇଯିବ । ପେନ୍‌ସନ ମଧ୍ୟ ପାଇଯିବ ନିୟମିତ । ଏ ସୁବିଧା ବିଶ୍ୱବିଦ୍ୟାଳୟରେ ନାହିଁ ।' ମୁଁ ଅଧ୍ୟକ୍ଷଙ୍କ କଥା ଶୁଣିଲି । ମୁଁ ଅନୁଭବ କରିଥିଲି ରେଭେନ୍ସା କଲେଜରେ ଥିଲାବେଳେ ତାଙ୍କର ମୋ ପ୍ରତି ଥିବା ସ୍ନେହ ଓ ମମତାକୁ । ମୁଁ କିନ୍ତୁ ରେଭେନ୍ସା କଲେଜ ଛାଡ଼ି ବିଶ୍ୱବିଦ୍ୟାଳୟରେ ଯୋଗ ଦେଲି ଓ ଅନୁଭବ କଲି ମହେନ୍ଦ୍ରବାବୁଙ୍କର କଥା କେତେ ସତ୍ୟ !

ବିଶ୍ୱବିଦ୍ୟାଳୟକୁ ଯିବାପାଇଁ ମୁଁ ଦରଖାସ୍ତ କରିଥିଲି । ମୁଁ ସେତେବେଳେ ପିଏଚ.ଡି. କରି ନ ଥିଲି । ମୋର ଅନେକ ଲେଖା ପତ୍ରପତ୍ରିକାରେ ବାହାରିଥାଏ ଓ ପ୍ରାୟ ସାତ ଆଠ ଖଣ୍ଡ ସମାଲୋଚନା ପୁସ୍ତକ ମଧ୍ୟ ବାହାରିଥାଏ । ତଥାପି ଇଣ୍ଟରଭ୍ୟୁ ଦେବାକୁ ଯିବାପାଇଁ ଭରସା ପାଉ ନ ଥାଏ । ତାହା ଛଡ଼ା ଧରାଧରି କରିବା, କୌଣସି ପ୍ରକ୍ରିୟାରେ କାହାକୁ ଅନୁଗୃହୀତ କରାଇବା ମୋର ପ୍ରକୃତିବିରୁଦ୍ଧ । ଏହା ମଧ୍ୟ ମୁଁ ଜାଣି ନ ଥାଏ । ମୋତେ କିନ୍ତୁ ଇଣ୍ଟରଭ୍ୟୁ ଦେବା ପାଇଁ ମୋର ସହକର୍ମୀ ବଡ଼ଭାଇ ସଦୃଶ ଡ. ଅସିତ୍ କବି ବାଧ୍ୟ କଲେ । ତାଙ୍କ ତାଗିଦା ଅନୁସାରେ ମୁଁ ଇଣ୍ଟରଭ୍ୟୁ ଦେବାକୁ ଗଲି । ବିଶ୍ୱବିଦ୍ୟାଳୟରେ ପହଞ୍ଚି ଦେଖିଲି ୨୭ ଜଣ ପ୍ରାର୍ଥୀ ଉପସ୍ଥିତ ଅଛନ୍ତି । ସମସ୍ତେ ପିଏଚ.ଡି. ଓ ଡି.ଲିଟ. । ମୋତେ ବଡ଼ ନିରାଶା ଲାଗିଲା । ସହଜରେ ପ୍ରଚଣ୍ଡ ଖରା । ଏଣେ ଇଣ୍ଟରଭ୍ୟୁ ହେଉ ନାହିଁ । ସମସ୍ତେ ଅପେକ୍ଷାରତ । କ'ଣ ଘଟଣା ହୋଇଛି କେହି ଜାଣିପାରୁ ନ ଥାନ୍ତି । ଏଣେ ମୁଁ ଘରକୁ ପଳାଇ ଆସିବାକୁ ବାହାରିଲା ବେଳେ ମୋତେ ଯଦୁନାଥ ରାଉତରାୟ ନାମକ ଜଣେ ସେକ୍‌ସନ ଅଫିସର ଅଟକାଇଲେ ଓ ଇଣ୍ଟରଭ୍ୟୁ ଦେବାକୁ ବାଧ୍ୟ କଲେ । ସେତେବେଳେ ବିଶ୍ୱବିଦ୍ୟାଳୟର କଣ୍ଟ୍ରୋଲର ଥାଆନ୍ତି ଶ୍ରୀଯୁକ୍ତ ପ୍ରଭାକର ଶତପଥୀ । ସେ ଦେଖା ହୋଇଗଲେ ହଠାତ୍ । ମୁଁ ଇଣ୍ଟରଭ୍ୟୁ ନ ଦେଇ ପଳାଇଯିବା କଥା କହିବାରୁ ସେ ମୋ ଉପରେ ବିରକ୍ତ ହେଲେ । ସେ କହିଲେ– 'ଭୀରୁ, କାପୁରୁଷ । ଇଣ୍ଟରଭ୍ୟୁ ଦିଅ । ଅନ୍ତତଃ ତମେ ଗୋଟିଏ ଅଭିଜ୍ଞତା ଅର୍ଜନ କରିବ ।' ସେ ମହାଶୟ

ଆମ ଗ୍ରାମକୁ ଲାଗି ଧୂମାଦ୍ ଗ୍ରାମର ଅଧିବାସୀ । ଇନ୍ଦୁପୁର ହାଇସ୍କୁଲର ସେ ଥିଲେ ମେଧାବୀ ଛାତ୍ର । ତାଙ୍କୁ ମୁଁ ପୂର୍ବରୁ ଦେଖିଥିଲି ଓ ତାଙ୍କୁ ନନା ଡାକୁଥିଲି । ଭାରି ସ୍ନେହୀ ମଣିଷଟିଏ । ମୁଁ ବାଧ ହୋଇ ରହିଲି ଇଣ୍ଟରଭ୍ୟୁ ଦେବାପାଇଁ ।

ସେତେବେଳେ ଡକ୍ଟର ବଂଶୀଧର ମହାନ୍ତି ଥାଆନ୍ତି ଓଡ଼ିଆ ବିଭାଗର ପ୍ରଫେସର । ନିୟମ ଅନୁସାରେ ସେ ମଧ ଇଣ୍ଟରଭ୍ୟୁ ବୋର୍ଡ଼ରେ ଥାଆନ୍ତି । ମୁଁ ଯେତେବେଳେ ରେଭେନ୍ସା କଲେଜରେ ଥିଲି ସେତେବେଳେ କେନ୍ଦୁଝର ଟାଉନରେ ଅନୁଷ୍ଠିତ ଏକ ସାହିତ୍ୟ ସଭାକୁ ବକ୍ତା ଭାବରେ ଯାଇଥାଏ । ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଭୁବନେଶ୍ୱର ବେହେରା ଥାଆନ୍ତି ମୁଖ୍ୟ ଅତିଥି । ଡକ୍ଟର କୃଷ୍ଣଚରଣ ବେହେରା ଥାଆନ୍ତି ଅନ୍ୟତମ ବକ୍ତା । ବିଷୟ ଥିଲା ଓଡ଼ିଆ ପୋଥି ସଂପାଦନା ଓ ତାହାର ଭବିଷ୍ୟତ । ମୋ ଆଲୋଚନା ପ୍ରସଙ୍ଗରେ ମୁଁ କହିଥିଲି ଓଡ଼ିଆ ପୋଥିର ସଂଗ୍ରହ ହେଉଛି ସତ; ମାତ୍ର ତାହାର ଶୁଦ୍ଧ ସଂପାଦନା କରାଯାଉ ନାହିଁ । ଯିଏ ଯେମିତି ପାରୁଛି ସେମିତି କରୁଛି । କେବଳ ଡକ୍ଟର କୃଷ୍ଣଚରଣ ସାହୁ ବୈଜ୍ଞାନିକ ପଦ୍ଧତିରେ ଯେଉଁ ସବୁ ପୋଥି ସଂପାଦନା କରୁଛନ୍ତି ତାହା ଆଦର୍ଶ ସ୍ଥାନୀୟ ହେଉଛି । ସେହି ସଭାରେ କୌଣସି ଏକ ବ୍ୟକ୍ତି ଭୁବନେଶ୍ୱରକୁ ଆସି ବଂଶୀଧରବାବୁଙ୍କୁ କହିଲେ ଯେ ମୁଁ ତାଙ୍କ ବିରୋଧରେ ନାନା କଥା କହିଲି । ସେ ମୋ ଉପରେ ଭୟଙ୍କର ରାଗିଗଲେ । ଥରେ ମୁଁ ବାଣୀବିହାରକୁ କୌଣସି କାର୍ଯ୍ୟରେ ଆସିଥିଲାବେଳେ ସେ ମୋତେ ଦେଖି ନାନାଦି ଅଶ୍ଳୀଳ ଭାଷାରେ ଗାଳିଦେଲେ । ସେତେବେଳେ ତ ମୁଁ ଯୁବକ । ମୋର ରାଗ ହେବା ସ୍ୱାଭାବିକ । ତେଣୁ ମୁଁ ମଧ ଅନୁରୂପ ଭାଷାରେ ଗାଳି ଦେଲି । ତାଙ୍କର ସେହି ରାଗ ମୋ ଉପରେ ଥାଏ । ସେ ମହାଶୟ ମଧ ଟିକିଏ ହେଲେ ହେଜିଲେ ନାହିଁ ଯେ ଅତୀତରେ ରେଭେନ୍ସା କଲେଜରେ ମୁଁ ଶେଷବର୍ଷର ଛାତ୍ର ଥିଲାବେଳେ ତାଙ୍କର ନାଥଧର୍ମ ସଂପର୍କିତ ଗବେଷଣା ସନ୍ଦର୍ଭକୁ ସଂପୂର୍ଣ୍ଣ ଉତ୍ତାରିଥିଲି ଓ ଆନୁଷଙ୍ଗିକ ସଂଶୋଧନ କରିଥିଲି । ଅପରପକ୍ଷରେ ପ୍ରଫେସର ଭୁବନେଶ୍ୱର ବେହେରାଙ୍କୁ ମୁଁ ସେତେବେଳେ ଜାଣି ନ ଥାଏ । ତାଙ୍କ ଗଳ୍ପ, ରମ୍ୟରଚନା ଇତ୍ୟାଦି ପଢୁଥାଏ । ସେ ସେହି ସଭାରୁ ଫେରିଯାଇ ମୋ ପାଖକୁ ଗୋଟିଏ ଚିଠି ପଠାଇଲେ ଓ ସେଥିରେ ଲେଖାଥିଲା ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଯୋଗ ଦେଇ 'Cultural Studies of Western Orissa' ବିଭାଗର ଦାୟିତ୍ୱ ନେବାପାଇଁ । ମୁଁ ଯାଇ ନ ଥିଲି । ତାଙ୍କ ପ୍ରତି ମୋର ଅନ୍ତର ଭିତରେ ଭକ୍ତି ଓ ଶ୍ରଦ୍ଧା ପୂରିଉଠିଲା ।

ହଁ, ମୂଳକଥାକୁ ମୁଁ ଏଥର ଆସୁଛି । କୁଳପତି ପ୍ରଫେସର ବିଦ୍ୟାଧର ମିଶ୍ର ଇଣ୍ଟରଭ୍ୟୁ ବୋର୍ଡ଼ର ଚେୟାରମାନ । ତାଙ୍କ ପାଖକୁ କେହି ଜଣେ ବେନାମୀ ଚିଠି ଦେଇଥାଏ ଯେ ବଂଶୀବାବୁଙ୍କର ଜାମାତା ଜଣେ ପ୍ରାର୍ଥୀ ହୋଇଥିବାରୁ ସେ କିପରି ବୋର୍ଡ଼ରେ

ବସିବେ ? କୁଳପତି ମହୋଦୟ ବଂଶୀବାବୁଙ୍କୁ ଏକଥା କହିବାରୁ ସେ କହିଲେ ତାଙ୍କ ଜାମାତା ଯେତେବେଳେ ଇଣ୍ଟରଭ୍ୟୁ ଦେବାକୁ ଆସିବେ ସେ ବାହାରକୁ ଚାଲିଯିବେ । ଏଥିରେ କୁଳପତି ରାଜି ହେଲେ ନାହିଁ । ତେଣୁ ବଂଶୀବାବୁ ବାହାରକୁ ଆସିଲେ । ପ୍ରାର୍ଥୀମାନେ ତାଙ୍କୁ ଘେରିଯାଇ ପ୍ରଣାମ କଲେ । ମୁଁ ଦୂରରେ ଛିଡ଼ା ହୋଇଥାଏ । ସେ ମୋ ପାଖକୁ ଆସିବାରୁ ମୁଁ ତାଙ୍କୁ ପ୍ରଣାମ କଲି । ସେ କହିଲେ– 'କୁଆଡ଼େ ଆସିଛୁ, ଯା' ତୋର ହେବ ନାହିଁ । ତମର ତ ସରକାରୀ କଲେଜରେ ସମାନ ଦରମା ହୋଇଗଲାଣି, ଏଠିକି ଆସିବାରେ ଲାଭ କ'ଣ ?' ମୁଁ କହିଲି– 'ଜଗନ୍ନାଥଙ୍କ ଦେଉଳ ଦୁଆର ଖୋଲା ହେବ, ମୁଁ ଦିଅଁ ଦର୍ଶନ କରି ଚାଲିଯିବି । ଏତେ କଷ୍ଟ କରି ଆସିଛି ଯେତେବେଳେ ମୁଁ ଫେରିଯିବି କାହିଁକି ?'

ଇଣ୍ଟରଭ୍ୟୁ ଆରମ୍ଭ ହେଲା । ସେ ପର୍ଯ୍ୟନ୍ତ ମୁଁ ଜାଣି ନ ଥାଏ କେଉଁମାନେ ବିଷୟ-ବିଶାରଦ ହୋଇ ଆସିଛନ୍ତି । ମୋ ପାଳି ପଡ଼ିଲାବେଳକୁ ଦ୍ୱିପ୍ରହର ହୋଇଗଲାଣି । ମୋ ନାଁ ଡକା ହେଲା ପରେ ମୁଁ ଭିତରକୁ ଗଲି ଓ ମୋ ଲେଖାମାନଙ୍କର କଟ୍‌ପିସ୍‌ଗୁଡ଼ିକୁ ଏକତ୍ର ବାନ୍ଧି ଟେବୁଲ ଉପରେ ଥୋଇଦେଲି । ତତ୍‌ସହିତ ମୋର କେତେକ ବହି ମଧ୍ୟ ରଖିଲି । ପ୍ରଥମେ ମୋତେ ରେଭେନ୍ସା କଲେଜର ପ୍ରଫେସର ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ମୋ ଲେଖାରୁ ପ୍ରଥମ ଲେଖା 'ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁଚେତନା'କୁ ନେଇ ସେଇଥିରୁ କେତୋଟି ପ୍ରଶ୍ନ ପଚାରିଲେ ଓ ମୁଁ ଉତ୍ତର ଦେଲି । ସେ କହିଲେ– 'ବୈଷ୍ଣବ ମୋର ଛାତ୍ର ଥିଲେ ଓ ଏବେ ସେ ମୋର ସହକର୍ମୀ । ଏମ୍.ଏ. ଶ୍ରେଣୀରେ ତାଙ୍କୁ ଯେଉଁ ବିଷୟ ଦିଆଯାଏ ସେ ପଢ଼ାନ୍ତି । ମୁଁ ତାଙ୍କୁ ଆଉ ପଚାରିବି ନାହିଁ । ଅନ୍ୟମାନେ ପଚାରନ୍ତୁ ।' ଏହା ପରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନ ସେହି ଲେଖା ଉପରେ ମୋତେ ନାନା ପ୍ରଶ୍ନ ପଚାରିଲେ । ସେ ତ ମହାନ୍ ଜ୍ଞାନୀ । ମୁଁ ତାଙ୍କର ନାଁ ଶୁଣିଥିଲେ ମଧ୍ୟ ଦେଖି ନ ଥିଲି । ତାଙ୍କର ବିବିଧ ଗ୍ରନ୍ଥ ମଧ୍ୟ ମୁଁ ପଢ଼ିଥିଲି । ପ୍ରାୟ ଦୀର୍ଘ ଚାଳିଶ/ପଚାଶ ମିନିଟ ସେ ମୋତେ ନାନା ପ୍ରଶ୍ନ କଲେ । ତା'ପରେ ମୁଁ ଫେରିଆସିଲି କଟକ । ଇଣ୍ଟରଭ୍ୟୁରେ ମୁଁ ପ୍ରଥମ ହେଲି । ମାତ୍ର ମୋ ପାଖକୁ ନିଯୁକ୍ତି ପତ୍ର ଆସିଲା ନାହିଁ । ବିଭାଗୀୟ ମୁଖ୍ୟ ବଂଶୀଧରବାବୁ କୁଳପତି ମହୋଦୟଙ୍କ ପାଖକୁ ଚିଠି ଲେଖିଥିଲେ ସେହି ଇଣ୍ଟରଭ୍ୟୁକୁ ରଦ୍ଦ କରାଯାଉ, କାରଣ ତାଙ୍କ ବିଭାଗରେ ଅଧ୍ୟାପକ ଆଉ ଦରକାର ନାହିଁ । ଏହା ସମ୍ଭବ ହେଲା ନାହିଁ । ତେଣୁ ସେ ପୁନର୍ବାର ଚିଠି ଲେଖିଲେ ସେହି ଇଣ୍ଟରଭ୍ୟୁ ତାଲିକାର ପ୍ରଥମ ଓ ଦ୍ୱିତୀୟ ହୋଇଥିବା ଦୁଇଜଣଙ୍କୁ ନିଯୁକ୍ତି ଦେବାପାଇଁ । ସେ କୁଳପତି, ସିଣ୍ଡିକେଟର ସଦସ୍ୟବୃନ୍ଦ ଓ ସେକ୍ସନ ଅଫିସରଙ୍କୁ ଭେଟି ଏକଥା କହିଲେ । ଫଳରେ ଦୁଇଟି ଅଧ୍ୟାପକ ପଦ ପାଇଁ ସିଣ୍ଡିକେଟ ସୁପାରିଶ କଲେ । ମାତ୍ର ବିଶ୍ୱବିଦ୍ୟାଳୟ ଅନୁଦାନ

ଆୟୋଗର ଚେୟାରମ୍ୟାନ ଦ୍ୱିତୀୟ ଅଧ୍ୟାପକ ପଦ ପୂରଣ ପାଇଁ ମନା କରିଦେବାରୁ ବାଧ୍ୟ ହୋଇ ମୋତେ ନିଯୁକ୍ତିପତ୍ର ଦିଆଗଲା ଓ ମୁଁ ଦେଢ଼ମାସ ପରେ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲି ।

ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ମୁଖ୍ୟ ଥାଆନ୍ତି ଡକ୍ଟର ବଂଶୀଧର ମହାନ୍ତି । ସିଏ ତ ସହଜରେ ମୋ ବିରୋଧୀ । ସେ ଘୋଷଣା କରିଦେଲେ ଯେ ମୋତେ ସିଏ ପିଏଚ.ଡି. କରେଇ ଦେବେ ନାହିଁ ଓ ରିଡର ମଧ୍ୟ କରାଇ ଦେବେ ନାହିଁ । ମୋର ରିଡର ଇଣ୍ଟରଭ୍ୟୁ ବେଳକୁ ସେ ଥାଆନ୍ତି ବିଭାଗୀୟ ମୁଖ୍ୟ । ମୁଁ ଇଣ୍ଟରଭ୍ୟୁ ଦେବାକୁ ଗଲି । କୁଳପତି ଥାଆନ୍ତି ପ୍ରଫେସର ମନ୍ମଥନାଥ ଦାସ । ସେ ମୋତେ ପୂର୍ବରୁ ଜାଣିଥାଆନ୍ତି । ମୋର କ୍ଷୁଦ୍ରଗଳ୍ପ ସଂପର୍କିତ ଓ ଅନ୍ୟାନ୍ୟ ବହି ଦେଖି ମୋତେ କହିଲେ– 'ତୁମେ ପିଏଚ.ଡି. କରୁ ନାହଁ କାହିଁକି ?' ମୁଁ କହିଲି– 'କାରଣ, ଏଇ ଘରେ ଅଛି, ପରେ କହିବି ।' ଏଇ ସମୟରେ ପ୍ରଫେସର କାହ୍ନୁଚରଣ ମିଶ୍ର ମୋତେ ଅନନ୍ତ ପଟ୍ଟନାୟକଙ୍କର ଗୋଟିଏ କବିତାର କେଇପଦ 'ଯୁଗର ବକ୍ଷରେ ଅକାଳର ବସନ୍ତର ତିତିକ୍ଷା/ ମୁଁ ପୁରୁ' ବୁଝାଇବାକୁ କହିଲେ । ମୁଁ ତାଙ୍କୁ ଉତ୍ତର ଦେଉଥିଲାବେଳେ ଡକ୍ଟର ବଂଶୀଧର ମହାନ୍ତି କହିଲେ– 'ଉଁଃ, ପଣ୍ଡିତଟା, କହୁଛି କ'ଣ ନା ଯଯାତି/ପୁରୁ, ଏଇଟା ଆଲେକଜାଣ୍ଡାର/ପୁରୁ ।' ମୁଁ କହିଲି 'ଆପଣ ଆଧୁନିକ କବିତା କ'ଣ ଜାଣନ୍ତି ନାହିଁ । ମିଥ୍ କ'ଣ ଜାଣନ୍ତି ନାହିଁ । ଆପଣ ଏଥିରେ ମୁଣ୍ଡ ପୂରାନ୍ତୁ ନାହିଁ ।' ମୋର ରାଗିବା ଦେଖି କୁଳପତି ମହୋଦୟ ମୋତେ ନୀରବ ହେବାକୁ କହିଲେ । ଦୁଇଜଣଙ୍କ ନାମ ପାନେଲରେ ରହିଲା । ପ୍ରଫେସର କାହ୍ନୁଚରଣ ମିଶ୍ର ମୋତେ ଆସି କହିଲେ– 'ବୈଷ୍ଣବ, ତୋର ଇଣ୍ଟରଭ୍ୟୁ ଭାରି ଭଲ ହେଲା । କୁଳପତି ଭାରି ଖୁସି । ବଂଶୀବାବୁ କୁଳପତିଙ୍କ ଗୋଡ଼ ଧରିଲା । ତେଣୁ ତୁ ମନ ଦୁଃଖ କରନା । ଅନ୍ୟ ଯେଉଁ ଇଣ୍ଟରଭ୍ୟୁ ହେବ ସେଥିରେ ତୁ ପାଇବୁ ।' ମୁଁ ମଧ୍ୟ ଖୁସି ହେଲି ।

ବଂଶୀବାବୁ ଅବସର ନେଇଗଲେ । ପ୍ରଫେସର କୃଷ୍ଣଚରଣ ସାହୁ ହେଲେ ବିଭାଗୀୟ ମୁଖ୍ୟ । ଜ୍ଞାନୋଦୀପ୍ତ ମଣିଷଟିଏ । କୌଣସି ଅହଙ୍କାର ତାଙ୍କୁ ସ୍ପର୍ଶ କରି ନ ଥିଲା । ଭାରି ସ୍ନେହୀ । ମୋତେ ଖୁବ୍ ଶ୍ରଦ୍ଧା କରନ୍ତି । ତାଙ୍କ ପାଖରେ ପିଏଚ.ଡି. କରିବାକୁ କହନ୍ତି । ସେହି ସମୟରେ ପୁନର୍ବାର ରିଡର ଇଣ୍ଟରଭ୍ୟୁ ହେଲା । ମୋର ତ ପିଏଚ.ଡି. ନାହିଁ । ମୋ ନାଁ ପୂର୍ବ ଇଣ୍ଟରଭ୍ୟୁ ତାଲିକାରେ ଥିଲା । ତାହାକୁ ଯେ ବଂଶୀବାବୁ କାଟି ଦେଇ ଦସ୍ତଖତ କରି ଦେଇ ଆସିଥିଲେ ସେ ସଂପର୍କରେ ମୁଁ ଜାଣି ନ ଥିଲି । ଦ୍ୱିତୀୟ ଇଣ୍ଟରଭ୍ୟୁ ହେଲା । ମୋର ପ୍ରତିଯୋଗୀ, ଡକ୍ଟର ଆଶୁତୋଷ ପଟ୍ଟନାୟକ, ଯିଏ ପୂର୍ବରୁ ନିଯୁକ୍ତି ଲାଭ କରିସାରିଥିଲେ ତାଙ୍କୁ ମୁଁ ବ୍ୟକ୍ତିଗତ ଭାବରେ ଅନୁରୋଧ କଲି ଦ୍ୱିତୀୟ

ଇଣ୍ଟରଭ୍ୟୁ ଦେବା ପାଇଁ । ମୁଁ ଚାହିଁଥିଲି ଏହି ଇଣ୍ଟରଭ୍ୟୁରେ ସେ ମହାଶୟ ପାଇଗଲେ ମୁଁ ପୂର୍ବ ତାଲିକା ଅନୁସାରେ ପାଇଯିବି । ଏଥିପାଇଁ ମୋର ପ୍ରତିଯୋଗୀ, ଯାହାଙ୍କୁ ମୁଁ ବଡ଼ଭାଇ ପରି ମନେକରେ ଓ ମୋର ଅନ୍ତରର ଶ୍ରଦ୍ଧା ଅର୍ପଣ କରେ, ତାଙ୍କୁ ଅନୁରୋଧ କରନ୍ତେ ସେ ମୋତେ କହିଲେ ଯେ ତାଙ୍କୁ ଆଧୁନିକ ସାହିତ୍ୟ ବା ଅନ୍ୟ କୌଣସି ଭାଷାତାତ୍ତ୍ୱିକ ପ୍ରଶ୍ନ କଲେ ସେ କହିପାରିବେ ନାହିଁ । ତେଣୁ ମୁଁ ପ୍ରଫେସର କୃଷ୍ଣଚନ୍ଦ୍ର ସାହୁ ଓ ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀଙ୍କୁ ଅନୁରୋଧ କଲି ତାଙ୍କୁ କେବଳ ବୈଷ୍ଣବ ସାହିତ୍ୟ ଉପରେ ପ୍ରଶ୍ନ କରିବା ପାଇଁ ଓ ତାଙ୍କୁ ପ୍ରଥମ କରିବା ପାଇଁ । ସେମାନେ ମୋତେ ପ୍ରଶ୍ନ କରିଥିଲେ- ଏଥିରେ ମୋର ସ୍ୱାର୍ଥ କ'ଣ ? ମୁଁ ସେତେବେଳେ କହିଥିଲି ଯେ ପ୍ରଥମ ଇଣ୍ଟରଭ୍ୟୁ ତାଲିକାରେ ମୋ ନାଁ ଅଛି ଓ ସେହି ପୋଷ୍ଟ ମୁଁ ପାଇଯିବି । ଇଣ୍ଟରଭ୍ୟୁରେ ସେ ମହାଶୟ ପ୍ରଥମ ହେଲେ ଓ ମୁଁ ଦ୍ୱିତୀୟ ହେଲି । ମାତ୍ର ପରେ ମୁଁ ଜାଣିଲି ଅଫିସରୁ ଯେ ପୂର୍ବ ତାଲିକାରେ ମୋ ନାମ କଟା ହୋଇଯାଇଛି । ମୁଁ ତେଣୁ କୁଳପତିଙ୍କ ନିକଟରେ ଗୋଟିଏ ଦରଖାସ୍ତ ଦେଲି । ଫଳରେ ନିଯୁକ୍ତି ବନ୍ଦ ରହିଲା । ଗ୍ରୀଷ୍ମାବକାଶରେ ଓଡ଼ିଆ ବିଭାଗକୁ ଗୋଟିଏ ଚିଠି ଆସିଲା ଯେ ଯେଉଁ ଯେଉଁ ବିଭାଗରେ ପି.ପି. ପ୍ରମୋଶନ ପାଇଁ ପୋଷ୍ଟ ଖାଲି ଅଛି ସେହି ସେହି ବିଭାଗର ଇଣ୍ଟରଭ୍ୟୁ ଜୁନ ମାସ ୩୦ ତାରିଖ ପୂର୍ବରୁ ହେବ ଓ ସେମାନଙ୍କୁ ସେହି ତାରିଖ ପୂର୍ବରୁ ନିଯୁକ୍ତି ଦିଆଯିବ । ଏକଥା ମୁଁ ଜାଣିନଥିଲି । କାରଣ ଗ୍ରୀଷ୍ମାବକାଶ ଉପଲକ୍ଷେ ମୁଁ କଟକରେ ଥିଲି । ମୋତେ ଇଂରାଜୀ ବିଭାଗର କେଦାରନାଥ ମହାନ୍ତି ଏହି ସମ୍ବାଦ ଦେଲେ । ମୁଁ ପରଦିନ ଅଫିସକୁ ଆସି ସେହି ଚିଠି ଖୋଜିଲି; ମାତ୍ର ପାଇଲି ନାହିଁ । ବିଭାଗର ପ୍ରତିପକ୍ଷ ଅଧ୍ୟାପକ ତାହାକୁ ନେଇଯାଇଛନ୍ତି । ମନ ଦୁଃଖରେ ମୁଁ କୁଳସଚିବଙ୍କୁ ସାକ୍ଷାତ୍ କଲି । ସେ ମୋତେ କହିଲେ ଯେ ମୋ ଦରଖାସ୍ତ ସେ ପାଇଛନ୍ତି ଓ ଜୁନ ୨୪ ତାରିଖରେ ଇଣ୍ଟରଭ୍ୟୁ ହେବ ବୋଲି ସେ ମୋତେ କହିଲେ । ମୋର ମନେପଡ଼ିଲା ପୂର୍ବରୁ ମୁଁ ଗୋଟିଏ ଦରଖାସ୍ତ ପଠାଇ ଦେଇଥିଲି । ତାହାକୁ ରେଜିଷ୍ଟ୍ରାର ଗ୍ରହଣ କରି ନେଇଛନ୍ତି । ଇଣ୍ଟରଭ୍ୟୁ ଦେଲି ଓ ମୁଁ ଜୁନ ୩୦ ତାରିଖ ସୁଦ୍ଧା ଜଏନ କରିବାକୁ କୁଳପତିଙ୍କଠାରୁ ନିର୍ଦ୍ଦେଶନାମା ପାଇଲି । ମୁଁ ମୋର ନିଯୁକ୍ତିପତ୍ର ବିଭାଗୀୟ ମୁଖ୍ୟ ପ୍ରଫେସର କୃଷ୍ଣଚନ୍ଦ୍ର ସାହୁଙ୍କୁ ଦେଲି । ସେ କହିଲେ- 'କାହିଁକି ଜଏନିଂ ଚିଠି ଦେଉଛ ? ଏ ପର୍ଯ୍ୟନ୍ତ ତ ଆଶୁବାବୁ ଇସ୍ତଫା ଦେଇ ନାହାନ୍ତି । ଆଉ ପୋଷ୍ଟ କାହିଁ ଯେ ତୁମେ ଜଏନ କରିବ ?' ମୋର ମନ ଦୁଃଖ ହେଲା । ମାତ୍ର ଇଂରାଜୀ ବିଭାଗର ପ୍ରଫେସର ଯତୀନ୍ଦ୍ରନାଥ ମହାନ୍ତି ସେହି ସମୟରେ ପହଞ୍ଚି କହିଲେ- 'କୃଷ୍ଣ ! ତମେ ବିଭାଗର ମୁଖ୍ୟ । ତମର କାମ ହେଲା ବୈଷ୍ଣବବାବୁଙ୍କ ଜଏନିଂ ରିପୋର୍ଟକୁ କୁଳପତିଙ୍କ ପାଖକୁ ପଠାଇଦେବା । ତେଣିକି ସେ ଯାହା ବିଚାର କରିବେ ।' ଏହା

ପରେ କୃଷ୍ଣବାବୁ ଅଫିସକୁ ମୋ ଜଏନିଂ ରିପୋର୍ଟ ପଠାଇଦେଲେ । ସେ ଓ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ମଧ୍ୟ ଆଶୁବାବୁଙ୍କୁ ମୋ ପାଇଁ ଅନୁରୋଧ କଲେ ପି.ପି. ପୋଷ୍ଟରୁ ଇସ୍ତଫା ଦେଇ ଜେନେରାଲ ପୋଷ୍ଟରେ ଜଏନ କରିବା ପାଇଁ । ମାତ୍ର ସେ ବଂଶୀବାବୁଙ୍କୁ ଧରି ସେକ୍ସନ ଅଫିସର ଜରିଆରେ ଜୁଲାଇ ୭ ତାରିଖରେ ଜଏନ କରିବେ ବୋଲି ଚିଠି କରାଇ ଆଣିଲେ । ଏହାର ଉଦ୍ଦେଶ୍ୟ ହେଲା ଜୁନ ୩୦ ତାରିଖ ପରେ ପି.ପି. ପୋଷ୍ଟ ଉଠିଯିବ । ମୁଁ ଆଉ ଜଏନ୍ କରିପାରିବି ନାହିଁ ।

ଜୁଲାଇ ପହିଲା ଦିନ ଭୁବନେଶ୍ୱର ସୂଚନା ଭବନରେ ଗୋଟିଏ ସଭା ଥାଏ । ମୁଁ ସେଠି ମୁଖ୍ୟ ବକ୍ତା । ମନ ଦୁଃଖରେ ମୁଁ ସେ ସଭାକୁ ଯାଇଥାଏ । ସଭା ସରିଲା ପରେ ମୁଁ ଯେତେବେଳେ ବାହାରକୁ ଆସିଲି ମୋତେ ସ୍ୱର୍ଗତ ଚିନ୍ତାମଣି ବେହେରା ଓ ପ୍ରଫେସର ଖଗେଶ୍ୱର ମହାପାତ୍ର ମୁଁ ରିଡର ହେଲି ବୋଲି ଅଭିନନ୍ଦନ ଜଣାଇଲେ । ମୁଁ ସେମାନଙ୍କୁ ଯେତେବେଳେ ସମସ୍ତ ଘଟଣା କହିଲି ସେମାନେ ମନ ଦୁଃଖ କଲେ । ଆଜି ଅନେକ ବର୍ଷ ପରେ ସେଦିନର ସେମାନଙ୍କ ଶ୍ରଦ୍ଧା ଓ ସହାନୁଭୂତିକୁ ମୁଁ ଭୁଲିପାରି ନାହିଁ । ମନ ଦୁଃଖରେ ମୁଁ ବାଣୀବିହାରକୁ ଆସିଲି । ଅଫିସ ପାଖରେ ସିଣ୍ଡିକେଟ ସଭ୍ୟ ଏଡ଼ଭୋକେଟ ବ୍ରଜସୁନ୍ଦର ଦାସଙ୍କୁ ଭେଟିଲି । ସେ ମୋତେ ଅଭିନନ୍ଦନ ଜଣାଇଲେ ଓ ସିଣ୍ଡିକେଟରେ କିପରି ନିଷ୍ପତ୍ତି ନିଆଯାଇଥିଲା ସେ କଥା କହିଲେ । ମାତ୍ର ମୁଁ ତାଙ୍କୁ କହିଲି– 'ଆପଣ ମୋ ପାଇଁ ବହୁତ କଲେ ମାତ୍ର ପୋଷ୍ଟ ଖାଲି ନ ଥିବାରୁ ମୁଁ ଜଏନିଂ ରିପୋର୍ଟ ଦେଇଥିଲେ ମଧ୍ୟ ତା'ର ମୂଲ୍ୟ ରହିଲା ନାହିଁ ।' ସେ ସବୁକଥା ଶୁଣି ରାଗିଗଲେ ଓ ମୋତେ କହିଲେ ଆସନ୍ତାକାଲି ଦଶଟା ବେଳେ କୁଳପତିଙ୍କ ଅଫିସ ପାଖରେ ତାଙ୍କୁ ଭେଟିବା ପାଇଁ । ସେଦିନ ମୁଁ ଆସି ପହଞ୍ଚିଲା ବେଳକୁ ବ୍ରଜବାବୁ କୁଳପତିଙ୍କ ଅଫିସରେ ପାଟିତୁଣ୍ଡ କରୁଥିବା ଶୁଣିଲି । କୁଳପତି ମହୋଦୟ ସବୁ କଥା ଶୁଣି ଫାଇଲ ମଗାଇଲେ । ସେଥିରେ ସିଣ୍ଡିକେଟ ଯେଉଁ ଆଦେଶନାମା ଦେଇଥିଲେ ତାକୁ ସେକ୍ସନ ଅଫିସର ବଦଳାଇ ରେଜିଷ୍ଟ୍ରାରଙ୍କ ପାଖରୁ ଦସ୍ତଖତ କରାଇ ଜୁଲାଇ ୭ ତାରିଖରେ ଜଏନ କରିବାକୁ ଆଶୁବାବୁଙ୍କୁ ଚିଠି ଦେଇଥାନ୍ତି । କୁଳପତି ମହୋଦୟ ସ୍ୱତନ୍ତ୍ର ଆଦେଶନାମା ଜାରି କଲେ ଓ ତାହା ଫଳରେ ମୋର ଜଏନିଂ ରିପୋର୍ଟ କାର୍ଯ୍ୟକାରୀ ହେଲା ।

ବାଣୀବିହାରରେ ଦୀର୍ଘ ଅଠର ବର୍ଷ ମୁଁ ଅଧ୍ୟାପନା କଲି । ଛାତ୍ରଛାତ୍ରୀଙ୍କ ଉପରେ ଥାଏ ମୋର ଗଭୀର ପ୍ରଭାବ । ମୋର କ୍ଲାସ ନେବା ସହିତ ଯେତେବେଳେ କୌଣସି ଅଧ୍ୟାପକ ନ ଥାନ୍ତି ସେତେବେଳେ ମୁଁ ମଧ୍ୟ କ୍ଲାସ ନେଇଯାଏ । କେତେ ଗରିବ ଛାତ୍ରଙ୍କୁ ମଧ୍ୟ ମୁଁ ସାହାଯ୍ୟ କଲି । ସଦାନନ୍ଦ ନାୟକ ନାମରେ ଜଣେ ଦରିଦ୍ର ହରିଜନ ପିଲା ପଢୁଥାଏ । ତାଙ୍କ ଘର ବାଙ୍କୀ । ସେ ଦିନେ ମୋତେ ତାଙ୍କର ଦାରିଦ୍ର୍ୟ ଓ ଅସହାୟ

ଅବସ୍ଥା କଥା କହିଲେ । ମୋ ରୁମରେ ରହି ପଢ଼ାପଢ଼ି କରିବାକୁ କହିବାରୁ ମୁଁ ତାକୁ ଅନୁମତି ଦେଇଦେଲି । ଗୋଟିଏ ଷ୍ଟୋଭ ରଖି ସେ ଗଣ୍ଡାଏ କ'ଣ ଫୁଟେଇ ଖାଇଦିଏ । ଭଲ ପଢ଼େ । ବ୍ୟବହାର ଉତ୍ତମ । ସେହି ସମୟରେ ସେ ଏକାଙ୍କିକା ଲେଖି କଟକ ରେଡ଼ିଓ ଷ୍ଟେସନରେ ଅଭିନୟ କରାଏ । କିଛି କିଛି ଅର୍ଥ ମଧ୍ୟ ପାଏ । ତା'ର ଆର୍ଥିକ ଦୁରବସ୍ଥା ପାଇଁ ଅନୁଶୋଚନା ନ ଥାଏ । ସେ ମୋ ରୁମରେ ରହୁଥିବାରୁ ବିଭାଗର କେତେଜଣ ଅଧ୍ୟାପକ ମୋ ରୁମକୁ ଆସି ତାକୁ ବାହାର କରିଦେବାକୁ କହିଲେ । ବିଭାଗରେ ଯଦି ଚୋରିଚପଟ ହୁଏ ଦାୟୀ କିଏ ହେବ ବୋଲି ପଚାରିଲେ । ମୁଁ ସେମାନଙ୍କୁ ଉତ୍ତର ଦେଲି 'ମୁଁ' ଦାୟୀ ହେବି । ସେମାନେ ଚାଲିଗଲେ ଓ ସଦାନନ୍ଦ ମୋ ରୁମରେ ରହି ଏମ୍.ଏ. ପରୀକ୍ଷା ଦେଲା । ପ୍ରଥମ ଶ୍ରେଣୀ ପାଇଲା ଓ ସେଇଠି ମଧ୍ୟ ରହି ଏମ୍.ଫିଲ୍. କଲା । ସେ ମଧ୍ୟ ଜି.ଆର୍.ଏଫ୍. ପାଇଲା ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭାଷା ବିଭାଗର ପ୍ରଫେସର ଗଗନେନ୍ଦ୍ରନାଥ ଦାଶଙ୍କ ଅଧୀନରେ ଗବେଷଣା କଲା । ସେତେବେଳେ ଶ୍ରୀଯୁକ୍ତ ଚୈତନ୍ୟ ମାଝି ଥାଆନ୍ତି ଶିକ୍ଷାମନ୍ତ୍ରୀ । ତାଙ୍କ ସହିତ ମୁଁ ଅନେକ ସଭାକୁ ଯାଇଛି । ଅତ୍ୟନ୍ତ ସରଳ ଓ ନିଷ୍ପାପର ବ୍ୟକ୍ତି । ମୋ ପ୍ରତି ତାଙ୍କର ସମ୍ମାନବୋଧ ବଢ଼ିଯାଇଥାଏ । ତାଙ୍କର କନ୍ୟା 'ଲିପି' । ସେ ଏମ୍.ଫିଲ୍. କରୁଥାନ୍ତି । ଅତି ସରଳ ଓ ଅମାୟିକ ଝିଅ । ସେତେବେଳେ ତା'ର ବିଭାଘର ହେଲା ସେ ଭଲ ପାଉଥିବା ଜଣେ ସବର୍ଣ୍ଣ ଯୁବକ ସହିତ । ଘର ବାରିପଦା । ଆଦିବାସୀ ସମାଜର ପରଂପରା ଓ ସଂସ୍କୃତି ଦୃଷ୍ଟିରୁ ବାପା ଚୈତନ୍ୟବାବୁ ଏହି ବିଭାଘରକୁ ବିରୋଧ କଲେ । ଲିପି ଏକଥା ସେକାଳର ମୁଖ୍ୟମନ୍ତ୍ରୀ ଓଡ଼ିଶାର ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କୁ କହିଲା । ବିଜୁବାବୁ ଚୈତନ୍ୟବାବୁଙ୍କୁ ଡକାଇ ଲିପିର ମନୋନୀତ ଯୁବକ ସହିତ ବିବାହ କରିଦେବାକୁ କହିଲେ ମାତ୍ର ସେ ରାଜି ନ ହେବାରୁ ବିଜୁବାବୁ ଲିପିକୁ ଝିଅ କରି ବିବାହ କରିଦେଲେ । ଲିପିର ଏମ୍.ଫିଲ୍. ଓ ପୁସ୍ତକ ରଚନା କ୍ଷେତ୍ରରେ ସଦାନନ୍ଦ ସାହାଯ୍ୟ କଲା । ସେ ଚୈତନ୍ୟବାବୁଙ୍କ ଘରକୁ ଯିବାଆସିବା କରେ । ତାକୁ ସମସ୍ତେ ଭଲ ପାଇଲେ । ସେ ମଧ୍ୟ ଲିପିକୁ 'ଅପା' ଡାକେ । ଲିପି ତାକୁ ନିଜର ସାନଭାଇ ପରି ଦେଖେ । ମୁଁ ବାଣୀବିହାରରେ ଥିବା ସମୟରେ ଲିପି ଓଡ଼ିଆ ବିଭାଗରେ ଅଧ୍ୟାପିକା ହେଲା । ତାକୁ ମଧ୍ୟ ସମସ୍ତେ ଶ୍ରଦ୍ଧା କଲେ । ତା' ସ୍ୱାମୀ ଓ ସେ ବାଣୀବିହାରରେ କ୍ୱାର୍ଟର ପାଇ ରହିଲେ । ମୁଁ ତ ବିଶ୍ୱଭାରତୀକୁ ଚାଲିଗଲି । ଦିନେ ହଠାତ୍ ଶୁଣିଲି ଲିପି ମରିଗଲା । ଗଭୀର ଦୁଃଖ ଅନୁଭବ କଲି । ତାଙ୍କ ବସାକୁ ଯାଇ ତା' ଝିଅ ଓ ସ୍ୱାମୀଙ୍କୁ ସମବେଦନା ଜଣାଇଲି । ମୃତ୍ୟୁର ଦୁଇ ତିନି ମାସ ପୂର୍ବରୁ ମୋର ଗୋଟିଏ ନାତିର ବାହାଘର ପାଇଁ ସେ ଭଲ ଝିଅଟିଏ ଯୋଗାଡ଼ କରି ଦେଇଥିଲା । ସେ ମଧ୍ୟ ଝିଅଘରକୁ ଯାଇ ତା'ର ବାପା ଓ ମାଆଙ୍କ ସହିତ କଥାବାର୍ତ୍ତା କରି ବିଭାଘରର

ସମସ୍ତ ବ୍ୟବସ୍ଥା କରିଥିଲା । ବିବାହ ଦିନ ସେ ତାଙ୍କ ଘରକୁ ଯାଇ ବୁଝାଶୁଝା କରୁଥିଲା । ଏପରି ଏକ ସରଳ ନିଷ୍କପଟ ଗୁଣବତୀ ଝିଅଟିର ଅକାଳ ବିୟୋଗ ମୋତେ ଆଘାତ ଦେଲା । ମୋ ସ୍ତ୍ରୀ ତାକୁ ଏତେ ଶ୍ରଦ୍ଧା କରୁଥିଲା ଯେ ସେ ତା'ର ମୃତ୍ୟୁଖବର ପାଇ କାନ୍ଦି ପକାଇଲା ଓ କହିଲା– 'ଆହାଃ ! ଲିପିଟା କେତେ ଭଲ ପିଲା । ମୋ ଝିଅ ପରି ଲାଗେ । ଭଗବାନ୍ ତାକୁ ନେଇଗଲେ ।'

ଏଣେ ସଦାନନ୍ଦ ବଲାଙ୍ଗିର କଲେଜରେ ଅଧ୍ୟାପକ ହେଲା । ସେଠୁ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ନିଯୁକ୍ତି ପାଇଲା । ହରିଜନ ପିଲାଟିଏ ହୋଇଥିବାରୁ ତା' ପ୍ରତି ବିଭାଗର ଲୋକେ ଦୁର୍ବ୍ୟବହାର କଲେ । ସେ ଏଥିରେ ବିଚଳିତ ହୋଇ ମୋ ପାଖକୁ ଆସି କାନ୍ଦି କାନ୍ଦି ଚାକିରି ଛାଡ଼ିଦେବାକୁ କହିଲା । ମୁଁ ତାକୁ ଧୈର୍ଯ୍ୟ ଧରିବାକୁ ଉପଦେଶ ଦେଲି । ପ୍ରଫେସର ବାଉରୀବନ୍ଧୁ କରଙ୍କୁ ତା' ସଂପର୍କରେ କହିଲି । ବାଉରୀବାବୁ ବିଦ୍ୱାନ୍ ଓ ସ୍ନେହୀ ମଧ୍ୟ । ସେ ସଦାନନ୍ଦର ପ୍ରତିଭାର ପରିଚୟ ପାଇ ତାକୁ ଆପଣାର କରିନେଲେ ଓ ତା' ପାଇଁ ସେ ହୋଇଗଲେ ରକ୍ଷାକବଚ ସଦୃଶ । ସଦାନନ୍ଦ 'ଓଡ଼ିଆ ଲିପିର ଉନ୍ମେଷ ଓ କ୍ରମବିକାଶ' ସଂପର୍କରେ ଗବେଷଣା କରି ପିଏଚ.ଡି. ଉପାଧି ପାଇଲା । ସେ କର୍ଣ୍ଣାଟକ ବିଶ୍ୱବିଦ୍ୟାଳୟରେ ଲିଙ୍ଗୁଇଷ୍ଟିକ ବିଭାଗରେ ନାମ ଲେଖାଇ କୃତିତ୍ୱର ସହିତ ଏମ.ଏ. (ଲିଙ୍ଗୁଇଷ୍ଟିକ୍)ରେ ପ୍ରଥମ ଶ୍ରେଣୀ ପାଇଲା । ଏହି ସମୟରେ ତା'ର ବାହାଘର ହେଲା ବସ୍ତା ନିକଟବର୍ତ୍ତୀ ଏକ ଗ୍ରାମରେ । ଝିଅଟିର ନାଁ ସ୍ୱର୍ଣ୍ଣ । ସେ ରସାୟନ ବିଜ୍ଞାନ ଏମ୍.ଏସ୍‌ସି.ରେ ପ୍ରଥମ ଶ୍ରେଣୀରେ ପାସ୍ କରିଥାଏ । ସଦାନନ୍ଦ ଆମ ଘରକୁ ଆସି ମୋତେ ଓ ମୋ ସ୍ତ୍ରୀକୁ କହିଲା ଆମେ ତା' ବାହାଘରକୁ ନ ଗଲେ ସେ ବିବାହ କରିବ ନାହିଁ । ମୋ ସ୍ତ୍ରୀ ପୂର୍ବରୁ ଛୁଆଁଅଛୁଆଁ ବାରୁଥିଲା । ମୁଁ ତ ପିଲାଦିନରୁ ମୋ ବାପାଙ୍କ ପ୍ରଭାବରେ ଜାତି ଭେଦକୁ ଭୁଲିଯାଇଥିଲି । ମୁଁ ହରିଜନମାନଙ୍କ ସହିତ ମିଶେ, ସେମାନଙ୍କ ସୁଖଦୁଃଖରେ ଭାଗୀଦାର ହୁଏ । ସବର୍ଣ୍ଣମାନେ ସେମାନଙ୍କ ବିରୋଧରେ କିଛି କଲେ ମୁଁ ତାହାର ବିରୋଧ କରେ । କ୍ରମେ ମୋ ସ୍ତ୍ରୀ ଛୁଆଁଅଛୁଆଁ ଭେଦ ଭୁଲିଗଲା । ଯେଉଁ ହରିଜନମାନେ ପରିଷ୍କାର ପରିଚ୍ଛନ୍ନ ସେମାନଙ୍କୁ ସେ ଆପଣାର କରେ । ସଦାନନ୍ଦ ତାକୁ 'ମାଆ' ବୋଲି ଡାକେ । ସେ ଆମ ଘରକୁ ଆସିଲେ ମୋ ସ୍ତ୍ରୀ ତାକୁ ବହୁତ ସ୍ନେହ ଦିଏ, କ'ଣ କିଛି ଖାଇବାକୁ ଦିଏ । ସଦାନନ୍ଦର ବାହାଘରକୁ ଆମେ ଦୁହେଁ ବସ୍ତା ଗଲୁ । ତା'ର ବାହାଘରରେ ଯୋଗ ଦେଇ ଖାଇପିଇ ଆସିଲୁ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସଦାନନ୍ଦ ଓ ତା' ସ୍ତ୍ରୀ ସ୍ୱର୍ଣ୍ଣ ଥିଲାବେଳେ ଆମେ ତାଙ୍କ କ୍ୱାର୍ଟରକୁ ଯାଇଛୁ, ରହିଛୁ । ସେମାନଙ୍କର ସ୍ନେହ ଶ୍ରଦ୍ଧା ଓ ଭକ୍ତିକୁ ଉପଲବ୍ଧି କରିଛୁ । ଏବେ ସଦାନନ୍ଦ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ଓ ସ୍ୱର୍ଣ୍ଣ ଭୁବନେଶ୍ୱରର କୃଷି ବିଶ୍ୱବିଦ୍ୟାଳୟରେ ରସାୟନ

ବିଭାଗର ଅଧ୍ୟାପିକା । ସଦାନନ୍ଦର ଗୋଟିଏ ଭଲ ଗୁଣ ତା' ବାପା ଓ ମାଆଙ୍କର ସେବା କରିବା, ତା' ବଡ଼ଭାଇର ଝିଅପୁଅଙ୍କୁ ସ୍ନେହ କରିବା, ସେମାନଙ୍କୁ ପାଠ ପଢ଼ାଇବା ଓ ସେମାନଙ୍କର ବିବାହରେ ନିଜେ ସମସ୍ତ ସାହାଯ୍ୟ କରିବା । ବଡ଼ଭାଇ କିପରି ଗାଁରେ ଭଲରେ ରୁହନ୍ତୁ– ଏଥିପାଇଁ ସେ ସମସ୍ତ ବ୍ୟବସ୍ଥା କରିଦେଇଛି । ସଦାନନ୍ଦ ମୋର ପୁଅ ପରି । ତା' ପ୍ରତି ମୋର ତଥା ମୋ ସ୍ତ୍ରୀର ସ୍ନେହ ଅତୁଟ ରହିଛି ।

ସେହି ବାଣୀବିହାରରେ ଥିଲାବେଳେ ଅନ୍ୟ ଜଣେ ଗରିବ ଛାତ୍ରଙ୍କ ସଂସ୍ପର୍ଶରେ ଆସିଲି । ତାଙ୍କ ନାମ ରାଧାଗୋବିନ୍ଦ କୋଇଲା । ଘର ରାଇବଣିଆ ନିକଟବର୍ତ୍ତୀ ଗୋଟିଏ ଗାଁ । ଜମିବାଡ଼ି ନାହିଁ । ଖଣ୍ଡେ ଚାଳଘର । ବାପା ମା' ବୁଢ଼ାବୁଢ଼ୀ । ସେ ବାଣୀବିହାରରେ ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ.ଏ. ପଢ଼ିଲା । ମେଧାବୀ ଛାତ୍ର । ଅକ୍ଷରଗୁଡ଼ିକ ଛାପା ଅକ୍ଷର ପରି । ସେ ନେଇଥାଏ ଆଧୁନିକ କବିତା ସ୍ୱତନ୍ତ୍ର ପତ୍ର ଭାବରେ । ସେତେବେଳେ ବାଣୀବିହାରରେ ଯିଏ ଧର୍ମ ବିଷୟରେ, ବିଶେଷତଃ ବୈଷ୍ଣବ ଧର୍ମ ବିଷୟରେ ସ୍ୱତନ୍ତ୍ର ପତ୍ର ନିଅନ୍ତି ସେମାନେ ପ୍ରଥମ ଶ୍ରେଣୀ ପାଆନ୍ତି ଓ ପ୍ରଥମ ହୁଅନ୍ତି । ଅନ୍ୟ ସ୍ୱତନ୍ତ୍ର ପତ୍ରଗୁଡ଼ିକର ଭାଗ୍ୟ ପଥର ତଳେ । ଆଧୁନିକ କବିତା ଯିଏ ନେଲା ସିଏ ଚାରିପାଞ୍ଚିରୁ ଗଲା । ତେଣୁ ଏହି ବିଷୟରେ ଖୁବ୍ କମ ପିଲା ପଢ଼ନ୍ତି । ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଏହି ବିଷୟ ପଢ଼ାନ୍ତି । ମୁଁ ଜଏନ୍ କଲା ପରେ ମଧ୍ୟ ଏହି ବିଷୟ ପଢ଼ାଇଲି । କୌଣସି କାରଣରୁ ନିତ୍ୟାନନ୍ଦବାବୁଙ୍କୁ ବିରୋଧ କରାଯାଉଥାଏ ମାତ୍ର ତାଙ୍କର ବ୍ୟକ୍ତିତ୍ୱ ଓ ବିଭାଗ ପ୍ରତି ଏତେ ଆନ୍ତରିକତା ଯେ ସେ କୌଣସି ପ୍ରସଙ୍ଗକୁ ଖାତିର କରନ୍ତି ନାହିଁ । ରାଧାବିନୋଦ ଆଧୁନିକ କବିତା ନେଇ ପଢ଼ିଲା । ସେ ଥରେ ମୋ କଟକ ଘରକୁ ଆସି କାନ୍ଦି କାନ୍ଦି ତା'ର ଦୁଃଖ କାହାଣୀ କହିଲା । ଟିଉସନ କରି ପାଠ ପଢୁଥାଏ । ଘରୁ ଆଣିଥିବା ଚାଉଳ ଭଜା ମୋତେ ଦେଲା । ମୁଁ ଓ ମୋ ସ୍ତ୍ରୀ ସେହି ଚାଉଳ ଭଜାକୁ ପାଟିରେ ପକାଇଲୁ । ମୋର ମନେ ହେଉଥାଏ ସତେ ଯେମିତି ସେ ଦରିଦ୍ର ସୁଦାମା ଓ ଶ୍ରୀକୃଷ୍ଣ ତା'ର ଚାଉଳ ଭଜାକୁ ପାଟିରେ ପକାଇ ଆନନ୍ଦ ପାଉଛନ୍ତି । ମୋର ତା' ପ୍ରତି ଶ୍ରଦ୍ଧା ବଢ଼ିଉଠିଲା ଓ ମୁଁ ତାକୁ ନାନା ଭାବରେ ସାହାଯ୍ୟ କଲି । ସେ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ହେଲା । ଯିଏ ପ୍ରଥମ ହେଲା ସିଏ ଧର୍ମଧାରାର ଛାତ୍ର । ସଂପୃକ୍ତ ଅଧ୍ୟାପକ ରାଧାବିନୋଦର ନମ୍ବର କମାଇ ଦେଇଥିବାରୁ ସେ ପ୍ରଥମ ହୋଇପାରିଲା ନାହିଁ । ବୋର୍ଡ଼ରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ସେହି ଖାତାର ପୁନର୍ମୂଲ୍ୟାୟନ ପାଇଁ ଅଡ଼ିବସିଲେ । ମୁଁ ମଧ୍ୟ ବିଭାଗୀୟ ମୁଖ୍ୟ ଭାବରେ ବୋର୍ଡ଼ରେ ଥାଏଁ । କୌଣସିମତେ ନିତ୍ୟାନନ୍ଦବାବୁଙ୍କୁ ବୁଝାଇ ପରୀକ୍ଷା ଫଳ ପାସ୍ କରାଇଦେଲି ।

ଦିନେ ରାଧାଗୋବିନ୍ଦ ଆମ ଘରକୁ ଆସିଥାଏ । ସନ୍ଧ୍ୟା ସମୟ । ଏହି ସମୟରେ ଶ୍ରୀଯୁକ୍ତ ଭୂପାଳ ମହାପାତ୍ର ଆମ ଘରେ ପହଞ୍ଚିଗଲେ । ସାଙ୍ଗରେ ତାଙ୍କ ପତ୍ନୀ, ପୁଅ, ବୋହୂ, ଝିଅ ଥାଆନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ସେ ପୁଣି ଆଣିଥାନ୍ତି ମିଠା ଓ ଫଳ । ମୁଁ ବ୍ୟସ୍ତ ହୋଇପଡ଼ିଲି । ତାଙ୍କ ସହିତ ମୋର ସଂପର୍କ ଥାଏ । ଅନେକ ସଭାକୁ ମୁଁ ତାଙ୍କ ସହିତ ଯାଇଥାଏ । ସେ ମୋତେ 'ସାର୍' ଡାକନ୍ତି । ବଡ଼ ସରଳ ଓ ଅମାୟିକ ଲୋକ । ପକେଟ ଭିତରେ ମାଳାଟିଏ ରଖି ଗଡ଼ାଉଥାନ୍ତି । ସେ କହିଲେ 'ସାର୍ ! ମୋର ଏଇ କାଳୀ ଝିଅଟି ଆପଣଙ୍କୁ ଲାଗିଲା । ତା'ର ବାହାଘର ହୋଇପାରୁ ନାହିଁ । ସେ ଏଥର ଘରୋଇ ଭାବରେ ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେବ । ତାକୁ ଟିକେ ସାହାଯ୍ୟ କଲେ ସେ ପାସ୍ କରିଯାଆନ୍ତା । କୌଣସି ସ୍କୁଲ ବା କଲେଜରେ ଚାକିରି କଲେ ତା'ର ବାହାଘର ହୋଇଯାଆନ୍ତା ।' ମୁଁ ତାଙ୍କୁ ଆଶ୍ୱାସନା ଦେଲି ଓ ଆସନ୍ତାକାଲିଠାରୁ ବାଣୀବିହାରକୁ ଆସି କ୍ଲାସରେ ବସିବାକୁ କହିଲି । ମୋ ପାଖରେ ରାଧାଗୋବିନ୍ଦ ଛିଡ଼ା ହୋଇଥାଏ । ତାକୁ ମୁଁ କହିଲି– 'କାଲିଠାରୁ ତୁ ଭୂପାଳବାବୁଙ୍କ ଘରକୁ ଯାଇ ତାଙ୍କ ଝିଅକୁ ପଢ଼ାଇଦେବୁ ।' ସେ ମେଧାବୀ ଛାତ୍ର । ସବୁ ବିଷୟ ପଢ଼ାଇପାରିବ ବୋଲି କହିଲି । ଭୂପାଳବାବୁ ଖୁସି ହୋଇଗଲେ । ରାଧାଗୋବିନ୍ଦ ତାଙ୍କ ଘରକୁ ନିୟମିତ ଯାଇ ସେଇ ଝିଅକୁ ପଢ଼ାଇଲା । ତାଙ୍କ ଘରେ ସମସ୍ତେ ରାଧାଗୋବିନ୍ଦକୁ ଶ୍ରଦ୍ଧା କଲେ । ମୁଁ ଭୂପାଳ ବାବୁଙ୍କୁ କହିଥାଏ ରାଧାଗୋବିନ୍ଦ ଅତ୍ୟନ୍ତ ଗରିବ ପିଲା । ତାଙ୍କ ଘର ରାଇବଣିଆ ନିକଟବର୍ତ୍ତୀ । ତାକୁ ଟିକେ ସାହାଯ୍ୟ କରିବେ ।

ଝିଅଟି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା । ଭୂପାଳବାବୁଙ୍କ ଘରେ ସମସ୍ତେ ଚିନ୍ତା କଲେ ରାଧାଗୋବିନ୍ଦ ସହିତ ଝିଅକୁ ବାହା ଦେଲେ କେମିତି ହୁଅନ୍ତା ! ସମସ୍ତେ ରାଜି ହୋଇଗଲେ । ଏ ଖବର ପାଇ ରାଧାଗୋବିନ୍ଦ ଦିନେ କାନ୍ଦି କାନ୍ଦି ଆସି ଆମ ଘରେ ମୋତେ କହିଲା– 'ସାର୍ ! ଆମର ଘର ନାହିଁ କି ଜମିବାଡ଼ି ନାହିଁ । ଆମେ ଭାରି ଗରିବ । ଭୂପାଳବାବୁ ତାଙ୍କ ଅଞ୍ଚଳରେ ବହୁ ସଂପତ୍ତିର ମାଲିକ । ସେ ପୁଣି ମନ୍ତ୍ରୀ । ଆପଣ ତାଙ୍କୁ ମନା କରନ୍ତୁ ।' ମୁଁ ତାକୁ ବୁଝାଇଲି । ଏଣେ ଭୂପାଳବାବୁ ଓ ତାଙ୍କ ପତ୍ନୀ ରାଧାଗୋବିନ୍ଦଙ୍କ ଗାଁରେ ଯାଇ ପହଞ୍ଚିଗଲେ । ଲୋକେ ଆଶ୍ଚର୍ଯ୍ୟ । ଗାଁକୁ ତ ଭଲ ରାସ୍ତା ନାହିଁ । ମନ୍ତ୍ରୀ କାହିଁକି ଆସିଲେ ? ଗାଁ ଲୋକେ ଜମା ହୋଇଗଲେ । ଦୁଃଖ ଜଣାଇଲେ । ସେ ତାଙ୍କ ପତ୍ନୀଙ୍କ ସହିତ ଆସିଲେ ରାଧାଗୋବିନ୍ଦ ଘରକୁ । ତାଙ୍କ ବାପାଙ୍କୁ ସେ କହିଲେ– ''ଆମେ ଆସିଛୁ ତୁମ ପୁଅ ସହିତ ଆମ ଝିଅର ବାହାଘର ପ୍ରସ୍ତାବ ନେଇ ।'' ଏ କଥା ଶୁଣି ରାଧାଗୋବିନ୍ଦଙ୍କ ବାପା ନିରୁତ୍ତର ରହିଗଲେ । ସେ ଖାଲି ଭାବୁଥାଆନ୍ତି– 'ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା ଯାହା ଭୂପାଳବାବୁଙ୍କ ଘରେ ବନ୍ଧୁ କରିବା ତାଙ୍କ ପକ୍ଷରେ

ସେଇଆ ।' ବିଭାଘର ପୂର୍ବରୁ ଭୂପାଳବାବୁ ସେହି ଗ୍ରାମକୁ ରାସ୍ତା କରାଇଲେ, ବିଜୁଳବତି ଯୋଗାଇ ଦେଲେ, ରାଧାଗୋବିନ୍ଦଙ୍କ ପାଇଁ ଘର କରିଦେଲେ, ଗାଧୁଆଘର ଓ ନଳକୂପ ବସାଇ ଦେଲେ । ତା'ପରେ ପୁଅଝିଅଙ୍କୁ ବିଭା କରାଇ ସେହି ଘରେ ଛାଡ଼ିଦେଲେ । ରାଧାଗୋବିନ୍ଦ ମଧ ସରକାରୀ କଲେଜରେ ଅଧାପକ ହେଲା । ପିଏଚ.ଡି କଲା । ଏବେ ସେ ମୋ ପାଖରେ ଡି.ଲିଟ୍. କରୁଛି । ସଂପ୍ରତି ରାଧାଗୋବିନ୍ଦ ବେଶ୍ ଆନନ୍ଦରେ ଅଛି । ତା' ସ୍ତ୍ରୀ ଘରେ ଶାଶୂ ଶ୍ୱଶୁରଙ୍କ ସେବା କରୁଛି । ଏହି ଘଟଣାରୁ ମୁଁ ଜାଣିଲି ଯାହାଙ୍କୁ ଭଗବାନ ସହାୟ ହୁଅନ୍ତି ତାଙ୍କର କିଛି ଅସୁବିଧା ହୁଏ ନାହିଁ । ରାଧାଗୋବିନ୍ଦ ପରି ଗୋଟିଏ ସରଳ ନିଷ୍ପାପ ପିଲା ଆଜିକାଲି ବିରଳ ।

## ବାଣୀବିହାରର କେତେକ ଅନୁଭୂତି

ମୋ ଜୀବନର ଗୋଟିଏ ଗୁଣ ସମସ୍ତଙ୍କୁ ଭଲ ପାଇବା । ଯିଏ ମୋର ଶତ୍ରୁତା କରନ୍ତି ମୁଁ ତାଙ୍କୁ ଶ୍ରଦ୍ଧା କରେ । ବଂଶୀଧରବାବୁ ମୋ ବିରୋଧରେ ନାନା ଚକ୍ରାନ୍ତ କରିଛନ୍ତି । ଅଥଚ ସେ ମରିଗଲା ପରେ ତାଙ୍କ ସଂପର୍କରେ ମୁଁ ଖବରକାଗଜରେ ଲେଖିଛି । ତାଙ୍କ ପ୍ରତି ଅନ୍ତରର ଶ୍ରଦ୍ଧାଞ୍ଜଳି ବ୍ୟକ୍ତ କରିଛି । ବଂଶୀବାବୁଙ୍କ ପରେ ଡକ୍ଟର କୃଷ୍ଣଚରଣ ସାହୁ ବିଭାଗୀୟ ମୁଖ୍ୟ ହେଲେ । ତାଙ୍କୁ କ୍ଷୁଦ୍ରତା ସ୍ପର୍ଶ କରି ନ ଥିଲା । ପ୍ରାଚୀନ ସାହିତ୍ୟ ସଂପର୍କରେ ସେ ଅତ୍ୟନ୍ତ ଦକ୍ଷ । ତାଙ୍କର ବନ୍ଧୁ ଥିଲେ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି, ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ । ଏମାନଙ୍କର ସଂପର୍କ ସାହିତ୍ୟିକ । ପ୍ରଫେସର ବିଧୁଭୂଷଣ ଦାସଙ୍କୁ କେନ୍ଦ୍ର କରି ସାହିତ୍ୟ ସାଧନା କରୁଥିଲେ । 'ପ୍ରଜ୍ଞା' ପତ୍ରିକା ସହିତ ସଂପୃକ୍ତ ଥିଲେ । ତାଙ୍କରି ସମୟରେ ଡକ୍ଟର ସ୍ନେହଲତା ପଟ୍ଟନାୟକ, ଡକ୍ଟର ସଂଘମିତ୍ରା ମିଶ୍ର, ଡକ୍ଟର ଶରତଚନ୍ଦ୍ର ରଥ ଯୋଗ ଦେଲେ । ଡକ୍ଟର ନିତ୍ୟାନନ୍ଦ ନାୟକ ଓ ଡକ୍ଟର ସୁରେନ୍ଦ୍ରନାଥ ଦାଶ ପରେ ଯୋଗ ଦେଲେ । ପୂର୍ବରୁ ଥିଲେ ଡକ୍ଟର ବାସୁଦେବ ସାହୁ, ଡକ୍ଟର ନିତ୍ୟାନନ୍ଦ ଶତପଥୀ ଓ ଡକ୍ଟର ଆଶୁତୋଷ ପଟ୍ଟନାୟକ । ଡକ୍ଟର ଫକୀରମୋହନ ଦାସ ମଧ ପରେ ଅଧାପକ ହେଲେ । କ୍ରମଶଃ ମୁଁ ଅନୁଭବ କଲି ଯେ ବିଭାଗର ମର୍ଯ୍ୟାଦାକୁ ଭୁଲି ବ୍ୟକ୍ତିଗତ ସ୍ୱାର୍ଥରେ ଅଧାପକମାନେ ଲିପ୍ତ ହୋଇଗଲେ । ପାରସ୍ପରିକ ସଂଘର୍ଷ ଉତ୍କଟ ଆକାର ଧାରଣ କଲା । କେବଳ ଯେ ଓଡ଼ିଆ ବିଭାଗରେ ଏହା ହେଉଥିଲା; ନୁହେଁ । ଅନ୍ୟାନ୍ୟ ବିଭାଗରେ ମଧ ଏପରି ହେଉଥିଲା ।

ମୁଁ ଯେତେବେଳେ ବିଭାଗୀୟ ମୁଖ୍ୟ ଥିଲି ସେତେବେଳେ ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉତ୍ସବ ତିନି ଦିନ ଧରି ପାଳନ କରାଯିବା ପାଇଁ ସ୍ଥିର ହେଲା । ଏହି

ଉତ୍ସବ ପାଇଁ ଅର୍ଥ ଦରକାର ହେଲା । ଡକ୍ଟର ନିତ୍ୟାନନ୍ଦ ଶତପଥୀ ଇମାର କର୍ତ୍ତୃପକ୍ଷଙ୍କୁ ପ୍ରଭାବିତ କରି କିଛି ଅର୍ଥ ଯୋଗାଡ଼ କଲେ । ମୁଁ ମଧ୍ୟ ତାଙ୍କୁ ଓ ପ୍ରଫେସର ବାସୁଦେବ ସାହୁଙ୍କୁ ସାଙ୍ଗରେ ନେଇ କଟକର ବହି ଦୋକାନ ତଥା ଅନ୍ୟ କେତେଜଣଙ୍କଠାରୁ ଅର୍ଥ ସଂଗ୍ରହ କଲି । ତିନି ଦିନ ଧରି ଭବ୍ୟ ପରିବେଶରେ ହେଲା ରଜତ ଜୟନ୍ତୀ ଉତ୍ସବ । ଉଚ୍ଚକୋଟୀର ଲେଖାମାନଙ୍କୁ ନେଇ ଗୋଟିଏ ସ୍ମାରକୀ ଗ୍ରନ୍ଥ ପ୍ରକାଶ ପାଇଲା । ମୁଁ, ଡକ୍ଟର ନିତ୍ୟାନନ୍ଦ ଶତପଥୀ ଓ ଡକ୍ଟର ବାସୁଦେବ ସାହୁ ତା'ର ସଂପାଦନା ଦାୟିତ୍ୱରେ ରହିଲୁ । ଉତ୍ସବକୁ ଭଣ୍ଡୁର କରିବା ପାଇଁ ପ୍ରତିପକ୍ଷ ଅଧ୍ୟାପକମାନେ ନାନା ଉଦ୍ୟମ କଲେ ମାତ୍ର ସେମାନଙ୍କ ଉଦ୍ୟମ ଫସର ଫାଟିଗଲା । ଆମେ ମଧ୍ୟ ଓଡ଼ିଆ ବିଭାଗର ଅବସର ନେଇଥିବା ପ୍ରଫେସର ଓ ବରିଷ୍ଠ ଅଧ୍ୟାପକମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେଲୁ । ପ୍ରଫେସର କୃଷ୍ଣଚରଣ ସାହୁ, ପ୍ରଫେସର କାହ୍ନୁଚରଣ ମିଶ୍ର, ପ୍ରଫେସର ଗଙ୍ଗାଧର ବଳ, ପ୍ରଫେସର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ର, ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ, ପ୍ରଫେସର କୁଳମଣି ମହାପାତ୍ର, ପ୍ରଫେସର ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ପ୍ରଫେସର ନଟବର ସାମନ୍ତରାୟ, ପ୍ରଫେସର ବେଣୀମାଧବ ପାଢ଼ୀ ପ୍ରମୁଖଙ୍କୁ ଆମେ ଭବ୍ୟ ସମ୍ବର୍ଦ୍ଧନା ଦେଲୁ । ବିଭିନ୍ନ ଅଧିବେଶନରେ ଆମେ ନାନା ବିଷୟରେ ସେମିନାର କଲୁ । ଏହି ଉତ୍ସବ ବାଣୀବିହାରରେ ଏକ ରମ୍ୟ ବାତାବରଣ ସୃଷ୍ଟି କରିଥିଲା । ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସ୍ୱାଭିମାନ ଓ ବାଣୀ-ପ୍ରୀତି ଯୋଗୁଁ ମୁଁ ସମର୍ଥ ହେଲି ଏପରି ଏକ ଉତ୍ସବ କରି ବିଭାଗର ମର୍ଯ୍ୟାଦା ବୃଦ୍ଧି କରିବା ପାଇଁ ।

ବାଣୀବିହାରରେ ଦୀର୍ଘ ଅଠରବର୍ଷ ଭିତରେ କେତେ କେତେ ଘଟଣା ଘଟିଗଲା । କେତେ କେତେ କୁଳପତିଙ୍କୁ ମଧ୍ୟ ଦେଖିଲି । ମୁଁ ପ୍ରଥମେ ଯେତେବେଳେ ବାଣୀବିହାରରେ ଜଏନ୍ କଲି ସେତେବେଳେ କୁଳପତି ଥିଲେ ପ୍ରଫେସର ବିଦ୍ୟାଧର ମିଶ୍ର । ସେ ଜଣେ ମହାନ୍ ଓ ଉଦାର ବ୍ୟକ୍ତି । କ୍ଷୁଦ୍ରତା ତାଙ୍କୁ ସ୍ପର୍ଶ କରି ନ ଥିଲା । ସେ ମଧ୍ୟ ଜଣେ ସୁଲେଖକ । ତାଙ୍କ ବିଚାରବୋଧକୁ ମୁଁ ବାରମ୍ବାର ପ୍ରଣାମ ଜଣାଏ । ତାଙ୍କ ପରେ ଶ୍ରୀଯୁକ୍ତ ବିମଳ ମିଶ୍ର ମଧ୍ୟ କୁଳପତି ଦାୟିତ୍ୱ ନେଲେ । ସେ ପଦସ୍ଥ ପ୍ରଶାସକ ଥିଲେ ହେଁ ଶିକ୍ଷା ପ୍ରତି ତାଙ୍କର ଆଦର ଥିଲା । ତେଣୁ ପ୍ରଫେସରମାନଙ୍କୁ ସେ ସମ୍ମାନ ଦେଉଥିଲେ । ପ୍ରଫେସର ମହେନ୍ଦ୍ର କୁମାର ରାଉତ କୁଳପତି ହେଲା ପରେ ବିଶ୍ୱବିଦ୍ୟାଳୟର ଉନ୍ନତି ପାଇଁ ଅନେକ ପଦକ୍ଷେପ ନେଇଥିଲେ । ସେ ତ ଥିଲେ ସର୍ବଭାରତୀୟ ଓ ଆନ୍ତର୍ଜାତିକ ସ୍ତରର ଜଣେ ପ୍ରସିଦ୍ଧ ରସାୟନବିତ୍ । ଭାରି ସ୍ନେହୀ ମାତ୍ର ପ୍ରଶାସନରେ ଦକ୍ଷ । ତାଙ୍କରି ସମୟରେ ମୋତେ କେତେଜଣ ଚକ୍ରାନ୍ତ କରି ଗୋଟିଏ ବିପଦରେ ପକାଇଥିଲେ ମାତ୍ର ଭଗବାନ୍‌ଙ୍କ ଦୟାରୁ ମୋର କିଛି ହେଲା ନାହିଁ । ପ୍ରଫେସର ମନ୍ମଥନାଥ ଦାସ ଜଣେ

ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଐତିହାସିକ । ସେ ମଧ୍ୟ ଇତିହାସ ରଚନା ସହିତ କେତେକ ଉପନ୍ୟାସ, ଭ୍ରମଣ କାହାଣୀ ଓ ଆତ୍ମଚରିତ ଲେଖିଛନ୍ତି । ଜଣେ ଉଚ୍ଚକୋଟୀର ଚିନ୍ତାନାୟକ ଓ ଗବେଷକ । ତାଙ୍କ ଉପନ୍ୟାସ ଉପରେ ମୁଁ ଆଲୋଚନା ଲେଖିଥାଏ । ସେ ମହାଶୟ କୁଳପତି ହେଲେ ମାତ୍ର ଅଳ୍ପ କେତେ ଦିନ ପରେ ଇସ୍ତଫା ଦେଇ ସେକାଳର ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ପ୍ରଭାବିତ ହୋଇ ରାଜ୍ୟସଭାର ସାଂସଦ ହେଲେ । ପରେ ତାଙ୍କର ଦେହାନ୍ତ ହୋଇଗଲା । ତାଙ୍କ ପରି ଜଣେ ଗ୍ରାମ-ମନସ୍କ ସମ୍ବେଦନଶୀଳ ମଣିଷ ମୁଁ କ୍ୱଚିତ୍ ଦେଖିଛି । ତାଙ୍କ ସାନଭାଇ ଆନ୍ତର୍ଜାକିକ ଖ୍ୟାତିସଂପନ୍ନ ଲେଖକ ମନୋଜ ଦାସ । ସେହି ଦୁଇ ଭାଇଙ୍କର ପରସ୍ପର ପ୍ରତି ଥିବା ମମତାକୁ ମୁଁ ଉପଲବ୍ଧି କରିଛି । ପ୍ରଫେସର ତ୍ରିଲୋଚନ ପ୍ରଧାନ ଜଣେ ପ୍ରସିଦ୍ଧ ପଦାର୍ଥବିଜ୍ଞାନବିତ୍ । ସେ ମଧ୍ୟ କୁଳପତି ହେଲେ । ସେ ଜ୍ଞାନୀ ଗୁଣୀ ଓ ବିଚାରବନ୍ତ ମଣିଷ । ତାଙ୍କରି ସମୟରେ ଓଡ଼ିଆ ବିଭାଗରେ ଗୋଟିଏ ପ୍ରଫେସର ପଦ ପାଇଁ ଇଣ୍ଟରଭ୍ୟୁ ହେଲା । ସ୍ୱର୍ଗତ ଗୋପୀନାଥ ମହାନ୍ତି ଓ ସେକାଳର ଭାରତ ସରକାରଙ୍କ ସଂସ୍କୃତି ବିଭାଗର ସଚିବ ଶ୍ରୀଯୁକ୍ତ ସୀତାକାନ୍ତ ମହାପାତ୍ର ସେମାନଙ୍କ ପ୍ରିୟ ବ୍ୟକ୍ତିକୁ ପ୍ରଫେସର କରାଇବା ପାଇଁ ଚାପ ପକାଇଲେ । ତେଣୁ ବିଜ୍ଞାପନଟି ଏପରି ବାହାରିଲା ଯେ ସେହି ବ୍ୟକ୍ତିହିଁ ସେ ପଦ ପାଇବେ । ମୁଁ ମଧ୍ୟ ସେହି ଇଣ୍ଟରଭ୍ୟୁ ଦେଇଥିଲି । ମୋର ଅନେକ ବହି, ସେମିନାର ଲେଖା ଓ ପତ୍ରପତ୍ରିକାର ଲେଖା ଥିଲେ ମଧ୍ୟ ମୁଁ ପାଇଲି ନାହିଁ । ସେହି ସମୟରେ ଆମ ବିଭାଗର ମୁଖ୍ୟ ଥିଲେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ଉଜ୍ଜୀବନ ପାଠ୍ୟକ୍ରମର ଆରମ୍ଭ ଦିନ କୁଳପତି ଡକ୍ଟର ପ୍ରଧାନ ଓ ବିଶିଷ୍ଟ କବି ତଥା ସଚିବ ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ପଣ୍ଡା ଆସିଥାନ୍ତି ଅତିଥି ହୋଇ । ସଭା ଆରମ୍ଭରେ ମୁଁ ସ୍ୱାଗତ ଭାଷଣ ଦେଲି । ପ୍ରଫେସର ପ୍ରଧାନ ଓ ଶ୍ରୀଯୁକ୍ତ ପଣ୍ଡା ସେମାନଙ୍କର ସୁଚିନ୍ତିତ ଅଭିଭାଷଣ ପ୍ରଦାନ କଲେ । ସଭାପତି ଭାବରେ ଡକ୍ଟର ଶତପଥୀ ଭାଷଣ ପ୍ରସଙ୍ଗରେ ବିରୋଧ କରୁଥିବା ଅଧ୍ୟାପକମାନଙ୍କ ସଂପର୍କରେ କିଛି କଟୁ ମନ୍ତବ୍ୟ ପ୍ରକାଶ କଲେ । ସେହି ସଭାରେ ଡକ୍ଟର ଫକୀରମୋହନ ଦାସ ଉପସ୍ଥିତ ଥିଲେ । ସେ ଆସି ବନେଇ ଚୂନେଇ ପ୍ରତିପକ୍ଷମାନଙ୍କୁ କହି ସେମାନଙ୍କୁ ଉତ୍ତେଜିତ କରିଦେଲେ । ଅତିଥିମାନେ ଆସି ବିଭାଗୀୟ ମୁଖ୍ୟଙ୍କ କକ୍ଷରେ ବସିଲେ । ସେଠି ମୁଁ ଉପସ୍ଥିତ ଥାଏ । ଅତିଥିମାନଙ୍କୁ ଚାହା ଓ ଜଳଖିଆ ଦିଆଯାଇଥାଏ । ଏତିକିବେଳେ ବାସୁବାବୁ, ଆଶୁବାବୁ, ନିତ୍ୟାନନ୍ଦ ନାୟକ ଓ ଫକୀରମୋହନ ଦାସ କକ୍ଷ ଭିତରକୁ ପଶି ଆସି ଟେବୁଲ ବାଡ଼େଇ ଯେପରି ପାଟିତୁଣ୍ଡ କଲେ ଓ ବିଭାଗୀୟ ମୁଖ୍ୟ ମଧ୍ୟ ଯେପରି ଗର୍ଜନ ତର୍ଜନ କଲେ ତାହା ଦେଖି ପ୍ରଥମେ କୁଳପତି ପ୍ରଫେସର ପ୍ରଧାନ ପଦାକୁ ଚାଲିଆସିଲେ ଓ ମୋତେ ଡାକି କହିଲେ- 'ତମ ପାଇଁ, ମୁଁ ଅନ୍ୟାୟ କରି ଦେଇଛି ।

ଅପେକ୍ଷା କର, ମୁଁ ପ୍ରାୟଶ୍ଚିତ୍ତ କରିବି ।' ସେ ମୋତେ କହିଗଲେ ବିଭାଗକୁ ଶାନ୍ତ କରିବାପାଇଁ । ସେ ଚାଲିଯିବା ପରେ ଶ୍ରୀଯୁକ୍ତ ପଣ୍ଡା ବାହାରି ଆସି ମୋତେ ତଳକୁ ଟାଣିନେଇଗଲେ ଓ ବିଭାଗର ଅବସ୍ଥା ଦେଖି ଗଭୀର ଦୁଃଖ ପ୍ରକାଶ କଲେ । ସେ ମଧ୍ୟ ମୋତେ କହିଗଲେ ଅବସ୍ଥାକୁ ଶାନ୍ତ କରିବାପାଇଁ । ମୁଁ ସାଧ୍ୟମତେ ଉଭୟଙ୍କ ହାତ ଧରି ଅବସ୍ଥା ସମ୍ଭାଳି ନେଲି ।

ବିଶ୍ୱବିଦ୍ୟାଳୟର କୁଳପତି ହେଲେ ପ୍ରଫେସର ସତ୍ୟାନନ୍ଦ ଆଚାର୍ଯ୍ୟ । ସେତିକିବେଳେ ଓଡ଼ିଆ ବିଭାଗରେ ଗୋଟିଏ ପ୍ରଫେସର ପଦ ପାଇଁ ବିଜ୍ଞାପନ ବାହାରିଲା । ମୁଁ ଦରଖାସ୍ତ କରିଥାଏ । କାଳେ ମୁଁ ସେହି ପଦ ପାଇଯିବି ତେଣୁ ଆମ ବିଭାଗର ଦୁଇଜଣ ପ୍ରଫେସର କୁଳପତିଙ୍କୁ ପ୍ରଭାବିତ କରି ଇଣ୍ଟରଭ୍ୟୁ କରାଇଦେଲେ ନାହିଁ । କାଳକ୍ରମେ ସେହି ପଦବୀଟି ଉଠିଗଲା । ତାଙ୍କ ପରେ ସରୋଜକାନ୍ତ ମିଶ୍ର ଓ ତାଙ୍କ ପରେ ପ୍ରଫେସର ଗୌରକିଶୋର ଦାସ ହେଲେ କୁଳପତି । ଗୌରବାବୁଙ୍କ ଘର ଆଠଗଡ଼ । ସେ ଥରେ ଆଠଗଡ଼ ଯାଇଥିବା ସମୟରେ ସେଠିକାର ବୁଢ଼ା ବୁଢ଼ା ବ୍ରାହ୍ମଣ ପଣ୍ଡିତମାନେ ତାଙ୍କୁ ମୋ କଥା ପଚାରିଲେ । ମୋତେ ଆଉ ଥରେ ଆଠଗଡ଼କୁ ଡକାଇ ଭାଗବତ ଉପରେ ଶୁଣିବାକୁ ସେମାନେ ଗୌରବାବୁଙ୍କୁ କହିଲେ । ଏହାର କାରଣ ପୂର୍ବରୁ ଆଠଗଡ଼ ଟାଉନରେ ଔପନ୍ୟାସିକ ଯମେଶ୍ୱର ତ୍ରିପାଠୀଙ୍କ ଅନୁରୋଧ କ୍ରମେ ସେଠାକୁ ଯାଇଥିଲି ଭାଗବତ ଉପରେ କହିବା ପାଇଁ । ସଭାପତିତ୍ୱ କରିଥିଲେ ଡକ୍ଟର ବ୍ରଜମୋହନ ମହାନ୍ତି । ଅନ୍ୟତମ ବକ୍ତା ଥିଲେ ଡକ୍ଟର ରତ୍ନାକର ସାହୁ । ବହୁତ ଲୋକ ହୋଇଥାଆନ୍ତି । ବୁଢ଼ା ବୁଢ଼ା ପଣ୍ଡିତମାନେ କାନ୍ଧରେ ଉତ୍ତରୀୟ ପକାଇ ହାତରେ ବାଡ଼ି ଓ ପାନବଟୁଆ ଧରି ସଭାକୁ ଆସି ଆଗରେ ବସିଗଲେ । ମୁଁ ତ ସେମାନଙ୍କୁ ଜାଣି ନ ଥାଏ । ତଥାପି ମୁଁ ପ୍ରଥମେ ଭାଗବତ ଉପରେ ଭାଷଣ ଦେଲି । ବିଭିନ୍ନ ପ୍ରସଙ୍ଗର ତାତ୍ତ୍ୱିକ ଓ ସାମାଜିକ ବ୍ୟାଖ୍ୟା କରି ବୁଝାଇଲି । ସଭା ନୀରବ ନିସ୍ତବ୍ଧ । ମୋ ଭାଷଣ ସରିଗଲା ପରେ ରତ୍ନାକରବାବୁ ମାଳିକା ଉପରେ କହିଲେ । ତାଙ୍କୁ ପଣ୍ଡିତମାନେ ଅଶାସ୍ତ୍ରୀୟ କଥା କହୁଛ ବୋଲି ବାରମ୍ବାର ପ୍ରଶ୍ନ କଲେ । ସେ ରାଗିଯାଇ ଭାଷଣ ଶେଷ କରିଦେଲେ । ସଭା ସରିଗଲା ପରେ ମୋତେ ପଣ୍ଡିତମାନେ ଘେରିଯାଇ ମୋ ମୁଣ୍ଡରେ ହାତ ରଖି ଆଶୀର୍ବାଦ କଲେ । ସେମାନେ କହିଲେ ଯେ ଭାଗବତର ପ୍ରାୟ ଶ୍ଳୋକଗୁଡ଼ିକ ସେମାନଙ୍କର ମୁଖସ୍ଥ । ମାତ୍ର ଭାଗବତରେ ଯେ ଏତେ ଅର୍ଥ ଅଛି, ସମାଜ ଓ ଜୀବନ ପାଇଁ ଯେ ଏତେ କଥା ଅଛି ତାହା ସେମାନେ ଜାଣି ନାହାନ୍ତି । ଆଉଥରେ ଆସି ଭାଗବତ କଥା କହିବାକୁ ସେମାନେ ମୋତେ ଅନୁରୋଧ କଲେ । ଗୌରବାବୁଙ୍କୁ ସେମାନେ ଯାହା କହିଲେ ସେ ମୋତେ ଆସି କହିଲେ ।

ଗୌରବାବୁ ଇଂରାଜୀ ବିଭାଗର ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର । ତାଙ୍କର ସୌନ୍ଦର୍ଯ୍ୟବୋଧ ଓ ଶିକ୍ଷା ସମ୍ବନ୍ଧୀୟ ମର୍ଯ୍ୟାଦାବୋଧ ସ୍ୱତନ୍ତ୍ର । ତେଣୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ନବୀକରଣ ପାଇଁ ବହୁ କାର୍ଯ୍ୟ କଲେ । ଛାତ୍ରଛାତ୍ରୀମାନଙ୍କୁ ନୂତନ ତାତ୍ତ୍ୱିକ ଦିଗକୁ ମୁହାଁଇନେଲେ । ତାଙ୍କର ମୋ ପ୍ରତି ଗୋଟାଏ ଉଚ୍ଚ ଧାରଣା ଥାଏ । ଓଡ଼ିଆ ବିଭାଗକୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ତରଫରୁ କିଛି ଅର୍ଥ ଆସିଥାଏ । ତାହାର ଆବାହକ ଥିଲେ ପ୍ରଫେସର ବାସୁଦେବ ସାହୁ । ତାଙ୍କ ସହିତ ଆଶୁବାବୁ ଓ ଡକ୍ଟର ନାୟକଙ୍କର ପଡୁ ନ ଥାଏ । ତେଣୁ ସେ ସେହି ଟଙ୍କା ଖର୍ଚ୍ଚ କରୁ ନ ଥାନ୍ତି । ଗୌରବାବୁ ମୋତେ ଡାକି କୌଣସିମତେ ସେମିନାର କରିବାକୁ କହିଲେ ଓ ବିଭିନ୍ନ ବିଷୟରେ ପୁସ୍ତକ ପ୍ରସ୍ତୁତ କରିବାକୁ ଅନୁରୋଧ କଲେ । ମୋ ମାର୍ଫତରେ ବାସୁବାବୁ ଟଙ୍କା ଦେଲେ ଓ ମୁଁ ବିଭାଗର ଅଧ୍ୟାପକମାନଙ୍କ ମଧ୍ୟରେ ବାଣ୍ଟି ଦେଇ ସେମିନାର କଲି । ପୁସ୍ତକ ମଧ୍ୟ ପ୍ରକାଶ ପାଇଲା ।

ସେହି ବାଣୀବିହାରରେ ଥିଲାବେଳେ ଆହୁରି କେତେ ଘଟଣା ଘଟିଗଲା । ଆଶୁବାବୁ ବିଭାଗୀୟ ମୁଖ୍ୟ ଥିଲାବେଳେ ଡକ୍ଟର ସୁରେନ୍ଦ୍ରନାଥ ଦାଶଙ୍କ ସହିତ ତାଙ୍କର ତୀବ୍ର ଝଗଡ଼ା ହେଲା ଗୋଟିଏ ରୁମ୍‌କୁ ନେଇ । ସୁରେନ୍ଦ୍ରବାବୁ ଯେଉଁ ରୁମ୍‌ରେ ବସୁଥିଲେ ସେହି ରୁମ୍ ଛାଡ଼ିବାକୁ ତାଙ୍କୁ ବାଧ କଲେ ଆଶୁବାବୁ । ସେତିକିବେଳେ ମୁଁ ପହଞ୍ଚି ସମାଧାନ କରିଦେଲି ଓ ସୁରେନ୍ଦ୍ରବାବୁ ଅନ୍ୟ ଏକ ରୁମ୍‌କୁ ଗଲେ । ଆଉ ଦିନେ ବିଭାଗର ବାର୍ଷିକ ଭୋଜି ହେଉଥାଏ । ମୁଁ ପହଞ୍ଚିଲାବେଳକୁ ଦେଖିଲି ବିଭାଗର ସମସ୍ତ ଅଧ୍ୟାପକ, ଅଧ୍ୟାପିକା ଅଛନ୍ତି, କେବଳ ନ ଥାନ୍ତି ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ମୁଁ ଏକଥା ଆଶୁବାବୁଙ୍କୁ ପଚାରିବାରୁ ସେ କହିଲେ ଯେ ନିତ୍ୟାନନ୍ଦବାବୁଙ୍କୁ କୁହାଯାଇଥିଲା ମାତ୍ର ସେ ଆସିଲେ ନାହିଁ । ମୁଁ ସଙ୍ଗେସଙ୍ଗେ ତାଙ୍କ କ୍ୱାର୍ଟରକୁ ଗଲି । ସେ ଚଟାଣରେ ଗୋଟିଏ ସପ ପକାଇ ଗଡ଼ପଡ଼ ହେଉଥାନ୍ତି । ମୁଁ ତାଙ୍କୁ ବାର୍ଷିକ ଭୋଜି ହେଉଛି ଓ ସେଠାକୁ ଯିବାପାଇଁ କହିଲି । ସେ କହିଲେ ମୋତେ ତ କେହି ଏ ବିଷୟରେ କହି ନାହାନ୍ତି । ହଉ, ଚାଲଯିବା । ସେ ସଙ୍ଗେସଙ୍ଗେ ପ୍ରସ୍ତୁତ ହୋଇ ବାହାରିଲେ । ବିଭାଗରେ ପହଞ୍ଚି ସେ ସମସ୍ତଙ୍କୁ ଡାକିଲେ ଏକତ୍ର ବସି ପ୍ରସାଦ ସେବନ କରିବା ପାଇଁ । ମୁଁ ଅନୁଭବ କଲି ତାଙ୍କର ଉଦାର ପ୍ରଶସ୍ତ ମନୋଭାବ ଓ ହୃଦୟବତ୍ତାକୁ । ମୁଁ ଜାଣେ ଯେ ଯିଏ ସଂକୀର୍ଣ୍ଣ ଓ ଅହଙ୍କାରରେ ଫାଟି ପଡ଼େ ସିଏ ନାନା କୌଶଳ କରେ । ନିଜେ ବଡ଼ ହେବାକୁ ହୀନ ଉଦ୍ୟମ କରେ । ଯାହାଙ୍କଠାରେ ପ୍ରକୃତ ମଣିଷପଣିଆ ଥାଏ ସିଏ କେବେ ଶତ୍ରୁତାକୁ ଧରି ରଖେ ନାହିଁ ।

ମୁଁ ଯେତେବେଳେ ବିଭାଗର ମୁଖ୍ୟ ହେଲି ଡକ୍ଟର ସୁରେନ୍ଦ୍ରନାଥ ଦାଶଙ୍କୁ ବିଭାଗର ମୁଖ୍ୟ ଉପଦେଷ୍ଟା କଲି । ସେ ପ୍ରକୃତରେ ବିଭାଗର ଯାବତୀୟ ଦାୟିତ୍ୱ ତୁଲାଇଲେ ।

ମୋ ସମୟରେ ମଧ୍ୟ ଉଜ୍ଜୀବନ ପାଠ୍ୟକ୍ରମ ଓ ସେମିନାର ହେଲା, ରଜତ ଜୟନ୍ତୀ ଉତ୍ସବ ମହାସମାରୋହରେ ପାଳିତ ହେଲା । ଛାତ୍ରଛାତ୍ରୀମାନଙ୍କୁ ନେଇ ମୁଁ ବମ୍ବେ ବୁଲାଇ ନାନା ସ୍ଥାନ ଦେଖାଇଥିଲି । ଆମ ବିଭାଗରେ ଡକ୍ଟର ସ୍ନେହଲତା ପଟ୍ଟନାୟକ ପ୍ରାଧ୍ୟାପିକା ଥିଲେ । ସେ ପ୍ରକୃତରେ ସ୍ନେହମୟୀ । ଛାତ୍ରଛାତ୍ରୀମାନଙ୍କୁ ସେ ନିଜର ପୁଅଝିଅ ପରି ଦେଖୁଥିଲେ । ପୁରୀର ବିଖ୍ୟାତ ବ୍ୟକ୍ତି ଲୋକନାଥ ପଟ୍ଟନାୟକଙ୍କ କନ୍ୟା । ସେ କୌଣସି କାରଣରୁ ବିବାହ କଲେ ନାହିଁ । ଭୁବନେଶ୍ୱରରେ ସେ ଘର କରି ରହିଥାନ୍ତି । ତାଙ୍କ ବଡ଼ଭାଇ ଓ ଭାଉଜ ତଥା ତାଙ୍କର ପିଲାମାନେ ସେଇଠି ରୁହନ୍ତି । ଭାରି ମମତାମୟୀ ଓ ପରୋପକାରିଣୀ । ମୋ କୋଠରିକୁ ସେ ଆସନ୍ତି । ଅନେକ ବିଷୟରେ ଆଲୋଚନା କରନ୍ତି । ଡକ୍ଟର ସଂଘମିତ୍ରା ମିଶ୍ର ଓ ସେ ଗୋଟିଏ କୋଠରିରେ ବସନ୍ତି । ସଂଘମିତ୍ରା ଦେବୀ ମଧ୍ୟ ଅତ୍ୟନ୍ତ ସ୍ନେହଶୀଳା । ସେ କବିତା, ଗଳ୍ପ, ପ୍ରବନ୍ଧ, ସମାଲୋଚନା ଆଦି ଲେଖନ୍ତି । ଉଭୟଙ୍କ ସହିତ ମୋର ଭଲ ସଂପର୍କ ଥାଏ । ଆମ କଟକ ଘରକୁ ମଧ୍ୟ ଉଭୟେ ଆସନ୍ତି । ମୋ ଝିଅ ଓ ପୁଅ ବାହାଘରକୁ ସେମାନେ ଆସିଛନ୍ତି । ମୁଁ ମଧ୍ୟ ସେମାନଙ୍କ ଘରକୁ ଯାଏ । ସ୍ନେହଲତା ଦେବୀ ଅବସର ନେଇସାରିଲେଣି । ସଂଘମିତ୍ରା ଦେବୀ ଏବେ ମଧ୍ୟ ପ୍ରଫେସର ଭାବରେ କାର୍ଯ୍ୟ କରନ୍ତି । ତାଙ୍କର ଅବସର ନେବା ସମୟ ଖୁବ୍ ନିକଟ ହୋଇଆସିଲାଣି । ମୁଁ ବିଭାଗର ମୁଖ୍ୟ ଥିଲାବେଳେ ଦୁଇଜଣ ଅଧ୍ୟାପକଙ୍କର ଦୁଇଝିଅ ପଢୁଥାନ୍ତି । କାହା ଝିଅ ପ୍ରଥମ ହେବ ବୋଲି ସେମାନଙ୍କ ମଧ୍ୟରେ ସଂଘର୍ଷ ଦେଖାଦେଲା । ମୁଁ କୁଳପତିଙ୍କଠାରୁ ଅନୁମତି ନେଇ କୋର୍ଡିଂ କରି ଖାତା ଦେଖାଇଲି । ଏଥିରେ ବ୍ୟତିବ୍ୟସ୍ତ ହୋଇ ଦୁଇଜଣ ଅଧ୍ୟାପକ ଜନୈକ ମହିମାଧର୍ମାବଲମ୍ବୀ ଛାତ୍ରକୁ ଲଗାଇ ମୋ ରୁମ୍‌ର ଦରଜା ପାଖରେ ରାତିରେ ମଦବୋତଲ ଭଙ୍ଗାଇଲେ । କୁଳପତିଙ୍କୁ କହି କୋର୍ଡିଂ ବନ୍ଦ କରାଇଲେ । ମୁଁ ପରୀକ୍ଷା ଦାୟିତ୍ୱ ଛାଡ଼ିଦେଲି । ଏପରି ବୀଭତ୍ସତା ଓ ହୀନମ୍ମନ୍ୟତା ମୁଁ ଓଡ଼ିଆ ବିଭାଗରେ ଦେଖିଲି । ମୋର ଦୀର୍ଘ ଚାଳିଶ ବର୍ଷର ଅଧ୍ୟାପକ ଜୀବନରେ ଅନ୍ୟ କେଉଁଠି ଏପରି ଭେଟି ନ ଥିଲି । ମୋର ବିଶ୍ୱାସ ଯେ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ପ୍ରଶସ୍ତ ହୃଦୟର । ସେମାନଙ୍କଠାରୁ ଗୋଟାଏ ଜାତି ଅନେକ କିଛି ଆଶା କରେ । ଅଥଚ ସେମାନେ କ୍ଷୁଦ୍ର କ୍ଷୁଦ୍ର ସ୍ୱାର୍ଥକୁ ନେଇ ଏପରି ନିମ୍ନସ୍ତରକୁ ଗତି କରିଯାଆନ୍ତି ଯେ ତାହା ଅତ୍ୟନ୍ତ ଦୁଃଖଦାୟକ ହୋଇଯାଏ ।

ମୁଁ ବାଣୀବିହାରରେ ଥିଲା ପର୍ଯ୍ୟନ୍ତ କଟକରୁ ବସ୍‌ରେ ଯିବାଆସିବା କରୁଥାଏ । ସେଠି ଅନ୍ୟ କେତେକ ବିଭାଗର ବିଦ୍ୱାନ୍ ପ୍ରଫେସରଙ୍କ ସହିତ ମୋର ସଂପର୍କ ଥାଏ । ସେମାନଙ୍କଠାରୁ ମୁଁ କିଛି ଶିକ୍ଷା କରିବାକୁ ଉଦ୍ୟମ କରେ । କମର୍ସ ବିଭାଗ ତରଫରୁ ପ୍ରତିବର୍ଷ ମାନସିଂହ ବକ୍ତୃତାମାଳା ଅନୁଷ୍ଠିତ ହୁଏ । ବାଣିଜ୍ୟ ବିଭାଗର ପ୍ରଫେସର ସୂର୍ଯ୍ୟକାନ୍ତ

ଦାସ ତାହାକୁ ଆରମ୍ଭ କରିଥିଲେ । ତାଙ୍କ ସମୟରେ ଓ ପରେ ମଧ୍ୟ ମୁଁ ମାନସିଂହଙ୍କ ଉପରେ ସ୍ମାରକୀ ବକ୍ତୃତା ଦେଇଛି । ମୁଁ ବାଣୀବିହାରରୁ ବିଶ୍ୱଭାରତୀକୁ ଗଲା ପରେ ମଧ୍ୟ କୁଳପତି ଅରୁଣ କୁମାର ସାମନ୍ତରାୟଙ୍କ ନିମନ୍ତ୍ରଣ କ୍ରମେ ସେହି ସଭାକୁ ଆସିଛି ଓ ସ୍ମାରକୀ ବକ୍ତୃତା ଦେଇଛି । ଶ୍ରୀଯୁକ୍ତ ଲଳିତ କୁମାର ମାନସିଂହ ମଧ୍ୟ ମୁଖ୍ୟ ଅତିଥି ଭାବରେ ସେହି ସଭାରେ ଯୋଗ ଦେଇଥିଲେ । ବାଣୀବିହାରରୁ ମୁଁ ଶାନ୍ତିନିକେତନ ବିଶ୍ୱଭାରତୀକୁ ପ୍ରଫେସର ହୋଇ ଗଲି । ଡକ୍ଟର ସୁରେନ୍ଦ୍ରନାଥ ଦାଶ ମୋତେ କହି ନ ଥିଲେ ଓ ଫର୍ମ ଦେଇ ନ ଥିଲେ ମୁଁ ବିଶ୍ୱଭାରତୀକୁ ଦରଖାସ୍ତ କରିପାରି ନ ଥାନ୍ତି । ଯଥାସମୟରେ ମୁଁ ଗୋଟିଏ ଆଗୁଆ ଦରଖାସ୍ତ ବିଶ୍ୱଭାରତୀକୁ ପଠାଇ ଦେଇଥାଏ । ଅବଶିଷ୍ଟ ଛଅଟି କପି ଉତ୍କଳ ବିଶ୍ୱବିଦ୍ୟାଳୟ ମାଧ୍ୟମରେ ପଠାଇବାକୁ ଅଫିସରେ ଦାଖଲ କଲି ମାତ୍ର ସେକ୍ସନ ଅଫିସର ଆମ ବିଭାଗର ଦୁଇଜଣ ଅଧ୍ୟାପକଙ୍କ ଦ୍ୱାରା ପ୍ରଭାବିତ ହୋଇ ମୋ ଦରଖାସ୍ତକୁ ପଠାଇଲେ ନାହିଁ । ସେ ମୋତେ ଫେରାଇ ଦେଲେ । ୧୯୯୬ ମସିହା ନଭେମ୍ବର ମାସରେ ମୁଁ ବିଶ୍ୱଭାରତୀରୁ ଚିଠି ପାଇଲି ଇଣ୍ଟରଭ୍ୟୁକୁ ଯିବାପାଇଁ । ଏଥର ମୁଁ କୁଳପତି ଗୌରବାବୁଙ୍କୁ ଭେଟିଲି । ସେ ମୋ ଦରଖାସ୍ତର ଛ'ଟି କପିକୁ ମୋ ହାତରେ ଫରଓ୍ୱାର୍ଡ଼ କରି ଦେଲେ ଓ ମୁଁ ସେଠାକୁ ଯିବାରେ କୌଣସି ଆପତ୍ତି ନାହିଁ ବୋଲି ଚିଠି ଲେଖିଦେଲେ । ମୁଁ କଲିକତା ଯାଇ ଇଣ୍ଟରଭ୍ୟୁ ଦେଇଆସିଲି । ମୁଁ ପ୍ରଥମ ହେଲି । ୧୯୯୭ ମସିହା ଜାନୁୟାରୀ ମାସ ପହିଲା ତାରିଖରେ ଜଏନ୍ କରିବାକୁ ଚିଠି ପାଇଲି । ସେତେବେଳକୁ ଡକ୍ଟର ନିତ୍ୟାନନ୍ଦ ନାୟକ ବିଭାଗର ମୁଖ୍ୟ । ଆଶୁବାବୁ ଓ ସେ ଉଭୟ ମିଳି ମୋତେ ବିଭାଗର କ୍ଲିୟରାନ୍ସ ସାର୍ଟିଫିକେଟ୍ ଦେଲେ ନାହିଁ । ବରଂ ମୁଁ କିପରି ନ ଯାଏ ତାହାର ସମସ୍ତ ଅପକୌଶଳ କଲେ । ମୁଁ ବିଭାଗୀୟ ମୁଖ୍ୟ ଥିଲାବେଳେ କୁଆଡ଼େ ଲକ୍ଷାଧିକ ଟଙ୍କାର ହିସାବ ଦେଇ ନାହିଁ, ସେମିନାର ବହି ଫେରାଇ ନାହିଁ- ଇତ୍ୟାଦି ଅଭିଯୋଗମାନ ଅଫିସକୁ ପଠାଇଥାଆନ୍ତି । ତେଣୁ ଅଫିସ ମଧ୍ୟ ମୋତେ ସହଯୋଗ କଲା ନାହିଁ । ରେଜିଷ୍ଟ୍ରାର ପାଲବାବୁ ସେମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ମୋତେ ରିଲିଭ କଲେ ନାହିଁ । ମୁଁ କୁଳପତି ଗୌରବାବୁଙ୍କୁ ସାକ୍ଷାତ୍ କରି ସମସ୍ତ କଥା କହିବାରେ ସେ ସଙ୍ଗେସଙ୍ଗେ ରେଜିଷ୍ଟ୍ରାର ଓ ସେକ୍ସନ ଅଫିସରଙ୍କୁ ଡକାଇ ମୋତେ ରିଲିଭ ଅର୍ଡ଼ର ଦେବାକୁ କହିଲେ । ସେ ମଧ୍ୟ ଦୁଇବର୍ଷ ପାଇଁ ମୋତେ ଲିଅନ ଦେଲେ । ପରେ ମୁଁ ବିଭାଗର ଅଭିଯୋଗକୁ ପୂରଣ କରିବି ବୋଲି ଲେଖି ଦେଇଗଲି । ମୁଁ ବିଶ୍ୱଭାରତୀରେ ପ୍ରଫେସର ଭାବରେ ଯୋଗ ଦେଲା ପରେ ଛୁଟି ନେଇ ବାଣୀବିହାର ଆସିଲି । ସେମିନାର ବହିଗୁଡ଼ିକୁ ଯେଉଁ ସବୁ ପିଲା ନେଇଥିଲେ ସେମାନଙ୍କଠାରୁ ଆଣି ଦାଖଲ କଲି । ଅବଶିଷ୍ଟ ୨୭ ଖଣ୍ଡ ବହି ଯିଏ ନେଇଥିଲେ ସେ ଦେଲେ ନାହିଁ । ଟଙ୍କା

ବାବଦରେ ବିଭାଗର ମୁଖ୍ୟ କିରାଣି ଗୋପୀନାଥ ମିଶ୍ର ଅଡିଟର୍‌ଙ୍କୁ ଡକାଇ ସମସ୍ତ କାଗଜପତ୍ର ଅଡିଟ୍ କରାଇଦେଲେ । ତଥାପି ନିତ୍ୟାନନ୍ଦ ନାୟକ ଓ ସଂଘମିତ୍ରା ମିଶ୍ରଙ୍କ ବିଭାଗୀୟ ମୁଖ୍ୟ ସମୟରେ ମୋର କ୍ଲିୟରାନ୍ସ ଗଲା ନାହିଁ । ଡକ୍ଟର ସୁରେନ୍ଦ୍ର ନାଥ ଦାଶ ବିଭାଗୀୟ ମୁଖ୍ୟ ହେଲା ପରେ କ୍ଲିୟରାନ୍ସ ଦେଲେ । ଏହାହିଁ ହେଲା ମୋର ବାଣୀବିହାରର ଅଠର ବର୍ଷର ଅଭିଜ୍ଞତା । କେତେ ଆନନ୍ଦ ବିଷାଦ, ସଂଘର୍ଷ ଓ ବିରୋଧ ଭିତରେ ମୋର ସେଠି ଅଠର ବର୍ଷ କଟିଯାଇଛି । କାହାର ମୁଁ କିଛି କ୍ଷତି କରି ନାହିଁ । ବରଂ ଅନେକଙ୍କୁ ସାହାଯ୍ୟ କରିଛି । ପ୍ରାୟ ବିଭିନ୍ନ ସମୟରେ ମୁଁ ନାନା ସଭାସମିତିକୁ ଯାଏ, ଲେଖାଲେଖି କରେ, ସେମିନାରରେ ଯୋଗ ଦିଏ । ଏହି ସମୟରେ ମୋର ଅନେକ ବହି ବାହାରିଛି । ପତ୍ରପତ୍ରିକାରେ ମଧ୍ୟ ଅନେକ ଲେଖା ବାହାରିଛି । ବହୁ ସାରସ୍ୱତ ଅନୁଷ୍ଠାନରେ ମଧ୍ୟ ସଭ୍ୟ ହୋଇଛି । ଛାତ୍ରଛାତ୍ରୀମାନଙ୍କ ସହିତ ମୋର ଉତ୍ତମ ସଂପର୍କ ବଢ଼ିଉଠିଛି । ସବୁ ଦୁଃଖ ଭିତରେ ଛାତ୍ରଛାତ୍ରୀଙ୍କ ମୁହଁକୁ ଚାହିଁଦେଲେ ମୁଁ ସବୁ ଭୁଲିଯାଏ । ଏବେ ମଧ୍ୟ ବହୁ ଛାତ୍ରଛାତ୍ରୀ ମୋ ମାନସପଟରେ ନାଚିଉଠନ୍ତି । ସେମାନଙ୍କୁ ମୁଁ ଭୁଲିପାରେ ନାହିଁ । ଏହିପରି ଭାବରେ ମୋର ବାଣୀବିହାରର ସମୟ ଅତିବାହିତ ହୋଇଗଲା । ବାଣୀବିହାରର ଅନେକ ଛାତ୍ରଛାତ୍ରୀ ମୋର ଅଭୁଲା ହୋଇ ରହିଛନ୍ତି । ଡ. ଭୀମ ପୃଷ୍ଟି ସଂପ୍ରତି ଜଣେ ବିଶିଷ୍ଟ କଥାକାର । ଡ. ହୃଷୀକେଶ ମଲ୍ଲିକ, ଡ. ଶତ୍ରୁଘ୍ନ ପାଣ୍ଡବ ବିଶିଷ୍ଟ କବି । ଡ. ପ୍ରଦୀପ୍ତ ପଣ୍ଡା, ଡ. କୃଷ୍ଣଚନ୍ଦ୍ର ପ୍ରଧାନ, ଡ. ପ୍ରସନ୍ନ ସ୍ୱାଇଁ, ଡ. ସଦାନନ୍ଦ ନାୟକ ପ୍ରମୁଖ ବହୁ ଛାତ୍ର ଓଡ଼ିଶାର ସାରସ୍ୱତ ଜଗତରେ ସୁନାମ ଅର୍ଜନ କରିଅଛନ୍ତି ।

ମୁଁ ବାଣୀବିହାରରେ ଥିଲାବେଳେ ରିଡର୍ ପୋଷ୍ଟ ପାଇଁ ଇଣ୍ଟରଭ୍ୟୁ ହୋଇଥିଲା । ଡକ୍ଟର ବିଜୟ କୁମାର ଶତପଥୀ ଥିଲେ ଜଣେ ପ୍ରାର୍ଥୀ । ଇଣ୍ଟରଭ୍ୟୁରେ ତାଙ୍କୁ ଦ୍ୱିତୀୟ କରାଗଲା । ଯିଏ ପ୍ରଥମ ହେଲେ ସେ ଜଏନ୍ କରି ଅଳ୍ପ କେତୋଟି ଦିନ ମଧ୍ୟରେ ବିଶ୍ୱଭାରତୀକୁ ଚାଲିଗଲେ । ବିଜୟବାବୁ ହାଇକୋର୍ଟରେ ମକଦ୍ଦମା କରି ବିଜୟୀ ହେଲେ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲେ । ସେ ମୋ ଛାତ୍ର ସଦୃଶ । ଅତ୍ୟନ୍ତ ବିଦ୍ୱାନ୍ । ବିଶିଷ୍ଟ ନାଟ୍ୟକାର ଓ ସମାଲୋଚକ । ଅଥଚ ତାଙ୍କୁ ଅବହେଳା କରି ଦେଇଥିଲେ । ତାଙ୍କର ପ୍ରଫେସର ଇଣ୍ଟରଭ୍ୟୁ ବେଳେ ମୁଁ ଆସିଥିଲି । କୁଳପତି ଅରୁଣ କୁମାର ସାମନ୍ତରାୟ । ବିଜୟବାବୁ ପ୍ରଫେସର ହେଲେ । ତାଙ୍କୁ ଉପେକ୍ଷା କରାଯାଇଥିବା ଜାଣି ଦୁଃଖ ପ୍ରକାଶ କଲେ । ମୁଁ ଗୋଟିଏ କଥା ଅନୁଭବ କଲି ଯେ ବିଶ୍ୱବିଦ୍ୟାଳୟମାନଙ୍କରେ କୁଳପତିମାନେ ଜ୍ଞାନୀ, ଦକ୍ଷ, ପ୍ରିୟାପ୍ରୀତିହୀନ ଓ ସଚ୍ଚୋଟ ହେଲେ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ବଢ଼େ । ସଂକୀର୍ଣ୍ଣ ହୋଇଗଲେ ମର୍ଯ୍ୟାଦା ଚାଲିଯାଏ । କୁଳପତିମାନେ ଯେଉଁଠି ନିଜେ ସବୁ ଜାଣନ୍ତି, ସବୁ ବିଦ୍ୟା ତାକୁ ଜଣା ବୋଲି କହନ୍ତି ସେଠି ଅଶାନ୍ତି ସୃଷ୍ଟି ହୁଏ ।

ଫଳରେ ଉଚ୍ଚଶିକ୍ଷା କ୍ଷେତ୍ରରେ ଯେଉଁ ଅବକ୍ଷୟ ଦେଖାଦେଉଛି ତାହାର କାରଣ ଅନେକ ଥିଲେ ମଧ୍ୟ କୁଳପତିମାନଙ୍କ ଖିଆଲି ମନୋଭାବ ଯେ ଏକ କାରଣ ତାହା ମୋର ଧାରଣା ସୃଷ୍ଟି କଲା । ସେହି ଉତ୍କଳ ବିଶ୍ୱବିଦ୍ୟାଳୟରେ ଥିଲାବେଳେ ମୁଁ ବହୁ ବିଜ୍ଞ ଅଧ୍ୟାପକମାନଙ୍କ ସଂପର୍କରେ ଆସିଛି । ପ୍ରଫେସର ଯତୀନ୍ଦ୍ରନାଥ ମହାନ୍ତି, ପ୍ରଫେସର ଗଣେଶ୍ୱର ମହାନ୍ତି, ପ୍ରଫେସର କରୁଣା ସାଗର ବେହେରା, ପ୍ରଫେସର ଅଶୋକ ପଟ୍ଟନାୟକ, ପ୍ରଫେସର ଅନାମ ସ୍ୱାଇଁ, ପ୍ରଫେସର ବିୟତ୍‌କେଶ ତ୍ରିପାଠୀ, ପ୍ରଫେସର ମହାଜିତେଶ୍ୱର ଦାସ ପ୍ରମୁଖ ବିଜ୍ଞ ବ୍ୟକ୍ତିଙ୍କଠାରୁ ଅନେକ କିଛି ଶିକ୍ଷାଲାଭ କରିଛି । ଇଂରାଜୀ ବିଭାଗର ଡକ୍ଟର ବିରାଜ ମୋହନ ଦାସଙ୍କ ଶ୍ରଦ୍ଧା ମୋର ସବୁଦିନେ ମନେରହିବ । ସେ ଜଣେ ଗଳ୍ପକାର ଓ ସମାଲୋଚିତ । ମୁଁ ବାଣୀବିହାରରେ ଥିଲାବେଳେ ସେ ମୋ ସୁଖଦୁଃଖରେ ଭାଗୀଦାର ହୋଇଛନ୍ତି ।

## ବିଶ୍ୱଭାରତୀରେ ମୋର ସାତ ବର୍ଷ

ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ରିଲିଭ ହୋଇ ଗଲାବେଳେ ପରଂପରା ଅନୁସାରେ ମୋତେ ବିଦାୟ ସମ୍ବର୍ଦ୍ଧନା ଦିଆଗଲା ନାହିଁ । ଆଶୁବାବୁ ଓ ବିଭାଗୀୟ ମୁଖ୍ୟ ଏଥିରେ ବାଧା ଦେଲେ । ମୁଁ ମଧ୍ୟ କୌଣସି କଥା ଚିନ୍ତା ନ କରି ବିଶ୍ୱଭାରତୀକୁ ଚାଲିଗଲି । ସେଦିନ ଥିଲା ୧୯୯୭ ମସିହା ଏପ୍ରିଲ ପହିଲା । ହାଓ୍ୱଡ଼ା ରେଳଷ୍ଟେସନରେ ଓହ୍ଲାଇଲା ବେଳେ କଲିକତାର କେତେଜଣ ବିଶିଷ୍ଟ ବ୍ୟକ୍ତି ମୋତେ ସ୍ୱାଗତ କଲେ ଓ ସେଦିନ କଲିକତାର ଓଡ଼ିଆ ସମାଜ ଦ୍ୱାରା ଆୟୋଜିତ ଓଡ଼ିଶା ଦିବସ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଭାଷଣ ଦେବାକୁ ଅନୁରୋଧ କଲେ । ପୂର୍ବରୁ ସେମାନେ ଚିଠି ଦେଇଥିଲେ ଓ ମୁଁ ମଧ୍ୟ ସ୍ୱୀକୃତି ଦେଇଥିଲି । କ'ଣ କରିବି ? ମୁଁ ତ ବିଶ୍ୱଭାରତୀରେ ଏପ୍ରିଲ ପହିଲା ଦିନ ଜଏନ କରିବି ବୋଲି ପୂର୍ବରୁ ଚିଠି ଦେଇଥିଲି । ଅଗତ୍ୟା ମୁଁ ବନ୍ଧୁମାନଙ୍କ ସହିତ ଗଲି ଓ ଗୋଟିଏ ଗେଷ୍ଟହାଉସରେ ରହି ମୋର ନିତ୍ୟକର୍ମ ସାରିଲି । ଦଶଟା ବେଳକୁ ଗୋଟିଏ ପାଠାଗାର ହଲ୍‌କୁ ମୋତେ ନେଇଗଲେ । ସେଠିକି ଆସିଥାଆନ୍ତି ବିଶିଷ୍ଟ କଥାକାର ରାମଚନ୍ଦ୍ର ବେହେରା । ସେଠାରେ ମଧ୍ୟ ଓଡ଼ିଆ ସାହିତ୍ୟର ସାଂପ୍ରତିକ ପରିସ୍ଥିତି ଓ ପରିବେଶ ସଂପର୍କରେ ଭାଷଣ ଦେଲି । ସନ୍ଧ୍ୟାବେଳକୁ ରବୀନ୍ଦ୍ର ଭବନରେ ହେଲା ଓଡ଼ିଶା ଦିବସ ଉତ୍ସବ । ସେଠାକୁ ଗଲି । ବଙ୍ଗଳାର ଜଣେ ମନ୍ତ୍ରୀ ଆସିବାର କଥା । ବିଳମ୍ବ ହେବାରୁ ତାଙ୍କୁ ଅପେକ୍ଷା ନ କରି ଠିକ୍ ସମୟରେ ସଭା ଆରମ୍ଭ ହେଲା । ମୁଁ ମୋର ବକ୍ତବ୍ୟ ଦେଉଥିଲାବେଳେ ମନ୍ତ୍ରୀ ମହୋଦୟ ଆସିଲେ । ସେ କେତେବେଳେ ଆସି ସଭା ମଞ୍ଚରେ

ବସିଗଲେଣି ମୁଁ ଜାଣିପାରି ନ ଥିଲି । ଆମ ଓଡ଼ିଶାର ମନ୍ତ୍ରୀମାନେ ସଭାକୁ ଆସିଲେ ଯେମିତି ପୋଲିସମାନେ ଜମା ହୋଇଯାଆନ୍ତି ସେପରି ସେଠି ନ ଥିଲା । ଏପରିକି ଆମ ଏଠି ଯେପରି ମନ୍ତ୍ରୀଙ୍କ ସହିତ କର୍ମୀମାନେ ଆସନ୍ତି ତାହା ମଧ୍ୟ ନ ଥିଲା । ମୋ ଭାଷଣରେ ଲୋକେ ମୁଗ୍ଧ ହେଲେ ଓ ମୋତେ ଅଧିକ ସମୟ କହିବାକୁ ଅନୁରୋଧ କଲେ । ମୁଁ ଭାଷଣ ଶେଷ କରି ସେଦିନ କଲିକତାରେ ରହିଲି ଓ ପରଦିନ ବିଶ୍ୱଭାରତୀକୁ ଆସି ଜଏନ୍ କଲି । ଏଇଠୁ ଆରମ୍ଭ ହେଲା ମୋର ବିଶ୍ୱଭାରତୀ ଜୀବନ । ପ୍ରଥମେ ମୁଁ ଗୋଟିଏ ଭଡ଼ାଘରେ ରହିଲି ଓ ପରେ ମୁଁ କ୍ୱାର୍ଟରକୁ ଗଲି ।

ବିଶ୍ୱଭାରତୀରେ ଓଡ଼ିଆ ବିଭାଗ ବିଳମ୍ବରେ ଖୋଲିଥିଲା । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ୧୯୩୯ ମସିହାରେ ଓଡ଼ିଶାକୁ ଆସିଥିଲେ । ତତ୍‌କାଳୀନ ଓଡ଼ିଶା ସରକାର ତାଙ୍କୁ ପୁରୀରେ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲେ । ପୁରୀ ଗଜପତି ତାଙ୍କୁ ସ୍ୱତନ୍ତ୍ର ଭାବରେ ସମ୍ବର୍ଦ୍ଧନା ଜଣାଇ ଗୋଟିଏ ମାନପତ୍ର ଓ ପାଟଖଣ୍ଡୁଆ ଦେଇଥିଲେ । ତାହା ଏବେ ମଧ୍ୟ ବିଶ୍ୱଭାରତୀର ରବୀନ୍ଦ୍ର ମିଉଜିୟମରେ ସଂରକ୍ଷିତ । ତତ୍‌କାଳୀନ ବହୁ ସାରସ୍ୱତ ଅନୁଷ୍ଠାନ ଓ ଲେଖକମାନେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇଥିଲେ । ନୋବେଲ ପୁରସ୍କାର ମଧ୍ୟ ସେ ପାଇଥିଲେ । ସମସ୍ତ ପ୍ରଶଂସାପତ୍ର ଓ ତାଙ୍କର ପୁସ୍ତକ ତଥା ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ସେହି ମିଉଜିୟମରେ ରହିଅଛି । ରବୀନ୍ଦ୍ରନାଥଙ୍କ ବାପା ମହର୍ଷି ଦେବେନ୍ଦ୍ରନାଥ ଠାକୁର । ସେ ଥିଲେ ବ୍ରାହ୍ମ । ଆଦି ବ୍ରାହ୍ମ ସମାଜର ସେ ଥିଲେ ଅନ୍ୟତମ ବିଦ୍ୱାନ୍ ଓ ଟାଣୁଆ ସଦସ୍ୟ । ୧୮୪୩ ମସିହାରେ ସେ 'ତତ୍ତ୍ୱବୋଧିନୀ' ପତ୍ରିକା ବାହାର କରି ସେଥିରେ ମାତୃଭାଷା ଓ ସ୍ୱଦେଶପ୍ରେମର ଗୁରୁତ୍ୱ ସଂପର୍କରେ ଲେଖିବା ସହିତ କୃଷି ଓ କୃଷକଙ୍କ ଉନ୍ନତି ପାଇଁ ମଧ୍ୟ ଲେଖାଲେଖି କରୁଥିଲେ । କୌଣସି କାରଣରୁ ଆଦି ବ୍ରାହ୍ମସମାଜ ସହିତ ତାଙ୍କର ମତଭେଦ ହେବାରୁ ସେ ଚୀନ, ତିବ୍ବତ ଓ ଶ୍ରୀଲଙ୍କା ଆଦି ଦେଶକୁ ଯାଇ ବୌଦ୍ଧଧର୍ମ ସଂପର୍କରେ ନାନା ତଥ୍ୟ ସଂଗ୍ରହ କରିଥିଲେ । ୧୮୬୦ ମସିହାରେ ସେ ଆସିଲେ ଶାନ୍ତିନିକେତନକୁ । ସେତେବେଳେ ଶାନ୍ତିନିକେତନ ଅଞ୍ଚଳରେ ସାନ୍ତାଳମାନେ ବସବାସ କରୁଥିଲେ । ସେଠାରେ ପହଞ୍ଚି ଗୋଟିଏ ବରଗଛ ମୂଳରେ ବସି ସନ୍ତୋଷ ଲାଭ କରିବାରୁ ସେଇଠି ଆଶ୍ରମଟିଏ ସ୍ଥାପନ କରିବାକୁ ଚିନ୍ତା କଲେ । ବର୍ଦ୍ଧମାନର ରାଜା ତାଙ୍କୁ ସହଯୋଗ କଲେ । ବିସ୍ତୃତ ଅଞ୍ଚଳର ଜମି ଅଧିଗ୍ରହଣ କଲେ । ଗୋଟିଏ ଛତିମ ଗଛମୂଳରେ ବସି ସେ ଧ୍ୟାନମଗ୍ନ ହେଲେ ଓ ବୁଧବାର ଦିନ ସିଦ୍ଧି ଲାଭ କଲେ । ୧୮୬୧ ମସିହାରେ ସେଠି ସେ ଆଶ୍ରମ ସ୍କୁଲ ପ୍ରତିଷ୍ଠା କଲେ । ସେହି ବର୍ଷ ରବୀନ୍ଦ୍ରନାଥଙ୍କର ଜନ୍ମ ହେଲା । ଆଶ୍ରମ ପରିବେଶକୁ ସେ ଚମତ୍କାର ରୂପ ଦେଲେ । ଧାଡ଼ିଧାଡ଼ି ଆମ୍ବଗଛ ଲଗାଇ ତା'ର ନାମକରଣ କଲେ ଆମ୍ରବୀଥିକା । ସେହିପରି ବଉଳ

ଗଛ ଲଗାଇ ତା'ର ନାମ ଦେଲେ ବକୁଳବୀଥିକା । ସେହି ଗଛମୂଳେ ପିଣ୍ଡି କରାଗଲା ଓ ତା'ର ସମ୍ମୁଖରେ ଗୋଲାକୃତି ବିଶିଷ୍ଟ ସରୁ ସରୁ ଗୋଡ଼ି ପଡ଼ି ପିଲାଙ୍କ ବସିବା ପାଇଁ ସ୍ଥାନ ପ୍ରସ୍ତୁତ ହେଲା । ସେହି ପିଣ୍ଡି ଉପରେ ବସି ଶିକ୍ଷକ ପଢ଼ାଇବେ ଓ ପିଲେ ଆଗରେ ତଳେ ବସି ପାଠ ପଢ଼ିବେ । ସେ ମଧ୍ୟ କେତୋଟି ଗୃହ ନିର୍ମାଣ କଲେ ଓ ତାହାର ନାମ ଦେଲେ 'ଶାନ୍ତିନିକେତନ ବାଡ଼ି' (୧୮୬୩) । ନିଜେ ସପରିବାର ରହିବା ପାଇଁ ଗୋଟିଏ ପ୍ରାସାଦ ନିର୍ମାଣ କଲେ । ସେ ରାଜା ବା ଜମିଦାର ଥିବାରୁ ପ୍ରଜାମାନେ ସେଠାକୁ ଆସି ତାଙ୍କୁ ନାନା କଥା ଜଣାନ୍ତି । ଓଡ଼ିଶାର ଜଗତ୍‌ସିଂହପୁର ଜିଲ୍ଲା ଅନ୍ତର୍ଗତ ପାଣ୍ଡୁଆ ମଧ୍ୟ ତାଙ୍କ ଜମିଦାରୀ ଥିଲା । ପରେ ରବୀନ୍ଦ୍ରନାଥ ସେଠାକୁ ଆସି କେତେ କାବ୍ୟକବିତା ଲେଖିଥିଲେ । ଥରେ ମହର୍ଷି ଦେବେନ୍ଦ୍ର ନାଥ ପାଣ୍ଡୁଆରୁ ଶବାରିରେ ବସି ପୁରୀ ଜଗନ୍ନାଥ ଦର୍ଶନକୁ ଆସିଥିଲେ । ସିଏ ତ ବ୍ରାହ୍ମ । ତେଣୁ ପିତୁଳାପୂଜା ବିରୋଧୀ । ହିନ୍ଦୁମାନଙ୍କର ବିରାଟ ଦେବତା ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ତାଙ୍କର ମନ ହେଲା । ତେଣୁ ସେ ଶବାରିବାଲାଙ୍କ ଡାକେ ଡାକେ ଜଗନ୍ନାଥ ସଡ଼କ ଦେଇ ପୁରୀର ବଡ଼ଦାଣ୍ଡରେ ପହଞ୍ଚିଲେ । ଅରୁଣସ୍ତମ୍ଭ ପାଖରେ ଶବାରିରୁ ଓହ୍ଲାଇ ସେ ବାଇଶି ପାହାଚ ଦେଇ ମନ୍ଦିରକୁ ଯିବାବେଳେ ହଠାତ୍ ଝୁଣ୍ଟି ପଡ଼ିବାରୁ ଆଖିରୁ ଚଷମାଟି ଖସିପଡ଼ି ଟୁକୁରାଟୁକୁରା ହୋଇଗଲା । ତାଙ୍କୁ ସବୁ ଝାପ୍‌ସା ଦିଶିଲା । ସେ ମନେକଲେ ତାଙ୍କର ସକଳ ଅହଙ୍କାର ଯେମିତି ଭାଙ୍ଗିଗଲା । ସେ ବାଇଶି ପାହାଚ ଦେଇ ମନ୍ଦିର ଭିତରକୁ ଗଲେ । ମାତ୍ର ସେ ଜଗନ୍ନାଥଙ୍କୁ ଦେଖିପାରିଲେ ନାହିଁ । ସେ ଦେଖିଲେ କେବଳ ମେଞ୍ଚା ମେଞ୍ଚା ଅନ୍ଧାର । ସେହି ଅନ୍ଧାର ଭିତରେ ଜଗନ୍ନାଥ ଯେମିତି ଏକାକାର ହୋଇଯାଇଛନ୍ତି । ପୁନର୍ବାର ସେ ଭାବିଲେ ଯେଉଁ ଅହଙ୍କାର ନେଇ ହିନ୍ଦୁମାନଙ୍କର ବିରାଟ ପିତୁଳାକୁ ଦେଖିବାକୁ ଆସିଥିଲେ ତାହାକୁ ସେ ଦେଖିପାରିଲେ ନାହିଁ । ଜଗନ୍ନାଥ ସ୍ୱୟଂ ବ୍ରହ୍ମ ବା ପରମାତ୍ମା, ତାହା ସେ ଉପଲବ୍ଧି କଲେ । ତା'ପରେ ସେ ଆନନ୍ଦ ବଜାରକୁ ଗଲେ । ଶହଶହ ନରନାରୀ ସେଠି ଗୋଟିଏ ଅବଢ଼ା ହାଣ୍ଡିରେ ହାତ ପୂରାଇ ମହାପ୍ରସାଦ ସେବନ କରୁଥାନ୍ତି । ସେଠି ରାଜା, ପ୍ରଜା, ଧନୀ, ଦରିଦ୍ର ଜାତି ଅଜାତିର ଭେଦ ନାହିଁ । ମହାପ୍ରସାଦ ସେବନ କରି ମୁଣ୍ଡରେ ହାତ ପୋଛି ଦେଉଥାନ୍ତି । ସେ ଧନ୍ୟ ଧନ୍ୟ କଲେ ଓଡ଼ିଆମାନଙ୍କୁ । ଏହି ଗୋଟିଏ କଳ୍ପନାରେ ସାରା ବିଶ୍ୱକୁ ସେମାନେ ଯେ ଅତିକ୍ରମ କରିଯାଇଛନ୍ତି ତାହା ସେ ମନେକଲେ । ଏକଥାକୁ ସେ ତାଙ୍କର ଆତ୍ମଚରିତରେ ୧୮୯୮ ମସିହାରେ ଲେଖିଥିଲେ ।

ରବୀନ୍ଦ୍ରନାଥ କୌଣସି ସ୍କୁଲ କଲେଜକୁ ଯାଇନଥିଲେ । ବାପା ତାଙ୍କୁ ଘରେ ଗୃହଶିକ୍ଷକ ରଖାଇ ନାନା ବିଦ୍ୟାରେ ପାରଙ୍ଗମ କରାଇଥିଲେ । ମାତ୍ର ବାର/ତେର ବର୍ଷ ବୟସ ବେଳକୁ ସେ ଗଳ୍ପ, କବିତା ଆଦି ଲେଖାଲେଖି କଲେ । ବାପାଙ୍କ ମୃତ୍ୟୁବେଳକୁ

ସେ ପ୍ରସିଦ୍ଧ ଲେଖକ ରୂପେ ପ୍ରତିଷ୍ଠା ପାଇସାରିଲେଣି । ୧୯୧୩ ମସିହାରେ ସେ 'ଗୀତାଞ୍ଜଳି' କବିତା ଗ୍ରନ୍ଥ ପାଇଁ ନୋବେଲ ପୁରସ୍କାର ପାଇଥିଲେ । ତାଙ୍କର ପ୍ରସିଦ୍ଧି ବିଶ୍ୱବ୍ୟାପୀ ହୋଇଗଲା । ସେ ବିଭିନ୍ନ ଦେଶକୁ ଗଲେ । ତାଙ୍କର ଦୃଷ୍ଟିକୋଣ ହେଲା ବିଶ୍ୱପ୍ରସାରୀ । ପିତା ଦେବେନ୍ଦ୍ରନାଥ ୧୮୯୦ ମସିହାରେ ଏକ ବ୍ରାହ୍ମ ଉପାସନା ମନ୍ଦିର ନିର୍ମାଣ କରାଇଥିଲେ । ବିଭିନ୍ନ ରଙ୍ଗର କାଚ ଏଥିରେ ବ୍ୟବହୃତ ହୋଇଥିଲା । ଏହା ଶୂନ୍ୟ ମନ୍ଦିର । ପ୍ରତି ବୁଧବାର ସକାଳବେଳା ଏଠି ପ୍ରାର୍ଥନା କରାଯାଏ । ୧୮୯୬ ମସିହାରେ ଯାତ୍ରାଗାନର ବ୍ୟବସ୍ଥା ହୋଇଥିଲା ମାତ୍ର ପରେ ରବୀନ୍ଦ୍ରନାଥ ସେହି ମେଳାକୁ କେନ୍ଦ୍ର କରି ଗ୍ରାମ-ବଙ୍ଗଳାର ସଂସ୍କୃତି, ଗ୍ରାମ-ବଙ୍ଗଳାର କୁଟୀରଶିଳ୍ପ ପ୍ରଦର୍ଶନର ବ୍ୟବସ୍ଥା କଲେ । ତାହା କ୍ରମେ ପ୍ରସାର ଲାଭ କରିବାରୁ ପୂର୍ବପଲ୍ଲୀର ବିଶ୍ୱଭାରତୀ କେନ୍ଦ୍ରୀୟ ଅଫିସକୁ ଲାଗି ବିରାଟ ପଡ଼ିଆରେ ମେଳା ଅନୁଷ୍ଠିତ ହେଲା ଓ ଏବେ ମଧ୍ୟ ହେଉଅଛି । ଏହାକୁ ପୌଷ ମେଳା କୁହାଯାଏ । ଭାରତର ବିଭିନ୍ନ ପ୍ରଦେଶରୁ ନାନା ଧରଣର ବ୍ୟବସାୟୀମାନେ ଆସି ଦୋକାନ ପକାନ୍ତି । ସାଂସ୍କୃତିକ ଦଳମାନେ ଆସି ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ କରନ୍ତି । ରବୀନ୍ଦ୍ରନାଥ ବାଉଲ ସଙ୍ଗୀତ ଓ ନୃତ୍ୟକୁ ଶ୍ରଦ୍ଧା କରୁଥିବାରୁ ମେଳା ସମୟରେ ମଧ୍ୟ ବାଉଲ ନୃତ୍ୟ ଓ ସଙ୍ଗୀତ ପରିବେଷଣ କରାଇବାକୁ ବ୍ୟବସ୍ଥା କଲେ । ବିଶ୍ୱଭାରତୀ କର୍ତ୍ତୃପକ୍ଷ ଏହି ମେଳାର ଆୟୋଜନ କରନ୍ତି । ମୋର ସାତବର୍ଷର ରହଣି ଭିତରେ ପ୍ରତି ବର୍ଷ ଏହି ମେଳା ଦେଖି ମୁଁ ମୁଗ୍ଧ ହୁଏ । ଲକ୍ଷାଧିକ ଲୋକଙ୍କର ସମାଗମ ହୁଏ ।

ମହର୍ଷି ଦେବେନ୍ଦ୍ରନାଥ ୧୮୮୮ ମସିହାରେ ଗୋଟିଏ ଟ୍ରଷ୍ଟ ଡିଡ୍ ସଂପାଦନା କରିଥିଲେ । ଏହି ଡିଡ୍‌ରେ ଲେଖା ଅଛି ଯେ ଶାନ୍ତିନିକେତନ ପରିସର ମଧ୍ୟରେ କୌଣସି ପିତୁଳା ପୂଜା ବା ତତ୍‌ସଂପର୍କିତ ଉତ୍ସବ ହୋଇପାରିବ ନାହିଁ । ଏକ ନିରାକାର ବ୍ରହ୍ମଙ୍କ ଉପାସନା ଓ ଅଧ୍ୟାତ୍ମ ସାଧନା ପାଇଁ କେବଳ ବ୍ୟବସ୍ଥା ହୋଇଥିଲା । ମୋ ଦେଖିବା ଭିତରେ ଶାନ୍ତିନିକେତନ ପରିସର ମଧ୍ୟରେ କୌଣସି ପୂଜାପାର୍ବଣ ହୁଏ ନାହିଁ । ବୋଲପୁରରେ ଦୁର୍ଗାପୂଜା, କାଳୀପୂଜା ଇତ୍ୟାଦି ହୁଏ ।

୧୯୦୧ ମସିହାରେ ରବୀନ୍ଦ୍ରନାଥ ଗୋଟିଏ ବିଦ୍ୟାଳୟ ଆରମ୍ଭ କଲେ । ସେ ଅନୁଭବ କରିଥିଲେ ଶିକ୍ଷା ବ୍ୟବସ୍ଥା ଏପରି ହେବା ଉଚିତ, ଯାହା ମନୁଷ୍ୟର ସର୍ବାଙ୍ଗୀଣ ବିକାଶ କରାଇପାରିବ । ଭାରତବର୍ଷର ପୁରାତନ ଆଶ୍ରମିକ ଶିକ୍ଷାକୁ ରବୀନ୍ଦ୍ରନାଥ ଗୁରୁତ୍ୱ ଦେଇ ସେହି ଢାଞ୍ଚାରେ ସେ ବିଦ୍ୟାଳୟ ପ୍ରତିଷ୍ଠା କଲେ । ତା'ର ନାମ ହେଲା 'ବ୍ରହ୍ମଚର୍ଯ୍ୟାଶ୍ରମ' । ପରେ ତା'ର ନାମ ହେଲା 'ବ୍ରହ୍ମ ବିଦ୍ୟାଳୟ' । ରବୀନ୍ଦ୍ରନାଥ ପୁନଶ୍ଚ ଚିନ୍ତା କଲେ ଏହି ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କୁ ମନୁଷ୍ୟତ୍ୱର ବିକାଶ ପାଇଁ ଶିକ୍ଷା ଦେବା ସହିତ କୃଷି, ସ୍ୱାସ୍ଥ୍ୟ, ଗୋପାଳନ, ବସ୍ତ୍ରବୟନ ଆଦି ବିଷୟରେ ଶିକ୍ଷା ଦିଆଯିବା

ଉଚିତ । ତେଣୁ ସେ ବିଦ୍ୟାଳୟର ନାମ ଦେଲେ 'ବିଶ୍ୱଭାରତୀ'– ଯାହାକୁ କୁହାଗଲା ବିଶ୍ୱନୀଡ଼, ଯେଉଁଠି ସମଗ୍ର ବିଶ୍ୱ ଅବସ୍ଥାନ କରେ– 'ଯତ୍ର ବିଶ୍ୱଂ ଭବତ୍ୟେକ୍‌ନୀଡ଼ମ୍ ।' ଏହି 'ବିଶ୍ୱଭାରତୀ' ଶବ୍ଦ ୧୯୨୧ ମସିହାରୁ ପ୍ରଚଳିତ ହେଲା । ବୌଦ୍ଧ ସାହିତ୍ୟ, ବେଦ, ସଂସ୍କୃତ, ପାଲି, ପ୍ରାକୃତ ଆଦି ବିଷୟ ପଢ଼ାହେଲା । ରବୀନ୍ଦ୍ରନାଥ ଟ୍ରଷ୍ଟି ଦଲିଲ ସଂପାଦନ କରି ସମସ୍ତ ଜମି ଓ ଗୃହ ଇତ୍ୟାଦିକୁ 'ବିଶ୍ୱଭାରତୀ ସୋସାଇଟି'କୁ ହସ୍ତାନ୍ତରିତ କରିଦେଲେ । ୧୯୫୧ ମସିହାରେ ଯେତେବେଳେ ବିଶ୍ୱଭାରତୀ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେଲା ସେତେବେଳେ ସୋସାଇଟି ସମସ୍ତ ଜମିବାଡ଼ି ଇତ୍ୟାଦିକୁ ବିଶ୍ୱବିଦ୍ୟାଳୟକୁ ହସ୍ତାନ୍ତର କରିଦେଲେ ।

ରବୀନ୍ଦ୍ରନାଥ ମାତ୍ର ପାଞ୍ଚଜଣ ବାଳକଙ୍କୁ ନେଇ ଯେଉଁ ବିଦ୍ୟାଳୟ ଆରମ୍ଭ କରିଥିଲେ ତାହା ସଂପ୍ରତି ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଅଛି । ଏହି ବିଶ୍ୱବିଦ୍ୟାଳୟର ବୈଶିଷ୍ଟ୍ୟ ଶିଶୁ ଶିକ୍ଷା, ହାଇସ୍କୁଲ ଶିକ୍ଷାଠାରୁ ଆରମ୍ଭ କରି କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାକୁ ଅଙ୍ଗୀଭୂତ କରି ନେଇ ଏକ ମହାନ୍ ଶିକ୍ଷାନୁଷ୍ଠାନରେ ପରିଣତ କରିବା । ରବୀନ୍ଦ୍ରନାଥଙ୍କ ମୃତ୍ୟୁ ହେଲା ୧୯୪୧ ମସିହାରେ । ସେପର୍ଯ୍ୟନ୍ତ ସେ ବିଶ୍ୱବିଦ୍ୟାଳୟର ସମସ୍ତ ଦାୟିତ୍ୱ ବୁଝାଶୁଝା କରୁଥିଲେ । ସେ ପତ୍ନୀ ମୃଣାଳିନୀ ଦେବୀଙ୍କ ଅଳଙ୍କାର ବିକ୍ରି କରି ବିଦ୍ୟାଳୟର ବ୍ୟୟଭାର ତୁଲାଉଥିଲେ । ସେ ମଧ୍ୟ ପୁରୀରେ ଥିବା ତାଙ୍କର ବଙ୍ଗଳାକୁ ବିକ୍ରୟ କରି ଦେଇଥିଲେ ସେହି ବିଦ୍ୟାଳୟ ପାଇଁ । ତାଙ୍କର ନୋବେଲ ପ୍ରାଇଜ୍ ଟଙ୍କାକୁ ମଧ୍ୟ ପ୍ରଦାନ କରିଥିଲେ ସେହି ପବିତ୍ର ଅନୁଷ୍ଠାନ ପାଇଁ । ପରେ ବହୁ ବଦାନ୍ୟ ବ୍ୟକ୍ତି ସାହାଯ୍ୟ କରିଛନ୍ତି । ରବୀନ୍ଦ୍ରନାଥଙ୍କ ବ୍ୟକ୍ତିଗତ ପ୍ରଭାବରେ ଚୀନ, ଜାପାନ ଆଦି ଦେଶ ସ୍ୱତନ୍ତ୍ର ସାହାଯ୍ୟ ପ୍ରଦାନ କରିଥିଲେ– ଯାହା ଫଳରେ ଗଢ଼ିଉଠିଥିଲା ଚୀନା ଭବନ, ନିପନ ଭବନ ଇତ୍ୟାଦି । ଦୀନବନ୍ଧୁ ଏଣ୍ଡ୍ରୁଜ ସାହେବ ତାଙ୍କର ସମସ୍ତ ସଙ୍ଗତିକୁ ଶାନ୍ତିନିକେତନକୁ ଦାନ କରି ଦେବା ସହିତ ଦେଶ ବିଦେଶକୁ ଯାଇ ମଧ୍ୟ ବହୁ ଅର୍ଥ ସଂଗ୍ରହ କରିଥିଲେ । ଗାନ୍ଧିଜୀ ମଧ୍ୟ ବିଶ୍ୱଭାରତୀ ପାଇଁ ପ୍ରଚୁର ଅର୍ଥ ସଂଗ୍ରହ କରି ଦେଇଥିଲେ । ରବୀନ୍ଦ୍ରନାଥଙ୍କ ପରିକଳ୍ପନାରେ ଗଠିତ ହେଲା ଶାନ୍ତିନିକେତନ ଓ ଶ୍ରୀନିକେତନ । ପୂର୍ବପଲ୍ଲୀ, ଗୁରୁପଲ୍ଲୀ, ଗୈରିକ, ସଂସ୍କାର ଭବନ, ଦ୍ୱାରିକା ବୀଥିକା, ଦେହଲୀ, ସନ୍ତୋଷାଳୟ, ବେଣୁକୁଞ୍ଜ, କାଲୋବାଡ଼ି, ଉତ୍ତରାୟଣ, ଆନନ୍ଦ–ପାଠଶାଳା, ବିଦ୍ୟାଭବନ, ଶିକ୍ଷାଭବନ, କଳାଭବନ, ସଙ୍ଗୀତ ଭବନ, କୃଷିଭବନ, ପଦ୍ମଭବନ, ସିଂହଭବନ, ଗୌର ପ୍ରାଙ୍ଗଣ ଆଦି ସବୁ କିଛି ରବୀନ୍ଦ୍ରନାଥଙ୍କ କଳ୍ପିତ ନାମ । ଏସବୁ ମିଶି ଶାନ୍ତିନିକେତନ । ଏହାର ଦକ୍ଷିଣପଟେ ଅଜୟ ନଦୀ, ଉତ୍ତରପଟେ କୋପାଇ ନଦୀ ।

ରବୀନ୍ଦ୍ରନାଥଙ୍କ ନିଜର ଭବ୍ୟଭବନ– ଏବେ ବିଶ୍ୱଭାରତୀର ମିଉଜିୟମ । ତାଙ୍କ ବାସଭବନକୁ ଲାଗି ନାଟ୍ୟମନ୍ଦିର । ସେଠି ସଭାସମିତି ହୁଏ । ପ୍ରାୟ ଅଧିକାଂଶ ଦିନ ନାଟକ ଅଭିନୀତ ହୁଏ । ବିଭିନ୍ନ ପ୍ରଦେଶରୁ ନାଟ୍ୟଦଳମାନେ ଆସି ନାଟକ ଅଭିନୟ କରନ୍ତି । ବିଶ୍ୱଭାରତୀର ଗୌରବ ତା'ର କେନ୍ଦ୍ରୀୟ ପାଠାଗାର । ଏହା ଏସିଆ ମହାଦେଶର ଏକ ବୃହତ୍ତମ ପାଠାଗାର । ଏହା ବ୍ୟତୀତ ବିଭିନ୍ନ ବିଭାଗରେ ମଧ୍ୟ ପାଠାଗାର ଅଛି । ପୃଥିବୀର ତଥା ଭାରତର ବିଭିନ୍ନ ମୁଖ୍ୟ ଭାଷାଗୁଡ଼ିକର ବିଭାଗ ଅଛି । ହିନ୍ଦୀ, ବଙ୍ଗଳା, ଓଡ଼ିଆ, ମରାଠୀ, ଅସମୀୟା, ତେଲଗୁ, ତାମିଲ ଆଦି ଭାରତୀୟ ଭାଷାବିଭାଗ ସହିତ ଅଛି ଇଂରାଜୀ, ଚୀନ, ଜାପାନୀ, ତିବ୍ବତୀୟ, ଇଟାଲୀ, ଜର୍ମାନୀ ଆଦି ଭାଷାବିଭାଗ । ସାନ୍ତାଳୀ ଭାଷାର ମଧ୍ୟ ଅଛି ସ୍ୱତନ୍ତ୍ର ବିଭାଗ । ସଂସ୍କୃତ ବିଭାଗ ଏକ ପୁରାତନ ବିଭାଗ । ଇତିହାସ, ଦର୍ଶନ, ଅର୍ଥନୀତି, ମାଥମେଟିକ୍ସ ଆଦି ନାନା ବିଷୟ ବିଦ୍ୟାଭବନ ଅଧୀନରେ ରହିଛି । ସଂପ୍ରତି ବିଦ୍ୟାଭବନକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି– ଭାଷାଭବନ ଓ ବିଦ୍ୟାଭବନ । ରବୀନ୍ଦ୍ରନାଥଙ୍କ ବାସଭବନ ଅଞ୍ଚଳରେ ଗଢ଼ିଉଠିଛି 'ଶ୍ୟାମଳୀ', 'ବସନ୍ତ ନିବାସ' ଓ 'ଫୁଲବଗିଚା' ଇତ୍ୟାଦି । ସେଠାରେ ରବୀନ୍ଦ୍ରନାଥଙ୍କ ସମସ୍ତ ପୁରସ୍କାର ଓ ସମ୍ମାନର ପ୍ରଶଂସାପତ୍ର, ପୁସ୍ତକ, ବ୍ୟବହାର୍ଯ୍ୟ ପଦାର୍ଥ, ସେ ଚଢୁଥିବା ମୋଟର ଆଦି ରଖାଯାଇଛି ।

ବିଶ୍ୱଭାରତୀର ଦୁଇଟି ଅଙ୍ଗ– ଶାନ୍ତିନିକେତନ ଓ ଶ୍ରୀନିକେତନ । ଉଭୟର ମିଳନରେ ବିଶ୍ୱଭାରତୀ । ଶ୍ରୀନିକେତନରେ ଗଢ଼ିଉଠିଲା ଶିଳ୍ପ–ଭବନ । ଏହି ଅଞ୍ଚଳରେ ମଧ୍ୟ କୃଷିଭବନ ଓ ବିଜ୍ଞାନଭବନ ବିଦ୍ୟମାନ । ଶ୍ରୀନିକେତନରେ ପ୍ରଥାଗତ ଶିକ୍ଷାଦାନ ପାଇଁ ଶିକ୍ଷାସତ୍ର, ଶିଳ୍ପ ସଂପର୍କିତ ଶିକ୍ଷାଦାନ ପାଇଁ ଶିଳ୍ପସଦନ ଓ ସାଧାରଣ ଲୋକଙ୍କ ଶିକ୍ଷା ପାଇଁ 'ଲୋକଶିକ୍ଷା ସଦନ' ଗଢ଼ି ଉଠିଥିଲା । ବିଶ୍ୱଭାରତୀରେ ଯୋଗ ଦେଇ ମୁଁ ସବୁ ଅଞ୍ଚଳ ବୁଲିଲି । ଏପରିକି ଅଜୟ ନଦୀ କୂଳରେ ଅନୁଷ୍ଠିତ ହେଉଥିବା ଜୟଦେବ ମେଳା ଦେଖିବାକୁ ଯାଇଥିଲି । ବହୁ ଲୋକଙ୍କର ହୁଏ ସମାଗମ । ଜୟଦେବଙ୍କୁ ସେମାନେ ବଙ୍ଗାଳୀ କରି ଦେଇଛନ୍ତି । ସେମାନଙ୍କର ଜାତୀୟ ପ୍ରୀତିକୁ ଲକ୍ଷ୍ୟ କଲି । ବିଶ୍ୱଭାରତୀରେ ଅନେକ ଉତ୍ସବ ପାଳିତ ହୁଏ । ନବବର୍ଷ ରୂପେ ପହିଲା ବୈଶାଖକୁ ସେଠାରେ ପାଳନ କରାଯାଏ ଓ ଏହି ଦିନ ମଧ୍ୟ ରବୀନ୍ଦ୍ରନାଥଙ୍କ ଜନ୍ମ ଦିବସ ପାଳିତ ହୁଏ । 'ଗାନ୍ଧୀ ପୁଣ୍ୟାହ' ୧୯୧୫ ମସିହାଠାରୁ ପ୍ରବର୍ତ୍ତିତ ହୋଇଆସିଛି । ମୁଁ ଥିଲାବେଳେ ଏହି ଦିବସଟିକୁ ପାଳନ କରାଯାଉଥିବା ଦେଖିଲି । ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କୁ ଏହି ଦିନରେ ଶ୍ରମର ମର୍ଯ୍ୟାଦାକୁ ଅନୁଭବ କରିବା ପାଇଁ ପ୍ରେରଣା ପ୍ରଦାନ କରାଯାଇଥାଏ । ଏହିପରି 'ବୃକ୍ଷରୋପଣ' ଓ 'ହଳକର୍ଷଣ' ଉତ୍ସବ ମଧ୍ୟ ପାଳିତ ହୋଇଥାଏ । 'ବୃକ୍ଷରୋପଣ' ଉତ୍ସବର ପରଦିନ

ଶ୍ରୀନିକେତନ ପରିସରରେ ଅନୁଷ୍ଠିତ ହୁଏ 'ହଳକର୍ଷଣ ଉତ୍ସବ' । ଏହା ରବୀନ୍ଦ୍ରନାଥଙ୍କ ପଲ୍ଲୀକୈନ୍ଦ୍ରିକ ଦୃଷ୍ଟିକୋଣ ଓ କୃଷି-ସଂସ୍କୃତି ପ୍ରତି ଆଦରର ନିଦର୍ଶନ । ମୁଁ ବିଶ୍ୱଭାରତୀରେ ଥିଲାବେଳେ ଗୋଟିଏ ବର୍ଷ ଶୁଣିଲି ଭାରତର ମହାମାନ୍ୟ ରାଷ୍ଟ୍ରପତି ଭି.ଭି. ଗିରି ଆସିଥାନ୍ତି 'ହଳୋତ୍ସବ'ରେ ମୁଖ୍ୟ ଅତିଥି ହୋଇ । ବହୁ ଜନସମାଗମ ହୋଇଥାଏ । ବଙ୍ଗାଳୀ ଝିଅମାନେ ନୀଳ ଶାଢ଼ି ପିନ୍ଧି ତା' ଉପରେ ହଳଦିଆ ଉତ୍ତରୀୟ ପକାଇ ଯେପରି ହଳକର୍ଷଣ ସ୍ଥାନକୁ ନାଚି ନାଚି ପରିକ୍ରମା କଲେ ଓ ମୁଖ୍ୟ ଅତିଥିଙ୍କୁ ହଳ ପାଖକୁ ପାଛୋଟି ନେଇ ଆସିଲେ ତାହା ଶୁଣି ମୁଁ ଗଭୀର ଆନନ୍ଦ ଅନୁଭବ କଲି । ମୁଁ ମନେକଲି ସତେ ଅବା କଳାମେଘ ଦେହରେ ବିଜୁଳି ଖେଳିଯାଉଛି କି ? ମୁଖ୍ୟଅତିଥି ପ୍ରଥମେ ଗ୍ରାମାଞ୍ଚଳରୁ ଆସିଥିବା କୃଷକମାନଙ୍କୁ ବିଭିନ୍ନ ଗଛର ଚାରା ପ୍ରଦାନ କଲେ । ତତ୍‌ପରେ ହଳ କରିବାକୁ ଗଲେ । ଦୁଇଟି ବଡ଼ ବଡ଼ ବଳଦ ଲଙ୍ଗଳ ଓ ଯୁଆଳିରେ ଯୋଚା ହୋଇଥାନ୍ତି । କୃଷି ବିଭାଗରେ ଏହି ବଳଦ ରୁହନ୍ତି । ସେମାନଙ୍କର ଏପରି ଯତ୍ନ ନିଆଯାଏ ଯେ ସତେ ଯେମିତି ସେମାନଙ୍କ ଦେହରୁ ମାଛି ଖସିପଡ଼ିବ । ବଳଦ ଦୁଇଟିଙ୍କ ମୁହଁରେ ତୁଣ୍ଡି ବନ୍ଧା ହୋଇଥାଏ । ବେକରେ ଲୁହା ଜଞ୍ଜିର । ଦୁଇଜଣ କୃଷିବିଭାଗ କର୍ମଚାରୀ ଦୁଇପଟେ ବଳଦଙ୍କୁ ଭିଡ଼ି ଧରିଥାନ୍ତି । ରାଷ୍ଟ୍ରପତି ଶ୍ରୀଯୁକ୍ତ ଗିରି ଚାଷୀ ପରି ଲୁଗାକୁ ଭିଡ଼ିଦେଲେ । ଖଣ୍ଡେ ପାଞ୍ଚଣ ଆଣି ଧରିଲେ । ଜାମା ଓହ୍ଲାଇ ଦେଲେ । ଲୋକ ଦୁଇଜଣଙ୍କୁ ବଳଦକୁ ଛାଡ଼ିଦେବାକୁ କହିଲେ । ଜିଲ୍ଲାପାଳ, ଏସ୍.ପି. ଆଦି ବ୍ୟସ୍ତ । କ'ଣ ହେବ ? କେହି କିଛି କହିପାରୁ ନ ଥାନ୍ତି । ପୂରା ଗୋଟିଏ ଅଚା ସେ ହଳ କଲେ । ବଳଦଙ୍କ ମୁହଁରୁ ଫେଣ ବାହାରି ପଡୁଥାଏ । ସେ କହିଲେ- 'ମୁଁ ସିନା ରାଷ୍ଟ୍ରପତି ହୋଇଛି, ହେଲେ ମୁଁ ଜଣେ କୃଷକର ପୁଅ ।' ତାଙ୍କର ବ୍ୟବହାରରେ ସାରା ଶାନ୍ତିନିକେତନ ସେଦିନ ବିହ୍ୱଳ ହୋଇପଡ଼ିଥିବା ଜାଣିଲି ।

ଶାନ୍ତିନିକେତନରେ ଅନ୍ୟାନ୍ୟ ଅନେକ ଉତ୍ସବ ହୁଏ । ବର୍ଷାମଙ୍ଗଳ, ଶିଳ୍ପୋତ୍ସବ, ଶାରଦୋତ୍ସବ, ପୌଷମେଳା, ବସନ୍ତୋତ୍ସବ ବା ଦୋଳଉତ୍ସବ ଇତ୍ୟାଦି ନାନା ଉତ୍ସବ ପାଳିତ ହୁଏ । ଦୋଳଉତ୍ସବ ଦେଖିବା ପାଇଁ କଲିକତା ଓ ଅନ୍ୟାନ୍ୟ ଦୂର ସ୍ଥାନରୁ ଲୋକେ ଆସିଥାଆନ୍ତି । ସେଦିନ ଶାନ୍ତିନିକେତନ ଲୋକାର୍ଣ୍ଣବ ହୋଇଯାଏ । ସକାଳୁ ସକାଳୁ ଛାତ୍ରଛାତ୍ରୀମାନେ ଦଳଦଳ ହୋଇ ପୋଷାକ ପରିଧାନ କରି ଯେପରି ନାଚି ନାଚି ଆସନ୍ତି, ଉପାଚାର୍ଯ୍ୟ ପ୍ରମୁଖଙ୍କୁ ପାଛୋଟି ନେଇ ଗୌର ପ୍ରାଙ୍ଗଣକୁ ନେଇଯାଆନ୍ତି ତାହା ଚିତ୍ତାକର୍ଷକ । ସେଠି ଉପାଚାର୍ଯ୍ୟ ସ୍ୱାଗତ ଭାଷଣ ପ୍ରଦାନ କରିବା ପରେ ନୃତ୍ୟଗୀତ ହୁଏ । ପରେ ହୁଏ ରଙ୍ଗ (ଅବିର) ଖେଳ । କୌଣସି ବାଜ୍ୟେ ରଙ୍ଗଖେଳ ହୁଏ ନାହିଁ । ସେହି ରଙ୍ଗଖେଳ ମୋତେ ବହୁତ ଆନନ୍ଦ ଦିଏ । ଛାତ୍ରଛାତ୍ରୀମାନେ ପୁନଶ୍ଚ ଅଧ୍ୟାପକ/ଅଧ୍ୟାପିକାଙ୍କ ଘରକୁ

ଯାଇ ରଙ୍ଗ ଲଗାନ୍ତି । ସମସ୍ତେ ମିଠା ଖାଇ ଆନନ୍ଦ ଉଲ୍ଲାସରେ ଯାଆନ୍ତି । ପଲାଶ ଫୁଲର କଢ଼ିରେ ହାର କରି ଝିଅମାନେ ଗଳାରେ ଲମ୍ବାଇଥାଆନ୍ତି । ମୁଣ୍ଡରେ ମଧ୍ୟ ସେହି ଫୁଲ ଖୋଷି ଥାଆନ୍ତି । ଭାରି ସୁନ୍ଦର ଦେଖାଯାଏ । ବିଶ୍ୱଭାରତୀର ସମସ୍ତ ଉତ୍ସବ ପ୍ରକୃତି ଓ ପଲ୍ଲୀକୁ ନେଇ, କୃଷି ଓ ସଂସ୍କୃତିକୁ ନେଇ । ସମସ୍ତଙ୍କୁ ଆପଣାର କରିନେବାର ଲକ୍ଷ୍ୟ ନେଇ ରବୀନ୍ଦ୍ରନାଥ ଯେ ଏହି ପର୍ବଗୁଡ଼ିକୁ ପ୍ରଚଳନ କରିଥିଲେ ତାହା ମୁଁ ଉପଲବ୍ଧି କଲି ।

ବିଶ୍ୱଭାରତୀ ସମାବର୍ତ୍ତନ ଉତ୍ସବ ଅତ୍ୟନ୍ତ ଆକର୍ଷଣୀୟ । ଏହାର ମୁଖ୍ୟ ହେଉଛନ୍ତି ରାଷ୍ଟ୍ରପତି । ପ୍ରଧାନମନ୍ତ୍ରୀ ତାହାର ଆଚାର୍ଯ୍ୟ । ରାଜ୍ୟ ସରକାରଙ୍କ ସହିତ ବିଶେଷ ସଂପର୍କ ନ ଥାଏ । ରାଜ୍ୟପାଳ ତାହାର 'ପ୍ରଧାନ' । ଆମ୍ରବୀଥିକାରେ ଏକ ଭବ୍ୟ ପେଣ୍ଡାଲ ଅଛି । ସମଗ୍ର ବୀଥିକାକୁ ନାନା ଭାବରେ ସଜାଯାଇଥାଏ । ପେଣ୍ଡାଲକୁ ପ୍ରବେଶ ପଥର ଦୁଇପଟେ ଚିତ୍ରିତ କଳସୀ ବସିଥାଏ । ପ୍ରବେଶ ପଥରେ ବିଶ୍ୱଭାରତୀର ଛାତ୍ରୀମାନେ ନାନା ରକମର ଚିତା ପକାଇଥାଆନ୍ତି । ଉପାଚାର୍ଯ୍ୟ ଅତିଥିମାନଙ୍କୁ ପାଛୋଟି ଆଣନ୍ତି । ଶଙ୍ଖଧ୍ୱନି ବାଜିଉଠେ । ସାଙ୍ଗରେ ଆସନ୍ତି ବିଶ୍ୱଭାରତୀର କେତେଜଣ ପ୍ରଫେସର ଓ ରେଜିଷ୍ଟ୍ରାର ପ୍ରମୁଖ । ସମସ୍ତେ ଧୋତି ପଞ୍ଜାବି ଓ ଉତ୍ତରୀୟ ପିନ୍ଧିଥାନ୍ତି । ସଭା ହୁଏ । ସେଠିକାର ଗୋଟିଏ ପରଂପରା ଉପାଚାର୍ଯ୍ୟ ବଙ୍ଗଳା ଭାଷାରେ ସ୍ୱାଗତ ଭାଷଣ ଦେବେ । ଅତିଥିମାନେ ମଧ୍ୟ ବଙ୍ଗଳାରେ ଆରମ୍ଭ କରି ଅନ୍ୟ ଭାଷାରେ କହନ୍ତି । ଭବ୍ୟ ଜାତୀୟ ସଂସ୍କୃତିକୁ ନେଇ ଏପରି ସମାବର୍ତ୍ତନ ଉତ୍ସବ ଅନ୍ୟତ୍ର ମୁଁ ଦେଖି ନାହିଁ । ୧୯୫୦ ମସିହା ପୂର୍ବରୁ ସେଠାରେ କୌଣସି ସାର୍ଟିଫିକେଟ ଦିଆଯାଉ ନ ଥିଲା । ଯେଉଁ ଛତିମ ବୃକ୍ଷମୂଳେ ବସି ମହର୍ଷି ଦେବେନ୍ଦ୍ରନାଥ ସିଦ୍ଧିଲାଭ କରିଥିଲେ ସେହି ଗଛର ପତ୍ରଟିଏ ଦିଆଯାଉଥିଲା । କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେଲା ପରେ ସାର୍ଟିଫିକେଟ ଦିଆଗଲା । ଏପରି ଜାତୀୟ ସ୍ୱାଭିମାନୀ ଉତ୍ସବ ମୁଁ ଓଡ଼ିଶାରେ ଦେଖି ନାହିଁ ।

ବିଶ୍ୱଭାରତୀର ବିଭିନ୍ନ ବିଭାଗରେ ବିଦ୍ୱାନ୍ ପ୍ରଫେସରମାନେ ଥିଲେ । ନାନା ବିଷୟରେ ଗବେଷଣା କରି ଉଚ୍ଚକୋଟୀର ପୁସ୍ତକ ପ୍ରକାଶ କରୁଥିଲେ । ବିଶ୍ୱଭାରତୀର ମଧ୍ୟ ନିଜସ୍ୱ ପ୍ରକାଶନ ବିଭାଗ ଥିଲା ଓ ଏବେ ମଧ୍ୟ ଅଛି । ସେହି ବିଭାଗ ପୂର୍ବରୁ ହରପ୍ରସାଦ ଶାସ୍ତ୍ରୀ, ବିଧୁଭୂଷଣ ଭଟ୍ଟାଚାର୍ଯ୍ୟ ପ୍ରମୁଖଙ୍କର ପୁସ୍ତକ ଛାପିଥିଲେ । ରବୀନ୍ଦ୍ରନାଥଙ୍କର ମଧ୍ୟ ଅନେକ ବହି ଏଠି ଛପା ହୋଇଥିଲା । ପରବର୍ତ୍ତୀ କାଳରେ ରବୀନ୍ଦ୍ର ରଚନାବଳୀ ଛାପି ଜାତୀୟ କାର୍ଯ୍ୟ ସଂପାଦନା କରିଅଛନ୍ତି । ଓଡ଼ିଆ ବିଭାଗ ଯେତେବେଳେ ଆରମ୍ଭ ହେଲା ସେତେବେଳେ ପ୍ରଥମେ ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଯୋଗ ଦେଇଥିଲେ । ସେ ସମୟରେ ପିଲାଏ ପଢୁ ନ ଥିଲେ । କେବଳ ଗବେଷଣା ବିଭାଗ ହୋଇ ରହିଥିଲା । ପରେ ଚିତ୍ତରଂଜନ ଦାସ ସେଠାକୁ ଯାଇ ଅଧ୍ୟୟନ ଓ ଗବେଷଣା କଲେ । ତାଙ୍କର

'ଅଚ୍ୟୁତାନନ୍ଦ ଓ ପଞ୍ଚସଖା', 'ମହିମାଧର୍ମ' ଆଦି କେତୋଟି ପୁସ୍ତକ ବିଶ୍ୱଭାରତୀ ପ୍ରକାଶ କଲା । ପ୍ରହ୍ଲାଦ ପ୍ରଧାନ ଉଚ୍ଚତର ଗବେଷଣା ପାଇଁ ଚୀନ ଚାଲିଗଲେ । ଚିତ୍ତବାବୁ ସେଇଠି ରହି ନାନା ଗ୍ରନ୍ଥ, ପତ୍ରପତ୍ରିକା ଅଧ୍ୟୟନ କଲେ । ସେ କହନ୍ତି ଯେ ବିଶ୍ୱଭାରତୀ ହିଁ ତାଙ୍କୁ ପଢ଼ିବା ପାଇଁ ପ୍ରେରଣା ଦେଇଥିଲା । ୧୯୪୭ ମସିହାରେ ଓଡ଼ିଆ ବିଭାଗରେ ପାଠ ପଢ଼ିବାର ସୁଯୋଗ ସୃଷ୍ଟି କରାଗଲା । ଏମ୍.ଏ. ଶ୍ରେଣୀ ସହିତ ବି.ଏ. (ଅନର୍ସ) ଓ ସାର୍ଟିଫିକେଟ କୋର୍ସ ଆରମ୍ଭ ହେଲା । ଏବେ ମଧ୍ୟ ସେହି ସୁଯୋଗ ସେଠାରେ ଅଛି । ଅନ୍ୟ ଭାଷାଭାଷୀମାନେ ସାର୍ଟିଫିକେଟ କୋର୍ସ କରି ଓଡ଼ିଆ ଭାଷା ଓ ସାହିତ୍ୟରେ ଜ୍ଞାନ ଅର୍ଜନ କରନ୍ତି ।

୧୯୫୧ ମସିହାରେ ବିଶ୍ୱଭାରତୀ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେଲା । ଡକ୍ଟର କୁଞ୍ଜବିହାରୀ ଦାଶ ସେଠି ଯୋଗ ଦେଲେ ଓ ୧୯୬୨ ମସିହା ପର୍ଯ୍ୟନ୍ତ ରହିଲେ । ଓଡ଼ିଆ ବିଭାଗକୁ ସେ ମର୍ଯ୍ୟାଦାଜନକ ରୂପ ଦେଲେ । ନରେନ୍ଦ୍ରନାଥ ମିଶ୍ର, କୃଷ୍ଣଚରଣ ବେହେରା ପ୍ରମୁଖ ସେଠି ଅଧ୍ୟୟନ କଲେ ଓ ଓଡ଼ିଆ ସାହିତ୍ୟରେ ଲେଖାଲେଖି କରି ପ୍ରତିଷ୍ଠା ଅର୍ଜନ କଲେ । ସେଠାକୁ ମଧ୍ୟ ପରେପରେ ଚିନ୍ତାମଣି ବେହେରା, ଡକ୍ଟର ନରେନ୍ଦ୍ରନାଥ ମିଶ୍ର, ଡକ୍ଟର ଶ୍ରୀନିବାସ ମିଶ୍ର, ଡକ୍ଟର ଗଗନେନ୍ଦ୍ର ନାଥ ଦାଶ, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, ଡକ୍ଟର ଖଗେଶ୍ୱର ମହାପାତ୍ର ପ୍ରମୁଖ ବହୁ ଅଧ୍ୟାପକ ଯାଇ ଅଧ୍ୟାପନା କାର୍ଯ୍ୟ କରିଛନ୍ତି । କୁଞ୍ଜବାବୁ ସେଇଠି ଥିଲାବେଳେ 'ଓଡ଼ିଆ ଲୋକଗୀତ ଓ କାହାଣୀ' ବିଷୟରେ ଗବେଷଣା କରି ପିଏଚ.ଡି. ଉପାଧି ପାଇଥିଲେ । ସେହି ପୁସ୍ତକକୁ ବିଶ୍ୱଭାରତୀ ପ୍ରକାଶନ ସଂସ୍ଥା ଛାପି ପ୍ରକାଶ କରିଥିଲା । ପରେ କୁଞ୍ଜବାବୁ ଓଡ଼ିଆ ଲୋକଗୀତି, ଢଗଢମାଳି, ପ୍ରବାଦ ପ୍ରବଚନ, କାହାଣୀ ଇତ୍ୟାଦି ବିଭିନ୍ନ ସ୍ଥାନରୁ ସଂଗ୍ରହ କରି ପ୍ରକାଶ କରିଥିଲେ । ସେ ଥିଲେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିପ୍ରେମୀ ବ୍ୟକ୍ତି । ତେଣୁ ସେ 'ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ସମାଜ' ପ୍ରତିଷ୍ଠା କଲେ । ଏହି ପରିଷଦ ଆନୁକୂଲ୍ୟରେ ବିଭିନ୍ନ ସମୟରେ କବିତା ପାଠଚକ୍ର ଓ ଆଲୋଚନା ସଭା ହୁଏ । କୁଞ୍ଜବାବୁ ମଧ୍ୟ 'ଆଧୁନିକ ଓଡ଼ିଆ ସାହିତ୍ୟ : ଭୂମି ଓ ଭୂମିକା' ଗ୍ରନ୍ଥ ସଂକଳନ କରି ପ୍ରକାଶ କରିଥିଲେ । ଡକ୍ଟର ନରେନ୍ଦ୍ରନାଥ ମିଶ୍ରଙ୍କର 'ଆଧୁନିକ ଓଡ଼ିଆ କବିତା' ଶୀର୍ଷକ ପିଏଚ.ଡି. ସନ୍ଦର୍ଭ ମଧ୍ୟ ବିଶ୍ୱଭାରତୀ ପ୍ରକାଶନ ସଂସ୍ଥା ପ୍ରକାଶ କଲେ । ପରେ ଏହାର ଦ୍ୱିତୀୟାର୍ଦ୍ଧକୁ ମଧ୍ୟ ପ୍ରକାଶ କରିଥିଲେ । ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ରଙ୍କର ଇଂରାଜୀରେ ରଚିତ "A Study of Odia Folk ballad" ପୁସ୍ତକ ସେହିଠାରେ ପ୍ରକାଶିତ ହେଲା । ବିଶ୍ୱଭାରତୀ ପ୍ରକାଶନ ସଂସ୍ଥା କେତେକ ଉପାଦେୟ ଓଡ଼ିଆ ପୁସ୍ତକ ଛାପି ଓଡ଼ିଶାବାସୀଙ୍କ ପାଇଁ ପ୍ରଶଂସାର୍ହ ହୋଇଅଛନ୍ତି । ବିଶ୍ୱଭାରତୀର ଓଡ଼ିଆ ବିଭାଗ 'ବିଶ୍ୱଭାରତୀ ଦୀପିକା' ଶୀର୍ଷକ ଏକ ଉଚ୍ଚକୋଟୀର ପତ୍ରିକା ପ୍ରତିବର୍ଷ ପ୍ରକାଶ କରନ୍ତି ।

ବିଶ୍ୱଭାରତୀ ଓଡ଼ିଆ ବିଭାଗର ପ୍ରଫେସର ଖଗେଶ୍ୱର ମହାପାତ୍ର ଅବସର ଗ୍ରହଣ କଲା ପରେ ମୁଁ ସେହି ପୋଷ୍ଟରେ ନିଯୁକ୍ତି ଲାଭ କଲି । ସେତେବେଳେ ବିଭାଗରେ ଥାଆନ୍ତି ଡକ୍ଟର ଶ୍ୟାମସୁନ୍ଦର ମହାପାତ୍ର, ଡକ୍ଟର ନୀଳାଦ୍ରିଭୂଷଣ ହରିଚନ୍ଦନ, ଡକ୍ଟର କୈଳାସ ପଟ୍ଟନାୟକ, ଡକ୍ଟର ଗିରିବାଳା ମହାନ୍ତି, ଡକ୍ଟର ସବିତା ପ୍ରଧାନ ଓ ଡକ୍ଟର ମନୋରଂଜନ ପ୍ରଧାନ । ମୁଁ ଜଏନ କଲା ପରେ ଗୁରୁପଲ୍ଲୀର ଜଣେ ଭଦ୍ରଲୋକଙ୍କ ଘରେ ଭଡ଼ା ରହିଲି । ସେ ଭଦ୍ରଲୋକ ବିଶ୍ୱଭାରତୀରେ ଅଧ୍ୟାପକ ଥିଲେ । ସେ ମରିଯିବାରୁ ତାଙ୍କ ପତ୍ନୀ, ସେତେବେଳକୁ ସେ ବୃଦ୍ଧା ହୋଇଯାଇଥାନ୍ତି, ଏକାକୀ ରହୁଥିଲେ । ତାଙ୍କର ଝିଅଟି ବିବାହ ହୋଇଯାଇଥାଏ । ଏକମାତ୍ର ପୁତ୍ର ବିବାହ ପରେ ସ୍ତ୍ରୀକୁ ନେଇ ବାହାରେ ତାଙ୍କର ଚାକିରି କ୍ଷେତ୍ରରେ ରହୁଥିଲେ । ସେହି ବୃଦ୍ଧା ମୋତେ ପୁଅ ପରି ସ୍ନେହ କରୁଥିଲେ । ଥରେ ରାତି ଅଧବେଳକୁ ତାଙ୍କ ଦେହ ଭୀଷଣ ଖରାପ ହୋଇଗଲା । ତାଙ୍କ ଚାକରାଣୀ ମୋତେ ଡାକିବାରୁ ମୁଁ ସଙ୍ଗେ ସଙ୍ଗେ ଗଲି । ମୁଁ ତାଙ୍କୁ ସେବା କଲି ଓ ତାଙ୍କ ଝିଅ ଘରକୁ ଯାଇ ତାଙ୍କୁ ଓ ତାଙ୍କ ସ୍ୱାମୀଙ୍କୁ ଡାକିଆଣିଲି । ସେ ଡାକ୍ତର ଡାକିଆଣିଲେ । ବୁଢ଼ୀ ଭଲ ହେଲା । ସେ ଚାହିଁଲେ ମୁଁ ତାଙ୍କ ଘରେ ରହିବି ଓ କ୍ୱାଟରକୁ ଯିବି ନାହିଁ । ମାତ୍ର ମୁଁ କ୍ୱାର୍ଟର ପାଇ ଚାଲିଗଲି ।

ବିଭାଗରେ ଯେ ଦୁଇଟି ଦଳ ହୋଇଯାଇଛନ୍ତି ମୁଁ ଜାଣି ନ ଥାଏ । ଶ୍ୟାମବାବୁ କେବଳ ନିରପେକ୍ଷ ଥାଆନ୍ତି । ସେତେବେଳେ ସେ ବିଭାଗର ମୁଖ୍ୟ । ତାଙ୍କର ମୂତ୍ରାଗାର ଅପରେସନ୍ ହୋଇ ସେଥିରେ ଗୋଟିଏ ନଳି ଲାଗିଥାଏ । ବଡ଼ କଷ୍ଟରେ ସେ ବିଭାଗକୁ ଆସନ୍ତି । ମୁଁ ସେତେବେଳକୁ ନୂଆ ଯୋଗ ଦେଇଥାଏ । କାହାରି ସଂପର୍କରେ ମୁଁ କିଛି ଜାଣି ନ ଥାଏ । କେବଳ ନୀଳାଦ୍ରିବାବୁଙ୍କୁ ଜାଣିଥାଏ । ସେ ମୋତେ ବଡ଼ଭାଇ ବୋଲି ଡାକନ୍ତି । ଏହି ସମୟରେ ଗୋଟିଏ ଗଣ୍ଡଗୋଳ ଘଟିଲା । ସେମିନାର ସେକ୍ରେଟାରୀଙ୍କୁ ପ୍ରତିପକ୍ଷ ପିଲାମାନେ ରାତିରେ ମାଡ଼ ଦେଇଥାନ୍ତି ଟଙ୍କା ଆତ୍ମସାତ୍ କରିଛି ବୋଲି । ସେମାନଙ୍କର ଅଭିଯୋଗ ଥାଏ ଯେ ଉପଦେଷ୍ଟା ଡକ୍ଟର ମନୋରଂଜନ ପ୍ରଧାନ ସେହି ଟଙ୍କାକୁ ଆତ୍ମସାତ୍ କରିଛନ୍ତି । ତେଣୁ ସେମାନେ ରାଗ ଶୁଝାଇଲେ ସେକ୍ରେଟାରୀ ଉପରେ । ସେ ପିଲା ବିଭାଗୀୟ ମୁଖ୍ୟ ଶ୍ୟାମବାବୁଙ୍କୁ କହିବାରୁ ପରଦିନ ସେ ସମସ୍ତ ଛାତ୍ରଛାତ୍ରୀ ଓ ଅଧ୍ୟାପକ ଅଧ୍ୟାପିକାମାନଙ୍କୁ ଡକାଇ ମିଟିଂ କଲେ । ତାଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିବାରୁ ମୋତେ ସେ ପାଖରେ ବସାଇଲେ । ପିଲାମାନଙ୍କର ଅଭିଯୋଗ ହେଲା ଯେ ସେମାନଙ୍କ ଟଙ୍କାର ହିସାବ ସେକ୍ରେଟାରୀ ଓ ଉପଦେଷ୍ଟା ମନୋରଂଜନ ବାବୁ ଦିଅନ୍ତୁ । ସେକ୍ରେଟାରୀ ହିସାବ ଦେଲେ । ମାତ୍ର ପିଲାମାନେ ତାହାକୁ ଗ୍ରହଣ ନ କରି କଡ଼ା ଭାଷାରେ ଗାଳିଗୁଲଜ କଲେ । ମୁଁ ବାଧ୍ୟ ହୋଇ ଛିଡ଼ା ହେଲି ଓ ସେମାନଙ୍କୁ ବୁଝାଇଲି । ଜାଣିଲି

ମାତ୍ର ୩୫ଶହ ଟଙ୍କା । ତାହା ପୁଣି ଛାତ୍ର ଓ ଶିକ୍ଷକଙ୍କର । ସେକ୍ରେଟାରୀ ତାଙ୍କର ପ୍ରୋସିଡିଂ ବହି ପଢ଼ି ହିସାବ ଦେଲେ । ସର୍ବମୋଟ ବର୍ଷକ ଭିତରେ ୨୭ଟି ମିଟିଂ ହୋଇଛି । ସବୁ ଖର୍ଚ୍ଚ ଯାଇ ଅବଶିଷ୍ଟ ସାତଶହ ଟଙ୍କା ବଞ୍ଚିଛି ଓ ସେ ଟଙ୍କା ବିଭାଗୀୟ ମୁଖ୍ୟ ରଖିଛନ୍ତି । ମୁଁ ସମସ୍ତ କଥା ପିଲାମାନଙ୍କୁ ବୁଝାଇଦେଲି । ପିଲାମାନେ ନୀରବ ହୋଇଗଲେ । ଜନୈକା ଅଧ୍ୟାପିକା ଛିଡ଼ା ହୋଇ ଅଭିଯୋଗ କରିବାରୁ ମୁଁ ତାଙ୍କୁ ପିଲାମାନଙ୍କ କଥାରେ ମୁଣ୍ଡ ନ ପୂରାଇବାକୁ କହିଲି । ସମସ୍ତେ ଖୁସିରେ ଗଲେ । ଶ୍ୟାମବାବୁ ମୋତେ କହିଲେ– 'ଆପଣ ଆଜି ମୋତେ ରକ୍ଷା କରିଦେଲେ ।' ଅଥଚ ଏହି ଘଟଣାରେ ପ୍ରତିପକ୍ଷ ଅଧ୍ୟାପକ ଓ ଛାତ୍ରମାନେ ଭାବିଲେ ଯେ ମୁଁ ଅପରପକ୍ଷକୁ ସମର୍ଥନ କରୁଛି ।

ଏ ଘଟଣାର ଅଳ୍ପ ଦିନ ପରେ ଶେଷବର୍ଷ ଏମ୍.ଏ. ପରୀକ୍ଷା ଫଳ ବାହାରିଲା । ଦୁଇ ତିନିଜଣ ଅଧ୍ୟାପକଙ୍କ ସ୍ୱତନ୍ତ୍ର ପତ୍ର ନେଇଥିବା ପିଲାଙ୍କର ଭଲ ଫଳ ହୋଇଥାଏ । ଅନ୍ୟମାନଙ୍କର ଅତ୍ୟନ୍ତ ଖରାପ ହୋଇଥାଏ । ପିଲାମାନଙ୍କ ଭିତରେ କନ୍ଦାକଟା ଚାଲିଥାଏ । ଏପରିକି ଶ୍ୟାମବାବୁଙ୍କ ଝିଅର ପରୀକ୍ଷା ଫଳ ମଧ୍ୟ ଖରାପ ହୋଇଥାଏ । ତେଣୁ ସକାଳୁ ମୁଁ କ୍ଲାସ ନେବାକୁ ଯାଇ ଦେଖେ ତ ବିଭାଗରେ ପିଲାଏ ତାଲା ପକାଇ ଦେଇଛନ୍ତି । ସେତେବେଳକୁ ବିଶ୍ୱଭାରତୀ ଛାତ୍ର ପରିଷଦର ସଭାପତି, ସଂପାଦକ ଓ ଅନ୍ୟମାନେ ମଧ୍ୟ ଓଡ଼ିଆ ଛାତ୍ରଛାତ୍ରୀଙ୍କ ସହିତ ମିଶି ପାଟିତୁଣ୍ଡ କରୁଥାନ୍ତି । ଯେଉଁ ଅଧ୍ୟାପକ ଓ ଅଧ୍ୟାପିକାଙ୍କ ପ୍ରତି ସେମାନଙ୍କର ଆକ୍ରୋଶ ଥାଏ ସେମାନଙ୍କୁ କଠୋର ଭାଷା କହି ଫେରାଇ ଦେଉଥାନ୍ତି । ଏ ଖବର ପାଇ ବିଦ୍ୟାଭବନର ଅଧ୍ୟକ୍ଷ ପ୍ରଫେସର ଦିଲୀପ ଗାଙ୍ଗୁଲି ଆସି ପହଞ୍ଚିଗଲେ । ସେ ମୋତେ କ'ଣ କରିବା ବୋଲି ପଚାରିଲେ । ମୁଁ ତାଙ୍କୁ ନେଇ ତାଙ୍କ ଅଫିସକୁ ଆସିଲି । ସେଠି ମୁଁ, ଅଧ୍ୟକ୍ଷ, ଉପାଧ୍ୟକ୍ଷ, ଛାତ୍ର ପରିଷଦର ସଭାପତି, ସେକ୍ରେଟାରୀ ବସି ଗୋଟିଏ ସିଦ୍ଧାନ୍ତ ନେଲୁ । କ୍ଷତିଗ୍ରସ୍ତ ହୋଇଥିବା ପିଲାମାନଙ୍କ ଖାତାର ପୁନର୍ମୂଲ୍ୟାୟନ ପାଇଁ ଉପାଚାର୍ଯ୍ୟଙ୍କୁ ପ୍ରସ୍ତାବ ଦେଲୁ । ମୁଁ, ଅଧ୍ୟକ୍ଷ ଓ ପରୀକ୍ଷା ବିଭାଗର ରେଜିଷ୍ଟ୍ରାର ଯାଇଁ ତାଙ୍କୁ ଭେଟିଲୁ । ଉପାଚାର୍ଯ୍ୟ ମୋତେ ଛ'ଜଣ ପରୀକ୍ଷକଙ୍କ ନାମ ବିଭାଗୀୟ ବୋର୍ଡ଼ରେ ପାସ୍ କରାଇ ତାଙ୍କୁ ଦେବାକୁ କହିଲେ । ମୁଁ ତାଙ୍କୁ ପରୀକ୍ଷକଙ୍କ ନାମ ତାଲିକା ଦେଇଦେଲି । ଏଥର ମଧ୍ୟ ପୂର୍ବପରି ଫଳ ହେଲା । ରଜବେଳକୁ ମୁଁ ଘରକୁ ଆସିଥାଏ । ମୋତେ ଟେଲିଗ୍ରାମ ଆସିଲା ପରୀକ୍ଷା ଫଳ ପାସ୍ କରାଇବା ପାଇଁ । ମୁଁ ଗଲି । ଅଧ୍ୟକ୍ଷ, ରେଜିଷ୍ଟ୍ରାର, ଉପାଧ୍ୟକ୍ଷ ଓ ମୁଁ ବସି ଆଲୋଚନା କଲୁ । ମୁଁ ପ୍ରସ୍ତାବ ଦେଲି ଯେଉଁ ଯେଉଁ ପିଲାଙ୍କର ନମ୍ବର କମିଛି ଆମେ ପୂର୍ବ ପରୀକ୍ଷକ ଓ ଏବର ପରୀକ୍ଷକଙ୍କ ନମ୍ବରକୁ ମିଶାଇ ତାକୁ ଦୁଇ ଭାଗ କରି ସେହି ନମ୍ବରକୁ ନେଇଯିବା । ମୋ ପ୍ରସ୍ତାବରେ ରେଜିଷ୍ଟ୍ରାର ଓ ଅଧ୍ୟକ୍ଷ ରାଜି ହୋଇଗଲେ ମାତ୍ର ଉପାଧ୍ୟକ୍ଷ ରାଜି ହେଲେ

ନାହିଁ । ତେଣୁ ଯାହା ପରୀକ୍ଷା ଫଳ ହୋଇଥିଲା ତାହାକୁ ନେଇ ଉପାଚାର୍ଯ୍ୟଙ୍କ ଅନୁମୋଦନ ପାଇଁ ଗଲୁ । ମାତ୍ର ଉପାଚାର୍ଯ୍ୟ ସେଥିରେ ରାଜି ହେଲେ ନାହିଁ । ସେ ପୁନର୍ବାର ଖାତା ଦେଖାଇବାକୁ କହିଲେ । ମୋତେ ବୋର୍ଡ଼ରେ ନାମ ତାଲିକା ପାସ୍ ନ କରାଇ ଗୋପନରେ ତାଲିକା ଦେବାକୁ କହିଲେ । ମୁଁ ତାଲିକା ତାଙ୍କୁ ଦେଇଦେଲି । ପରୀକ୍ଷା ଫଳ ବାହାରିଗଲା । ପିଲାଏ ଉପକୃତ ହେଲେ । ଏହି ଘଟଣାରେ ଦୁଇ ତିନି ଜଣ ଅଧ୍ୟାପକ/ଅଧ୍ୟାପିକା ମୋ ଉପରେ ରାଗ ରଖିଲେ । ଇତିମଧ୍ୟରେ ସେମାନଙ୍କର ଦୁଷ୍ଟ ବୁଦ୍ଧି କାର୍ଯ୍ୟ କଲା । ସେମାନେ କେତେଜଣ ଅନୁଗତ ଛାତ୍ରଙ୍କୁ ଲଗାଇ ବେନାମୀ ଚିଠି ଉପାଚାର୍ଯ୍ୟଙ୍କୁ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ, ଓଡ଼ିଶାର ସମସ୍ତ ସମ୍ବାଦପତ୍ରର ସଂପାଦକମାନଙ୍କୁ, ଉତ୍କଳ ବିଶ୍ୱବିଦ୍ୟାଳୟ- ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟର ବିଭାଗୀୟ ମୁଖ୍ୟଙ୍କୁ, ବିଭିନ୍ନ କଲେଜର ଓଡ଼ିଆ ବିଭାଗ ମୁଖ୍ୟଙ୍କୁ ପଠାଇଲେ । ସେଥିରେ ଅତି କଦର୍ଯ୍ୟ ଭାବରେ ଜର୍ନୈକା ଅଧ୍ୟାପିକାଙ୍କ ନାମରେ ତଥା କେତେଜଣ ଅଧ୍ୟାପକଙ୍କ ନାମରେ ଲେଖାଯାଇଥାଏ । ଉପାଚାର୍ଯ୍ୟ ଚିଠି ପାଇ ଭୀଷଣ ରାଗିଗଲେ । ସେ ବିଭାଗକୁ ଆସି କଡ଼ା ଭାଷାରେ ଭର୍ତ୍ସନା କଲେ । ଓଡ଼ିଆ ବିଭାଗକୁ ବନ୍ଦ କରିଦେବାକୁ କହିଲେ । ମୁଁ ନୂଆ ଯୋଗ ଦେଇଥିବାରୁ ଓ ଶ୍ୟାମବାବୁ ଅପରେସନ ହୋଇଥିବାରୁ ଆମ ଦୁଇଜଣଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ବାହାର କରିଦେବାକୁ କହିଲେ । ମୁଁ ଉପାଚାର୍ଯ୍ୟ ମହୋଦୟଙ୍କୁ ବିନୀତ ଭାବରେ ବୁଝାଇଲି । ସେ ଶାନ୍ତ ହୋଇ ମୋ ଉପରେ ଦାୟିତ୍ୱ ଦେଇ ଚାଲିଗଲେ । ଆମ ବିଭାଗରେ କୌଣସି ଅସୁବିଧା ହେବ ନାହିଁ ଓ ଯାହା ଘଟିଯାଇଛି ଏଥିପାଇଁ ଆମେ ସମସ୍ତେ ଦୁଃଖିତ ମର୍ମରେ ଉପାଚାର୍ଯ୍ୟଙ୍କୁ ଓ ବେନାମୀ ପଠାଯାଇଥିବା ସମ୍ବାଦପତ୍ର ତଥା ଅନ୍ୟ ସଂପୃକ୍ତ ବ୍ୟକ୍ତିଙ୍କ ପାଖକୁ ମୁଁ ଏକ ନିବେଦନ ପତ୍ର ଲେଖିଲି । ସମସ୍ତେ ଦସ୍ତଖତ କରିଦେଲେ । ସେହି ଦିନରୁ ବିଭାଗ ଟିକେ ଶାନ୍ତ ପଡ଼ିଗଲା ।

ଏହା ପରେ ମୁଁ ବିଭାଗର ମୁଖ୍ୟ ହେଲି । ସେହି ସମୟରେ ମୁଁ ବର୍ଷକୁ ଚାରୋଟି ଜାତୀୟ ସେମିନାର କରିବାକୁ ସଂକଳ୍ପ ନେଲି । ଏଥିପାଇଁ ମୁଁ ଅର୍ଥଯୋଗାଡ଼ କଲି ଓ ଜଣେ ଜଣେ ଅଧ୍ୟାପକଙ୍କୁ ଦାୟିତ୍ୱ ଦେଲି । ଭାରତର ବିଭିନ୍ନ ପ୍ରାଦେଶିକ ଭାଷାର ପ୍ରଥମ ଗଳ୍ପ ସଂପର୍କରେ ଏକ ଭବ୍ୟ ସେମିନାର ହେଲା । ପ୍ରତ୍ୟେକ ସେମିନାରକୁ ଉପାଚାର୍ଯ୍ୟ ଉଦ୍‌ଘାଟନ କଲେ । ଥରେ ଗୋଟିଏ ସେମିନାର ଚାଲୁଥିଲାବେଳେ ଅଚାନକ ଜର୍ମାନରୁ ଆସି ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ ପହଞ୍ଚିଗଲେ । ତାଙ୍କୁ ଦେଖି ମୋର ଗୋଟାଏ ଭରସା ଆସିଗଲା । ସେତେବେଳେ ପ୍ରଫେସର ଭୂଦେବ ମୁଖାର୍ଜୀ ବିଶ୍ୱଭାରତୀରେ ରହୁଥାନ୍ତି । ତାଙ୍କୁ ସେତେବେଳକୁ ବହୁତ ବୟସ । ମୁଁ ତାଙ୍କ ଘରକୁ ଯାଇ ତାଙ୍କୁ ଭେଟିଛି । ସେ ଅତ୍ୟନ୍ତ ଜ୍ଞାନୋଦୀପ୍ତ ମଣିଷ । ସେ ମୋତେ ଗଭୀର ଶ୍ରଦ୍ଧା କଲେ । ତାଙ୍କୁ ମଧ୍ୟ ମୁଁ

ଗୋଟିଏ ସେମିନାରକୁ ଡାକିଥିଲି । ସେ ମୋର ନିମନ୍ତ୍ରଣ ରକ୍ଷା କରି ସେମିନାରକୁ ଆସି ତାଙ୍କର ବକ୍ତବ୍ୟ ପ୍ରଦାନ କରିଥିଲେ । ତାଙ୍କର ବଙ୍ଗଳା ସାହିତ୍ୟର ଇତିହାସ, ବଙ୍ଗଳା କ୍ଷୁଦ୍ରଗଳ୍ପ ସଂପର୍କିତ ଚର୍ଚ୍ଚାମୂଳକ ପୁସ୍ତକ ପଢ଼ିଥାଏ । ଅନେକ ସନ୍ଧ୍ୟାରେ ତାଙ୍କ ଘରକୁ ଯାଇ ମୁଁ ତାଙ୍କ ସହିତ ସାହିତ୍ୟ ସଂପର୍କରେ ଆଲୋଚନା କରେ । ଡକ୍ଟର ମନୋରଂଜନ ପ୍ରଧାନ ଓ ଡକ୍ଟର ସବିତା ପ୍ରଧାନ ସେମିନାରର ଦାୟିତ୍ୱ ବହନ କରନ୍ତି । ଅଧ୍ୟାପକମାନଙ୍କର ତତ୍ତ୍ୱ ନିଅନ୍ତି ।

ବିଭିନ୍ନ ସେମିନାର ହେଲା । ଆନନ୍ଦମୟ ପରିବେଶ ଭିତରେ କିଛିଦିନ କଟିଗଲା । ବିଶ୍ୱଭାରତୀ ସାହିତ୍ୟ ସମାଜ ଥିଲା ଗୋଟିଏ ବଡ଼ ଅନୁଷ୍ଠାନ । ବିଭାଗର ମତାନ୍ତର ଯୋଗୁଁ ତାହା ମ୍ଳାନ ପଡ଼ିଯାଇଥିଲା । ତାହାକୁ ପୁନର୍ଜୀବିତ କରିବାକୁ ଆମେ ଉଦ୍ୟମ କଲୁ । ଡକ୍ଟର ମନୋରଂଜନ ପ୍ରଧାନ ତରୁଣ । ସେ ବିଶ୍ୱଭାରତୀର ପ୍ରଥମେ ଆସିଷ୍ଟାଣ୍ଟ ପ୍ରୋଫେସର ଓ ପରେ ପ୍ରୋଫେସର ହୋଇ ବହୁ ବର୍ଷ ଦାୟିତ୍ୱ ନିର୍ବାହ କରିଥିଲେ । ମୁଁ ତାଙ୍କୁ ଓ ତାଙ୍କର ପତ୍ନୀ ଡକ୍ଟର ସବିତା ପ୍ରଧାନଙ୍କୁ ପୁତ୍ରକନ୍ୟା ପରି ସ୍ନେହ କରେ । ସେମାନଙ୍କର ମଧ୍ୟ ମୋ ଉପରେ ବିଶ୍ୱାସ ଥିଲା । ବସ୍ତୁତଃ ଯେଉଁ ଦୁଇଜଣ ଓଡ଼ିଆ ଅଧ୍ୟାପକ ସେତେବେଳେ ବିଶ୍ୱଭାରତୀରେ ପ୍ରଭାବଶାଳୀ ଥିଲେ ଓ ଓଡ଼ିଶାରୁ ଯିଏ ସେଠାକୁ ଗଲେ ତାଙ୍କ ପ୍ରତି ସହଯୋଗର ହାତ ବଢ଼ାଇ ଦେଉଥିଲେ ସେହି ଦୁଇଜଣ ହେଲେ ଇତିହାସ ବିଭାଗର ଡକ୍ଟର ଆନନ୍ଦଚନ୍ଦ୍ର ସାହୁ ଓ ଓଡ଼ିଆ ବିଭାଗର ଡକ୍ଟର ମନୋରଂଜନ ପ୍ରଧାନ । ବିଶ୍ୱଭାରତୀ ସାହିତ୍ୟ ସମାଜରେ ଏହି ଦୁଇଜଣ ମେରୁସଦୃଶ । ମୁଁ ସେମାନଙ୍କ ସହଯୋଗରେ ବିଶ୍ୱଭାରତୀରେ ଥିବା ସମସ୍ତ ଓଡ଼ିଆଙ୍କୁ ମିଶାଇଦେଲି । ଓଡ଼ିଆ ବିଭାଗକୁ ଛାଡ଼ି ଦେଲେ ସଂସ୍କୃତ, ହିନ୍ଦୀ, ତିବ୍ବତୀୟ, ଇଂରାଜୀ, ଶିକ୍ଷା, କଳା, ପରିବେଶ ବିଜ୍ଞାନ, ରସାୟନ ବିଜ୍ଞାନ, ଉଦ୍‌ବିଦ ବିଜ୍ଞାନ, କୃଷି, ଚୀନା ଭାଷା ଇତ୍ୟାଦି ବିଭାଗରେ ପ୍ରାୟ ପଚିଶ/ତିରିଶ ଜଣ ଅଧ୍ୟାପକ-ଅଧ୍ୟାପିକା ଥିଲେ । ଏତଦ୍‌ଭିନ୍ନ କେନ୍ଦ୍ରୀୟ ଅଫିସ, ଜଳଯୋଗାଣ, ବ୍ୟାଙ୍କ ଇତ୍ୟାଦିରେ ମଧ୍ୟ ଥିଲେ ଅନେକ କର୍ମଚାରୀ । ସମସ୍ତଙ୍କୁ ଏହି ଅନୁଷ୍ଠାନରେ ମୁଁ ସାମିଲ କରିଦେଲି । ପ୍ରତିବର୍ଷ ମୋ କ୍ୱାର୍ଟରରେ ସରସ୍ୱତୀ ଓ ଗଣେଶ ପୂଜା ହୁଏ । ସମସ୍ତେ ଏଥିରେ ଯୋଗ ଦେଇ ଆନନ୍ଦ ଲାଭ କରନ୍ତି । ବିଶ୍ୱଭାରତୀ ସାହିତ୍ୟ ପରିଷଦର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଆମେ ଦୁଇଦିନ ଧରି ସେମିନାର ଓ ସାଧାରଣ ସଭାର ଆୟୋଜନ କରିଥିଲୁ । ଏହି ଉପଲକ୍ଷେ ଆମେ ଗୋଟିଏ ଚମତ୍କାର ସ୍ମରଣିକା ପ୍ରକାଶ କରିବା ସଙ୍ଗେସଙ୍ଗେ 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ: ଭୂମି ଓ ଭୂମିକା' ଶୀର୍ଷକ ଏକ ଉଚ୍ଚକୋଟୀର ପୁସ୍ତକ ପ୍ରକାଶ କରିଥିଲୁ । ଏହା ବ୍ୟତୀତ ସମାଲୋଚନାର ସମାଲୋଚନା ବିଷୟରେ ଏକ ପୁସ୍ତକ ମଧ୍ୟ ସଂକଳନ କରିଥିଲୁ ।

ଏହାକୁ ସଂପାଦନା କରିଥିଲେ ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର ।

ଶ୍ୟାମବାବୁ ଓ ମୁଁ ଏକଦା ଚିନ୍ତା କଲୁ ବିଶ୍ୱଭାରତୀରେ ସମସ୍ତ ଓଡ଼ିଆ ବନ୍ଧୁମାନଙ୍କୁ ନେଇ ପ୍ରତି ମାସର ଶେଷଦିନ ଗୋଟିଏ ଚକ୍ରଭୋଜି କରିବାକୁ । ତା'ପରେ ସମସ୍ତଙ୍କୁ ଡକାଇ ଆଲୋଚନା କଲୁ ଓ ସମସ୍ତେ ରାଜି ହୋଇଗଲେ । ପ୍ରତି ମାସରେ ଜଣ ଜଣଙ୍କ ଘରେ ଚକ୍ରଭୋଜି ହୁଏ । ଯାହାଙ୍କର ଯେଉଁ ମାସରେ ପାଳି ପଡ଼େ ସେ ସମସ୍ତ ଖର୍ଚ୍ଚ ବହନ କରନ୍ତି । ଏହା ବେଶ୍ ଆନନ୍ଦଦାୟକ ଥିଲା । ସମସ୍ତଙ୍କ ଭିତରେ ଐକ୍ୟ ଓ ସୌହାର୍ଦ୍ଦ୍ୟ ବଢ଼ିଉଠିଲା । ଏହି ଚକ୍ରଭୋଜିରେ ମନୋରଂଜନ, ସବିତା, ପ୍ରତାପ, ହରେକୃଷ୍ଣ, ଆନନ୍ଦବାବୁ, ନିରଂଜନବାବୁଙ୍କ ଭୂମିକା ଭୁଲିବାର ନୁହେଁ । ଥରେ ମୋ କ୍ୱାର୍ଟରରେ ଭୋଜି ହେଉଥାଏ । ଭିତର ବାରଣ୍ଡାରେ ରୋଷେଇ ହେଉଥିଲାବେଳେ ହଠାତ ଗ୍ୟାସ୍‌ଚୁଲା ଲିକ୍ କରିଗଲା । ନିଆଁ ଜଳିଉଠିଲା । ବାହାର ଘରେ ବସିଥିବା ସମସ୍ତ ବନ୍ଧୁ ପଦାକୁ ପଳାଇଗଲେ । ମୁଁ ମୋ ଶୋଇବାଘରେ ଥିଲି । ସେଠି ମୋ ସ୍ତ୍ରୀ, ନୀଳାଦ୍ରିବାବୁ, ପ୍ରତାପ, ସବିତା ଆଦି କେତେଜଣ ବସିଥିଲୁ । ନୀଳାଦ୍ରିବାବୁ ଓ ମୋ ସ୍ତ୍ରୀକୁ ଛାଡ଼ି ସମସ୍ତେ ସେହି ନିଆଁ ଧାସ ଭିତରେ ପଦାକୁ ବାହାରିଆସିଲୁ । ନୀଳାଦ୍ରିବାବୁ ଭୟରେ ଥରିଉଠୁଥାନ୍ତି । ମୋ ସ୍ତ୍ରୀ ମଧ୍ୟ ଭୟ କରିଯାଇଥାଏ । ଆମେ ଯେତେ ସେମାନଙ୍କୁ ଦଉଡ଼ି ଆସିବାକୁ କହିଲୁ ସେମାନେ ଆସୁ ନ ଥାନ୍ତି । ଜନୈକ ବଙ୍ଗାଳୀଯୁବକ ସାହସ କରି ଘର ଭିତରକୁ ପଶି ସେମାନଙ୍କୁ ନେଇଆସିଲେ । ଲୋକେ ଜମା ହୋଇ ବାଲିବସ୍ତା ଆଣି ଗ୍ୟାସ ସିଲିଣ୍ଡର ଉପରେ ପକାଇଲେ । କିଛି ସମୟ ପରେ ନିଆଁ ଲିଭିଗଲା । ସମସ୍ତେ ମିଶି ସଫାସୁତୁରା କରିଦେଲେ । ସେଦିନ ହୋଟେଲରୁ କିଣା ହୋଇ ଆସି ଭୋଜି ହେଲା ।

ବିଶ୍ୱଭାରତୀରେ ଥିଲାବେଳେ ଅନ୍ୟାନ୍ୟ ବିଭାଗରେ ମୋର କେତେଜଣ ବନ୍ଧୁ ଥିଲେ । ଇତିହାସ ବିଭାଗର ଆନନ୍ଦବାବୁ ମୋର ଅତ୍ୟନ୍ତ ଶ୍ରଦ୍ଧାଶୀଳ ଥିଲେ । ତାଙ୍କର ପତ୍ନୀ ଗୀତା ସୁଗୃହିଣୀ ଓ ଅତ୍ୟନ୍ତ ଭଦ୍ର । ସେମାନଙ୍କୁ ମୁଁ ପୁତ୍ରକନ୍ୟା ପରି ଦେଖୁଥିଲି । ପ୍ରତିଦିନ ମୁଁ ଓ ମୋ ସ୍ତ୍ରୀ ସନ୍ଧ୍ୟାବେଳେ ତାଙ୍କ ଘରକୁ ଯାଉ । ମୋ ସ୍ତ୍ରୀ ମଧ୍ୟ ସେମାନଙ୍କୁ ସ୍ନେହ କରେ । ତାଙ୍କ ଘରକୁ ଆସନ୍ତି ଇତିହାସ ବିଭାଗର ପ୍ରଫେସର ସୁବ୍ରତ ଚକ୍ରବର୍ତ୍ତୀ । ସେ ଶ୍ମଶ୍ରୁଧାରୀ । ଭାରି ସିଧାସାଧା ଅଥଚ ଜ୍ଞାନୋଦୀପ୍ତ ମଣିଷଟିଏ । ତାଙ୍କ ସହିତ ମୋର ଇତିହାସ ବିଷୟରେ ଆଲୋଚନା ହୁଏ । ଇତିହାସ ବିଭାଗର ପ୍ରଫେସର ପ୍ରଣବାନନ୍ଦ ଜସ୍, ପ୍ରଫେସର ଦିଲୀପ ଗାଙ୍ଗୁଲି, ପ୍ରଫେସର ଗଣପତି ସୁବ୍ବେୟା ଆଦିଙ୍କ ସହିତ ମୋର ସଂପର୍କ ଥାଏ । ସେହି ବିଭାଗର ଉଜ୍ଜୀବନ ପାଠ୍ୟକ୍ରମରେ ମୋତେ ଅଧ୍ୟାପକ/ ଅଧ୍ୟାପିକାମାନଙ୍କୁ ପଢ଼ାଇବାପାଇଁ ଡକାଯାଏ । ତିବ୍ବତୀୟ ବିଭାଗରେ ମଧ୍ୟ ମୁଁ ଉଜ୍ଜୀବନ ପାଠ୍ୟକ୍ରମରେ ଯୋଗ ଦେଇ ମୋର ବକ୍ତବ୍ୟ ଦେଇଛି । ଆନନ୍ଦବାବୁଙ୍କ ପରି ଜଣେ

ଶ୍ରଦ୍ଧାଶୀଳ ଓ ପରୋପକାରୀ ମଣିଷ ମୁଁ କ୍ୱଚିତ୍ ଦେଖିଛି । ତାଙ୍କର ଓଡ଼ିଆ ସ୍ୱାଭିମାନ ମୋତେ ମୁଗ୍ଧ କରେ । ବିଶ୍ୱଭାରତୀ ଓଡ଼ିଆ ପରିଷଦର ସେ ଉପସଭାପତି ଥାଆନ୍ତି । ଚୀନା ଭବନର ପ୍ରଫେସର ଆର୍ତ୍ତତ୍ରାଣ ନାୟକ ମୋ କ୍ୱାର୍ଟର ନିକଟରେ ରହୁଥାନ୍ତି । ମୁଁ ଓ ମୋ ସ୍ତ୍ରୀ ତାଙ୍କ ଘରକୁ ଯାଉ । ସେମାନେ ମଧ୍ୟ ଆମ ବସାକୁ ଆସନ୍ତି । ବଡ଼ ଅମାୟିକ ସେମାନେ । ତିବ୍ବତୀୟ ବିଭାଗର ମୁଖ୍ୟ ଡକ୍ଟର ନରେନ୍ଦ୍ରନାଥ ଦାସ । ଭାରି ଉତ୍ସାହୀ । ସେଠାରେ ସେ ବିବାହ କରିଥିଲେ । ଅକାଳରେ ତାଙ୍କର ଦେହାନ୍ତ ହୋଇଗଲା । ଡକ୍ଟର ନିରଂଜନ ମହାନ୍ତି ଇଂରାଜୀ ବିଭାଗରେ ପ୍ରଫେସର ହୋଇ ଆସିଲେ । ସେ ମୋର ବାଲେଶ୍ୱର କଲେଜର ଆଇ.ଏ. ଶ୍ରେଣୀର ଛାତ୍ର ଥିଲେ । ସେ ଆସିଲା ପରେ ଆମ ବସାକୁ ପ୍ରତିଦିନ ଆସନ୍ତି । ଇଂରାଜୀରେ ତାଙ୍କର କବିତା ପୁସ୍ତକ ଆମେରିକାରେ ବାହାରିଥାଏ । ସେ ମଧ୍ୟ ଇଂରାଜୀ ଭାଷାରେ ଅନେକ ଉଚ୍ଚକୋଟୀର ପ୍ରବନ୍ଧ ଲେଖିଥିଲେ । ମୋ ପ୍ରତି ଓ ମୋ ସ୍ତ୍ରୀ ପ୍ରତି ତାଙ୍କର ଭକ୍ତି ଓ ଶ୍ରଦ୍ଧା ଥିଲା । ସେ ମୋ ସ୍ତ୍ରୀକୁ ଭାଉଜ ଭାଉଜ ଡାକି ଯେପରି ଆନନ୍ଦବିହ୍ୱଳ ହୋଇଯାଉଥିଲେ ତାହା ଭୁଲିବାର ନୁହେଁ । ତାଙ୍କର ମଧ୍ୟ ଅକାଳ ବିୟୋଗ ହୋଇଗଲା । ସଂସ୍କୃତ ବିଭାଗର ନରୋତ୍ତମ ବାବୁ, ହରେକୃଷ୍ଣ ବାବୁ ମୋର ଅତ୍ୟନ୍ତ ଆପଣାର ଥିଲେ । ପରିବେଶ ବିଜ୍ଞାନ ବିଭାଗର ପ୍ରତାପ, ପୁଲକ, ବଟାନି ବିଭାଗର ନାଥବାବୁ, ଶିକ୍ଷା ବିଭାଗର ଅତସି, ସମସ୍ତଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧା । ହିନ୍ଦୀ ବିଭାଗର ଚକ୍ରଧର ବାବୁ ପ୍ରଚଣ୍ଡ ସ୍ୱାଭିମାନୀ । ସେହି ବିଭାଗରେ ତାଙ୍କୁ ଅନେକ ଅସୁବିଧାରେ ପକାଇଥିଲେ ମାତ୍ର ସେ ସବୁ ପରିସ୍ଥିତିକୁ ମୁକାବିଲା କରି ନିଜକୁ ପ୍ରତିଷ୍ଠା କରିପାରିଥିଲେ । ଓଡ଼ିଆ ବିଭାଗର ଶ୍ୟାମବାବୁ ତ ମୋର ଅତ୍ୟନ୍ତ ଅନ୍ତରଙ୍ଗ । ତାଙ୍କ କ୍ୱାର୍ଟର ଓ ମୋ କ୍ୱାର୍ଟର ପ୍ରାୟ ଲଗାଲଗି । ତେଣୁ ଆମ ଭିତରେ ପାରିବାରିକ ସଂପର୍କ ବଢ଼ିଯାଇଥାଏ । ତାଙ୍କର ଇଂରାଜୀ ଓ ସାନ୍ତାଳୀ ଭାଷାରେ ପାଣ୍ଡିତ୍ୟ । ସେ ବିଶ୍ୱଭାରତୀରେ ଲୋକସାହିତ୍ୟକୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରିଥିଲେ । ସେ ଓ ତାଙ୍କ ସ୍ତ୍ରୀ ମୋ ସ୍ତ୍ରୀକୁ ଅପା ଡାକି ଖୁବ୍ ଆନନ୍ଦ ପାଆନ୍ତି । ଏବେ ମଧ୍ୟ ମୋ ସ୍ତ୍ରୀ ସହିତ ଫୋନ୍‌ରେ ସେହି ଅପା ବୋଲି ସମ୍ବୋଧନ କରି ଆନନ୍ଦ ପାଆନ୍ତି । ନୀଳାଦ୍ରିବାବୁ ମୋର ସାନ ଭାଇ ପରି । ତାଙ୍କ କବିତା, ନାଟକ, ସମାଲୋଚନା ଉପରେ ମୁଁ ପ୍ରବନ୍ଧ ଲେଖିଛି । ମନୋରଂଜନ ଓ ସବିତା ମୋର ପୁତ୍ର କନ୍ୟା ପରି । ଏବେ ସେମାନେ ପ୍ରଫେସର । ତଥାପି ସେମାନେ ମୋତେ ଓ ମୋ ସ୍ତ୍ରୀକୁ ଏବେ ମଧ୍ୟ ସମ୍ମାନ ଦିଅନ୍ତି ଓ ବେଳେବେଳେ ମୋ କଟକ ଘରକୁ ଆସନ୍ତି । ବଙ୍ଗଳା ଭାଷା ସାହିତ୍ୟ ବିଭାଗର ପ୍ରଫେସର ଅମିତସୂଦନ ମିତ୍ରଙ୍କ ସହିତ ମୋର ଥାଏ ଘନିଷ୍ଠ ସଂପର୍କ । ସେ ଫକୀରମୋହନଙ୍କ ସାହିତ୍ୟ ଉପରେ ପ୍ରବନ୍ଧ ଲେଖିଥାନ୍ତି । ତାଙ୍କ ପାଖରୁ ମୁଁ ଶ୍ରୀକୃଷ୍ଣ କୀର୍ତ୍ତନ ଓ ଭାରତଚନ୍ଦ୍ରଙ୍କର ଗ୍ରନ୍ଥାବଳୀ

ଆଣି ପଢ଼ିଥାଏ । ସେଥିରେ ଥିବା 'ବିଦ୍ୟାସୁନ୍ଦର' ଓ 'ସୂର୍ଯ୍ୟବଂଶୀ' କାବ୍ୟ ମୋତେ ମୁଗ୍ଧ କରିଥିଲା ।

ବିଶ୍ୱଭାରତୀରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ କନ୍ୟା ଇନ୍ଦିରାଗାନ୍ଧୀ ପଢୁଥିଲେ । ଛାତ୍ରାବାସର ଯେଉଁ କୋଠରିରେ ସେ ରହୁଥିଲେ ସେହି କୋଠରିଟି ଏବେ ମଧ୍ୟ ସଂରକ୍ଷିତ ହୋଇ ରହିଛି । ରବୀନ୍ଦ୍ରନାଥଙ୍କର ଉତ୍ତମ ସଂପର୍କ ଥାଏ ମହାତ୍ମାଗାନ୍ଧୀଙ୍କ ସହିତ । ସେ ବିଶ୍ୱଭାରତୀକୁ ବେଳେବେଳେ ଯାଉଥିଲେ । ବସ୍ତୁତଃ ସେହିଁ ତାଙ୍କୁ ପ୍ରଥମେ ଗୁରୁଦେବ ବୋଲି ସମ୍ବୋଧନ କରିଥିଲେ । ରବୀନ୍ଦ୍ରନାଥ ମଧ୍ୟ ତାଙ୍କୁ ପ୍ରଥମେ ମହାତ୍ମା ସମ୍ବୋଧନ କଲେ । ମୁଁ ବିଶ୍ୱଭାରତୀ ରବୀନ୍ଦ୍ର ମିଉଜିୟମ ବୁଲି ଦେଖୁଥିଲାବେଳେ ମୋତେ ଆନନ୍ଦବାବୁ ଓ ଶ୍ରଦ୍ଧେୟ ମନୋରଂଜନ ତାହାର ଇତିହାସ କହିଥିଲେ । ଥରେ ମହାତ୍ମାଗାନ୍ଧୀ ନିର୍ଧୂମ ଖରାବେଳେ ରବୀନ୍ଦ୍ରନାଥଙ୍କ ବାସଭବନକୁ ଆସିଥିଲେ । ସେତେବେଳେ ରବୀନ୍ଦ୍ରନାଥ ଭୋଜନ କରୁଥାନ୍ତି । ତାଙ୍କର ବ୍ୟକ୍ତିଗତ ବିଶ୍ୱସ୍ତ ଭୃତ୍ୟ ଥାଆନ୍ତି ନାଥୁ ଭୂୟାଁ । ତାଙ୍କର ଘର ମୋ ଗାଁ ନିକଟବର୍ତ୍ତୀ ଛୋଟି । ସେ ପିଲାଦିନରୁ ଯାଇ ରବୀନ୍ଦ୍ରନାଥଙ୍କ ପାଖରେ ରହିଯାଇଥିଲେ । କବି ଗୁରୁଙ୍କ ଚିଠିପତ୍ର ଓ ଲେଖାଗୁଡ଼ିକୁ ସଜାଇ ରଖୁଥିଲେ । ରବୀନ୍ଦ୍ରନାଥଙ୍କର ତାଙ୍କ ପ୍ରତି ଗଭୀର ମମତା ଥାଏ । ଗାନ୍ଧିଜୀଙ୍କୁ ସେ ଚିହ୍ନି ନ ଥାଏ । ବାହାରେ ଗୋଟିଏ ଗଛମୂଳେ ବସିଥିବା, ଆଣ୍ଠୁ ନଡିଆଁ ଲୁଗା ପିନ୍ଧିଥିବା ଜଣେ ଲୋକଙ୍କୁ ଦେଖି ସେ ଭାବିଲା ଯେ କୌଣସି ଚାଷୀ ବା ପ୍ରଜା ଆସିଛି ତା'ର ଦୁଃଖ ରବୀନ୍ଦ୍ରନାଥଙ୍କୁ ଜଣାଇବା ପାଇଁ । ତେଣୁ ଘରୁ ସେ ଗାନ୍ଧିଜୀଙ୍କ ପାଖକୁ ଆସି ତାଙ୍କୁ ବଡ଼ପାଟିରେ ଚାଲିଯିବାକୁ କହନ୍ତେ, ରବୀନ୍ଦ୍ରନାଥ ଶୁଣିଲେ ନାଥୁର ପାଟି । ତେଣୁ ବାହାରିଆସି ଗାନ୍ଧିଜୀଙ୍କୁ ଦେଖି ବ୍ୟସ୍ତ ହୋଇପଡ଼ିଲେ । ସେ ନାଥୁକୁ ଗାଳି ଦେବାରୁ ଗାନ୍ଧିଜୀ ହସି ହସି କହିଲେ– 'ତାଙ୍କର କିଛି ଭୁଲ ନାହିଁ । ସେ ତାଙ୍କର କର୍ତ୍ତବ୍ୟ ଠିକ୍ ଭାବରେ କରିଛନ୍ତି ।' ଏହା ପରେ ରବୀନ୍ଦ୍ରନାଥ ଗାନ୍ଧିଜୀଙ୍କୁ ତାଙ୍କ ପ୍ରାସାଦ ଭିତରକୁ ନେଲେ । ତାଙ୍କୁ ଗାନ୍ଧିଜୀ କହିଲେ– 'ଏପରି ରାଜକୀୟ ପ୍ରାସାଦରେ ରହିବାକୁ ମୁଁ ଯୋଗ୍ୟ ନୁହେଁ ।' ରବୀନ୍ଦ୍ରନାଥ ପରେ ତାଙ୍କ ପ୍ରାସାଦର ଅନତିଦୂରରେ ଗୋଟିଏ ଗୃହ ନିର୍ମାଣ କଲେ । ମାଟିରେ ମୋଟା ମୋଟା କାନ୍ଥ । ଚାଳଘରର ଛାତ ପରି ମାଟିରେ ତିଆରି ମୋଟା ଛାତ । ଏକପ୍ରକାର କଳାମାଟି କାନ୍ଥ ଓ ଛାତରେ ନେସା ହୋଇଥାଏ । ବର୍ଷା ସେହି ଛାତର କିଛି କ୍ଷତି କରିପାରେ ନାହିଁ । ସେହି ଘରର ଝରକା, ଦରଜା ଖୋଲା । ତା' ଭିତରେ ମାଟିରେ ବେଞ୍ଚ । ଗାଧୁଆଘର ଓ ପାଇଖାନା । ସେହି ଘରର ନାମକରଣ କଲେ ରବୀନ୍ଦ୍ରନାଥ 'ଶ୍ୟାମଳୀ' । ଗାନ୍ଧିଜୀ ଆସିଲେ ସେହି ଘରେ ରହୁଥିଲେ । ବଡ଼ ବଡ଼ ନେତା ଓ ଅତିଥିମାନେ ଆସିଲେ ସେହି ଘରେ ଗାନ୍ଧିଜୀଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ଏବେ ମଧ୍ୟ ସେହି ଘର

ଦର୍ଶନୀୟ ସ୍ଥାନ ହୋଇ ରହିଛି । ତା' ପାଖକୁ ଲାଗି ବସନ୍ତ ନିବାସ ଓ ତା' ସାମ୍ନା ଭାଗରେ ଏକ ସୁନ୍ଦର ଗୋଲାପ ବଗିଚା । ଏବେ ମଧ୍ୟ ମୋ ମନ ଭିତରେ ସେହି ଦୃଶ୍ୟ ନାଚିଯାଉଛି । କଳାଭବନର ସମ୍ମୁଖଭାଗରେ ଥିବା ସାନ୍ତାଳସାନ୍ତାଳୀ ମୂର୍ତ୍ତି ଓ ଅନ୍ୟାନ୍ୟ ଅନେକ ମୂର୍ତ୍ତି ମୋ ମାନସପଟରେ ନାଚିଯାଉଛି । କି ସୌନ୍ଦର୍ଯ୍ୟବୋଧ ଓ ଜାତୀୟ ସାଂସ୍କୃତିକ ଅବବୋଧକୁ ନେଇ ସେସବୁ ନିର୍ମିତ ହୋଇଥିଲା– ଏବେ ଭାବିଲେ ମୋତେ ବିସ୍ମୟ ଲାଗେ । ସନ୍ଧ୍ୟାବେଳେ ଯେତେବେଳେ ମୁଁ ଓ ମୋ ସ୍ତ୍ରୀ ବୁଲିଯାଉଁ– ଶୁଣୁ ପ୍ରତ୍ୟେକ ବଙ୍ଗାଳୀଙ୍କ ଘରୁ ରବୀନ୍ଦ୍ର ସଙ୍ଗୀତର ଲହରି ଭାସି ଆସୁଥିବାର ମାଧୁର୍ଯ୍ୟ । ବିମୁଗ୍ଧ ହେଉ । ସେତେବେଳେ ମୁଁ ଭାବେ ଓଡ଼ିଶାରେ କ'ଣ ଏପରି ହେବ ନାହିଁ ? ନା– ଓଡ଼ିଆ ଜାତି ତା'ର ଇତିହାସ ଭୁଲିଯାଇଛି; ଭୁଲିଯାଇଛି ତା'ର ଐତିହ୍ୟ, ପରଂପରା ଓ ସଂସ୍କୃତି । ଭୁଲିଯାଇଛି ମଧ୍ୟ ତା'ର ସାରଳାଦାସଙ୍କୁ, ଉପେନ୍ଦ୍ରଭଞ୍ଜଙ୍କୁ, ଦୀନକୃଷ୍ଣଙ୍କୁ, ଅଭିମନ୍ୟୁଙ୍କୁ, କବିସୂର୍ଯ୍ୟଙ୍କୁ । ଓଡ଼ିଶୀ ସଙ୍ଗୀତକୁ ମଧ୍ୟ ଭୁଲିଛି । ଭୁଲିଛି ତା'ର କଳା ଭାସ୍କର୍ଯ୍ୟକୁ । ଗୋଟାଏ ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତି ତାକୁ ମୋହଗ୍ରସ୍ତ କରିଦେଇଛି । ହାୟ ଓଡ଼ିଆ ! କେବେ ତୋର ମୋହଭଙ୍ଗ ହେବ ?

ମୋ ବଡ଼ଭାଇଁ ବିଜୟ, ବଡ଼ଝିଅ ମଞ୍ଜୁଶ୍ରୀ, ସାନଝିଅ ଇତିଶ୍ରୀ, ନାତିନାତୁଣୀ, ବଡ଼ପୁଅ ପ୍ରମୁଖ ସେଠିକୁ ଯାଇଛନ୍ତି । ପୌଷମେଳା ଦେଖିଛନ୍ତି । ସେଇଠି ମୁଁ ସେମାନଙ୍କୁ ନେଇଯାଇଛି ନଦିଆ ନବଦୀପ । ଶ୍ରୀଚୈତନ୍ୟଙ୍କ ଆଦ୍ୟ ଲୀଳାକ୍ଷେତ୍ର ଦେଖିଛି । ସେଇଠୁ ଯାଇଛି ଗଙ୍ଗାନଦୀ ଅବବାହିକାରେ ଗଢ଼ିଉଠିଥିବା ଇସ୍କନ ମନ୍ଦିର ଦେଖିବାକୁ । ଶାନ୍ତିନିକେତନ ତ ବୀରଭୂମ ଜିଲ୍ଲାରେ ଅବସ୍ଥିତ । ତେଣୁ ଦିନେ ମୁଁ ଯାଇଥିଲି ଚଣ୍ଡୀଦାସଙ୍କ ଗାଁ ଦେଖିବାକୁ । ଶ୍ରଦ୍ଧେୟ ମନୋରଂଜନ ଓ ସବିତାଙ୍କ ସହିତ ମୁଁ ଓ ମୋ ସ୍ତ୍ରୀ ଯାଇଥଲୁ କଂକାଳୀ ତାଲା ଦେଖିବା ପାଇଁ । ମୁଁ ମଧ୍ୟ ସେତେବେଳେ ବର୍ଦ୍ଧମାନ ଓ ଦୁର୍ଗାପୁର ଯାଇଥିଲି । ସାରା କଲିକତାର ବିଭିନ୍ନ ସ୍ଥାନ ସପରିବାର ଯାଇଁ ଦେଖିଥିଲୁ ।

୨୦୦୧ ମସିହାରେ ମୁଁ ବିଶ୍ୱଭାରତୀ ଅଫିସରୁ ଚିଠି ପାଇଲି ଅବସର ପାଇଁ ଫର୍ମ ପୂରଣ କରିଦେବାକୁ । ମୋର ଗୋଟିଏ ଅସୁବିଧା ଥିଲା ଯେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଲିଅନ କଟି ନ ଥିଲା । ମୁଁ ମଧ୍ୟ ଏ ବିଷୟରେ ଅଜ୍ଞ ଥିଲି । ମୋତେ ତ ବିଭାଗୀୟ କ୍ଲିୟରାନ୍‌ସ ଦିଆ ହୋଇନଥିଲା । ତଥାପି ମୁଁ ସେଠି ନିୟମିତ ଦରମା ପାଇଲି । ମୋ ବଡ଼ପୁଅ ସେତେବେଳେ ମାଡ୍ରାସରେ ଇଂଜିନିୟରିଂ ପଢୁଥାଏ । ତା' ପାଖକୁ ଟଙ୍କା ପଠାଇବାକୁ ହେଉଥାଏ । ମଝିଆ ପୁଅ ଜ୍ୟୋତିରଂଜନ ପଢୁଥାଏ ରେଭେନ୍ସା କଲେଜରେ ଏମ୍.ଏ. । ବଡ଼ଝିଅ ଓ ମଝିଆଁଝିଅ ବାହା ହୋଇଯାଇଥାନ୍ତି । ସାନପୁଅ ଓ ସାନଝିଅ ହାଇସ୍କୁଲ ଓ କଲେଜରେ ପଢୁଥାନ୍ତି । ମୁଁ ବଡ଼ କଷ୍ଟରେ ସେମାନଙ୍କୁ ଟଙ୍କା ଦେଉଥାଏ ।

ଏଣେ ଅବସର ନେବାପାଇଁ ଚିଠି ପାଇଲି । କ'ଣ କରିବି ? ସେତେବେଳେ ବିଶ୍ୱଭାରତୀରେ ନିୟମ ଅନୁସାରେ ଷାଠିଏ ବର୍ଷ ପରେ ଆଉ ପାଞ୍ଚବର୍ଷ ପୁନଃ ନିଯୁକ୍ତି ବ୍ୟବସ୍ଥା ଥାଏ । ମାତ୍ର ମୋର ଲିଅନ କଟି ନ ଥିବାରୁ ମୁଁ ଆଉ ରହିପାରିବି ନାହିଁ । ମୋତେ ଅଫିସରେ କହିଲେ ଯେ ଦିନେ ବା ଦୁଇଦିନ ହେଉ ପଛେ ଲିଅନ କାଟି ଆଣିବାପାଇଁ । ମୋତେ ଆନନ୍ଦବାବୁ ଓ ମନୋରଂଜନ ଆଣି ଶାନ୍ତିନିକେତନ ଷ୍ଟେସନରେ ଟ୍ରେନ୍ ଚଢ଼ାଇଦେଲେ । ମୁଁ ବାଣୀବିହାର ଯାଇ ମୋ ଲିଅନ କାଟି ଦେବାକୁ କୁଳପତି ଗୋକୁଳାନନ୍ଦ ଦାସଙ୍କୁ ଅନୁରୋଧ କଲି । ସେ ମୋ ଦରଖାସ୍ତ ଉପରେ ସେକ୍ସନକୁ ଲେଖି ଦେଲେ ଲିଅନ କାଟିବା ପାଇଁ । ମାତ୍ର ସେକ୍ସନ ଅଫିସର ତ ମୋ ବିରୋଧୀ ଅଧ୍ୟାପକଙ୍କ ଦ୍ୱାରା ପ୍ରଭାବିତ । ସେ ଆଉ କୁଳପତିଙ୍କ ନିକଟକୁ କିଛି ଲେଖି ଦେଲେ ନାହିଁ । ମୋତେ ମଧ୍ୟ ଲିଅନ କଟିବ ନାହିଁ ବୋଲି କହିଲେ । କୁଳପତି ମୋ ପିଠିରେ ହାତ ମାରି କହିଲେ- 'ଆପଣ ଯାଆନ୍ତୁ । ମୁଁ ପରେ ସେକ୍ସନ ଅଫିସରଙ୍କୁ ବୁଝାଇ ଲିଅନ କାଟି ଦି ପଠାଇଦେବି ।' ମାତ୍ର ଚିଠି ଆସିଲା ନାହିଁ । ମନ ଦୁଃଖରେ ମୁଁ ବିଶ୍ୱଭାରତୀକୁ ଗଲି । ସେତେବେଳେ ମୁଁ ଥାଏ ବିଭାଗୀୟ ମୁଖ୍ୟ । ପ୍ରାୟ ତିନି ଚାରି ମାସ ଗଡ଼ିଯାଇଥାଏ । ତଥାପି ମୁଁ ଥାଏ ବିଭାଗୀୟ ମୁଖ୍ୟ । ମୁଁ ବିଦ୍ୟାଭବନର ଅଧ୍ୟକ୍ଷଙ୍କୁ ଏକଥା କହିବାରୁ ସେ ମୋତେ ବିଭାଗୀୟ ମୁଖ୍ୟ ପଦରୁ ଅବ୍ୟାହତି ଦେଲେ । ସେହି ସମୟରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ-ମାନଙ୍କରେ ଅବସର ବୟସର ସୀମା ୬୨ ବର୍ଷକୁ ବୃଦ୍ଧି ହୋଇଥାଏ ମାତ୍ର କେନ୍ଦ୍ର ସରକାରଙ୍କଠାରୁ ଚିଠି ପହଞ୍ଚି ନ ଥାଏ । ଏପରି ମାନସିକ ଅବସ୍ଥାରେ ଥିଲାବେଳେ ମୋ ସ୍ତ୍ରୀ ଯାଇଁ ହଠାତ୍ ବିଶ୍ୱଭାରତୀରେ ପହଞ୍ଚି ଆନନ୍ଦବାବୁଙ୍କ ବସାରେ ଥାଏ । ଆନନ୍ଦବାବୁ ମୋତେ ଫୋନ କରି ତାଙ୍କ ବସାକୁ ଯିବାକୁ କହିଲେ । ମୁଁ ତ ଜାଣି ନ ଥାଏ ଯେ ମୋ ସ୍ତ୍ରୀ ତାଙ୍କ ଘରେ ଅଛି ବୋଲି । ମୁଁ ତାଙ୍କ ଘରକୁ ଯିବାମାତ୍ରେ ମୋ ସ୍ତ୍ରୀକୁ ଦେଖି ଆଶ୍ଚର୍ଯ୍ୟ ହେଲି । କେମିତି ସେ ଏଠାକୁ ଆସିଲା ବୋଲି ପଚାରିଲି । ଆନନ୍ଦବାବୁ ତାକୁ ଷ୍ଟେସନ ପାଖରୁ ନେଇଆସିଥାନ୍ତି । ସେତିକିବେଳେ ନୀଳାଦ୍ରିବାବୁ ଓ ମନୋରଂଜନ ବାବୁ ଆସି ଆନନ୍ଦବାବୁଙ୍କ ଘରେ ପହଞ୍ଚିଲେ ଓ ମୋତେ କୁଳପତିଙ୍କ ପାଖକୁ ଯାଇ ସେମିନାର ପାଇଁ କିଛି ଅର୍ଥ ସାହାଯ୍ୟ କରିବାକୁ କହିଲେ । ମୋର ମନ ଦୁଃଖ । ମୋ ସ୍ତ୍ରୀ ଭାରି ଧର୍ମବିଶ୍ୱାସୀ ଓ ଆତ୍ମଶକ୍ତିସଂପନ୍ନା । ସେ କହିଲେ- 'ତମେ ଯାଅ । କିଛି ହବ ନାହିଁ । ତମେ ଏଇଠି ରହିବ ।' ମୁଁ କୁଳପତିଙ୍କ ପାଖକୁ ଗଲି । ସାଙ୍ଗରେ ଥାଆନ୍ତି ନୀଳାଦ୍ରିବାବୁ ଓ ମନୋରଂଜନବାବୁ । କୁଳପତି ପ୍ରଫେସର ଦିଲୀପ ସିହ୍ନା । ତାଙ୍କର ମୋ ପ୍ରତି ଥାଏ ଦୃଢ଼ବିଶ୍ୱାସ । ତାଙ୍କୁ ସେମିନାର କଥା କହିଲୁ । ସେ ପନ୍ଦର ହଜାର ଟଙ୍କା ଦେବାକୁ କହିଲେ । ଶ୍ରଦ୍ଧେୟ ମନୋରଂଜନ ତାଙ୍କୁ କହିଲେ- 'ବୈଷ୍ଣବଦା'ଙ୍କର ମନ ଦୁଃଖ ।

ତାଙ୍କର ପୁନଃନିଯୁକ୍ତି ହୋଇପାରୁ ନାହିଁ ।' ସେ ତତ୍‌କ୍ଷଣାତ୍ କହିଲେ– 'ମୁଁ ଶ୍ୟାମଳଦାଙ୍କର ତିନିମାସ ପାଇଁ ଏକ୍‌ଷ୍ଟେନ୍‌ସନ କରି ଦେଇସାରିଛି । ଏହା ମଧ୍ୟରେ ୬୨ ବର୍ଷ ଚିଠି ଆସିଯିବ । ତାଙ୍କର ରେଗୁଲାର ସର୍ଭିସ୍ ହୋଇଯିବ । ବ୍ୟସ୍ତ ହେବାର ନାହିଁ ।' ଏକଥା ଶୁଣି ମୁଁ ଖୁସି ହେଲି । ନୂଆ କ୍ୱାର୍ଟର ମୋତେ ମିଳିଥାଏ । ମୁଁ ସେଠିକୁ ଯାଇ ନ ଥାଏ । ସେହିଦିନ ପିଲାମାନେ ଯାଇ ମୋ କ୍ୱାର୍ଟର ପରିଷ୍କାର ପରିଚ୍ଛନ୍ନ କରିଦେଲେ । ପରଦିନ ସେ ଘରେ ହୋମ କଲୁ ଓ ଆମେ ସେହି ଘରେ ରହିଲୁ । ମୁଁ ପୁଣି ଆସିଲି ବାଣୀବିହାର ମୋ ଲିଅନ କାଟିବା କଥା ବୁଝିବା ପାଇଁ । ମେ ମାସ । ବିଶ୍ୱଭାରତୀ ଛୁଟି ହୋଇଯାଇଥାଏ । ମୁଁ ଗଲି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କ ପାଖକୁ । ସେହି ଦିନ ସେ ସେକ୍ସନ ଅଫିସର ଓ ସଂପୃକ୍ତ କିରାଣିକୁ ଡକାଇ କହିଲେ– 'ଆଜି ବୈଷ୍ଣବବାବୁଙ୍କ ଲିଅନ କାଟି ମୋତେ ଚିଠି ଦେଲେ ମୁଁ ଦସ୍ତଖତ କରି ତାଙ୍କ ହାତରେ ଦେବି ।' ସେକ୍ସନ ଅଫିସର କ'ଣ ଟିକେ ବିରୋଧ କରିବାରୁ କୁଳପତି ରାଗିଗଲେ ଓ କହିଲେ– 'ମୁଁ କୁଳପତି ନା ତମେ ? ମୁଁ ଯାହା କହୁଛି ତାହା କର ।' ସେଦିନ ମୋର ଲିଅନ କ୍ୟାନସେଲ ହୋଇଥିବା ଚିଠି ମୁଁ ପାଇଲି ଓ ବିଶ୍ୱଭାରତୀକୁ ଡାକରେ ପଠାଇଦେଲି । ମାତ୍ର ସେଠୁ ମୋତେ ଫୋନରେ କହିଲେ ଯେ ତାହାର ଆଉ ଆବଶ୍ୟକତା ନାହିଁ । ମୋର ଦୁଇ ବର୍ଷ ରେଗୁଲାର ହୋଇଯାଇଛି । ମୁଁ ଖୁସି ହେଲି । ଏହା ପରେ ମୁଁ ବିଶ୍ୱଭାରତୀରେ ପାଞ୍ଚବର୍ଷ ରହିଲି । ଅନେକ କାର୍ଯ୍ୟ କଲି । ପଢ଼ିଲି ମଧ୍ୟ ଅନେକ ପୁସ୍ତକ । ସେତିକିବେଳେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ମୋର ଦୁଇଟି ମନୋଗ୍ରାଫ୍– ଗୋଟିଏ ମହତାବ ଓ ଅନ୍ୟଟି ବ୍ରହ୍ମାନନ୍ଦ ପଣ୍ଡାଙ୍କ ଉପରେ ପ୍ରକାଶ କଲେ । ଫ୍ରେଣ୍ଡସ୍ ପବ୍ଲିଶର୍ସ ମଧ୍ୟ ମୋର 'ସମୀକ୍ଷାଲୋକ' ଓ ଅନ୍ୟ କେତୋଟି ପୁସ୍ତକ ପ୍ରକାଶ କଲେ । ସେଇଠି ଥିଲାବେଳେ 'ସୋରୋ' ରାଧାନାଥ ପାଠାଗାର ନିମନ୍ତ୍ରଣ କରି ମୋତେ ଭବ୍ୟ ସମ୍ବର୍ଦ୍ଧନା ଦେଲେ ।

## ମୋର ଅବସର ଗ୍ରହଣ

୨୦୦୪ ମସିହା ମାର୍ଚ୍ଚ ମାସରେ ମୁଁ ବିଶ୍ୱଭାରତୀରୁ ଅବସର ଗ୍ରହଣ କଲି । ସେତେବେଳକୁ ମୋତେ ୬୫ ବର୍ଷ ବୟସ ହୋଇଯାଇଥାଏ । ସେଠି ଥିଲାବେଳେ ମୁଁ ଭାରତର ବିଭିନ୍ନ ସ୍ଥାନକୁ, କଲିକତାକୁ ଓ ଓଡ଼ିଶାର ବିଶ୍ୱବିଦ୍ୟାଳୟ ତଥା କଲେଜମାନଙ୍କୁ ସେମିନାରରେ ଯୋଗ ଦେବାକୁ ଯାଉଥିଲି । ବିଭିନ୍ନ ସାହିତ୍ୟ ଓ ସାଂସ୍କୃତିକ ସଭାକୁ ମଧ୍ୟ ଯାଉଥିଲି । ମୁଁ ମଧ୍ୟ ଯାଉଥିଲି ଦିଲ୍ଲୀକୁ ଆଇ.ଏ.ଏସ୍. ଓ ୟୁଜିସି ଖାତା ଦେଖିବାକୁ । ଏସବୁ ଥିଲା ମୋର ଗୌଣ । ମୁଖ୍ୟ ଥିଲା ଲେଖାଲେଖି ଓ ପଢ଼ାପଢ଼ି । ମୋ ସ୍ତ୍ରୀ ମୋ ଉପରେ

ବିରକ୍ତ ହୁଏ ଏତେ ଲେଖାଲେଖି ବା ପଢ଼ାପଢ଼ି ନ କରିବାକୁ । ଆଖି ଖରାପ ହୋଇଯିବ । ସେ ମଧ୍ୟ ସଭାସମିତିକୁ ଯିବାପାଇଁ ବାରଣ କରେ । ମୁଁ କିନ୍ତୁ ଯାଏ ।

ଶେଷରେ ମୁଁ ବିଶ୍ୱଭାରତୀରୁ ଅବସର ନେଲି । ମୋତେ ବିଭାଗ ତରଫରୁ ବିଦାୟ ସମ୍ବର୍ଦ୍ଧନା ଦିଆଗଲା । ବିଭାଗୀୟ ମୁଖ୍ୟ ନୀଳାଦ୍ରିବାବୁ ସଭାପତିତ୍ୱ କରୁଥିଲେ । ଅଧ୍ୟାପକ/ ଅଧ୍ୟାପିକା ଓ ଛାତ୍ରଛାତ୍ରୀମାନେ ମୋତେ ପ୍ରଶଂସା କରି ଭାଷଣ ଦେଲେ । ମୁଁ ମଧ୍ୟ ଶେଷରେ ଉତ୍ତର ଦେଲି । ନୀଳାଦ୍ରିବାବୁ କହିବାକୁ ଉଠିଲାବେଳେ ମୋ ସ୍ତ୍ରୀ ହଠାତ୍ ଛିଡ଼ା ହୋଇ ନିଜର ବକ୍ତବ୍ୟ ଦେବାକୁ କହିଲେ । ବିଶ୍ୱଭାରତୀରେ ସେ ଥିଲା ପ୍ରାୟ ସମସ୍ତଙ୍କର ଭାଉଜ ଓ ଅନ୍ୟ କେତେ ଜଣଙ୍କର ମାଉସୀ । ମୁଁ ବିସ୍ମିତ ହୋଇଗଲି । ସେ ତ କେବେ କେଉଁଠି କିଛି କହି ନାହିଁ, ସେ କ'ଣ ଛିଡ଼ା ହେଲାଣି କହିବାକୁ ? ମାତ୍ର ସେ ଏପରି ଭାବରେ କହିଲା ଯେ ସମସ୍ତେ ମୁଗ୍ଧ ହୋଇଗଲେ । ସେତେବେଳେ ଗିରିବାଳା ଓ କୈଳାସ ମୋ ଉପରେ ଖପ୍ପା ହୋଇଯାଇଥାନ୍ତି । ଆମ ବସାକୁ ଆସୁ ନ ଥାନ୍ତି । ତେଣୁ ସେ ସେମାନଙ୍କୁ କହିଲା– 'ମୋତେ ଗିରିବାଳା ଓ କୈଳାସ ଭାଉଜ ଡାକନ୍ତି । ଆମ ଘରକୁ ଆସନ୍ତି । ବିଭାଗରେ କାହାର କ'ଣ ହେଲା ବା କିଏ କାହାକୁ କ'ଣ କହିଲେ, ସେଥିରେ ମୋର କ'ଣ ଦୋଷ ? ମୋତେ ଦେଖିଲେ ମୁହଁ ବୁଲାଇ କାହିଁକି ଚାଲିଯାଉଛନ୍ତି ? ବିଶ୍ୱଭାରତୀ ପରି ଏକ ମହାନ୍ ଅନୁଷ୍ଠାନରେ ଏପରି ସଂକୀର୍ଣ୍ଣତା କ'ଣ ଶୋଭାପାଏ ?' ତା' ବକ୍ତବ୍ୟରେ ସମସ୍ତେ ପ୍ରଭାବିତ ହୋଇଗଲେ । ମୁଁ ଲକ୍ଷ୍ୟ କଲି ଗିରିବାଳା ଓ କୈଳାସ ମୋ ସ୍ତ୍ରୀକୁ ଘେରି ଭାରି ଦୁଃଖ ପ୍ରକାଶ କରୁଥାନ୍ତି । ସେହି ଦିନ ତାଙ୍କ ବସାକୁ ଆମକୁ ନିମନ୍ତ୍ରଣ କଲେ ଓ ଆମେ ଯାଇ ବେଶ୍ ଆନନ୍ଦିତ ହେଲୁ । ତା'ପରେ ବିଶ୍ୱଭାରତୀ ସାହିତ୍ୟ ପରିଷଦର ସମସ୍ତ ସଦସ୍ୟ ଆମ ବସାକୁ ସନ୍ଧ୍ୟାବେଳେ ଆସିଲେ । ଭୋଜିର ବ୍ୟବସ୍ଥା କଲେ । ସଭାଟିଏ କରି ମୋ ସଂପର୍କରେ ଓ ମୋ ସ୍ତ୍ରୀ ସଂପର୍କରେ ପ୍ରଶଂସା କଲେ । ମୋତେ ଓ ମୋ ସ୍ତ୍ରୀକୁ ଉପହାର ଓ ଉପଢୌକନ ପ୍ରଦାନ କଲେ । ସେଦିନ ଆନନ୍ଦବାବୁ, ନିରଂଜନବାବୁ, ମନୋରଂଜନ, ସବିତା, ପ୍ରତାପ, ହରେକୃଷ୍ଣ, ଶ୍ୟାମବାବୁ, ଆର୍ତ୍ତବାବୁ, ନାଥବାବୁ ପ୍ରମୁଖ ଯେପରି ମୋ ବିଦାୟରେ ଭାବବିହ୍ୱଳ ହୋଇପଡ଼ିଲେ ତାହା ମୋ ଭିତରେ ଗଭୀର ରେଖାପାତ କଲା । ଆମକୁ ମଧ୍ୟ ଆନନ୍ଦବାବୁ, ମନୋରଂଜନବାବୁ, ଶ୍ୟାମବାବୁ ଓ ନିରଂଜନବାବୁ ପ୍ରମୁଖ ସେମାନଙ୍କ ବସାକୁ ଡାକି ଶ୍ରଦ୍ଧାରେ ଭୂରିଭୋଜନ ଦେଲେ । ଗୋଟିଏ ମାସ କଟାଇ ଆମେ ବିଶ୍ୱଭାରତୀରୁ ବିଦାୟ ନେଇ କଟକ ଆସିଲୁ । ଆନନ୍ଦବାବୁ ଓ ମନୋରଂଜନବାବୁ ପ୍ରମୁଖ ଆମକୁ ଟ୍ରେନ୍‌ରେ ଚଢ଼ାଇ ବିଦାୟ ଦେଲେ ଅଶ୍ରୁ ଛଳଛଳ ନୟନରେ ।

ଏଥର ଶାନ୍ତିନିକେତନ ପଡ଼ିରହିଲା ଅନେକ ଦୂରରେ । ତଥାପି ନୀରବ ମୁହୂର୍ତ୍ତରେ ମାନସପଟରେ ଭାସିଉଠେ ସେଠିକାର ରମଣୀୟ ଚିତ୍ରପଟ, ଭାସିଉଠେ ବିଭିନ୍ନ ମେଳା ଓ ଉତ୍ସବ । କେତେ କେତେ ବିଜ୍ଞ ଅଧ୍ୟାପକ/ଅଧ୍ୟାପିକାଙ୍କ ଛବି ଫୁଟିଉଠେ । କେତେ ଛାତ୍ରଛାତ୍ରୀଙ୍କ ମମତାବୋଳା ମୁହଁ ଦିଶିଯାଏ । ମୁଁ କେବଳ ଭାବେ ମଣିଷଙ୍କୁ ଅନାବିଳ ଭାବରେ ଭଲ ପାଇପାରିଲେ ହିଁ ଜୀବନଟା ଆନନ୍ଦମୟ ହୋଇଯାଏ । ସେହି ଆନନ୍ଦ ଏବେ ମଧ୍ୟ ପାଉଛି ବହୁ ଦୂରରେ ରହି ।

ବିଶ୍ୱଭାରତୀରେ ଥିଲାବେଳେ ଶ୍ୟାମବାବୁଙ୍କ ଝିଅ ସଂଜୁ ମୋ ଅଧୀନରେ ପିଏଚ.ଡି. କରିଥିଲା । ଲକ୍ଷ୍ମୀପ୍ରିୟା ବେହେରା ନାମରେ ଗୋଟିଏ ଗରିବ ଝିଅ ବିଭାଗୀୟ ବୃତ୍ତି ପାଇ ପିଏଚ.ଡି. କଲା । ମନେପଡୁଛି ତା'ର ପ୍ରିସବ୍‌ମିଶନ ପରୀକ୍ଷା ବେଳେ ତାଙ୍କୁ କେତେକ ଛାତ୍ର, ଅଧ୍ୟାପକ ଓ ଅଧ୍ୟାପିକା ନାନା ଉଦ୍ଭଟ ପ୍ରଶ୍ନ ପଚାରିଥିବା ଓ ବିଭାଗୀୟ ମୁଖ୍ୟ ଏବଂ ବିଷୟ-ବିଶାରଦ ତାକୁ ଆଉ ଥରେ ପରୀକ୍ଷା ଦେବାକୁ କହିବା କଥା । ମୁଁ ଥିଲି ସେ ପିଲାର ମାର୍ଗଦର୍ଶକ । ତା'ର ସନ୍ଦର୍ଭ ଥିଲା ବଙ୍ଗଳା ଓ ଓଡ଼ିଆ ଭାଷା ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ । ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' ଓ ଭାରତଚନ୍ଦ୍ରଙ୍କ 'ବିଦ୍ୟାସୁନ୍ଦର' କାବ୍ୟର ସେ ତୁଳନା କରିଥାନ୍ତି । କେତେଜଣ ଅଧ୍ୟାପକ/ଅଧ୍ୟାପିକା 'ବିଦ୍ୟାସୁନ୍ଦର' କାବ୍ୟ ସହିତ 'ଲାବଣ୍ୟବତୀ'ର କିଛି ସଂପର୍କ ନାହିଁ ଓ ଏହାକୁ ଗବେଷିକା ମନଇଚ୍ଛା ଲେଖିଛନ୍ତି ବୋଲି କହିଲେ । ମୁଁ ସମସ୍ତଙ୍କୁ ଯେତେବେଳେ ଭାରତଚନ୍ଦ୍ରଙ୍କ 'ବିଦ୍ୟାସୁନ୍ଦର' କାବ୍ୟ କିଏ କିଏ ପଢ଼ିଛନ୍ତି ଓ ଭାରତଚନ୍ଦ୍ରଙ୍କ ସଂପର୍କରେ କିଏ କ'ଣ ଜାଣିଛି ବୋଲି ପଚାରିଲି, ସମସ୍ତେ ନୀରବ ରହିଲେ । ପୁନଶ୍ଚ ବିଷୟ ବିଶାରଦ ପ୍ରଫେସର ବୈରାଗୀ ଚରଣ ଜେନା ଓ ବିଭାଗୀୟ ମୁଖ୍ୟ ନୀଳାଦ୍ରିବାବୁ ଭ୍ରମ ସଂଶୋଧନ କରି ସେହି ଝିଅଟିର ସନ୍ଦର୍ଭକୁ ଅନୁମୋଦନ କଲେ । ସେହିପରି ଆଉ ଗୋଟିଏ ଝିଅ ଆର୍ଯ୍ୟପ୍ରଜ୍ଞା ଯାଇଥିଲା ବିଶ୍ୱଭାରତୀକୁ ମୋ ପାଖରେ ଗବେଷଣା କରିବା ପାଇଁ । ସେ ମୋ ପାଖରେ ରହିଲା । ତା'ର ଇଣ୍ଟରଭ୍ୟୁ ହେଲା ମାତ୍ର ବିଶ୍ୱଭାରତୀ ନିୟମ ଅନୁସାରେ ଅନର୍ସ ବା ନେଟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ସାର୍ଟିଫିକେଟ ନ ଥିଲେ ସେଠାରେ ଗବେଷଣା କରିପାରିବ ନାହିଁ । ସେ ଝିଅଟି ମନଦୁଃଖରେ ଫେରିଲା । ନେଟ୍ ପରୀକ୍ଷା ଦେଇ ଜି.ଆର୍.ଏଫ୍. ପାଇଲା ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ଗବେଷଣା କରି ପିଏଚ.ଡି. ପାଇଲା ମୋ ତତ୍ତ୍ୱାବଧାନରେ । ଭାରି ସରଳ, ଅମାୟିକ ଓ ସ୍ନେହୀ ଝିଅଟିଏ ।

ବିଶ୍ୱଭାରତୀର କେତେଜଣ ଅଧ୍ୟାପକଙ୍କ ସହିତ ମୋର ଘନିଷ୍ଠତା ବଢ଼ିଯାଇଥାଏ । ତେଣୁ ସେମାନଙ୍କ ପାରିବାରିକ ଉତ୍ସବରେ ମୁଁ ଯୋଗ ଦିଏ । ଶ୍ୟାମବାବୁଙ୍କ ଝିଅ ବାହାଘରରେ ମୁଁ ଓ ମୋ ସ୍ତ୍ରୀ ଯୋଗ ଦେଇଛୁ । ତାଙ୍କ ବାଲେଶ୍ୱର ଘରକୁ ମଧ୍ୟ ଯାଇଛୁ ।

ଆନନ୍ଦବାବୁଙ୍କ ଝିଅ ବାହାଘରକୁ ଯାଇଛୁ । ତାଙ୍କ ଝିଅ ଓ ପୁଅ ସମସ୍ତେ ଭଲ ଚାକିରି କରିଗଲେଣି । ତାଙ୍କ ବାପା ନବେ ବର୍ଷ ବୟସରୁ ବେଶି । ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ଓ ଧର୍ମପରାୟଣ । ମୋତେ ସେ ବହୁତ ଶ୍ରଦ୍ଧା କରନ୍ତି ।

ମୁଁ ବିଶ୍ୱଭାରତୀରେ ଥିଲାବେଳେ ଛାତ୍ରଛାତ୍ରୀମାନେ ମୋ ବସାକୁ ଆସୁଥିଲେ । ମୁଁ ସେମାନଙ୍କୁ ପଢ଼ାଇ ଦେଉଥିଲି । ମୋ ସ୍ତ୍ରୀ ସେମାନଙ୍କୁ ଖୁବ୍ ଶ୍ରଦ୍ଧା କରେ । କେତେଜଣ ଗରିବ ପିଲା ମୋ ବସାରେ ରହି ପାଠ ପଢୁଥିଲେ । ଏହିପରି ଭାବରେ ବିଶ୍ୱଭାରତୀର ସାତବର୍ଷ ଥିଲା ମୋର ଅନେକ ସ୍ମୃତିର ଜୀବନ୍ତ କାହାଣୀ ।

## ମୋର ପେନ୍‌ସନ ପାଇବାରେ ହଟଂଚମଟ

ବିଶ୍ୱଭାରତୀରେ ଅଧ୍ୟାପନା ବୃତ୍ତିରୁ ମୁଁ ସେବା ନିବୃତ୍ତ ହେଲି । ମୋର କାଗଜପତ୍ର ଓ ଟଙ୍କାପଇସା ଓଡ଼ିଶା ସରକାରଙ୍କଠାରୁ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଆଣିବା ପାଇଁ ମୋତେ ବିଶ୍ୱଭାରତୀର ପେନ୍‌ସନ ବିଭାଗ କହିଲେ । ସେଠାରୁ ମଧ୍ୟ ଚିଠି ଆସିଲା ଉତ୍କଳ ବିଶ୍ୱବିଦ୍ୟାଳୟକୁ । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଆସି ଯେତେ ଅନୁରୋଧ କଲେ ମଧ୍ୟ ସେକ୍‌ସନ ଅଫିସର ଆଦୌ ସହଯୋଗ କଲେ ନାହିଁ । ସେତେବେଳେ ଶ୍ରୀଯୁକ୍ତ ଅରୁଣ କୁମାର ସାମନ୍ତରାୟ ଥାଆନ୍ତି କୁଳପତି । ରେଜିଷ୍ଟ୍ରାର ଥିଲେ ଶ୍ରୀଯୁକ୍ତ ଅଲେଖଚନ୍ଦ୍ର ପଡ଼ିଆରୀ । ଅରୁଣବାବୁ ମୋତେ ଭଲ ଭାବରେ ଜାଣିଥାନ୍ତି । ତାଙ୍କ ପିତା ପ୍ୟାରୀମୋହନ ସାମନ୍ତରାୟ ଅବସରପ୍ରାପ୍ତ କଲେକ୍ଟର । କଟକର ମଧୁପାଟଣା ଛକ ପାଖରେ ରହୁଥାନ୍ତି । ତାଙ୍କର ଖଣ୍ଡାୟତ/କ୍ଷତ୍ରିୟ ଦୃଷ୍ଟିକୋଣ ଅତ୍ୟନ୍ତ ଶାଣିତ । ସେ ଗୋଟିଏ 'ବୀର ଓଡ଼ିଆ' ଶୀର୍ଷକ ପତ୍ରିକା ବାହାର କରୁଥିଲେ । ତାଙ୍କର ମଧ୍ୟ ଗୋଟିଏ ଗଳ୍ପ ପୁସ୍ତକ ପ୍ରକାଶ ପାଇଥିଲା । ସେ ମୋତେ ଗଭୀର ଶ୍ରଦ୍ଧା କରନ୍ତି । ଖଣ୍ଡାୟତ/କ୍ଷତ୍ରିୟ ମହାସମାବେଶକୁ ମୋତେ ଡାକିଛନ୍ତି । ମୁଁ ମଧ୍ୟ ଯାଇ ସେଠାରେ ଭାଷଣ ଦେଇଛି । ଅରୁଣବାବୁ ମଧ୍ୟ ପିତାଙ୍କ ଆଦର୍ଶର ଅନୁଗାମୀ । ବ୍ରହ୍ମଗିରି ଅଞ୍ଚଳରେ ଖଣ୍ଡାୟତ/କ୍ଷତ୍ରିୟ ମହାସଭାକୁ ସେ ମୋତେ ନିମନ୍ତ୍ରଣ କରିଥିଲେ । ମୁଁ ମଧ୍ୟ ଯାଇଥିଲି । ପ୍ୟାରୀବାବୁ ତାଙ୍କୁ ମୋ ପେନ୍‌ସନ କଥା କହିଥିଲେ । ରେଜିଷ୍ଟ୍ରାର ଅଲେଖବାବୁ ଜଣେ କବି ଓ ଗାଳ୍ପିକ । ତାଙ୍କ ସହିତ ମୋର ସଂପର୍କ ଥାଏ । ତେଣୁ ମୁଁ ଅରୁଣବାବୁଙ୍କୁ ସାକ୍ଷାତ୍ କରି ମୋ ପେନ୍‌ସନ କଥା କହିଲି । ସେ ସଙ୍ଗେସଙ୍ଗେ ରେଜିଷ୍ଟ୍ରାର, ଫାଇନାନ୍‌ସ ଅଫିସର ଓ ସେକ୍‌ସନ ଅଫିସରଙ୍କୁ ଡକାଇ ପଠାଇଲେ । ସେମାନେ ଆସିବା ପରେ କହିଲେ– ବୈଷ୍ଣବବାବୁଙ୍କ ପେନସନ କାଗଜପତ୍ର ପନ୍ଦରଦିନ ମଧ୍ୟରେ ଠିକ୍ କରି ବିଶ୍ୱଭାରତୀକୁ ପଠାଇ ଦେବାପାଇଁ । ତାହାହିଁ

ହେଲା । ପନ୍ଦରଦିନ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ସମସ୍ତ କାଗଜପତ୍ର ବିଶ୍ୱଭାରତୀକୁ ଚାଲିଗଲା । ଅରୁଣବାବୁ ମୋତେ କହିଥିଲେ- ଏବେ ଯେତିକି ପେନ୍‌ସନ ମିଳିବ ତାହାକୁ ନେଇଯାଆନ୍ତୁ । ଓଡ଼ିଶା ସରକାରର କାଗଜପତ୍ର ପରେ ଆସିଲେ ପଠାଇ ଦିଆଯିବ ଓ ମୁଁ ପୂର୍ଣ୍ଣ ପେନ୍‌ସନ ପାଇବି । ସେ ମୋତେ କହିଥିଲେ ଯେ ସଚିବାଳୟ ଭୂତଖାନା । ସେଠି ଏତେ ସହଜରେ କାର୍ଯ୍ୟ ହୁଏ ନାହିଁ ।

ଏହା ପରେ ମୁଁ ସରକାରୀ ଚାକିରି କାଳର ପେନ୍‌ସନ ପାଇଁ ଲାଗିଲି । ବାରମ୍ବାର ମୁଁ ସଚିବାଳୟକୁ ଯାଉଥାଏଁ । ମୋତେ ଶିକ୍ଷା ବିଭାଗର କିରାଣିମାନେ ବଡ଼ ହଇରାଣ କଲେ । ଜଣେ ମୋ'ଠାରୁ ପାଞ୍ଚଶହ ଟଙ୍କା ନେଇ ସବୁ କାର୍ଯ୍ୟ ସେ କରିଦେବ ବୋଲି କହିଲେ । ପରେ ମୁଁ ତାଙ୍କୁ ଯେତେ ଖୋଜିଲେ ମଧ୍ୟ ପାଇଲି ନାହିଁ । ଆଉ ଜଣେ କିରାଣିଙ୍କୁ ଅନୁରୋଧ କରିବାରୁ ସେ ମୋତେ ନାନା କାଗଜପତ୍ର ଦେବାକୁ କହିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ମୁଁ ସ୍ଥାୟୀ ହୋଇଛି କି ନାହିଁ, ତାହାର ଚିଠି ଅଛି କି ନାହିଁ, ସର୍ଭିସ ବୁକ୍ ଅଛି କି ନାହିଁ, ଯେଉଁ ଯେଉଁ କଲେଜରେ ଥିଲି ତାହାର ନୋ ଅବ୍‌ଜେକ୍‌ସନ ସାର୍ଟିଫିକେଟ ଅଛି କି ନାହିଁ ଇତ୍ୟାଦି ଲମ୍ବା ଲିଷ୍ଟ ଧରାଇଦେଲେ । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଚିଠି ନେଇ ଦେଲି । ସମସ୍ତ କଲେଜର ସାର୍ଟିଫିକେଟ ଦେଲି । ସେତେବେଳେ ଆମର ସର୍ଭିସ ବୁକ୍ ନ ଥାଏ । ଏ.ଜି. ସେହି ରେକର୍ଡ଼ ମେଣ୍ଟେନ କରୁଥିଲେ । ସେ କାଗଜ ମଧ୍ୟ ଦାଖଲ କଲି । ଏଥିରେ ମୋତେ ଉପନିର୍ଦ୍ଦେଶକ ମୋର ଛାତ୍ର ଡ. କୈଳାସ ଟିକାୟତ ରାୟ ଓ ମୋର ସାରସ୍ୱତ ବନ୍ଧୁ ଡକ୍ଟର ଭଗବାନ ଜୟସିଂହ ବହୁତ ସାହାଯ୍ୟ କଲେ । ସବୁ କାଗଜପତ୍ର ଦାଖଲ କରିଥିଲେ ମଧ୍ୟ ସର୍ଭିସ ବୁକ୍ ପାଇଁ ଜିଦି କଲେ । ମୋତେ କହିଲେ ମୁଁ ପେନସନ ପାଇପାରିବି ନାହିଁ । ସେତେବେଳେ ଶିକ୍ଷା ବିଭାଗର ଡେପୁଟି ସେକ୍ରେଟାରୀ ଥାଆନ୍ତି ଗଗନ ବିହାରୀ ସ୍ୱାଇଁ । ସେ ନୂଆ ଧରଣର ଗଳ୍ପ ଲେଖୁଥାଆନ୍ତି । ମୁଁ ତାଙ୍କର ଗଳ୍ପ ପଢ଼ିଥାଏ । ତାଙ୍କୁ ଭେଟିଲି । ସେ ମୋତେ ଅନେକ ସାହାଯ୍ୟ କଲେ । ଏହା ପରେ ସେ ମହାଶୟ ବଦଳି ହୋଇଗଲେ । ମୁଁ ଆଉ ପେନସ୍‌ନ ପାଇବି ନାହିଁ- ଏପରି ଗୋଟିଏ ଧାରଣା ମୋର ସୃଷ୍ଟି ହୋଇଯାଉଥାଏ । କିରାଣିମାନେ ମୋତେ ନାନା ଅସୁବିଧାରେ ପକାଉଥାଆନ୍ତି । ସେତେବେଳେ ମୋ କଟକ ଘର ପାଖରେ ଜଣେ ଅବସରପ୍ରାପ୍ତ ଏ.ଡ଼ି.ଏମ୍. ଶ୍ରୀ କାହ୍ନୁଚରଣ ସାହୁ ରହୁଥାନ୍ତି । ସେ ଥିଲେ ଜଣେ ଖ୍ୟାତନାମା ଆଧୁନିକ କବି । ତାଙ୍କୁ ଭେଟି ମୋର ଅସୁବିଧା କଥା କହିବାରୁ ସେ ଶିକ୍ଷା ବିଭାଗର ଆଇନକାନୁନ ଦେଖି ଗୋଟିଏ ଦରଖାସ୍ତ ଲେଖିଦେଲେ । ମୁଁ ତାହାକୁ ନେଇ ପ୍ରଥମେ ସେକାଳର ଶିକ୍ଷାମନ୍ତ୍ରୀ ଶ୍ରୀ ସମୀର ଦେ'ଙ୍କୁ ଭେଟିଲି । ତାଙ୍କର କିନ୍ତୁ ଶିକ୍ଷାସଚିବ ଶ୍ରୀ ରମେଶ ବେହେରାଙ୍କ ସହିତ ପଟୁନଥାଏ । ସେ କେବଳ ଗୋଟିଏ ଚିଠି ଲେଖି

ପଠାଇଦେଲେ । ସଚିବ ସେ ଚିଠିକୁ ଫିଙ୍ଗିଦେଲେ । ମୋତେ ବନ୍ଧୁମାନେ କହୁଥାନ୍ତି ଯେ ସଚିବ ଭଲଲୋକ ନୁହନ୍ତି । ତାଙ୍କୁ ଯଦି କହିବ ତେବେ ସବୁ ଓଲଟା ହୋଇଯିବ । ଅଗତ୍ୟା ମୁଁ ବାଧ୍ୟ ହୋଇ ତାଙ୍କୁ ଭେଟିବାକୁ ଗଲି । ସେଦିନ ବହୁ ଲୋକ ଅପେକ୍ଷାରେ ଥିଲେ ମଧ୍ୟ ସେ ମହାଶୟ ମୋତେ କେବଳ ଡାକିଲେ । ମୁଁ ତାଙ୍କ ପାଖକୁ ଗଲା ପରେ ସେ ମୋତେ ଉପଯୁକ୍ତ ସମ୍ମାନ ଦେଇ ବସାଇଲେ । ଚା' ମଧ୍ୟ ମଗାଇଲେ । ମୁଁ ତାଙ୍କୁ ମୋ ଦରଖାସ୍ତଟି ଦେଲି ଓ ମୋ ଉପରେ ବିଶ୍ୱଭାରତୀରେ ପ୍ରଫେସର ମନୋରଂଜନ ପ୍ରଧାନ ସଂପାଦନା କରିଥିବା ଗୋଟିଏ ପୁସ୍ତକ 'ବୈଷ୍ଣବାୟନ' ତାଙ୍କୁ ଦେଲି । ମୋ ଦରଖାସ୍ତ ପଢ଼ି ସେ ମୋତେ ଆଶ୍ୱାସନା ଦେଲେ ଯେ ସାତଦିନ ମଧ୍ୟରେ ସେ ଚିଠି ପଠାଇଦେବେ । ପ୍ରକୃତରେ ମୁଁ ସାତଦିନ ମଧ୍ୟରେ ଚିଠି ପାଇଲି । ମୁଁ ଖୁସି ହୋଇଗଲି । ପୁନର୍ବାର ମୁଁ ତାଙ୍କୁ ମୋର ସର୍ଭିସ ପର୍ଟିକୁଲାର ପାଇଁ ଗୋଟିଏ ଦରଖାସ୍ତ ଦେଲି ଓ ସେ ତାହା ମଧ୍ୟ ଦେଇଦେଲେ । ସେ ସ୍ପଷ୍ଟ ଭାବରେ ଲେଖିଦେଲେ ଯେ ମୋ ସର୍ଭିସ ନିୟମିତ । ଏହା ପରେ ସେ ବଦଳି ହୋଇଗଲେ । ଆଉ ଜଣେ ସଚିବ ଆସିଲେ । ତାଙ୍କୁ ମୋ ପୁଅ ସମାଜର ସହ-ସଂପାଦକ ଡକ୍ଟର ଜ୍ୟୋତିରଂଜନ ସାମଲ ଓ ଭୁବନେଶ୍ୱରର ସମାଜ ପ୍ରତିନିଧି ଭେଟି ମୋ କଥା କହିବାରୁ ସେ ମହାଶୟ ସେହିଦିନ ସେକ୍ସନ ଅଫିସରଙ୍କୁ ଡକାଇ ମୋ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଲେ ।

କାଗଜପତ୍ର ଠିକ୍ ହୋଇଗଲା । ବିଭାଗୀୟ କିରାଣି ଓ ସେକ୍ସନ ଅଫିସର ମୋର ଟଙ୍କାପଇସା ହିସାବ କରି ବିଭାଗର ଫାଇନାନ୍ସ ଅଫିସରକୁ ପଠାଇଲେ । ସେ କ'ଣ ଭୁଲ ହୋଇଛି ବୋଲି ଦୁଇଥର ଫାଇଲ୍ ଫେରାଇ ଦେଲେ । ମୁଁ ବାଧ୍ୟ ହୋଇ ତାଙ୍କୁ ଭେଟିବାକୁ ଗଲି । ସେ ମୋତେ ଦେଖି ଛିଡ଼ାହୋଇ ପ୍ରଣାମ କଲେ । ସେ ମୋର ଫକୀରମୋହନ କଲେଜର ଛାତ୍ର ଥିଲେ ବୋଲି କହିଲେ । ସେ ଫାଇଲ ମଗାଇ ସାଙ୍ଗେ ସାଙ୍ଗେ ହିସାବ କରି ପଠାଇଦେଲେ । ଏହା ପରେ ମୋର କାଗଜପତ୍ର ଏ.ଜି.ଙ୍କ ପାଖକୁ ଗଲା ଓ ସେଠାରୁ ଅନୁମୋଦିତ ହୋଇ ଆସିବା ପରେ ଶିକ୍ଷା ବିଭାଗ ଉତ୍କଳ ବିଶ୍ୱବିଦ୍ୟାଳୟକୁ ପଠାଇଦେଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ତାହାର ହିସାବପତ୍ର କରି ବିଶ୍ୱଭାରତୀକୁ ପଠାଇଦେଲେ ଓ ମୁଁ ସେଠାରୁ ପେନ୍ସନ ପାଇଲି । ମୁଁ ପେନ୍ସନ ନ ପାଏ ବୋଲି ଯେଉଁମାନେ ହୀନଚକ୍ରାନ୍ତ କରିଥିଲେ ସେମାନଙ୍କର ଉଦ୍ୟମ ବ୍ୟର୍ଥ ହେଲା । ଏବେ ମୁଁ ନିୟମିତ ବିଶ୍ୱଭାରତୀରୁ ପେନ୍ସନ ପାଉଛି । ଯେଉଁ ବନ୍ଧୁମାନେ ମୋତେ ଏ ଦିଗରେ ସାହାଯ୍ୟ କରିଛନ୍ତି ସେମାନଙ୍କ ପ୍ରତି ମୁଁ କୃତଜ୍ଞ ।

## ମୋ ଗାଁ 'ଚାଷୀମୂଲିଆ ପାଠାଗାର' ଓ 'ଜଗନ୍ନାଥ ସାଂସ୍କୃତିକ ପରିଷଦ'

ମୋ ଗାଁରେ ୧୯୫୨ ମସିହାରେ ଆମେ ପ୍ରତିଷ୍ଠା କରିଥିଲୁ ଚାଷୀମୂଲିଆ ପାଠାଗାର । ଏହାହିଁ ଥିଲା ମୋ ଗାଁର ମୂଳ ସାଂସ୍କୃତିକ ଅନୁଷ୍ଠାନ । ଏହି ପାଠାଗାରରେ ଆମେ ଅନେକ ବହି ରଖିଥିଲୁ । ବିଭିନ୍ନ ପୁରାଣ, ଧର୍ମପୁସ୍ତକ ସହିତ ନାନା ନାଟକ, ଉପନ୍ୟାସ, ଗଳ୍ପପୁସ୍ତକ ମଧ୍ୟ ରଖିଥିଲ । ଆମ ଗାଁର ଲୋକେ ପାଠାଗାରକୁ ଆସି ପୁସ୍ତକ ନେଇ ପଢୁଥିଲେ । ଆମେ ପୁଣି ପ୍ରତିଷ୍ଠା କଲୁ 'ଜଗନ୍ନାଥ ଯୁବକସଂଘ' । ପ୍ରତିବର୍ଷ ନାଟକ କଲୁ । ଭଲି ଟୁର୍ଣ୍ଣାମେଣ୍ଟ କଲୁ । ଆମ ଯୁବକସଂଘ ପ୍ରଥମ ହୋଇ ପୁରସ୍କୃତ ହେଲା ଓ ଆମେ ତାହାର ସ୍ଥାୟୀ ଗୃହ ନିର୍ମାଣ କଲୁ । ଆମ ପାଠାଗାରକୁ ମଧ୍ୟ ସରକାରଙ୍କ ତରଫରୁ ପ୍ରତି ବର୍ଷ ବହି ଆସିଲା । ଗୋଟିଏ ରେଡ଼ିଓ ମଧ୍ୟ ମିଳିଲା । ସେତେବେଳେ ସେହି ପାଠାଗାର ଓ ଯୁବକସଂଘ ଥିଲା ଆମର କେନ୍ଦ୍ରବିନ୍ଦୁ । ସେଇଠୁ ଆମେ ସମାଜସେବା କରୁଥିଲୁ ।

ମୋ ସାଙ୍ଗ କାଳିନ୍ଦୀ ହେଲା ପାଠାଗାରର ସଂପାଦକ । ଯୁବକସଂଘର ମଧ୍ୟ ସେ ହେଲା ସଂପାଦକ । ସେ ନବମ ଶ୍ରେଣୀରୁ ପାଠ ଛାଡ଼ିଦେଲା । ସେ ଜନ୍ମ ହେବାର ଅଳ୍ପ କେତେ ବର୍ଷ ପରେ ତା'ର ବାପା କୃଷ୍ଣଚନ୍ଦ୍ର ଭୂୟାଁ ଘର ଛାଡ଼ି ଚାଲିଗଲେ । ସେତେବେଳେ ୧୯୩୯ ମସିହାରେ ବନ୍ୟା ହୋଇଥାଏ, ଧାନଚାଉଳର ଘୋର ଅଭାବ, ସେ ଧୂମାତ୍ ଗ୍ରାମର ତାଙ୍କ ଭଉଣୀ ଘରକୁ କିଛି ଧାନ ଦେବାକୁ କହି ଆସିଥିଲା । ଘରେ ବିରୋଧ କରିବାରୁ ସେ ଘର ଛାଡ଼ି କୁଆଡ଼େ ସନ୍ୟାସୀ ହୋଇ ପଳାଇଲେ । ତାଙ୍କ ପରିବାରରେ ତା' ଦାଦାମାନେ ମରିଗଲେ । ତେଣୁ ତାଙ୍କ ଘରେ କେବଳ ବିଧବାମାନେ ଥାଆନ୍ତି । କାଳିନ୍ଦୀ ପାଠ ପଢ଼ିଲା । ନବମ ଶ୍ରେଣୀ ବେଳକୁ ତା'ର ଅଂଶୀଦାର ଦାଦା ବିରୋଧ କଲେ । ତେଣୁ ସେ ପାଠ ଛାଡ଼ିଦେଲା । ବଡ଼ କଷ୍ଟରେ ତା' ବଡ଼ଭଉଣୀ ଓ ସାନଭଉଣୀକୁ ବାହା ଦେଲା । ନିଜେ ବାହା ହେଲା । ଅଂଶୀଦାର ଦାଦା ତାକୁ ଭିନ୍ନେ କରିଦେଲେ ମାତ୍ର ତିନିଟଙ୍କା ପଚାଶ ପଇସା ଦେଇ । ତା' ପାଖରେ ରହିଲେ ତା' ବୋଉ ଓ ବିଧବା ଖୁଡ଼ୀ ଦୁଇଜଣ । ଅନ୍ୟ ଜଣେ ଖୁଡ଼ୀର ଗୋଟିଏ ଛୋଟ ପୁଅ । ବଡ଼ କଷ୍ଟରେ ସେ ପରିବାର ଚଳାଇଲେ । ଚାଷବାସ କଲା । ଏଣେ ପାଠାଗାର ଓ ଯୁବକସଂଘ କଥା ବୁଝିଲା । ନାଟକ କଲା । ନିଜେ ନାଟକର ନିର୍ଦ୍ଦେଶନା ଦେଲା । କେବଳ ଆମ ଗ୍ରାମରେ ନୁହେଁ, ବାହାର ଗାଁରେ ମଧ୍ୟ ନାଟକର ନିର୍ଦ୍ଦେଶନା ଦେଲା । ଭଲ ନାଁ କମେଇଲା । ତା'ର ଯୋଡ଼ି ହେଲେ ମୟାକା (ମହେଶ୍ୱର ନାୟକ) । ସେ ଭଲ ଗୀତ ବୋଲନ୍ତି । ତା' ସାନଭାଇକୁ ପାଠ ପଢ଼ାଇଲା । ମାଟ୍ରିକ ପରେ ସେ ଚାକିରି କଲା ପୋଲିସ ବିଭାଗରେ ।

ସେ ପ୍ରମୋଶନ ପାଇ ଡି.ଏସ୍.ପି. ହେଲା । ବଡ଼ଭାଇ ସହିତ ତା'ର ହେଲା ମନୋମାଳିନ୍ୟ । ସେ ଭିନ୍ନେ ହୋଇଗଲା । କାଳିନ୍ଦୀ ମୋରି ବୟସର । ଏବେ ମଧ୍ୟ ସେ ତା'ର ପୁଅବୋହୂକୁ ନେଇ ଦୁଃଖରେ ଚଳୁଛି । ତା'ର ସ୍ତ୍ରୀ ବିୟୋଗ ହୋଇଗଲା ପରେ ସେ ଆଉ ବାହା ହେଲା ନାହିଁ । ତଥାପି ସେ ତା'ର ସ୍ୱାଭିମାନକୁ ହରାଇ ନାହିଁ । ଚାଷୀମୂଲିଆ ପାଠାଗାରକୁ ମୁଁ ମୋର ସମସ୍ତ ବହି ଦାନ କରିଥିଲି । ଏପରି ପାଠାଗାରର ନାମକରଣ ମଧ୍ୟ ସେତେବେଳେ ଚମକ ସୃଷ୍ଟି କରିଥିଲା ।

ଜଗନ୍ନାଥ ସାଂସ୍କୃତିକ ପରିଷଦ ପରବର୍ତ୍ତୀ କାଳରେ ଆମ ଗାଁରେ ଗଢ଼ି ଉଠିଲା । ତା'ର ସଭାପତି ଅବସରପ୍ରାପ୍ତ ହାଇସ୍କୁଲ ଶିକ୍ଷକ ଧ୍ରୁବଚରଣ ପାତ୍ର । ସେ କବିତା ଲେଖାଲେଖି କରନ୍ତି । ସଂପାଦକ ହେଲେ ମାଇନର ସ୍କୁଲ ଶିକ୍ଷକ ପ୍ରଫୁଲ୍ଲ ଚନ୍ଦ୍ର ଜେନା । ପ୍ରତିବର୍ଷ ବାର୍ଷିକ ଉତ୍ସବରେ ଆମ ପଞ୍ଚାୟତ ତଥା ଆଖପାଖ ପଞ୍ଚାୟତର କେତେ ଗୁଣୀ ବ୍ୟକ୍ତିଙ୍କୁ ସମ୍ମାନିତ କରନ୍ତି । ସେଠାକୁ ମନ୍ତ୍ରୀ, ବିଧାୟକ ଓ ଅନ୍ୟାନ୍ୟ ବଡ଼ ବଡ଼ ବ୍ୟକ୍ତି ଅତିଥି ହୋଇ ଆସନ୍ତି । ମୁଁ ମଧ୍ୟ ଏଥିରେ ଯୋଗ ଦିଏ ଓ ଏହି ଅନୁଷ୍ଠାନକୁ ଉତ୍ତମ ମାର୍ଗରେ ନେବାକୁ ପରାମର୍ଶ ଦୁଏ । ମୁଁ ଅନୁଭବ କରେ ଯେ ଆମ ଗ୍ରାମର ଅତୀତର ଭାଇଚାରା ସଂସ୍କୃତି ଲୋପ ପାଇଗଲାଣି । କେବଳ ମୋ ଗାଁ ନୁହେଁ; ପ୍ରାୟ ସମସ୍ତ ଗାଁମାନଙ୍କର ଏଇ ଏକା ଅବସ୍ଥା । ଏବର ଯୁବକମାନଙ୍କର ଆଉ ଗାଁ ପ୍ରୀତି ନାହିଁ । ଗୋଟାଏ ଭ୍ରାନ୍ତ ଉପଭୋଗବାଦ ପଛରେ ଧାଉଁଛନ୍ତି । ହରାଇ ଦେଉଛନ୍ତି ସକଳ ମୂଲ୍ୟବୋଧ । କୌଣସି ଚାକିରିଆ ଲୋକ ଗାଁକୁ ଗଲେ ସେମାନଙ୍କୁ କେହି ବିଶ୍ୱାସରେ ନେଉ ନାହାନ୍ତି । ସେମାନେ ଯାହା କହିବେ ତାହା ଠିକ୍, ଶିକ୍ଷିତ ଲୋକ କ'ଣ କହିଲେ ତାହା ବେଠିକ୍ । ସେମାନଙ୍କର ଏକମାତ୍ର ବିଶ୍ୱାସୀ ରାଜନେତା । ସେମାନଙ୍କର ହିଁ ନେତାଏ ଗୁରୁ । ଫଳରେ ଯୁବଗୋଷ୍ଠୀ ଦଳୀୟ ରାଜନୀତି ଦୃଷ୍ଟିରୁ ଅଲଗା ଅଲଗା । ଆଗେ, ଏପରିକି ମୋ ସମୟରେ ମକଦ୍ଦମା ହେଉ ନ ଥିଲା । ପୋଲିସ ଥାନାକୁ କେହି ଯାଉ ନ ଥିଲେ । ଗାଁର ଭଦ୍ରଲୋକମାନେ ତାହାକୁ ମେଣ୍ଟାଇ ଦେଉଥିଲେ । ଏବେ କଥା କଥାକେ ଥାନା କୋର୍ଟ କଚେରି । କିଏ କାହାକୁ କହିବ ? ନା କେହି ନାହିଁ । ସବୁ ସେଇ ଅଦୃଶ୍ୟ ଶକ୍ତି ଉପରେ ନିର୍ଭର ।

## ଇନ୍ଦୁପୁର/ଧୂମାତ୍ ପୂଜ୍ୟପୂଜା ସଂସଦ

ଆମ ପିଲାଦିନେ ଇନ୍ଦୁପୁର ଥିଲା ଏକ ମୁଖ୍ୟ ବ୍ୟାବସାୟିକ କେନ୍ଦ୍ର । ଏଠି ସପ୍ତାହରେ ଦୁଇଥର ବୁଧବାର ଓ ଶନିବାର ହାଟ ହେଉଥିଲା । କେନ୍ଦ୍ରାପଡ଼ାରୁ ବ୍ୟବସାୟୀମାନେ

ଆସୁଥିଲେ ହାଟ ଘୁ ଘୁ ଡାକୁଥିଲା । ଲୁଗାପଟାଠାରୁ ଆରମ୍ଭ କରି, ଡାଲିଚାଉଳ, ପନିପରିବା, ମାଛ ମାଂସ ଇତ୍ୟାଦି ମିଳୁଥିଲା । ଏବେ ସେଇ ହାଟ ଶ୍ରୀହୀନ ହୋଇଗଲାଣି । ଇନ୍ଦୁପୁର ଥିଲା ପ୍ରଥମ ଗ୍ରାମ ପଞ୍ଚାୟତ । ଏହି ପଞ୍ଚାୟତ ସହିତ ଆମ ଗାଁ ଚାରିଗାଁ, ଧୂମାତ୍, ଚରପଡ଼ା ଆଦି ଗାଁ ମିଶିକରି ରହିଥିଲା । ଏବେ ସବୁ ଗାଁ ପଞ୍ଚାୟତ ହୋଇଗଲାଣି । ଇନ୍ଦୁପୁରରେ ହାଇସ୍କୁଲ ହେଲା । ତା'ର ପ୍ରତିଷ୍ଠାତା ହେଲେ ନଟବର ଜଗଦ୍ଦେବ ଓ ନାରାୟଣ ଚନ୍ଦ୍ର ଦାସ । ସେମାନଙ୍କ ଉଦ୍ୟମରେ ପ୍ରାଥମିକ ଚିକିତ୍ସାକେନ୍ଦ୍ର ମଧ୍ୟ ହେଲା । ଅନେକ ଲୋକହିତକର କାର୍ଯ୍ୟ ମଧ୍ୟ ସେମାନେ କରିଥିଲେ । ସେ ଦୁଇଜଣଙ୍କୁ ସମସ୍ତେ ମାନୁଥିଲେ । ସେମାନଙ୍କ ଦେହାନ୍ତ ପରେ ସେହି ଗ୍ରାମରେ ଗଢ଼ିଉଠିଲା ବିରୂପା କଲେଜ । ତା'ର ପ୍ରତିଷ୍ଠାରେ ଡାକ୍ତର ବିରଞ୍ଚି ନାରାୟଣ ଜଗଦ୍ଦେବ ଓ କୁଳମଣି ଦାଶଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅନ୍ୟାନ୍ୟ ବହୁ ବ୍ୟକ୍ତି ମଧ୍ୟ ସାହାଯ୍ୟ କଲେ । ସେହି ଗାଁରେ ମଧ୍ୟ ହେଲା ବାଳିକା ଉଚ୍ଚ ବିଦ୍ୟାଳୟ, ଧୂମାତ୍‌ରେ ହେଲା ରାଧାଗୋବିନ୍ଦଜୀଉ ଉଚ୍ଚ ଶିକ୍ଷାମନ୍ଦିର । ମୋଟ ଉପରେ ଇନ୍ଦୁପୁର/ଧୂମାତ୍ ଥିଲା ଉଚ୍ଚ ସଂସ୍କୃତିସଂପନ୍ନ ଗାଁ । ବହୁ ପରେ ବିରଞ୍ଚିବାବୁ, କୁଳମଣିବାବୁ, ବିନୋଦବାବୁ ପ୍ରମୁଖଙ୍କ ଉଦ୍ୟମରେ ଗଢ଼ିଉଠିଲା ପୂଜ୍ୟପୂଜା ସଂସଦ । ମୁଁ ମଧ୍ୟ ସେଥିରେ ଯୋଗ ଦେଲି । ଏହି ସାଂସଦର ଲକ୍ଷ୍ୟ ହେଲା ଆମ ଅଞ୍ଚଳର ଆଦର୍ଶ ଶିକ୍ଷକ, ସମାଜସେବୀ, ସାହିତ୍ୟିକ, ନାଟ୍ୟକାର ଆଦିଙ୍କୁ ସମ୍ମାନ ଦେବା । ବିଭିନ୍ନ ସମୟରେ ସଭା କରି ସାଂସ୍କୃତିକ ବାତାବରଣ ସୃଷ୍ଟି କରିବା, ପୂଜ୍ୟ ଲୋକଙ୍କୁ ଉପଯୁକ୍ତ ସମ୍ମାନ ଦେବା ଓ ବିଶିଷ୍ଟ ବ୍ୟକ୍ତିଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରିବା ମଧ୍ୟ ଏହି ପରିଷଦର ଲକ୍ଷ୍ୟ । ଏବେ ମୁଁ ଏହି ପରିଷଦର ସଭାପତି । ବସ୍ତୁତଃ ଏହାର ସଂପୂର୍ଣ୍ଣ ଦାୟିତ୍ୱ ଅଛି କୁଳମଣି ଦାଶ, ଡାକ୍ତର ବିରଞ୍ଚି ନାରାୟଣ ଜଗଦ୍ଦେବ ଓ ପ୍ରଦୀପ କୁମାର ଦାସଙ୍କ ଉପରେ ।

ଆଜକୁ ଦୁଇବର୍ଷ ପାଖାପାଖି ସ୍ୱର୍ଗତ ନଟବର ଜଗଦ୍ଦେବ ଓ ସ୍ୱର୍ଗତ ନାରାୟଣ ଚନ୍ଦ୍ର ଦାଶଙ୍କର ପ୍ରତିକୃତି ନିର୍ମିତ ହୋଇସାରିଛି । ଉପଯୁକ୍ତ ଅତିଥି ଯୋଗାଡ଼ ହୋଇ ନ ପାରିବାରୁ ତାହାର ଉନ୍ମୋଚନ କରାଯାଇପାରି ନାହିଁ । ଏହି ଉପଲକ୍ଷେ ଏହି ଦୁଇଟି ଗାଁ ସହିତ ଆଖପାଖ ଅନେକ ଗ୍ରାମର ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ତଥା ଏହି ଦୁଇ ଗ୍ରାମର ଇତିହାସ ଓ ସଂସ୍କୃତି ଉପରେ ମଧ୍ୟ ମୋ ସଂପାଦନାରେ 'ସଂଗ୍ରାମ–ଜ୍ୟୋତି' ପୁସ୍ତକ ପ୍ରସ୍ତୁତ ହୋଇଅଛି । ଏହି ସବୁ କାର୍ଯ୍ୟ ଖୁବ୍ ଶୀଘ୍ର ହେବାପାଇଁ ଉଦ୍ୟମ ଚାଲିଛି ।

ଇନ୍ଦୁପୁର/ଧୂମାତ୍ ପୂଜ୍ୟପୂଜା ସଂସଦ ଅନୁକୂଲ୍ୟରେ ଆମେ ଆଦର୍ଶ ଶିକ୍ଷକ ନରହରି ରାଉତଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲୁ । ମୋର ଇଚ୍ଛା ପୂଜ୍ୟପୂଜା ପରିଷଦ ସତ୍ ଆନ୍ତରିକ ଭାବରେ କାର୍ଯ୍ୟ କରୁ । ସମସ୍ତଙ୍କ ଭିତରେ ସଂପର୍କ ବୃଦ୍ଧି କରୁ । ପୂଜ୍ୟ ବ୍ୟକ୍ତିମାନଙ୍କୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଉତ୍ତରପିଢ଼ି ପାଇଁ ପ୍ରେରଣାପ୍ରଦ ଭୂମିକା ନେଉ । ଆମ

ଅଞ୍ଚଳରେ ପ୍ରତିଭାର ଅଭାବ ନାହିଁ; ଅଭାବ ହେଉଛି ଆମ ଭିତରେ ଶ୍ରଦ୍ଧା । ଆମର ମନେରଖିବା ଉଚିତ ଯେ– 'ଶ୍ରଦ୍ଧାଭାବ ଶ୍ରଦ୍ଧାଭାବ ଶ୍ରଦ୍ଧାଭାବ ସାର/ ଶ୍ରଦ୍ଧାଭାବ ବିନା ଯେତେ ସବୁ ନାରଖାର ।' ଶ୍ରୀମଦ୍ ଭାଗବତ ଗୀତାରେ ଉଲ୍ଲିଖିତ ଅଛି–

ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ୍ ତତ୍ପରଃ ସଂଯତେନ୍ଦ୍ରିୟଃ
ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତିମଚିରେଣା ମଧିଗଚ୍ଛତି । (୪ର୍ଥ ଅଧ୍ୟାୟ)

ପ୍ରକୃତରେ ଶ୍ରଦ୍ଧାଭାବ ହିଁ ମୁଖ୍ୟ କଥା । ଅନ୍ତର ଶୁଦ୍ଧ ଓ ସୁନ୍ଦର ହେଲେ ଶ୍ରଦ୍ଧା ଜନ୍ମ ନିଏ । ସେହି ଶ୍ରଦ୍ଧାରୁ ପରସ୍ପର ଭିତରେ ମୈତ୍ରୀଭାବ ଦେଖାଦିଏ । ପୂଜ୍ୟପୂଜା ସଂସଦ ଏହି ମୈତ୍ରୀର ସନ୍ଧାନୀ । ଗାଁ ଲୋକଙ୍କ ଭିତରୁ ହଜିଯାଉଥିବା ମୈତ୍ରୀ ଭାବନାକୁ ପୁନଃ ଜାଗ୍ରତ କରିବା ପାଇଁ ଏହି ଅନୁଷ୍ଠାନ ବଦ୍ଧପରିକର । ବିଶେଷତଃ ଆଜିର ଯୁବସମାଜ ରାଜନୀତିବାଲାଙ୍କ ଗୋଡ଼ାଣିଆ ହୋଇ ନିଜର ମୂଲ୍ୟବୋଧକୁ ହରାଇ ଦେଉଛନ୍ତି । କେହି ବୁଝୁ ନାହିଁ– ଏହା ଦ୍ୱାରା କ'ଣ ଲାଭ ହେଉଛି । ସଭିଏଁ ଅର୍ଥ ପାଇଁ ବ୍ୟସ୍ତ । ଏ ଅର୍ଥ ଲକ୍ଷ୍ମୀ ଅର୍ଥ ନୁହେଁ, କୁବେର ଅର୍ଥ । ଏହି କୁବେର ଅର୍ଥ ସକଳ ଅନର୍ଥର କାରଣ । ମଣିଷପଣିଆକୁ ଏହା ନଷ୍ଟ କରିଦିଏ । ମଣିଷପଣିଆ ଚାଲିଗଲେ ଆଉ କ'ଣ ରହିଲା ? ଅସଲ କଥା ମଣିଷପଣିଆ । ଏହା ମଣିଷ ପ୍ରତି ଭଗବାନ୍‌ଙ୍କର ବିଶିଷ୍ଟ ବରଦାନ । ଅଥଚ ଆମେ ଏହା ଭୁଲି ଭ୍ରାନ୍ତ ଅହମିକାଗ୍ରସ୍ତ ହୋଇ ଧରାକୁ ସରା ମନେ କରୁଛୁ । ଆମେ ଭୁଲିଯାଉଛୁ ଆମ ଅଞ୍ଚଳର ପୂର୍ବସୂରୀମାନଙ୍କ ତ୍ୟାଗକୁ, ଗ୍ରାମ ସଂଗଠନକୁ, ସମସ୍ତଙ୍କ ଭଲପାଇବାର ମହତ୍ତ୍ୱକୁ । ଏଇଥିପାଇଁ ଇନ୍ଦୁପୁର/ଧୂମାତ୍ ଅଞ୍ଚଳରେ ଗଢ଼ିଉଠିଛି ପୂଜ୍ୟପୂଜା ସଂସଦ ପରି ଏକ ସାଂସ୍କୃତିକ ଅନୁଷ୍ଠାନ । ଆମର ଲକ୍ଷ୍ୟ ପୂଜ୍ୟ ବ୍ୟକ୍ତିମାନଙ୍କର ସ୍ମୃତିରକ୍ଷା ମାଧ୍ୟମରେ ଆମ ସଂସ୍କୃତି ସଂପର୍କରେ ସଚେତନତା ସୃଷ୍ଟି କରିବା । ଏହି କାରଣରୁ ଇନ୍ଦୁପୁର ହାଇସ୍କୁଲରେ ଗଢ଼ି ଉଠିଥିଲା ୧୯୬୨ ମସିହାର ପୁରାତନ ଛାତ୍ରସଂସଦ । ଏହା ଥିଲା ସେହି ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ବିଭିନ୍ନ ସ୍ଥାନରେ ରହି ଆପଣା ଆପଣାର ପ୍ରଭା ଓ ପ୍ରତିଭାକୁ ବିକୀର୍ଣ୍ଣ କରୁଥିଲେ ମଧ୍ୟ ବର୍ଷକରେ ଥରେ ବିଦ୍ୟାଳୟକୁ ଆସି ପରସ୍ପର ଭିତରେ ଭାବ ବିନିମୟ କରିବା ଓ ଅଞ୍ଚଳ ପାଇଁ କିଛି ଚିନ୍ତା କରିବା । ଏହି ଅନୁଷ୍ଠାନରୁ ହିଁ ଇନ୍ଦୁପୁର କଲେଜର ସ୍ୱପ୍ନ ଅଙ୍କୁରିତ ହୋଇଥିଲା । ଏବେ ସେହି ସ୍ୱପ୍ନ ସାକାର ହୋଇଛି, ଗଢ଼ିଉଠିଛି ବିରୂପା କଲେଜ । ଡାକ୍ତର ବିରଞ୍ଚି ନାରାୟଣ ଜଗଦେବ ଏବେ ପୁରାତନ ଛାତ୍ରସଂସଦର ସଭାପତି ।

ଆମେ ଜାଣୁ ଯେ ପୂଜ୍ୟ ବ୍ୟକ୍ତିଙ୍କ ପୂଜା ନ କଲେ ତାହାର ପ୍ରତିଫଳ ଭୋଗିବାକୁ ହୁଏ । କାହାକୁ ସମାଲୋଚନା କରିଦେବା ସହଜ ମାତ୍ର ତାଙ୍କର ଗୁଣ ଗ୍ରହଣ କରିବା କଷ୍ଟକର । ଶକୁନ୍ତଳା ଅନ୍ୟମନସ୍କ ହୋଇ ପୂଜ୍ୟ ଋଷି ଦୁର୍ବାସାଙ୍କୁ ସତ୍କାର କରିବାରେ

ଅବହେଳା କରିବାରୁ ସେ ଅଭିଶପ୍ତା ହେଲେ, କେତେ ଦୁଃଖ ଭୋଗିଲେ । ଏକଥା ଆମେ ମନେରଖିବା ଉଚିତ । ପାଶ୍ଚାତ୍ୟ ବସ୍ତୁବାଦୀ ସଂସ୍କୃତି ପଛରେ ଗୋଡ଼ାଇ ଆମ ସଂସ୍କୃତିକୁ ଭୁଲିଯାଉଛୁ ଆମେ । ଆମେ ବୁଝିପାରୁ ନାହୁଁ ଏହାର ପରିଣତି କ'ଣ ହେବାକୁ ଯାଉଛି । ଏହି କାରଣରୁ ଆମ ଅଞ୍ଚଳରେ ପୂଜ୍ୟପୂଜା ସଂସଦର ଆବିର୍ଭାବ । ମୁଁ ଭଲ ପାଏ ମୋ ଜାତିର ସଂସ୍କୃତିକୁ, ଓଡ଼ିଶାର ସଂସ୍କୃତିକୁ, ଭାରତର ସଂସ୍କୃତିକୁ । ଏହାର ଅର୍ଥ ନୁହେଁ ଯେ ଅନ୍ୟର ସଂସ୍କୃତିକୁ ମୁଁ ଘୃଣା କରେ । ମୁଁ ଜାଣେ ଯିଏ ନିଜ ସଂସ୍କୃତିକୁ ଭଲ ପାଏ, ନିଜ ମାଟିକୁ ଶ୍ରଦ୍ଧା ନିବେଦନ କରେ, ସିଏ ପ୍ରସାରିତ ହୋଇଯାଏ, ସମଗ୍ର ବିଶ୍ୱକୁ ଆପଣାର ଅନ୍ତର ଭିତରକୁ ନେଇଆସେ, ସେଠି ଆଉ କେହି ସାନ ନୁହେଁ ବା ବଡ଼ ନୁହେଁ, ସମସ୍ତେ ସମାନ । ଯିଏ ନିଜ ସଂସ୍କୃତିକୁ ଭଲ ପାଏ ନାହିଁ, ନିଜ ମାଟିକୁ ଭଲ ପାଏ ନାହିଁ ସିଏ କାହାରିକୁ ଭଲ ପାଏ ନାହିଁ । ଭଲପାଏ ବୋଲି ଛଳନା କରେ, ସେଇ ଛଳନାରେ ଅନ୍ୟଙ୍କୁ ଭୁଲାଇ ନିଜର ସ୍ୱାର୍ଥ ହାସଲ କରେ, ତା'ପରେ ସେ ଫୁର୍‌କରି ଉଡ଼ିଯାଏ । ଆମେ ତେଣୁ ପୂଜ୍ୟପୂଜା ସଂସଦ ଆନୁକୂଲ୍ୟରେ ଉଦ୍ୟମ କରୁଛୁ ଆମ ଭିତରେ ସାଂସ୍କୃତିକ ଜାଗରଣ ଆଣିବା ପାଇଁ, ଆମେ ସ୍ୱପ୍ନ ଦେଖୁଛୁ, ସଂକଳ୍ପ ନେଉଛୁ । ସଂକଳ୍ପ ଶୁଦ୍ଧ ହେଲେ ସ୍ୱପ୍ନ ସାକାର ହେବ– ଏ ବିଶ୍ୱାସ ମୋର ଅଛି ଓ ଆମ ଅନୁଷ୍ଠାନର ଅଛି । ଆମର ମଧ୍ୟ ଲକ୍ଷ୍ୟ ଗାଁ ଗାଁ ମଧ୍ୟରେ ସଂହତି ଆଣିବା । ନଗରମୁହାଁ ହୋଇଯାଉଥିବା ଯୁବକମାନଙ୍କୁ ଗାଁମୁହାଁ କରିବା । କାହା ପଛରେ ନ ଗୋଡ଼ାଇ ନିଜ ଗୋଡ଼ରେ ଛିଡ଼ା ହେବା ପାଇଁ ପ୍ରେରଣା ଦେବା ।

## ଧନୁର୍ଜୟ ବିଶ୍ୱାଳ ଚାରିଟେବ୍‌ଲ ଟ୍ରଷ୍ଟ, କେନ୍ଦ୍ରାପଡ଼ା

କେନ୍ଦ୍ରାପଡ଼ା ଏକ ପୁରାତନ ଅଞ୍ଚଳ । ଅତୀତ ଇତିହାସ ଏହାର ଗୌରବମୟ । ଏଇଠି ମହାପ୍ରଭୁ ବଳଦେବଜୀଉଙ୍କ ବିଜେସ୍ଥଳୀ ଓ ମନ୍ଦିର । ଏହାକୁ ମଧ୍ୟ କୁହାଯାଏ ପବିତ୍ର ତୁଳସୀକ୍ଷେତ୍ର । କନ୍ଦରାସୁରକୁ ନିଧନ କରି ବଳଦେବଜୀଉ ଏଇଠି ଅବସ୍ଥାନ କଲେ ଓ କନ୍ଦରାସୁରର କନ୍ୟା ତୁଳସୀକୁ ବିବାହ କଲେ । କେନ୍ଦ୍ରାପଡ଼ା ପୁଣି ନାନା ନଦୀର ଜଳ ସ୍ପର୍ଶରେ ପୁଣ୍ୟ ଓ ପବିତ୍ର । ଉତ୍କଳ ଗଙ୍ଗା ମହାନଦୀ ଏହାକୁ ସ୍ପର୍ଶ କରିଛି । ଏହାରି ମଧ୍ୟରେ ପ୍ରବାହିତ ଚିତ୍ରୋତ୍ପଳା, ଲୁଣା, ଗୋବରୀ, ବ୍ରାହ୍ମଣୀ, ବିରୂପା, ଖରସ୍ରୋତା, ବୈତରଣୀ ଇତ୍ୟାଦି ନଦୀ ଓ ସତରଟି ଉପନଦୀ । ତେଣୁ କେନ୍ଦ୍ରାପଡ଼ା ଏକଦା ସୁଦୂର ଅତୀତ କାଳରେ ଥିଲା ନୌବାଣିଜ୍ୟର ଅନ୍ୟତମ ପୀଠସ୍ଥଳୀ । ଏଠି ମଧ୍ୟ ଆଳି, ରାଜକନିକା ଆଦି ଅଞ୍ଚଳରେ ରାଜଶାସନ ପ୍ରଚଳିତ ଥିଲା । ଆଳି ରାଜାଙ୍କ ପୂର୍ବ ବଂଶଧର ଗଜପତି

ମୁକୁନ୍ଦଦେବଙ୍କ ପୁତ୍ର ବୋଲି ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି । ରାଧାଶ୍ୟାମ ନରେନ୍ଦ୍ର ଥିଲେ କେନ୍ଦ୍ରାପଡ଼ାର ଜମିଦାର ବା ରାଜା । ସେ ଥିଲେ ମହାନ୍ ଉଦାର ପ୍ରଜାହିତୈଷୀ ରାଜା । ତେଣୁ କେନ୍ଦ୍ରାପଡ଼ା ଅଞ୍ଚଳରେ ଲୋକେ କହନ୍ତି– 'ସ୍ୱର୍ଗରେ ଇନ୍ଦ୍ର ମର୍ତ୍ତ୍ୟରେ ନରେନ୍ଦ୍ର ।'

କେନ୍ଦ୍ରାପଡ଼ା ଏକ କୃଷିଭିତ୍ତିକ ଅଞ୍ଚଳ । ଏବେ ଏହା ଏକ ସ୍ୱତନ୍ତ୍ର ଜିଲ୍ଲାର ମାନ୍ୟତା ଲାଭ କରିଛି । ଯେହେତୁ କେନ୍ଦ୍ରାପଡ଼ା ଅଞ୍ଚଳର ମୁଖ୍ୟ ଜୀବିକା କୃଷି ଓ ଅତୀତର ବାଣିଜ୍ୟ–ପରଂପରା ଆଉ ନାହିଁ, ଏଠି ମଧ୍ୟ ଶିଳ୍ପର ବିକାଶ ହୋଇ ନାହିଁ, ବନ୍ୟାର ପ୍ରକୋପ ପ୍ରତିବର୍ଷ ଏଠି ସହିବାକୁ ପଡ଼େ, ସେହି କାରଣରୁ ଏ ଅଞ୍ଚଳର ଅଧିବାସୀମାନଙ୍କର ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନୁହେଁ । ଏହା ସତ୍ତ୍ୱେ ସମଗ୍ର କେନ୍ଦ୍ରାପଡ଼ା ଅଞ୍ଚଳରେ ବହୁ ସ୍କୁଲ ଓ କଲେଜ ପ୍ରତିଷ୍ଠା ଲାଭ କରିଛି । ଶିକ୍ଷା କ୍ଷେତ୍ରରେ ମଧ୍ୟ କେନ୍ଦ୍ରାପଡ଼ା ଅଞ୍ଚଳ ଆଦୌ ପଛୁଆ ନୁହେଁ । ତଥାପି ଯେଉଁମାନେ ରାଜନୀତି କ୍ଷେତ୍ରରେ ଅଛନ୍ତି, ମନ୍ତ୍ରୀ, ସାଂସଦ ଓ ବିଧାୟକ ହୋଇଛନ୍ତି, ବଡ଼ ବଡ଼ ସରକାରୀ ଚାକିରି କରୁଛନ୍ତି ବା ବାହାରେ ଶିଳ୍ପପତି ହୋଇଛନ୍ତି, ସେମାନଙ୍କର ଆଉ କେନ୍ଦ୍ରାପଡ଼ାର ବିକାଶ ପାଇଁ ଧ୍ୟାନ ରହୁ ନ ଥିବା ଲକ୍ଷ୍ୟ କରାଯାଉଛି । ସେମାନେ ପ୍ରାୟ ବାହାରେ ଘରଦ୍ୱାର କରି ରହିଗଲେଣି । ଏହା ସତ୍ତ୍ୱେ କେନ୍ଦ୍ରାପଡ଼ା ଜିଲ୍ଲାର କଳା, ସଂସ୍କୃତି, ସାହିତ୍ୟ, ସଙ୍ଗୀତ, ନାଟକ, ଯାତ୍ରା ଇତ୍ୟାଦିକୁ ମନେପକାଇ କେତେକ ସାରସ୍ୱତ ସଂଗଠନ ଗଢ଼ିଉଠିଛି । ୧୯୭୦/୭୧ ମସିହା ବେଳକୁ କେନ୍ଦ୍ରାପଡ଼ା କଲେଜର ରାଜନୀତି ବିଜ୍ଞାନ ଅଧ୍ୟାପକ ନନ୍ଦକିଶୋର ପରିଡ଼ା ଏବଂ ବିଶିଷ୍ଟ କବି ଓ ଇତିହାସ ବିଭାଗର ଅଧ୍ୟାପକ ଦୀପକ ମିଶ୍ର ଗଠନ କରିଥିଲେ 'ଶ୍ରାବଣୀ ସାହିତ୍ୟ ପରିଷଦ' । ଏହି ପରିଷଦ କେନ୍ଦ୍ରାପଡ଼ା ଅଞ୍ଚଳରେ ଲେଖକ–ଲେଖିକାଙ୍କୁ ଏକତ୍ର କରିବାର ପ୍ରଥମ ଉଦ୍ୟମ କରିଥିଲେ । ପ୍ରଥମ ବର୍ଷ ବାର୍ଷିକ ଉତ୍ସବରେ ଓଡ଼ିଶାର ପ୍ରଥିତଯଶା ସାହିତ୍ୟିକ, ଐତିହାସିକ, ରାଜନେତା ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ ସାହିତ୍ୟିକମାନଙ୍କ ଭିତରେ ସଂହତି ଓ ସଂପର୍କ ସ୍ଥାପନ ପାଇଁ ଉଦ୍‌ବୋଧନ ଦେଇଥିଲେ । ସେହି ସଭାରେ ମୋତେ 'ଶ୍ରାବଣୀ–ସମ୍ମାନ' ପ୍ରଦାନ କରାଯାଇଥିଲା । ହୁଏତ ପରେ ମୁଁ ବହୁତ ସମ୍ମାନ, ସମ୍ବର୍ଦ୍ଧନା ଓ ପୁରସ୍କାର ପାଇଛି ମାତ୍ର ମୋ ଭିତରେ ସେହି ପ୍ରଥମ ସମ୍ମାନ ଏବେ ମଧ୍ୟ ଉଜ୍ଜୀବିତ ହୋଇ ରହିଛି । ପରେ କେନ୍ଦ୍ରାପଡ଼ାରେ ଗଢ଼ିଉଠିଛି 'କେନ୍ଦ୍ରାପଡ଼ା ସାହିତ୍ୟ ପରିଷଦ' । ତାହାର ସଭାପତି ଅଛନ୍ତି ବିଶିଷ୍ଟ କବି, ସମାଲୋଚକ ଡକ୍ଟର ବାସୁଦେବ ଦାସ ଓ ସଂପାଦକ ଆଇନଜୀବୀ ପ୍ରଦୀପ ଦାସ । ଏହି ସାରସ୍ୱତ ଅନୁଷ୍ଠାନର ପ୍ରତିବର୍ଷ ବାର୍ଷିକ ଉତ୍ସବକୁ ମୁଁ ଅତିଥି ହୋଇ ଯାଏ ଓ ଲକ୍ଷ୍ୟ କରେ ଲେଖକ/ଲେଖିକାମାନଙ୍କର ଆନ୍ତରିକ ଉତ୍ସାହକୁ । ପ୍ରତିବର୍ଷ ମଧ୍ୟ ସେମାନେ କରନ୍ତି

ଗୋଟିଏ ଉଚ୍ଚକୋଟୀର ସ୍ମରଣିକା ଓ ସେହି ଅଞ୍ଚଳର ଲେଖକ/ଲେଖିକାଙ୍କୁ ମଧ୍ୟ ସମ୍ମାନିତ କରିଥାନ୍ତି । ମୋତେ ମଧ୍ୟ ସମ୍ମାନିତ କରିଛନ୍ତି ଗୋଟିଏ ବର୍ଷ ।

କେନ୍ଦ୍ରାପଡ଼ା ଅଞ୍ଚଳର ବିଶିଷ୍ଟ ସାଂସ୍କୃତିକ ଅନୁଷ୍ଠାନ 'ଧନୁର୍ଜୟ ବିଶ୍ୱାଳ ଚାରିଟେବ୍ଲ ଟ୍ରଷ୍ଟ' । ମୋ ଗାଁ ପାଖରୁ ଦୁଇ କିଲୋମିଟର ଦୂରବର୍ତ୍ତୀ ପଟାମୁଣ୍ଡାଇ କେନାଲକୁ ଲାଗି ବସୁପୁର ଗାଁ । ଧନୁର୍ଜୟ ବିଶ୍ୱାଳ ସେହି ଗ୍ରାମର ଜଣେ ସାଧାରଣ କୃଷକ ପରିବାରର ବ୍ୟକ୍ତି । ପିଲାଦିନରୁ ଧର୍ମପ୍ରାଣ ଓ କର୍ତ୍ତବ୍ୟନିଷ୍ଠ । ପାରିବାରିକ ଅବସ୍ଥା ଶୋଚନୀୟ । ପାଞ୍ଚ ପୁଅ । ବଡ଼ପୁଅ ସୁଦର୍ଶନ ମାଟ୍ରିକ୍ ପାସ୍ କରି ବିଦ୍ୟୁତ୍ ବିଭାଗରେ ଚାକିରି କଲେ । ଭାଇମାନଙ୍କୁ ପାଠ ପଢ଼ାଇଲେ । ଭଉଣୀମାନଙ୍କୁ ବିବାହ ଦେଲେ । ଭାରି ଭଦ୍ର ଓ ଉଦାର ପ୍ରକୃତିର ମଣିଷ । ବାପା ଅଭିରାମ ପରମହଂସଦେବଙ୍କ ଶିଷ୍ୟ । ତାଙ୍କର ସେ ପ୍ରତ୍ୟକ୍ଷ ଆଶୀର୍ବାଦ ଲାଭ କରିଥିଲେ । ସୁଦର୍ଶନବାବୁ ମୋତେ 'ନନା' ଡାକନ୍ତି । ସ୍ନେହୀ ମଣିଷଟିଏ । ସାନଭାଇ ଭଗବାନଙ୍କୁ ସେ ଇଂଜିନିୟରିଂ ପଢ଼ାଇଲେ । ତାଙ୍କୁ ଚାକିରି ଭିତରେ ନ ପୂରାଇ ସ୍ୱାଧୀନ ଭାବରେ ବ୍ୟବସାୟ କରିବାକୁ ପ୍ରେରଣା ଦେଲେ । ଭଗବାନବାବୁ ବିଦ୍ୟୁତ୍ ବିଭାଗରେ ବ୍ୟବସାୟ ଆରମ୍ଭ କଲେ । ବାପାଙ୍କ ଅଶରୀରୀ ଆଶୀର୍ବାଦ, ବଡ଼ଭାଇଙ୍କ ଉତ୍ସାହ ଓ ପ୍ରେରଣାରେ ସେ ଅଳ୍ପଦିନ ମଧ୍ୟରେ ସାରା ଓଡ଼ିଶାରେ ବିଦ୍ୟୁତ୍ ବିଭାଗର ଠିକାଦାର ଭାବରେ ପ୍ରତିଷ୍ଠା ଅର୍ଜନ କରିଗଲେ । ପ୍ରତିଷ୍ଠା କଲେ ମଧ୍ୟ ନିଜର ସ୍ୱତନ୍ତ୍ର ବ୍ୟବସାୟ ପ୍ରତିଷ୍ଠାନ 'ଆଖଣ୍ଡଳମଣି ଇଲେକ୍ଟ୍ରିକାଲ୍ କଂପ୍ଲେକ୍ସ' ଓ ବିଦ୍ୟୁତ୍ ସରଞ୍ଜାମ ନିର୍ମାଣ ପାଇଁ ଏକ କାରଖାନା । ପ୍ରାୟ ପାଞ୍ଚଶହରୁ ଉର୍ଦ୍ଧ୍ୱ ବ୍ୟକ୍ତିଙ୍କୁ ସେ ଜୀବିକା ନିର୍ବାହ ପାଇଁ ନିଯୁକ୍ତି ଦେଲେ । ପୃଥିବୀର ବିଭିନ୍ନ ଦେଶକୁ ଗଲେ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ଅନ୍ୟାନ୍ୟ କେନ୍ଦ୍ରମନ୍ତ୍ରୀଙ୍କ ସହିତ । ଅନେକ ଅନୁଭୂତି ଅର୍ଜନ କଲେ ।

ଭଗବାନବାବୁଙ୍କର ଆଉ ଅର୍ଥର ଅଭାବ ନାହିଁ । ଗୋଟିଏ କଥା ମୁଁ ଲକ୍ଷ୍ୟ କରେ । ସେ ଅର୍ଥ କମେଇଛନ୍ତି ମାତ୍ର ସେ ଅର୍ଥର ଦାସ ହୋଇନାହାନ୍ତି । ସେ ଚିନ୍ତା କଲେ କେନ୍ଦ୍ରାପଡ଼ା ପାଇଁ କ'ଣ କିଛି କରିବେ । ତେଣୁ ସେ ବାପାଙ୍କ ନାମରେ ଟ୍ରଷ୍ଟଟିଏ କଲେ– ନାଁ ଦେଲେ 'ଧନୁର୍ଜୟ ବିଶ୍ୱାଳ ଚାରିଟେବ୍ଲ ଟ୍ରଷ୍ଟ' । ଲକ୍ଷ୍ୟ ରଖିଲେ କେନ୍ଦ୍ରାପଡ଼ା ଜିଲ୍ଲାର ଶିକ୍ଷା, କୃଷି, ସାହିତ୍ୟ, ସଂସ୍କୃତି, ସଙ୍ଗୀତ, ନାଟକ, ସ୍ୱାସ୍ଥ୍ୟ, ବାଣିଜ୍ୟ, ଶିଳ୍ପ ଇତ୍ୟାଦିର ବିକାଶ । ବର୍ଷକୁ ଦୁଇ ଚାରିଥର ବିଭିନ୍ନ ଗ୍ରାମରେ ସ୍ୱାସ୍ଥ୍ୟ ଶିବିର ପକାଇ ଲୋକଙ୍କୁ ଚିକିତ୍ସା ଯୋଗାଇଦେଲେ । କେନ୍ଦ୍ରାପଡ଼ା ଜିଲ୍ଲାର ଯେଉଁ ସ୍କୁଲଗୁଡ଼ିକ ଭଗ୍ନ ପ୍ରାୟ ସେହି ସ୍କୁଲମାନଙ୍କୁ ଆର୍ଥିକ ସହାୟତା ଦେଇ ତାହାର ପୁନଃନିର୍ମାଣ କରାଇଲେ । କେତେ ଦରିଦ୍ର ରୋଗୀଙ୍କୁ ଆଣି କଟକ ବଡ଼ଡାକ୍ତରଖାନାରେ ଚିକିତ୍ସା କରାଇଲେ । ଦେଶ ବିଦେଶରେ ଓଡ଼ିଆ ଦାଦନ ଶ୍ରମିକମାନଙ୍କର ଦୁଃଖ କାହାଣୀ ଶୁଣି ସେମାନଙ୍କୁ

ଉଦ୍ଧାର କରିବା ପାଇଁ ଉଦ୍ୟମ କଲେ । ପ୍ରତିବର୍ଷ ବାର୍ଷିକ ଉତ୍ସବରେ 'କେନ୍ଦ୍ରାପଡ଼ା ରତ୍ନ', 'କେନ୍ଦ୍ରାପଡ଼ା ଗୌରବ' ଓ 'କେନ୍ଦ୍ରାପଡ଼ା ବରପୁତ୍ର' ଉପାଧି ଦେଇ ବିଶିଷ୍ଟ ଲୋକଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେଲେ । ମୋତେ ମଧ୍ୟ 'କେନ୍ଦ୍ରାପଡ଼ା ରତ୍ନ' ଉପାଧିରେ ଭୂଷିତ କରିଅଛନ୍ତି । ସେ ମଧ୍ୟ କେନ୍ଦ୍ରାପଡ଼ା ଜିଲ୍ଲାର ଶ୍ରେଷ୍ଠ ଶିକ୍ଷକ, ଶ୍ରେଷ୍ଠ କୃଷକ, ଶ୍ରେଷ୍ଠ ନାଟ୍ୟକାର, ଶ୍ରେଷ୍ଠ ସଙ୍ଗୀତଶିଳ୍ପୀ, ଶ୍ରେଷ୍ଠ ସାମ୍ବାଦିକ, ଶ୍ରେଷ୍ଠ ଅଭିନେତା ବା ଅଭିନେତ୍ରୀ, ଶ୍ରେଷ୍ଠ ସମାଜସେବୀମାନଙ୍କୁ ସମ୍ବର୍ଦ୍ଧନା ଦେବା ସହିତ କୃତିତ୍ୱ ଅର୍ଜନ କରିଥିବା ଛାତ୍ରଛାତ୍ରୀମାନଙ୍କୁ ପୁରସ୍କୃତ କରିଥାନ୍ତି । ଏହି ଅବକାଶରେ ପ୍ରକାଶ ପାଏ ଏକ ପତ୍ରିକା 'ଅମୃତାଲୋକ' । ମୁଁ ଏହି ପତ୍ରିକାର ସଂପାଦନା କରେ । କେନ୍ଦ୍ରାପଡ଼ା ଜିଲ୍ଲାର ଲେଖକ/ଲେଖିକାଙ୍କ ଲେଖାରେ ଏହା ହୁଏ ଋଦ୍ଧିମନ୍ତ ।

ଏହି ଅନୁଷ୍ଠାନ ସହିତ ମୁଁ ସଂପୃକ୍ତ ହୋଇଗଲି । ମୁଁ ଭାବିଲି ଏହି ଅନୁଷ୍ଠାନ ଯେପରି ହୋଇଯାଇଛି କେନ୍ଦ୍ରାପଡ଼ା ଜିଲ୍ଲାର ଆତ୍ମା ଓ ହୃଦୟସଦୃଶ । ଏହା ରାଜନୀତିରୁ ମୁକ୍ତ । ସବୁ ଦଳର ଲୋକଙ୍କୁ ଡକାଯାଏ । ଦଳୀୟ ରାଜନୀତି ଚର୍ଚ୍ଚା ଏହାର ଆଦର୍ଶ ବିରୁଦ୍ଧ । ଏଠି ଗୋଟିଏ କଥା ଉପରେ ଗୁରୁତ୍ୱ ଦିଆଯାଏ– ତାହା ହେଉଛି କେନ୍ଦ୍ରାପଡ଼ାର ସ୍ୱାଭିମାନ । ଏହି ଦୃଷ୍ଟିରୁ ଉକ୍ତ ଅନୁଷ୍ଠାନଟି ତା'ର କର୍ତ୍ତବ୍ୟ କରିଚାଲିଛି । ଯେଉଁମାନେ ବାହାରେ ଘରଦ୍ୱାର କରି ରହିଗଲେଣି ସେମାନଙ୍କ ଦୃଷ୍ଟିକୁ ମଧ୍ୟ ଏହି ଅନୁଷ୍ଠାନ କେନ୍ଦ୍ରାପଡ଼ା ଦିଗକୁ ମୁହାଁଇ ଆଣୁଛି । ମୁଁ ଲକ୍ଷ୍ୟ କରୁଛି ଯେ ଅନୁଷ୍ଠାନର ସଭାପତି ଭଗବାନବାବୁ କୌଣସି ବିଷୟରେ ନିଜର କର୍ତ୍ତୃତ୍ୱ ବିସ୍ତାର କରୁ ନାହାନ୍ତି । ଯେଉଁ କମିଟି ଅଛି ତାହାର ନିଷ୍ପତ୍ତିକୁ ସେ ସମ୍ମାନ ଦେଉଛନ୍ତି । ଅହଙ୍କାର ତାଙ୍କୁ ସ୍ପର୍ଶ କରି ନାହିଁ । ଏପରି ଜଣେ ଲୋକକଲ୍ୟାଣକାମୀ ଉତ୍ସର୍ଗୀକୃତ ଚରିତ୍ର ମୋତେ ଅଭିଭୂତ କରିଦେଇଛି । ପ୍ରଥମରୁ ତ ମୁଁ କହିରଖିଛି ଯେ ମୁଁ ମଣିଷଙ୍କୁ ଭଲ ପାଏ । ଯେଉଁଠି ଅହଙ୍କାର ଦେଖେ ସେଠୁ ମୁଁ ଦୂରେଇଯାଏ । ଯେହେତୁ ଉକ୍ତ ଅନୁଷ୍ଠାନଟି ଅହଙ୍କାର ବିନିର୍ମୁକ୍ତ ସେହି ହେତୁ ମୁଁ ଏହାକୁ ଶ୍ରଦ୍ଧା କରେ ଓ ସାହାଯ୍ୟ କରେ ।

## ଅଭିମନ୍ୟୁ ସାହିତ୍ୟ ପରିଷଦ, ବାଲିଆ

ଯାଜପୁର ଜିଲ୍ଲା ଅନ୍ତର୍ଗତ ବାଲିଆ ଗ୍ରାମ ପ୍ରସିଦ୍ଧ ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ପାଇଁ । ରୀତିକାବ୍ୟ ପରଂପରାର ସେ ମଧ୍ୟମଣି ସଦୃଶ । ରାଜବଂଶର ଦାୟାଦ ହୋଇଥିଲେ ହେଁ କ୍ଷମତା ସିଂହାସନ ପ୍ରତି ଅନାସକ୍ତ ରହି କାବ୍ୟ ବିନୋଦନ ଭିତରେ ଜୀବନ ଅତିବାହିତ କରିଥିଲେ । ପ୍ରେମମାର୍ଗୀ ବୈଷ୍ଣବ ଧର୍ମର ସେ ଥିଲେ ଏକନିଷ୍ଠ ଅନୁଗାମୀ । ରାଧାକୃଷ୍ଣଙ୍କ

ପ୍ରେମଲୀଳା ବର୍ଣ୍ଣନାରେ ସେ ଆପଣାର ଅପୂର୍ବ ଦକ୍ଷତା ଦେଖାଇଥିଲେ । 'ବିଦଗ୍ଧ ଚିନ୍ତାମଣି' ତାଙ୍କ କାବ୍ୟପ୍ରତିଭାର ଶ୍ରେଷ୍ଠ ନିଦର୍ଶନ । ଏହା ବ୍ୟତୀତ ସେ ମଧ୍ୟ ରଚନା କରିଥିଲେ ଶ୍ରୀକୃଷ୍ଣଙ୍କର ଅଷ୍ଟକାଳ ଲୀଳାକୁ ନେଇ ପ୍ରେମ ଚିନ୍ତାମଣି କାବ୍ୟ । ସୁଲକ୍ଷଣା, ଭାବବତୀ ଆଦି କାବ୍ୟ ସହିତ ସେ ରଚନା କରିଥିଲେ ରାଶି ରାଶି ଚଉତିଶା, ଭଜନ, ଜଣାଣ । ଶ୍ରୀଜଗନ୍ନାଥଙ୍କ ପ୍ରତି ମଧ୍ୟ ସେ ଭକ୍ତି ନିବେଦନ କରିଛନ୍ତି କେତେକ ଭଜନ, ଜଣାଣ ଓ ଚଉତିଶାରେ । ବାଲିଆକୁ ସେ ନବ-ବୃନ୍ଦାବନ କରିଥିଲେ । ଏପରି ଜଣେ ପ୍ରସିଦ୍ଧ କବିଙ୍କ ଜନ୍ମପୀଠରେ ତାଙ୍କର ଜୟନ୍ତୀ ପାଳନ କରାଯାଇ ନ ଥିଲା । ସର୍ବପ୍ରଥମେ ନବଘନ ଜେନା ସେଠାରେ ଜୟନ୍ତୀ ଆରମ୍ଭ କଲେ । ଯାଜପୁରର ସାମନ୍ତମାନେ ଆଡ଼ମ୍ବର ସହକାରେ ଆସି ଜୟନ୍ତୀରେ ଯୋଗ ଦେଉଥିଲେ । ସ୍ୱର୍ଗତ କବି ମୁରାରିମୋହନ ଜେନା ସେହି ଜୟନ୍ତୀ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ । କ୍ରମଶଃ ବାଲିଆ ଓ ଆଖପାଖ ଗ୍ରାମମାନଙ୍କର ବହୁ ବିଦ୍ୱାନ୍, ଲେଖକଙ୍କର ସହଯୋଗରେ ଜୟନ୍ତୀ କାର୍ଯ୍ୟକ୍ରମ ପ୍ରତିବର୍ଷ ଅନୁଷ୍ଠିତ ହେଲା । ସେହି ଅଞ୍ଚଳର ବହୁ ଲୋକ ରାଜଧାନୀ ଭୁବନେଶ୍ୱରରେ ରହୁଥିବାରୁ ସେଠାରେ ମଧ୍ୟ ଗଢ଼ିଉଠିଲା 'ଅଭିମନ୍ୟୁ ସାହିତ୍ୟ ପରିଷଦ' । ପ୍ରକାଶ ପାଇଲା କେତେକ ପୁସ୍ତକ । ଅଭିମନ୍ୟୁଙ୍କ ସୁଲକ୍ଷଣା, ପ୍ରେମ ଚିନ୍ତାମଣି କାବ୍ୟ ସହିତ ତାଙ୍କ ରଚିତ ବିବିଧ ଗୀତିକବିତାର ମଧ୍ୟ ସଂକଳନ ପ୍ରକାଶ ପାଇଲା । ପୁଷ୍ପଗିରି ପରିଷଦ ତରଫରୁ ଡକ୍ଟର କୃଷ୍ଣଚନ୍ଦ୍ର ଭୂୟାଁ ସ୍ୱତନ୍ତ୍ର ଭାବରେ ଏକ ଅଭିମନ୍ୟୁ ବିଶେଷାଙ୍କ ପ୍ରକାଶ କଲେ । ବାଲିଆକୁ ମୁଁ ବାରମ୍ବାର ଯାଇ ଜୟନ୍ତୀ କାର୍ଯ୍ୟକ୍ରମରେ ଯୋଗ ଦେଇଛି । ରାଜଧାନୀ ଅଭିମନ୍ୟୁ ଜୟନ୍ତୀରେ ମଧ୍ୟ ବକ୍ତୃତା ଦେଇଛି । ରାଉରକେଲାରେ ଅନୁଷ୍ଠିତ ଅଭିମନ୍ୟୁ ଜୟନ୍ତୀରେ ଭାଷଣ ଦେଇଛି । ବିରୂପା ନଦୀକୂଳସ୍ଥ ରାଇପୁର ଘାଟ ପାଖରେ ଅଭିମନ୍ୟୁ ଜୟନ୍ତୀ ହୋଇଛି । ସେଠାକୁ ମଧ୍ୟ ମୁଁ ଯାଇଛି ଅତିଥି ହୋଇ । ମୁଁ ଲକ୍ଷ୍ୟ କରିଛି ଯାଜପୁର ଅଞ୍ଚଳରେ ଲୋକମାନଙ୍କର ଅଭିମନ୍ୟୁ ସାମନ୍ତସିଂହାରଙ୍କ ସାହିତ୍ୟ ପ୍ରତି ଶ୍ରଦ୍ଧାକୁ । ଥରେ ଅଭିମନ୍ୟୁ ଜୟନ୍ତୀକୁ ମୁଁ ବାଲିଆ ଯାଇଥିଲି । ସେଦିନ ଏକ ଭବ୍ୟ ପରିବେଶରେ ମୁଁ ଅଭିମନ୍ୟୁଙ୍କ ସାହିତ୍ୟର ଆଲୋଚନା କରୁଥିଲାବେଳେ ଉପସ୍ଥିତ ଲୋକମାନଙ୍କର ଆନନ୍ଦ ବିହ୍ୱଳ ଅବସ୍ଥାକୁ ଲକ୍ଷ୍ୟ କରୁଥାଏ । ବକ୍ତୃତା ଦେଇ ମୁଁ ଫେରିଆସିଲି କଟକ ।

ପରଦିନ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସେଠାରେ ଜୟନ୍ତୀ ପାଳନ କରାଯିବାର କାର୍ଯ୍ୟକ୍ରମ ଥିଲା । ସେଦିନ କେଉଁମାନେ ଯିବେ ମୁଁ ଜାଣି ନ ଥାଏ । ଦିନ ଚାରିଟା ବେଳକୁ ସାମନ୍ତ ବଂଶର ଦାୟାଦ ହୃଷୀକେଶ ରାୟ ମୋ ଘରେ ପହଞ୍ଚି ପୁନର୍ବାର ବାଲିଆ ଯିବାକୁ ଅନୁରୋଧ କଲେ । ଅଗତ୍ୟା ମନା କରି ନ ପାରି ମୁଁ ଗଲି । ସେଠାରେ ପହଞ୍ଚି ମୁଁ ଦେଖେ ତ ସାହିତ୍ୟ ଏକାଡ଼େମୀର ଉପସଭାପତି ବିଶିଷ୍ଟ କବି ବିନୋଦ

ନାୟକ ଉପସ୍ଥିତ ଅଛନ୍ତି । ତାଙ୍କ ସହିତ ଆସିଥାନ୍ତି ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି ଓ ଭଞ୍ଜ ସାହିତ୍ୟ ରଥୀ ଶ୍ରୀଯୁକ୍ତ ରଜତ କୁମାର କର ।

ମୋତେ କାହିଁକି ଅଣାଯାଇଛି ମୁଁ କିଛି ଜାଣି ନ ଥାଏ । ସଭା ଆରମ୍ଭ ହେଲା । ବିନୋଦବାବୁ ସଭାପତିତ୍ୱ କଲେ । ହଠାତ୍ ଦେଖିଲି ସାତଜଣ ସଧବା ନାରୀ ହାତରେ ଅରୁଆ ଚାଉଳର ପୂର୍ଣ୍ଣଥାଳି ଦୂବ ବରକୋଳି ପତ୍ର ଧରି ହୁଳହୁଳି ଦେଇ ମୋତେ ବନ୍ଦାପନା କରୁଛନ୍ତି । ବ୍ରାହ୍ମଣ ଓ ଜ୍ୟୋତିଷ ମଙ୍ଗଳାଷ୍ଟକ ବୋଲୁଛନ୍ତି । ମୁଁ ବାଧ ହୋଇ ଛିଡ଼ା ହେଲି । ମୋତେ ପାଟବସ୍ତ୍ର ଓ ସୁନାର ପଦକ ଦେଇ ସମ୍ବର୍ଦ୍ଧନା କଲେ ବିଶିଷ୍ଟ ଅତିଥିବୃନ୍ଦ । ମୋତେ 'ସାହିତ୍ୟ-ସ୍ୱୟଂଭୂ' ଉପାଧି ଦେଇ ମାନପତ୍ର ପାଠ କରାଗଲା । ସଭାସ୍ଥଳ ଆନନ୍ଦରେ ହରିବୋଲ ହୁଳହୁଳି ଧ୍ୱନିରେ ପ୍ରକମ୍ପିତ ହେଲା । ମୁଁ ସମ୍ବର୍ଦ୍ଧନାର ଉତ୍ତର ଦେଲି । ଅନୁଭବ କଲି ବାଲିଆର ସାମନ୍ତୀୟ ପରଂପରାକୁ । ରଜତବାବୁ, ବିଚିତ୍ରାନନ୍ଦବାବୁ ଓ ବିନୋଦବାବୁ ମୋର ଉଚ୍ଛ୍ୱସିତ ପ୍ରଶଂସା କରି ଏପରି ସମ୍ବର୍ଦ୍ଧନା ସେମାନଙ୍କ ଭାଗ୍ୟରେ କେବେ ଜୁଟିବ ବୋଲି କହିଲେ ।

ପ୍ରକୃତରେ ବାଲିଆ କେବଳ ନୁହେଁ; ସମଗ୍ର ଯାଜପୁର ଜିଲ୍ଲାରେ ଅଭିମନ୍ୟୁ ହୋଇଯାଇଛନ୍ତି ଜାତୀୟ ସ୍ୱାଭିମାନର ପ୍ରତୀକ । ମୁଁ ଲକ୍ଷ୍ୟ କରିଛି ଯେପରି ବାଲେଶ୍ୱରରେ ବ୍ୟାସକବି ଫକୀରମୋହନ, ସୋରୋରେ କବିବର ରାଧାନାଥ ରାୟ, ଗଞ୍ଜାମରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଜାତୀୟ ସ୍ୱାଭିମାନର ପ୍ରତୀକ ହୋଇଯାଇଛନ୍ତି ସେହିପରି ଅଭିମନ୍ୟୁ ହୋଇଯାଇଛନ୍ତି ଯାଜପୁରର । ଏହା ସତ୍ୟ ଯେ ଏହି କବିମାନେ ଆଉ କୌଣସି କ୍ଷୁଦ୍ର ଅଞ୍ଚଳରେ ସୀମିତ ନୁହନ୍ତି । ସେମାନେ ସମଗ୍ର ଓଡ଼ିଆ ଜାତିର ଗୌରବ । ତଥାପି ଫକୀରମୋହନଙ୍କର ବା ରାଧାନାଥ ରାୟଙ୍କର କେହି କିଛି କଟୁ ସମାଲୋଚନା କଲେ ସଂପୃକ୍ତ ଅଞ୍ଚଳର ଲୋକେ ସହିପାରନ୍ତି ନାହିଁ । ପ୍ରତିବାଦ କରି ଉଠନ୍ତି । ମୁଁ ମଧ୍ୟ କେତେକ ସ୍ଥାନରେ ଏପରି ଅବସ୍ଥା ଲକ୍ଷ୍ୟ କରିଛି । କୌଣସି କାରଣ ନ ଥାଇ କିଛି ଅହଂମ୍ମନ୍ୟ ବ୍ୟକ୍ତି ଉପେନ୍ଦ୍ର-ଅଭିମନ୍ୟୁ-ଫକୀରମୋହନ-ରାଧାନାଥ ପ୍ରମୁଖଙ୍କୁ ସମାଲୋଚନା କରି ବାହାବା ନେବାକୁ ଚାହାଁନ୍ତି । ଫଳରେ ସେମାନେ ବିରୋଧର ସମ୍ମୁଖୀନ ହୋଇଥାନ୍ତି । କେହି ଫକୀରମୋହନଙ୍କୁ ମିଥ୍ୟାବାଦୀ, ତାଙ୍କ ଆତ୍ମଚରିତରେ ଥିବା ଭୂୟାଁମେଳିକୁ ଗାଲୁଗପ୍ପ କହନ୍ତି ତ ଅନ୍ୟ କେହି ରାଧାନାଥଙ୍କୁ ମିଛୁଆ, ଚରିତ୍ରହୀନ କହିଥାଆନ୍ତି । ଏହା ଦ୍ୱାରା ସାହିତ୍ୟର କ'ଣ ଉପକାର ହୁଏ- ମୁଁ ଜାଣିପାରେ ନାହିଁ । ଏଇଟା କୁଆଡ଼େ ଗବେଷଣା । ଏଇଆ ଯିଏ କୁହେ ସିଏ ବଡ଼ ଗବେଷକ ହୋଇଯାଏ । ଉପେନ୍ଦ୍ରଙ୍କ ସଂପର୍କରେ ବି ସେଇମିତି ଗୁଡ଼ାଏ ଉଦ୍‌ଭଟ କଥା । ତାଙ୍କ ଜନ୍ମ ଆଉ ମୃତ୍ୟୁକୁ ନେଇ ବିବାଦ, ତାଙ୍କ ନାଁରେ ପ୍ରଚଳିତ ପୁସ୍ତକ ତାଙ୍କର କି ନୁହେଁ, ନେଇ କସରତ । କେବଳ ସିଏ ନୁହନ୍ତି;

ପ୍ରାଚୀନ କବି ମାତ୍ରେଇ ଏଇମିତି ସମାଲୋଚନାର ଶିକାର ହୋଇଥାନ୍ତି । କିଏ ପୁଣି ଜଣେ ନୁହନ୍ତି; ଏକାଧିକ ଓ ତାଙ୍କ ପୁସ୍ତକଗୁଡ଼ିକ ସେହି ଭିନ୍ନ ଭିନ୍ନ କବିଙ୍କର । ତେବେ ସେହି ଭିନ୍ନ ଭିନ୍ନ କବି କିଏ କିଏ ଓ ସେମାନଙ୍କର ପରିଚୟ କ'ଣ, ତାହା କେହି କହିପାରୁ ନାହାନ୍ତି । ଯାହା କୁହାଯାଇଛି ତାହା ଅନୁମାନଭିତ୍ତିକ ।

ସାରଳା ଦାସ ହୁଅନ୍ତୁ ବା ପଞ୍ଚସଖା, ଉପେନ୍ଦ୍ର, ଅଭିମନ୍ୟୁ, କବିସୂର୍ଯ୍ୟ ବଳଦେବ, ଭୀମଭୋଇ ସମସ୍ତେ ଆମର ଗର୍ବ । ସେଇମାନେ ତାଳପତ୍ର ପୋଥିରେ ଲେଖିଯାଇଥିଲେ ବୋଲି ଓଡ଼ିଆ ଜାତି ଗର୍ବ କରୁଛି । ଊନବିଂଶ ଶତାବ୍ଦୀରେ ଯେତେବେଳେ ଓଡ଼ିଆ ଭାଷାକୁ ଉଠାଇ ବଙ୍ଗଳା ଭାଷା ଚଳେଇବା ପାଇଁ ସରକାରୀ ନିର୍ଦ୍ଦେଶନାମା ପ୍ରକାଶ ପାଇଲା, କିଛି ପଣ୍ଡିତମ୍ମନ୍ୟ ବ୍ୟକ୍ତି କହିବାକୁ ଲାଗିଲେ ଯେ ଓଡ଼ିଆ ଭାଷାରେ ଅଳ୍ପ କେଇଖଣ୍ଡ ପୁସ୍ତକକୁ ନେଇ ଗର୍ବ କରିବାର କିଛି ନାହିଁ । ସେତେବେଳେ ଜାତିପ୍ରାଣ ଓ ଭାଷାପ୍ରାଣ କେତେଜଣ ବିଦ୍ୱାନ୍ ପ୍ରାଚୀନ ଓଡ଼ିଆ ସାହିତ୍ୟର ନାନା ପୋଥି ଆବିଷ୍କାର କରି ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଚୀନତା ଦର୍ଶାଇଲେ । ସାରଳା, ପଞ୍ଚସଖା, ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ ପ୍ରମୁଖ ହୋଇଗଲେ ପ୍ରକୃତରେ ଓଡ଼ିଆ ଭାଷାକୁ ବଞ୍ଚାଇବା ପାଇଁ ମୁଖ୍ୟ ପ୍ରେରଣା । ତତ୍କାଳୀନ ବାଲେଶ୍ୱରର କଲେକ୍ଟର ଜନ୍ ବିମ୍ସ ଓଡ଼ିଆ ସାହିତ୍ୟର ପ୍ରାଚୀନତା ଓ ତା'ର ଗୌରବ ସଂପର୍କରେ ପ୍ରଥମେ ଦର୍ଶାଇଦେଲେ । ପରେ କୁଳବୃଦ୍ଧ ମଧୁସୂଦନ ଦାସ ତାଙ୍କ ଅଭିଭାଷଣରେ ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ଗୌରବ ଗାନ କଲେ । ଏହା ପଢ଼ିଲେ ମୁଁ ଅଭିଭୂତ ହୁଏ ।

## ବିବିଧ ଲେଖକଙ୍କ ଜୟନ୍ତୀ ଓ ମୋର ଭୂମିକା

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଓ ସ୍ଥାନରେ ଓଡ଼ିଶାର ବରପୁତ୍ରମାନଙ୍କର ଜୟନ୍ତୀ ପାଳନ କରାଯିବା ପାଇଁ ଗୋଟିଏ ଜାତୀୟ ପ୍ରବଣତା ଦେଖାଦେଲା । ୧୯୪୩ ମସିହାରେ ସ୍ୱର୍ଗତ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ନେତୃତ୍ୱରେ କଟକରେ ପ୍ରତିଷ୍ଠା ଲାଭ କଲା 'କଳିଙ୍ଗ ଭାରତୀ' ଅନୁଷ୍ଠାନ । ଏହି ଅନୁଷ୍ଠାନ ମାଧ୍ୟମରେ ଓଡ଼ିଶାର ନାନା ସ୍ଥାନରେ ପାଳିତ ହେଲା 'ଭଞ୍ଜ ଜୟନ୍ତୀ' । ସେ କାଳରେ ହୃଦାନନ୍ଦ ରାୟ, ରଜତ କୁମାର କର, କବିପ୍ରସାଦ ମିଶ୍ର ଓ ପରେପରେ ଚନ୍ଦ୍ରଶେଖର ନନ୍ଦ, ଶରତଚନ୍ଦ୍ର କର, ଶୈଳେଶ୍ୱର ନନ୍ଦ ପ୍ରମୁଖ ବହୁ ତରୁଣ ବିଚ୍ଛନ୍ଦବାବୁଙ୍କ ନେତୃତ୍ୱରେ ଭଞ୍ଜ ଜୟନ୍ତୀକୁ ଏକ ଜାତୀୟ ପର୍ବରେ ପରିଣତ କରିଦେଲେ । ଉପେନ୍ଦ୍ର ଭଞ୍ଜ କେବଳ କବିସମ୍ରାଟ୍ ହେଲେ ନାହିଁ; ହେଲେ ଓଡ଼ିଆ ସ୍ୱାଭିମାନ ଓ ଜାତୀୟତାର ପ୍ରତୀକ । ସ୍ୱାଧୀନତା ପରେ

ଆଧୁନିକପନ୍ଥୀମାନେ ଭଞ୍ଜଙ୍କୁ ଗୁରୁତ୍ୱ ଦେଲେ ନାହିଁ । ଆଧୁନିକ ଯୁଗ ଆରମ୍ଭ ପୂର୍ବରୁ ମଧ ଭଞ୍ଜ ବିରୋଧୀ ଆନ୍ଦୋଳନ ମୁଣ୍ଡ ଟେକି ଉଠିଥିଲା । ପ୍ୟାରୀମୋହନ ଆଚାର୍ଯ୍ୟ, ଲାଲା ରାମନାରାୟଣ ରାୟ, ବିଜୟଚନ୍ଦ୍ର ମଜୁମଦାର ପ୍ରମୁଖଙ୍କଠାରୁ ଭଞ୍ଜ ବିରୋଧୀ ଆନ୍ଦୋଳନ ସୁତୀବ୍ର ହୋଇ ଉଠିଥିଲା । ଉତ୍କଳପୁତ୍ର, ଉତ୍କଳପ୍ରଭା, ବିଜୁଳି ଆଦି କେତେ ପତ୍ରିକା ମଧ ଭଞ୍ଜ–ସାହିତ୍ୟକୁ ଭଲ ଦୃଷ୍ଟିରେ ଦେଖି ନ ଥିଲେ । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରୁ ଭଞ୍ଜ–ସାହିତ୍ୟ ପ୍ରତି ଏକ ସକାରାତ୍ମକ ଦୃଷ୍ଟିକୋଣ ଫୁଟିଉଠିଲା । ପଣ୍ଡିତ ନୀଳକଣ୍ଠ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି ପ୍ରମୁଖ ଏ ଦିଗରେ ସୁଚିନ୍ତିତ ମତ ପ୍ରଦାନ କଲେ । 'କଳିଙ୍ଗ–ଭାରତୀ' ଅନୁଷ୍ଠାନ ପ୍ରତିବର୍ଷ ବିଭିନ୍ନ ସ୍ଥାନରେ ଭଞ୍ଜ ଜୟନ୍ତୀ ପାଳନ କଲେ । ଦେଖାଗଲା ଯେ ଭଞ୍ଜ–ସାହିତ୍ୟର ପ୍ରକୃତ ମୂଲ୍ୟାୟନ ପରିବର୍ତ୍ତେ କେବଳ ପ୍ରଚାରଧର୍ମୀ ବକ୍ତବ୍ୟ ଗୁରୁତ୍ୱ ଲାଭ କଲା । ବିଚ୍ଛନ୍ଦବାବୁ ମଧ ଭଞ୍ଜଙ୍କ କାବ୍ୟର କେତେକ ଛାନ୍ଦ ଇଂରାଜୀରେ ଅନୁବାଦ କଲେ । କେହି କିଛି କରୁ ନ ଥିଲାବେଳେ ବିଚ୍ଛନ୍ଦବାବୁ ଏ ଦିଗରେ କାର୍ଯ୍ୟ ଆରମ୍ଭ କରିବାରୁ ତାଙ୍କ ଅନୁବାଦକୁ ଭୁଲ କହି କେହି କେହି କଟୁ ସମାଲୋଚନା କଲେ । ଅଥଚ ସେହି ଇଂରେଜୀ ପଣ୍ଡିତମାନେ ଅନୁବାଦ କରି ଆଦର୍ଶ ଦେଖାଇବାକୁ ସମର୍ଥ ହେଲେ ନାହିଁ ।

ଭଞ୍ଜ ଜୟନ୍ତୀକୁ ମୁଁ ମଧ ନିମନ୍ତ୍ରିତ ହୋଇ ଅନେକଥର ଯାଇଛି । କଟକ କଳିଙ୍ଗ ଭାରତୀ ଅନୁଷ୍ଠାନରେ ଭାଷଣ ଦେବା ସହିତ ରାଉରକେଲା, ଭଞ୍ଜନଗର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ମାହାଙ୍ଗା ପ୍ରଭୃତି ନାନା ସ୍ଥାନରେ ଭଞ୍ଜ ଜୟନ୍ତୀରେ ଭାଷଣ ଦେଇଛି । ମୁଁ ଲକ୍ଷ୍ୟ କରିଛି ଯେ ଭଞ୍ଜଙ୍କର ଯେଉଁ ଯେଉଁ ସ୍ଥାନରେ କବିତ୍ୱ ଅଛି ତାହାକୁ ଆଲୋଚନାକୁ ନ ନେଇ ଯେଉଁ ଯେଉଁ ସ୍ଥାନରେ ବିବିଧ ଅଳଙ୍କାର ଅଛି, ଶବ୍ଦାଡ଼ମ୍ବର ଅଛି, ଶୃଙ୍ଗାରରସର ଆଧିକ୍ୟ ଅଛି, ସେହି ସେହି ପଦକୁ ବୋଲି ଭଞ୍ଜଙ୍କ ଗୌରବ ଗାନ କରିବା ସାର ହୋଇଛି । ଏହା ଦ୍ୱାରା ଭଞ୍ଜଙ୍କ ଗୌରବ ବରଂ ହ୍ରାସ ପାଇଯାଉଛି ବୋଲି ମୁଁ ମନେକରେ ।

ଭଞ୍ଜ ଜୟନ୍ତୀ ପରେପରେ ସାରା ଓଡ଼ିଶାରେ ନାନା ଜୟନ୍ତୀ ପାଳିତ ହେବାକୁ ଲାଗିଲା । କୁଳବୃଦ୍ଧ ମଧୁସୂଦନ ଜୟନ୍ତୀ, ବ୍ୟାସକବି ଫକୀରମୋହନ ଜୟନ୍ତୀ, ସ୍ୱଭାବକବି ଗଙ୍ଗାଧର ଜୟନ୍ତୀ, ପଲ୍ଲୀକବି ନନ୍ଦକିଶୋର ଜୟନ୍ତୀ, ବିଦଗ୍ଧ କବି ଅଭିମନ୍ୟୁ ଜୟନ୍ତୀ, ଦୀନକୃଷ୍ଣ ଜୟନ୍ତୀ, ଶାରଳା ଜୟନ୍ତୀ, ଅତିବଡ଼ୀ ଜଗନ୍ନାଥ ଦାସ ଜୟନ୍ତୀ, ଉତ୍କଳମଣି ଗୋପବନ୍ଧୁ ଜୟନ୍ତୀ, ଗଣକବି ବୈଷ୍ଣବପାଣି ଜୟନ୍ତୀ, କବିସୂର୍ଯ୍ୟ ଜୟନ୍ତୀ, ବୀରସୁରେନ୍ଦ୍ର ସାଏ ଜୟନ୍ତୀ, ଜଗମୋହନ ଲାଲ ଜୟନ୍ତୀ, ବିଶ୍ୱନାଥ କର ଜୟନ୍ତୀ, ଗଣକବି ଗୋପାଳ ଦାଶ ଜୟନ୍ତୀ, କବିବର ରାଧାନାଥ ଜୟନ୍ତୀ ଆଦି ବହୁ ଜୟନ୍ତୀ ପାଳନ କରାଯାଉଅଛି । ଓଡ଼ିଶା ସାହିତ୍ୟ ଏକାଡ଼େମୀ ସଂପ୍ରତି ଚାଳିଶିରୁ ଊର୍ଦ୍ଧ୍ୱ ଜୟନ୍ତୀ ପାଳନ କରୁଅଛି । ମୁଁ

ପ୍ରାୟ ସବୁ ଜୟନ୍ତୀ ଉତ୍ସବକୁ ବକ୍ତା ଭାବରେ ଯାଇଛି । ସର୍ବତ୍ର ଲକ୍ଷ୍ୟ କରିଛି ଯେତେବେଳେ ଯେଉଁ ସ୍ଥାନରେ ଯାହାଙ୍କର ଜୟନ୍ତୀ ଉତ୍ସବ ପାଳିତ ହେଉଥାଏ ତାଙ୍କ ସଂପର୍କରେ ଅନେକ ଅତିରଂଜିତ କଥା କୁହାଯାଏ । ଏପରିକି ଭଞ୍ଜଙ୍କ ସଂପର୍କରେ କହିଲାବେଳେ ବକ୍ତାମାନେ କହନ୍ତି ଯେ ଭଞ୍ଜ ନୋବେଲ ପ୍ରାଇଜ୍ ପାଇବା ପାଇଁ ଉପଯୁକ୍ତ । ଭଞ୍ଜଙ୍କ ପରି କବି ନାହିଁ ନୋହିଲା ନୋହିବେ । ସେଇପରି ମଧ୍ୟ ଗଙ୍ଗାଧରଙ୍କ ସଂପର୍କରେ କୁହାଯାଇଥାଏ । ଥରେ ବରପାଲିରେ ଗଙ୍ଗାଧର ଜୟନ୍ତୀ ଉତ୍ସବ ପାଳିତ ହେଉଥାଏ । ମୁଁ ମଧ୍ୟ ସେଠାକୁ ବକ୍ତା ଭାବରେ ନିମନ୍ତ୍ରିତ ହୋଇ ଯାଇଥାଏ । ଜନୈକ ମନ୍ତ୍ରୀ ମହୋଦୟ ମଧ୍ୟ ଆସିଥାନ୍ତି । ଜଣେ ବିଶିଷ୍ଟ ବ୍ୟକ୍ତି ଗଙ୍ଗାଧରଙ୍କ ତପସ୍ୱିନୀ, ପ୍ରଣୟବଲ୍ଲରୀ କାବ୍ୟରୁ ବହୁ ପଦ ଗାଇଗଲେ ଓ କହିଲେ ତାଙ୍କୁ ଗଙ୍ଗାଧରଙ୍କ ଉପରେ କହିବାକୁ ହେଲେ ସାତ ଦିନ ଦରକାର । ସେ ମନ୍ତ୍ରୀ ମହୋଦୟଙ୍କୁ କହିଲେ ଯେ ସର୍ବସାଧାରଣ ସ୍ଥାନରେ ଗୋଟିଏ ମଞ୍ଚ କରନ୍ତୁ ଓ ସେ ସେଠାରେ ସାତଦିନ ଧରି ଗଙ୍ଗାଧରଙ୍କ ସାହିତ୍ୟକୁ ମହର୍ଷି ବାଲ୍ମୀକି ଓ ଭକ୍ତକବି ତୁଳସୀଦାସଙ୍କ ସହିତ ତୁଳନା କରି କହିବେ । ଏହିପରି ନାନା ସ୍ଥାନରେ ପ୍ରତିଯୋଗିତାମୂଳକ ଭାବରେ ଜୟନ୍ତୀ କାର୍ଯ୍ୟକ୍ରମ କରାଯାଉଛି । ଏହା ଦ୍ୱାରା ଯେ ସଂପୃକ୍ତ ଲେଖକ/ ଲେଖିକାଙ୍କର କୌଣସି ଯଥାର୍ଥ ମୂଲ୍ୟାୟନ କରାଯାଉଛି ; ନୁହେଁ । କେବଳ ପ୍ରଶଂସାମୁଖର ବକ୍ତବ୍ୟ ଓ ସଂପୃକ୍ତ କବିଙ୍କର କବିତା ଗାୟନ ଦ୍ୱାରା ଜନମନ ରଂଜନ କରିବା କୌଶଳ ପରିଲକ୍ଷିତ ହୁଏ ।

## ନୀଳଚକ୍ର ଓ ମୋର ସଂପୃକ୍ତି

'ନୀଳଚକ୍ର' ପରି ଏକ ଜାତୀୟ ଅନୁଷ୍ଠାନ କଟକରେ ୧୯୬୮ ମସିହା ବେଳକୁ ଗଢ଼ିଉଠିଲା । ଏହାର ସଭାପତି ଥିଲେ ଆଇନଜୀବୀ ବ୍ରହ୍ମାନନ୍ଦ ପଣ୍ଡା । ୧୯୭୦ ମସିହାରୁ ମୁଁ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଗଲି । ଏହି ଅନୁଷ୍ଠାନର ମୁଖପତ୍ର ବାହାରିଲା 'ନନ୍ଦିଘୋଷ' ମାସିକ ସାହିତ୍ୟ ପତ୍ରିକା । ପ୍ରଥମ ସଂଖ୍ୟାରେ ମୁଁ ଲେଖିଥିଲି ଭୀମଭୋଇଙ୍କ ଉପରେ ଗୋଟିଏ ପ୍ରବନ୍ଧ । ଏହି ପ୍ରବନ୍ଧରେ ସର୍ବପ୍ରଥମେ ମୁଁ ଭୀମଭୋଇ ଜନ୍ମାନ୍ଧ ନ ଥିଲେ ଓ ଷୋଳବର୍ଷ ବୟସ ପର୍ଯ୍ୟନ୍ତ ତାଙ୍କର ଅନ୍ଧତ୍ୱ ଆସି ନ ଥିଲା ବୋଲି ତାଙ୍କ ରଚନାମାନଙ୍କରୁ ପ୍ରମାଣ ଦେଇ ଲେଖିଥିଲି । ସେଥିରେ ମଧ୍ୟ ମୁଁ ସୂଚେଇଥିଲି ଯେ ଭୀମ ମୂର୍ଖ ନ ଥିଲେ; ସେ ବେଦବେଦାନ୍ତ ଓ ପୁରାଣ ଆଦି ଜାଣିଥିଲେ । ଏ ବିଷୟରେ ମଧ୍ୟ ମୁଁ ତାଙ୍କ ରଚନାରୁ ପ୍ରମାଣ ଦେଇ ତୁଳନାତ୍ମକ ଆଲୋଚନା କରିଥିଲି । ନଗେନ୍ଦ୍ରନାଥ ବସୁ ଭୀମଭୋଇଙ୍କ ନାମ ଅରକ୍ଷିତ ଦାସ ଭୀମସେନ ଭୋଇ ବୋଲି ଲେଖିଥିବାରୁ ଆର୍ତ୍ତବଲ୍ଲଭ ମହାନ୍ତି କଟୁ

ସମାଲୋଚନା କରି ସେପରି ନାମକରଣକୁ ବିରୋଧ କରିଥିଲେ । ମୋ ପ୍ରବନ୍ଧରେ ମୁଁ ଦର୍ଶାଇଥିଲି ନଗେନ୍ଦ୍ରନାଥ ବସୁଙ୍କ ନାମକରଣ ଭୁଲ ନୁହେଁ । ଭୀମଙ୍କ ବିବିଧ କବିତାରେ ଥିବା ଭଣିତାମାନଙ୍କରେ କେଉଁଠି ଭୀମଭୋଇ, ଅନ୍ୟ କେଉଁଠି ଭୀମସେନ ଭୋଇ, ଅରକ୍ଷିତ ଦାସ ଭୀମସେନ ଭୋଇ ଇତ୍ୟାଦି ଉଲ୍ଲେଖ ଦୃଷ୍ଟିରୁ ତାଙ୍କର ନାମ ଭୀମ ବା ଭୀମସେନ ଭୋଇର ପୂର୍ବରୁ ବିଶେଷଣ ରୂପେ ଅରକ୍ଷିତ, ଦାସ ଇତ୍ୟାଦି ଲାଗିଅଛି । ଏହିପରି ସେହି ପ୍ରବନ୍ଧରେ ମୁଁ ନାନା କଥା ଲେଖିଥିଲି । ପରବର୍ତ୍ତୀ ସମୟରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଚିନ୍ତାମଣି ବେହେରା, ହାଡ଼ିବନ୍ଧୁ ମିର୍ଦ୍ଧା ପ୍ରମୁଖ ଭୀମ ଜନ୍ମାନ୍ଧ ନ ଥିଲେ ବୋଲି ଲେଖିଲେ ।

ନୀଳଚକ୍ର ଏକ ଜାତୀୟ ଅନୁଷ୍ଠାନ । ଏହା କୌଣସି ରାଜନୀତିର ପୃଷ୍ଠ-ପୋଷକତାରେ ଗଢ଼ିଉଠି ନ ଥିଲା । ସେତେବେଳେ କେତେଜଣ ଉତ୍ସାହୀ ଯୁବକ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଥିଲେ । ସୁରେନ୍ଦ୍ର ନାଥ ମହାନ୍ତି ଥିଲେ ଏହାର ସଂପାଦକ । ଦୋଳମୁଣ୍ଡାଇଠାରେ ଗୋଟିଏ ସାଇକେଲ ଦୋକାନ କରିଥିବା ପ୍ରହ୍ଲାଦଚନ୍ଦ୍ର ମହାନ୍ତି ଥିଲେ ଏହାର ଉପଦେଷ୍ଟା । ବସ୍ତୁତଃ ନୀଳଚକ୍ର ଅଫିସର ଚାବି ସେ ରଖୁଥିଲେ । ସକାଳେ ଖୋଲୁଥିଲେ । ରାତିରେ ମଧ୍ୟ ଚାବି ପକାଉଥିଲେ । ଅତି ଉଦାର ଓ ଜାତିପ୍ରେମୀ ବ୍ୟକ୍ତି । ନୀଳଚକ୍ରର ମୁଖ୍ୟ କାର୍ଯ୍ୟାଳୟ ପହଲିବାବୁଙ୍କ ସାଇକେଲ ଦୋକାନକୁ ଲାଗିଥିଲା । ପ୍ରତି ବର୍ଷ ସେଇଠି ବିଷୁବ ସଂକ୍ରାନ୍ତି ଦିନ ବାର୍ଷିକ ଉତ୍ସବ ହୁଏ । ସମାଜର ସଂପାଦକ ରାଧାନାଥ ରଥ, ଶ୍ରୀ ରାମଚନ୍ଦ୍ର ଦାଶ, ହୃଦାନନ୍ଦ ରାୟ, ଗୌରୀକୁମାର ବ୍ରହ୍ମା, ବୈଷ୍ଣବଚରଣ ପରିଡ଼ା ପ୍ରମୁଖ ବହୁ ବିଶିଷ୍ଟ ଅତିଥି ଆସି ଉଦ୍‌ବୋଧନ ଦେଉଥିଲେ । ମୁଁ ମଧ୍ୟ ସେହି ସଭାରେ ଯୋଗ ଦେଉଥିଲି । ନୀଳଚକ୍ର ଆଉ କଟକରେ ସୀମିତ ହୋଇ ରହିଲା ନାହିଁ । ସାରା ଓଡ଼ିଶା ଓ ଓଡ଼ିଶାର ବିଚ୍ଛିନ୍ନ ଅଞ୍ଚଳକୁ ତାହା ସଂପ୍ରସାରିତ ହୋଇଗଲା । ବିଶେଷତଃ ଶିଳ୍ପାଞ୍ଚଳମାନଙ୍କରେ ତାହାର ଶାଖା ଗଢ଼ିଉଠିଲା । ବିଭିନ୍ନ ସ୍ଥାନକୁ ଆମେ ଯାଉଁ ନୀଳଚକ୍ରର ସଭା କରିବାକୁ । ସେତେବେଳେ ନୀଳଚକ୍ର ଦୁଇଟି ଜୟନ୍ତୀ ଉପରେ ଗୁରୁତ୍ୱ ଦେଲା-ଗୋଟିଏ ସୁରେନ୍ଦ୍ର ସାଏ ଜୟନ୍ତୀ, ଅନ୍ୟଟି ମଧୁସୂଦନ ଜୟନ୍ତୀ । ରାଉରକେଲା, ଟେନ୍‌ସା ଧଳଭୂମି, ରାଜଗାଙ୍ଗପୁର, ସମ୍ବଲପୁର, ବିନ୍ଧା, ନୂଆଗଡ଼, ଖଡ଼ିଆଳ, ମଂଜୁଷା ଆଦି ନାନା ସ୍ଥାନରେ ନୀଳଚକ୍ର ତା'ର ସଭାସମିତି କରିବା ସହିତ କାର୍ଯ୍ୟକ୍ରମ ଜାରି ରଖିଲା । ବିଭିନ୍ନ କଳକାରଖାନାରେ ଓଡ଼ିଆମାନଙ୍କୁ ନିଯୁକ୍ତି ଦେବା, ଅଣଓଡ଼ିଆମାନଙ୍କର ଓଡ଼ିଶାର ସ୍ୱାର୍ଥ ବିରୋଧୀ ମନୋଭାବ ଓ କାର୍ଯ୍ୟକୁ ବିରୋଧ କରିବା, ମାତୃଭାଷାକୁ ଗୁରୁତ୍ୱ ଦେବା, ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆତ୍ୱର ଜାଗରଣ କରିବା, ଜଗନ୍ନାଥ ସଂସ୍କୃତିର ମହିମାକୁ ପ୍ରଚାର କରିବା ଆଦି ନାନା କାର୍ଯ୍ୟ ନୀଳଚକ୍ର ହାତକୁ ନେଇଥାଏ । ନୀଳଚକ୍ର ଅନୁଷ୍ଠାନ ସହିତ

ମୁଁ ଏପରି ଜଡ଼ିତ ହୋଇଗଲି ଯେ ଯେତେବେଳେ ଆହ୍ୱାନ ଆସେ ମୁଁ ତାହାକୁ ଏଡ଼ି ନ ପାରି ଯାଏ ।

ଥରେ ଟେନ୍‌ସାରେ ମଧୁସୂଦନ ଜୟନ୍ତୀ ନୀଳଚକ୍ର ତରଫରୁ ପାଳିତ ହେଉଥାଏ । ସେଠାକୁ ବ୍ରହ୍ମାନନ୍ଦ ପଣ୍ଡା, ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ ଓ ମୁଁ ଯାଇଥାଉ । ନୀଳଚକ୍ରର ସଂପାଦକ ଓ ଅନ୍ୟାନ୍ୟ ବହୁ ସଦସ୍ୟ ମଧ ଯାଇଥାନ୍ତି । ଆମେ ଟେନ୍‌ସା ଗେଷ୍ଟହାଉସରେ ଥାଉ । ନୀଳଚକ୍ର ଏକ ବିପ୍ଳବୀ ଅନୁଷ୍ଠାନ ହୋଇଥିବାରୁ ଗେଷ୍ଟହାଉସର ବିଦ୍ୟୁତ୍ ସଂଯୋଗ, ପାଣି ସଂଯୋଗ କାଟି ଦିଆଯାଇଥାଏ । ଆମେ ମ୍ୟାନେଜରଙ୍କ ପାଖରେ ପ୍ରତିବାଦ କଲୁ । ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶ ଭୟଙ୍କର ଭାବରେ ରାଗିଗଲେ । ସେ ମ୍ୟାନେଜର ଓ ଟେନ୍‌ସାର ସର୍ବୋଚ୍ଚ ଅଧିକାରୀଙ୍କୁ କଡ଼ା ଭାଷାରେ କହିବାରୁ ପାଣି ଓ ବିଜୁଳି ସଂଯୋଗ କରାଗଲା । ସେଦିନ ରାତ୍ରିରେ ମଧୁସୂଦନ ଜୟନ୍ତୀ ମହାସମାରୋହରେ ପାଳିତ ହେଲା । ଓଡ଼ିଆ ଜାତି କୁଳବୃଦ୍ଧ ମଧୁସୂଦନ ଦାସଙ୍କୁ ଚିହ୍ନିପାରିଲା ନାହିଁ । ତାଙ୍କର ପ୍ରଚଣ୍ଡ ଓଡ଼ିଆ ପ୍ରୀତି ଓ ବିଖଣ୍ଡିତ କଳେବର ଉତ୍କଳଜନନୀର ଏକତ୍ରୀକରଣ ପାଇଁ ଉଦ୍ୟମ, ସେକାଳର ଭାଇସ୍‌ରାୟଙ୍କଠାରୁ ଆରମ୍ଭ କରି ଲଣ୍ଡନ ଯାଇଁ ଦାବି ଉପସ୍ଥାପନ, କଟକରେ ତାରକସି ଶିଳ୍ପ ଓ ଉତ୍କଳ ଟାନେରୀ ପ୍ରତିଷ୍ଠାନ ଇତ୍ୟାଦି ନାନା କାର୍ଯ୍ୟ ଏବେ ଆମକୁ ବିସ୍ମିତ କରେ । ସେ ଭାରତୀୟ ଜାତୀୟ କଂଗ୍ରେସରେ ୧୮୮୬ ମସିହାରେ ଯୋଗ ଦେଇଥିଲେ । ୧୮୯୭ ମସିହାରେ ମାଡ୍ରାସରେ ଅନୁଷ୍ଠିତ ଜାତୀୟ କଂଗ୍ରେସରେ ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଦାବି ଉପସ୍ଥାପନ କରିବାରୁ ସେକାଳର ଜାତୀୟ କଂଗ୍ରେସର ନେତାମାନେ ତାଙ୍କ ପ୍ରସ୍ତାବକୁ ଗ୍ରହଣ ନ କରିବାରୁ ସେ କଂଗ୍ରେସରୁ ଇସ୍ତଫା ଦେଇ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଗଠନ କଲେ । ଏହା ହେଲା ପ୍ରକୃତରେ ମାତୃପୂଜା ମଣ୍ଡପ । ଏହି ମଣ୍ଡପରେ ସେ ସେକାଳର ରାଜା, ଜମିଦାର, କବି, ଲେଖକ, ସାଧାରଣ ପ୍ରଜା ସମସ୍ତଙ୍କୁ ଏକତ୍ର କରାଇଦେଲେ । ସେତେବେଳେ ମଧ ସୁରଙ୍ଗୀର ରାଜା ଓ ଗୋପାଳଚନ୍ଦ୍ର ପ୍ରହରାଜ ପ୍ରମୁଖ ବିରୋଧ କରିଥିଲେ । ମାତ୍ର ତାଙ୍କର ବ୍ୟକ୍ତିତ୍ୱ ଏପରି ଥିଲା ଯେ ସବୁ ବିରୋଧକୁ ଅତିକ୍ରମ କରି ଉତ୍କଳ ଜନନୀଙ୍କର ପୂର୍ଣ୍ଣାଙ୍ଗ ରୂପ ଦେଖିବାକୁ ସଂଗ୍ରାମ ଜାରି ରଖିଥିଲେ । ୧୯୨୦ ମସିହାରେ ଭାରତୀୟ ଜାତୀୟ କଂଗ୍ରେସରେ ମିଶି ଗୋପବନ୍ଧୁବାବୁ ଓ ଅନ୍ୟମାନେ ତାଙ୍କୁ ଛାଡ଼ିଗଲେ ମଧ ସେ ନିଜର ଜାତୀୟ ସ୍ୱାଭିମାନ ନେଇ ଉତ୍କଳ ଜନନୀଙ୍କର ସେବାରେ ନିଜକୁ ଉତ୍ସର୍ଗ କଲେ । ସେ ବିହାର ଓଡ଼ିଶା ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ । କଟକ ସହରରେ ତାଙ୍କର କୁଶ ପୁତ୍ତଳିକା ଦାହ କରାଗଲା । ସେ ମଧ ଓଡ଼ିଆ ଜାତି ପାଇଁ ସର୍ବସ୍ୱ ଦାନ କରି ଦେୱାଳିଆ ହୋଇଗଲେ । ଗାନ୍ଧିଜୀ ତାଙ୍କର ଭୂୟସୀ ପ୍ରଶଂସା କରି ୟଙ୍ଗ ଇଣ୍ଡିଆ ଓ ହରିଜନ ପତ୍ରିକାରେ ଲେଖିଲେ । ସାଇମନ କମିଶନଙ୍କୁ ସ୍ୱାଗତ ଜଣାଇ

ସ୍ୱତନ୍ତ୍ର ପ୍ରଦେଶ ଗଠନର ଅନୁକୂଳ ବାତାବରଣ ସୃଷ୍ଟି କଲେ । ଅବଶେଷରେ ୧୯୩୬ ମସିହା ଏପ୍ରିଲ ପହିଲା ତାରିଖରେ ମାତ୍ର ଛ'ଟି ଜିଲ୍ଲାକୁ ନେଇ ଗଠିତ ହେଲା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ । ତାଙ୍କୁ ଏ ଦିଗରେ ସାହାଯ୍ୟ କଲେ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତିଦେବ, ମୁକୁରର ସଂପାଦକ ବ୍ରଜସୁନ୍ଦର ଦାସ, ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରମୁଖ ବିଦ୍ୱାନ୍ ଓ ଜାତିପ୍ରାଣ ବ୍ୟକ୍ତି । ୧୯୩୪ ମସିହାରେ ମଧୁସୂଦନଙ୍କର ତିରୋଧାନ ହୋଇଗଲା । ସ୍ୱତନ୍ତ୍ର ପ୍ରଦେଶ ଦେଖିବାକୁ ସେ ନ ଥିଲେ ।

ଭାରତ ସ୍ୱାଧୀନ ହେଲା । ଓଡ଼ିଶା ମଧ୍ୟ ଭାରତ ଜନନୀଙ୍କର ଏକ ଅଙ୍ଗ ହୋଇ ରହିଲା । ୧୯୪୮ ମସିହାରେ ସେକାଳର ଓଡ଼ିଶାର ପ୍ରଧାନମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଉଦ୍ୟମରେ ୨୬ଟି ଗଡ଼ଜାତ ଓଡ଼ିଶା ସହିତ ମିଶିବା ସଙ୍ଗେ ସଙ୍ଗେ ୧୯୪୯ ମସିହାରେ ମୟୂରଭଞ୍ଜ ମିଶି ପୂର୍ଣ୍ଣାଙ୍ଗ ଉତ୍କଳ ଗଠିତ ହେଲା ଓ ତେରଟି ଜିଲ୍ଲା ହେଲା । ଏବେ ଏହା ତିରିଶିଟି ଜିଲ୍ଲାରେ ପରିଣତ ହୋଇଅଛି । ଓଡ଼ିଶାର ସୀମା ଆଉ ଇଞ୍ଚେ ବଢ଼ିଲା ନାହିଁ । ଧଳଭୂମି, ମାନଭୂମି, ସିଂହଭୂମି, ବିନ୍ଧ୍ରା, ଷଢ଼େଇକଲା, ଖରସୁଆ, ନୂଆଗଡ଼, ମଂଜୁଷା ଆଦି ବହୁ ଅଞ୍ଚଳ ପ୍ରତିବେଶୀ ରାଜ୍ୟମାନଙ୍କ ସହିତ ମିଶି ରହିଲା । ଶେଷରେ ସୀମା ଆନ୍ଦୋଳନ ହେଲା ଓ କଟକରେ ସୁନୀଲ ଦେ ଓ ପୁରୀରେ ବେଙ୍ଗପାଣିଆ ପୋଲିସ ଗୁଳିରେ ମଲେ । କ'ଣ ହେଲା ଓଡ଼ିଶାର ? ଯେଉଁମାନେ ମନ୍ତ୍ରୀ, ବିଧାୟକ ଥିଲେ ବା ଯେଉଁ ଅଧିକାରୀବର୍ଗ ଓ ପୋଲିସ ଥିଲେ ସେମାନେ କ'ଣ ଓଡ଼ିଆ ନୁହନ୍ତି ? ନା ସେମାନେ ଓଡ଼ିଆ ନୁହନ୍ତି । ସେମାନଙ୍କର ଗୋଟିଏ ଜାତି ଗୋଲାମ । ସେମାନଙ୍କର ଜାତିପ୍ରୀତି ଆସିବ କେଉଁଠୁ ? ଏପରି ଅବସ୍ଥାରେ ମଧୁସୂଦନଙ୍କ ଜୟନ୍ତୀ ହେବାର ପ୍ରଶ୍ନ ହିଁ ନ ଥିଲା । ଷାଠିଏ ଦଶନ୍ଧିରୁ କ୍ରମେ ମଧୁସୂଦନଙ୍କ ଜୟନ୍ତୀ ପାଳନ କରାଗଲା । ନୀଳଚକ୍ର ଏ ଦିଗରେ ନେଲା ଏକ ପ୍ରମୁଖ ଭୂମିକା । ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଲା ମଧୁଜୟନ୍ତୀ । ଏଥିସହିତ ସୁରେନ୍ଦ୍ର ସାଏଙ୍କ ଜୟନ୍ତୀକୁ ମଧ୍ୟ ପାଳନ କଲେ ନୀଳଚକ୍ର ଅନୁଷ୍ଠାନ ।

ଏବେ ମୋର ମନେପଡୁଛି କେତୋଟି ଘଟଣା । ସେତେବେଳେ ମୁଁ ଫକୀରମୋହନ କଲେଜରେ ଥାଏ । ସେଇଠୁ ମୁଁ ଯାଇଥିଲି ଧଳଭୂମିକୁ ଭାଷଣ ଦେବା ପାଇଁ । ସେ ଅଞ୍ଚଳର ବିଶିଷ୍ଟ ଓଡ଼ିଆ ନେତା ତାରାପଦ ଷଡ଼ଙ୍ଗୀ, କାଳୀଚରଣ ଶତପଥୀ ପ୍ରମୁଖ ତାହାର ଆୟୋଜନ କରିଥାନ୍ତି । ଭାଷଣ ଦେଇ ମଞ୍ଚରୁ ତଳକୁ ଓହ୍ଲାଇଲା ବେଳେ ଜଣେ ଓଡ଼ିଆ ଭଦ୍ରଲୋକ ମୋ ଗୋଡ଼କୁ ହଠାତ୍ ଧରିପକାଇ କହିଲେ– 'ମୁଁ ଜଣେ ଓଡ଼ିଆ, ଆପଣଙ୍କ ଭାଇ, ଆମକୁ ଟିକେ ଭାଇ ପରି ମନେରଖିବେ ।' ସେଦିନ ମୋ ଆଖିରୁ ଝରିପଡ଼ିଲା ଅଶ୍ରୁବୁନ୍ଦା । ସେତେବେଳେ ମୋର ମନେପଡ଼ିଯାଉଥାଏ ଉତ୍କଳମଣି ପଣ୍ଡିତ

ଗୋପବନ୍ଧୁ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ସେସବୁ ଅଞ୍ଚଳରେ ଓଡ଼ିଆ ଜାଗରଣ ପାଇଁ ତ୍ୟାଗ ଓ ନିଷ୍ଠା । ଏବେ ଅନେକ ଦିନ ପରେ ଭାବୁଛି କୁଆଡ଼େ ଗଲା ସେ ଓଡ଼ିଆ ପ୍ରୀତି ? ନୀଳଚକ୍ର ସେହି ଓଡ଼ିଆ ପ୍ରୀତିର, ଜଗନ୍ନାଥ ସଂସ୍କୃତିର ହେଲା ବାର୍ତ୍ତାବହ ।

ଥରେ ନୀଳଚକ୍ର ତରଫରୁ ରାଉରକେଲାରେ ଆୟୋଜିତ ସୁରେନ୍ଦ୍ର ସାଏ ଜୟନ୍ତୀରେ ମୁଁ ଭାଷଣ ଦେଉଥାଏ । ପ୍ରସଙ୍ଗକ୍ରମେ ଓଡ଼ିଶାର ଅତୀତ ଇତିହାସ, ଖାରବେଳ ଓ କପିଳେନ୍ଦ୍ରଦେବଙ୍କ ବୀରତ୍ୱ ଓ ଓଡ଼ିଶାପ୍ରାଣତା, ଓଡ଼ିଶାର ପରାଧୀନତା, ଆଫଗାନ ମୁସଲମାନ-ମୋଗଲ-ମରହଟ୍ଟା-ଇଂରେଜ ଶାସନ କାଳରେ ଓଡ଼ିଶାର ଦୁର୍ଗତି, ଊନବିଂଶ ଶତାବ୍ଦୀରେ ପ୍ରଥମ ଦଶନ୍ଧିର ଓଡ଼ିଆ ଜାତିର ଜାଗରଣ, ବକ୍‌ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କ ବିଦ୍ରୋହ, ପରେପରେ ସମ୍ବଲପୁର ଅଞ୍ଚଳରେ ବୀର ସୁରେନ୍ଦ୍ର ସାଏଙ୍କ ଇଂରେଜ ବିରୋଧୀ ସଂଗ୍ରାମ, ଜେଲବରଣ ଓ ସିପାହୀ ବିଦ୍ରୋହ ବେଳେ ଜେଲରୁ ପଳାୟନ, ପୁନର୍ବାର ଯୁଦ୍ଧ, ପୁତ୍ର ମିତ୍ରଭାନୁ ସାଏଙ୍କ ସହିତ ଅସୁରଗଡ଼ ଦୁର୍ଗରେ କାରାଜୀବନ ଓ ମୃତ୍ୟୁ (୧୮୮୪), ଭାରତୀୟ ଜାତୀୟ କଂଗ୍ରେସ ଗଠନ (୧୮୮୫) ଓ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଗଠନ ପର୍ଯ୍ୟନ୍ତ ଇତିହାସର ପୃଷ୍ଠଭୂମି ଉପରେ ଓଡ଼ିଆ ଜାଗରଣ ପାଇଁ ଉଦ୍‌ବୋଧନ ଦେଉଥିଲାବେଳେ ମୁଁ ଲକ୍ଷ୍ୟ କଲି ପ୍ରାୟ ଦଶହଜାର ଦର୍ଶକ ଓ ଶ୍ରୋତାଙ୍କର ଓଡ଼ିଆପ୍ରୀତିକୁ । ମୋ ପରେ ଜଣେ ବିଜ୍ଞ ପ୍ରଫେସର ଯେତେବେଳେ ପ୍ରସଙ୍ଗ ଛାଡ଼ି ଭଞ୍ଜଙ୍କ ଶୃଙ୍ଗାର ସମରର ଗୀତ ବୋଲି ନୃତ୍ୟ କଲେ ସେତେବେଳେ ଲୋକେ ହୋ ହୋ ହୋଇ ଚାଲିଗଲେ । ସେ ଭଦ୍ରବ୍ୟକ୍ତି ଦଶମିନିଟ ମାତ୍ର କହିପାରିଲେ ନାହିଁ । ସେ ଯେତେବେଳେ ମୋତେ ପଚାରିଲେ- ଲୋକେ କାହିଁକି ଏପରି ହେଲେ ? ମୁଁ ତାଙ୍କୁ କହିଲି- ଆଜି ବୀର ସୁରେନ୍ଦ୍ର ସାଏଙ୍କ ଜୟନ୍ତୀ । ଆପଣ ଓଡ଼ିଶାର ସାମରିକ ପରଂପରା ବା ସୁରେନ୍ଦ୍ର ସାଏଙ୍କ ଜାତି ପାଇଁ ତ୍ୟାଗ ଓ ଆତ୍ମବଳିଦାନ କଥା କହିଥିଲେ ଭଲ ହୋଇଥାନ୍ତା । ସେ ମହାଶୟ ଏଥିପାଇଁ ଅକ୍ଷମତା ପ୍ରକାଶ କରି ଦୁଃଖିତ ହେଲେ ।

ଆଉ ଥରେ ନୀଳଚକ୍ର ତରଫରୁ ଟେନ୍‌ସା, ରାଉରକେଲା ଓ ରାଜଗାଙ୍ଗପୁରରେ ମିଟିଂସାରି ଆମେ ରାଜଗାଙ୍ଗପୁରଠାରେ ରହିଲୁ । ସେଦିନ ସନ୍ଧ୍ୟା ସମୟରେ ରାଜଗାଙ୍ଗପୁର ଅନ୍ତର୍ଗତ ବଡ଼ଗାଁ ବୋଲି ଗୋଟିଏ ଆଦିବାସୀ ଗାଁକୁ ଗଲୁ ମିଟିଂ ପାଇଁ । ସେ ଗାଁରେ ସମସ୍ତ ଲୋକେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥାନ୍ତି । ଅଥଚ ସେମାନଙ୍କର ଜଗନ୍ନାଥ ଧର୍ମ ଓ ସଂସ୍କୃତି ପ୍ରତି ଆଦର ଥାଏ । ତେଣୁ ସେମାନେ ନିମନ୍ତ୍ରଣ କରିଥାନ୍ତି ସେ ଗାଁକୁ ଯାଇ ଜଗନ୍ନାଥ ଧର୍ମ ଉପରେ କହିବା ପାଇଁ । ତେଣୁ ବ୍ରହ୍ମାନନ୍ଦବାବୁ, ସୁରେନ୍ଦ୍ର ଓ ଅନ୍ୟ କେତେଜଣ ଯୁବକଙ୍କ ସହିତ ମୁଁ ମଧ୍ୟ ଗୋଟିଏ ଜିପରେ ସେ ଗାଁକୁ ଗଲି । ସେଠି ପହଞ୍ଚି ଦେଖିଲୁ ଆଦିବାସୀ ଭାଇଭଉଣୀମାନଙ୍କର ଆନ୍ତରିକ ଆଗ୍ରହକୁ । ତାଳପତ୍ରରେ ବାନ୍ଧିଥାନ୍ତି ବିରାଟ

ଛାମୁଣ୍ଡିଆ । ସଭା ହେଲା । ମୁଁ ଯେତେବେଳେ ଜଗନ୍ନାଥ ଧର୍ମ ଓ ସଂସ୍କୃତି ବିଷୟରେ ଭାଷଣ ଦେଲି ସେତେବେଳେ ଆଦିବାସୀ ନରନାରୀଙ୍କର ହରିବୋଲ ହୁଳହୁଳି ଧ୍ୱନିରେ ସଭାସ୍ଥଳ ମୁଖରିତ ହୋଇଉଠିଲା । ପ୍ରସାଦ ସେବନ କରି ଆମେ ସେହି ଅନ୍ଧାର ରାତ୍ରିରେ ରାଜଗାଙ୍ଗପୁରକୁ ଫେରୁଥିଲାବେଳେ ଗୋଟିଏ ବନ୍ଧ ଉପରୁ ଜିପ୍‌ଟି ତଳକୁ ତିନି ଘେର ଖାଇ ଗଡ଼ିପଡ଼ିଲା । ମୁଁ ଓ ବ୍ରହ୍ମାନନ୍ଦବାବୁ ଆଗରେ ବସିଥିଲୁ । ଆମେ ଦୁଇଜଣ ପ୍ରଥମ ଘେରବେଳେ ବାହାରକୁ ଛିଟିକି ପଡ଼ିଲୁ । ଡ୍ରାଇଭର ମଧ୍ୟ ବାହାରି ଆସିଲା । ପଛରେ ବସିଥିବା ଯୁବକମାନେ ବାହାରି ଆସିଲେ । ଜିପ୍‌ଟି ତଳେ ପଡ଼ିଗଲା । ତା' ତଳେ ସଂପାଦକ ସୁରେନ୍ଦ୍ର ଚାପି ହୋଇଗଲା । ମୁଁ ଓ ବ୍ରହ୍ମାନନ୍ଦବାବୁ ଶକ୍ତି ପ୍ରୟୋଗ କରି ଜିପ୍‌ଟିକୁ ଗଡ଼ାଇଦେଲୁ । ସୁରେନ୍ଦ୍ର ହଠାତ୍ ଉଠିପଡ଼ି କିଛି ବାଟ ଦଉଡ଼ିଯାଇ ତଳେ କଚାଡ଼ି ହୋଇ ପଡ଼ିଗଲା । ତା'ର ଆଉ ଚେତା ରହିଲା ନାହିଁ । ଆମ ପାଟି ଶୁଣି ପାଖ ଗାଁର ଆଦିବାସୀ ନରନାରୀମାନେ ଦଉଡ଼ି ଆସିଲେ । ସୁରେନ୍ଦ୍ର ମୁହଁରେ ପାଣି ଛାଟି ଟେକି ଆଣି ଘରୁ ଆଣିଥିବା ଦଉଡ଼ିଆ ଖଟରେ ଶୁଆଇ ଦେଲେ । କରଂଜ ତେଲରେ ଡିବି ଲଗାଇ ସୁରେନ୍ଦ୍ର ତଥା ଅନ୍ୟମାନଙ୍କ ଦେହରେ ଆଘାତ ଲାଗିଥିବା ସ୍ଥାନରେ କ'ଣ ତେଲ ମାଲିସ କଲେ । ସମସ୍ତେ ସୁସ୍ଥ ହେଲା ପରେ ସକାଳୁ ସକାଳୁ ଆସି ରାଜଗାଙ୍ଗପୁରରେ ପହଞ୍ଚିଲୁ । ସୁରେନ୍ଦ୍ରକୁ ନେଇ ଡାକ୍ତରଖାନାକୁ ଗଲୁ । ପରୀକ୍ଷା କରିବା ପରେ ଡାକ୍ତର ତାଙ୍କୁ ବିଦା କରିଦେଲେ । ସେଦିନ ମୁଁ ଅନୁଭବ କଲି ଆଦିବାସୀ ଭାଇଭଉଣୀମାନଙ୍କର ଆନ୍ତରିକ ଶ୍ରଦ୍ଧା, ସେବା ଓ ସରଳତାକୁ । ସେମାନେ ହୁଏତ ଖ୍ରୀଷ୍ଟଧର୍ମ ଗ୍ରହଣ କରିଛନ୍ତି ମାତ୍ର ତାହା ସେମାନଙ୍କୁ ଗ୍ରାସ କରିପାରି ନାହିଁ । ସେମାନେ ମାନନ୍ତି ସେମାନଙ୍କ ପାରଂପରିକ ଭଗବାନ୍‌ଙ୍କୁ । ଜଗନ୍ନାଥଙ୍କୁ ମଧ୍ୟ ମାନନ୍ତି । ଧର୍ମକୁ ନେଇ ସେମାନେ ବ୍ୟବସାୟ କରିବା ଶିଖି ନାହାନ୍ତି । ସଭ୍ୟ ସମାଜ ସେମାନଙ୍କୁ ସେବା କରିବା ନାମରେ ଯେ ଶୋଷଣ କରନ୍ତି ତାହା ସେମାନେ ବୁଝିପାରନ୍ତି ନାହିଁ ।

ଆଉ ଥରେ ନୀଳଚକ୍ର ସଭାରେ ଯୋଗ ଦେବାପାଇଁ ବ୍ରହ୍ମାନନ୍ଦବାବୁଙ୍କ ସହିତ ମୁଁ, ପ୍ରଫେସର ହୃଦାନନ୍ଦ ରାୟ ଓ ମନମୋହନ ମିଶ୍ର ଯାଇଥାଉ ବାରିପଦା ଓ ସେଠାରୁ ଆମେ ଆସୁଥାଉ କେନ୍ଦୁଝର ସହରକୁ । ବାଟଯାକ ହୃଦାନନ୍ଦବାବୁ ଜଗନ୍ନାଥଙ୍କ ଉପରେ ନାନା କଥା କହୁଥାଆନ୍ତି । ତାଙ୍କର ତ ଜଗନ୍ନାଥ ପ୍ରୀତି ଓ ଭକ୍ତି ଅସୀମ । ସବୁ କଥା ଜଗନ୍ନାଥ କରୁଛନ୍ତି ବୋଲି କହୁଥାନ୍ତି । ରାତି ସମୟ । କେନ୍ଦୁଝର ଟାଉନ ଆଉ ପ୍ରାୟ କୋଡ଼ିଏ/ତିରିଶ କିଲୋମିଟର ଥାଏ । ହଠାତ୍ ଗାଡ଼ି ଖରାପ ହୋଇଗଲା । ଡ୍ରାଇଭର ଓହ୍ଲାଇ ଇଂଜିନ ଦେଖିଲେ । ଅନେକ ସମୟ ଗଲା । ଗାଡ଼ି ଠିକ୍ ହେଉ ନାହିଁ । ହୃଦାନନ୍ଦବାବୁ ଶୋଇଥାନ୍ତି । ମନମୋହନବାବୁ ମୋ ସହିତ ଗପୁଥାନ୍ତି । ସେ ମୋତେ ଦ୍ୱିଲେ–

'ହୃଦାନନ୍ଦବାବୁ ତ କହୁଥିଲେ ଜଗନ୍ନାଥ ଗାଡ଼ି ଚଲାଉଛନ୍ତି, ସବୁ କରୁଛନ୍ତି, କାହିଁ ଗାଡ଼ି ତ ଖରାପ ହୋଇଗଲା । ଜଗନ୍ନାଥ କୁଆଡ଼େ ଗଲେ ।' ମୁଁ ହୃଦାନନ୍ଦ ବାବୁଙ୍କୁ ଡାକି ଏକଥା କହିବାରୁ ସେ ନିଦ ବାଉଳାରେ ଉଠିପଡ଼ି ଡ୍ରାଇଭରକୁ କହିଲେ- 'ଜୟ ଜଗନ୍ନାଥ, ଷ୍ଟାର୍ଟ ମାର, ଚଲା ଗାଡ଼ି ।' ଡ୍ରାଇଭର ଷ୍ଟାର୍ଟ ମାରିଦେବାରୁ ଗାଡ଼ି ଚାଲିଲା । ଭୋରୁ ଭୋରୁ ଆମେ କେନ୍ଦୁଝର ଡାକବଙ୍ଗଳାରେ ପହଞ୍ଚିଲୁ । ହୃଦାନନ୍ଦବାବୁ ଡ୍ରାଇଭରକୁ କହିଲେ- ଗାଡ଼ି ବନ୍ଦ କରନା, ଯାଅ ମେକାନିକ୍ ପାଖକୁ । ସଜାଡ଼ି ଆଣିଲେ ଆମେ ଯିବା । ଡ୍ରାଇଭର ଗାଡ଼ି ନେଇଗଲା । ଆମେ ଗାଧୁଆପାଧୁଆ ସାରି ଜଳଖିଆ ଖାଇ ବିଶ୍ରାମ ନେଲୁ । ଡ୍ରାଇଭର ଆସିଲା ପ୍ରାୟ ସାଢ଼େଦଶଟା ବେଳକୁ । ସେ ଯାହା କହିଲା ଆମେ ବିସ୍ମିତ ହେଲୁ । ମେକାନିକ୍ ଆଶ୍ଚର୍ଯ୍ୟ ହେଲା ଗାଡ଼ି କିପରି ଏତେ ବାଟ ଆସିଲା । ଇଂଜିନ୍ ଭିତରେ କ'ଣ ପୋଡ଼ି ଯାଇଥାଏ । ଏକଥା ଶୁଣି ମନମୋହନବାବୁ ବିସ୍ମିତ ହେଲେ ଓ କହିଲେ, ଜଗନ୍ନାଥ ପ୍ରକୃତରେ ସତ୍ୟ- ସେ ଅଛନ୍ତି । ଏହା ପରେ ଆମେ କେନ୍ଦୁଝରରେ ମିଟିଂ ସାରି କଟକ ଫେରିଲୁ ।

ନୀଳଚକ୍ରର ମିଟିଂରେ ମୁଁ ପ୍ରାୟ ସବୁ ସ୍ଥାନକୁ ଯାଉଥାଏ । ଏକେ ତ ଏହା ଏକ ଜାତୀୟ ଅନୁଷ୍ଠାନ, ଦ୍ୱିତୀୟତଃ ଜଗନ୍ନାଥ ଚେତନାର ଜାଗରଣ ଓ ଜଗନ୍ନାଥ ସଂସ୍କୃତିର ପ୍ରସାର ଏହାର ଲକ୍ଷ୍ୟ । ଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଆ ଜାତି ଯୁଗେ ଯୁଗେ କେତେ କେତେ କାହାଣୀ ସୃଷ୍ଟି କରିଆସିଛି । ଏସବୁ ଏବେ କିମ୍ବଦନ୍ତୀ ଓ ମିଥ୍‌ରେ ପରିଣତ ହୋଇଯାଇଛି । ସେସବୁ କିମ୍ବଦନ୍ତୀ ବା କାହାଣୀକୁ ଆଧୁନିକ ପଣ୍ଡିତମାନେ ଯେତେ ମିଛ କହିଲେ ବି ଓଡ଼ିଆ ଜାତିର ହୃଦୟପଟରୁ ସେସବୁ ଲୋପ ପାଇଯାଉ ନାହିଁ । ବରଂ ଅଧିକ ଚକ୍‌ଚକ୍ ହୋଇ ଫୁଟିଉଠୁଛି । ଓଡ଼ିଆ ଜାତି ଜଗନ୍ନାଥଙ୍କୁ ଇଷ୍ଟ ମନେକରେ । ବାହାଘର ବ୍ରତଘର ଇତ୍ୟାଦିରେ ତାଙ୍କୁ ଗୁଆ ଦିଏ, ନିମନ୍ତ୍ରଣ ଦିଏ । ଜଗନ୍ନାଥ ଯେମିତି ବନ୍ଧୁ ପାଲଟିଯାଆନ୍ତି । ତାଙ୍କ ମହାପ୍ରସାଦ, ନିର୍ମାଲ୍ୟ ନ ହେଲେ ବିବାହ ନିର୍ବନ୍ଧ ହୁଏ ନାହିଁ । ସବୁ କଥାକୁ ଜଗନ୍ନାଥ ସାକ୍ଷୀ । ବାଡ଼ିରେ ପ୍ରଥମ ଫଳଟିଏ ହେଲେ ସେ ଜଗନ୍ନାଥଙ୍କୁ ଦିଏ । ଜଗନ୍ନାଥଙ୍କୁ କେତେ କିଏ କେତେ ରୂପରେ ବର୍ଣ୍ଣନା କରିଛନ୍ତି । କିଏ କହେ ସେ ବୁଦ୍ଧ, ଆଉ କିଏ କହେ ସେ ଜୀନ । କିଏ ପୁଣି କହେ ସିଏ ରାମ, କୃଷ୍ଣ, ଶିବ, ଶକ୍ତି । କିଏ ପୁଣି କହେ ଦ୍ୱୈତ, ଅଦ୍ୱୈତ, ନିର୍ଗୁଣ, ସଗୁଣ । ସିଏ ସବୁ ହୋଇ ମଧ୍ୟ ଓଡ଼ିଆ ଜାତି ପାଖରେ ସିଏ ହୋଇଯାଇଛନ୍ତି କେବଳ ଜଗନ୍ନାଥ- ଜଗୁ ନାଏକ, ଜଗୁଜୀବନ, କାଳିଆସାଆନ୍ତ, ଚକାଡୋଳା, ମଣିମା ମହାବାହୁ, ବଳୀୟାର ଭୁଜ । କୌଣସି ତତ୍ତ୍ୱ ଭିତରକୁ ଓଡ଼ିଆ ଜାତି ନ ଯାଇ ଜଗନ୍ନାଥଙ୍କୁ ନେଇ ସିଏ ଆନନ୍ଦ ପାଏ, ତା' ପର୍ବପର୍ବାଣିରେ ନିଜକୁ ସାମିଲ କରିଦିଏ, ରଥଯାତ୍ରା ବେଳେ ତାହା ସହିତ କେତେ କୌତୁକ କରେ ।

ଏଇ ଜଗନ୍ନାଥଙ୍କୁ ନେଇ କେତେ କେତେ କିମ୍ବଦନ୍ତୀ ସୃଷ୍ଟି ହୋଇଯାଇଛି । ଇନ୍ଦ୍ରଦ୍ୟୁମ୍ନ, ବିଦ୍ୟାପତି, ବିଶ୍ୱାବସୁ, ଲଳିତା, ଗୁଣ୍ଡିଚା, ବୃଦ୍ଧ ବଢ଼େଇ, ଦାରୁବିଗ୍ରହ ନିର୍ମାଣ ଇତ୍ୟାଦି କାହାଣୀଗୁଡ଼ିକ ଇତିହାସର ନ ହୋଇ ମଧ୍ୟ ଇତିହାସଠାରୁ ଆହୁରି ସତ୍ୟ ହୋଇଯାଇଛି । ମାଦଳା ପାଞ୍ଜିରେ ଓ ପରବର୍ତ୍ତୀ କାଳରେ ପଞ୍ଚସଖା ସାହିତ୍ୟରେ, କେତେ କାହାଣୀ ଯୋଡ଼ି ହୋଇଯାଇଛି । ସବୁ କାହାଣୀକୁ ଓଡ଼ିଆ ଜାତି ସତ୍ୟ ବୋଲି ମାନିନିଏ । ସେହି କାହାଣୀ କହି ଓ ଶୁଣି ତନ୍ମୟ ହୁଏ । ତା'ରି ଭିତରୁ ଫୁଟିଉଠେ ଭକ୍ତି, ପ୍ରୀତି ଓ ଜାତୀୟତାବୋଧ । ଜଗନ୍ନାଥ ଯେମିତି ସାରା ଓଡ଼ିଆ ଜାତିକୁ ବାନ୍ଧି ରଖିଛନ୍ତି ଗୋଟିଏ ଭାବସୂତ୍ରରେ ।

ମୁଁ ଜଗନ୍ନାଥଙ୍କୁ ମାନେ । ତାଙ୍କୁ ଭକ୍ତି ନିବେଦନ କରେ । ତାଙ୍କ ଭିତରେ ମୁଁ ପାଏ– ସମାନ ଦୃଷ୍ଟି, ଉପନିଷଦର ଅବ୍ୟକ୍ତ ବ୍ରହ୍ମ । ତାଙ୍କ ପାଖରେ ଜାତି ଅଜାତି ସମଜ୍ଞାନ । ଓଡ଼ିଆ ଜାତି ପାଇଁ ସେ ମଧ୍ୟ ସୈନିକ ବେଶରେ ଯୁଦ୍ଧକୁ ଯାଆନ୍ତି, ମାଣିକୀ ହାତରୁ ଦହି ଖାଇ ମୁଦି ବନ୍ଧା ଦିଅନ୍ତି । ରାଜା ପୁରୁଷୋତ୍ତମଦେବ ମାଣିକ ନାମରେ ମାଣିକପାଟଣା ଗ୍ରାମ ବସାନ୍ତି । କାଞ୍ଚି ରାଜା ପରାଜିତ ହୁଅନ୍ତି । ତାଙ୍କ କନ୍ୟା ରୂପାମ୍ବିକା (ପଦ୍ମାବତୀ)କୁ ବିବାହ କରନ୍ତି ପୁରୁଷୋତ୍ତମ ଦେବ । ଏ ସବୁକୁ ଗାଲୁଗପ କହି ଉଡ଼ାଇଦେବା ସହଜ ମାତ୍ର ଓଡ଼ିଆ ଜାତିର ଅସ୍ଥିମଜ୍ଜାଗତ ହୋଇଯାଇଛି ଏସବୁ କାହାଣୀ । ଏହାକୁ ଉଡ଼େଇ ଦେଇ ହୁଏ ନାହିଁ । ନୀଳଚକ୍ର ଓଡ଼ିଶା ଭିତରେ ଓ ବାହାରେ, ବିଚ୍ଛିନ୍ନାଞ୍ଚଳରେ ଜାତୀୟ ଜାଗରଣ ଆଣିବା ପାଇଁ ସଭା କରୁଥାଏ । ଜଗନ୍ନାଥ ଧର୍ମ ଓ ସଂସ୍କୃତି ବିଷୟରେ ଲୋକମାନଙ୍କୁ ଅବହିତ କରାଯାଉଥାଏ । ଓଡ଼ିଶାର ଅତୀତ ଇତିହାସର ଗୌରବମୟ କାହାଣୀ କୁହାଯାଉଥାଏ । ମୁଁ ଲକ୍ଷ୍ୟ କରିଛି ବିଚ୍ଛିନ୍ନାଞ୍ଚଳମାନଙ୍କରେ ଅପୂର୍ବ ଜଗନ୍ନାଥ ପ୍ରୀତିକୁ ।

ଥରେ ନୀଳଚକ୍ରର ବନ୍ଧୁମାନେ ମୋତେ ଡାକିଥିଲେ ମଂଜୁଷାକୁ ଯିବାପାଇଁ । ମଂଜୁଷା ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ସଂପ୍ରତି ଆନ୍ଧ୍ରରେ ମିଶିଯାଇଛି । ଅଥଚ ଏହା ଥିଲା ଓଡ଼ିଶାର ଅବିଚ୍ଛେଦ୍ୟ ଅଙ୍ଗ । ବ୍ରହ୍ମାନନ୍ଦବାବୁ, ସୁରେନ୍ଦ୍ରବାବୁ ଓ ଆହୁରି ଅନେକ ନୀଳଚକ୍ର ସଦସ୍ୟ ଗୋଟିଏ ବସ୍‌ରେ ଯାଇଥାନ୍ତି ମଂଜୁଷା । ମୁଁ ମଧ୍ୟ ସେମାନଙ୍କ ସହିତ ଯାଇଥାଏ । ଡାକ୍ତର ରାଧାଚରଣ ପଣ୍ଡା ମଧ୍ୟ ଯାଇଥାନ୍ତି । ମଂଜୁଷା ଖାଣ୍ଟି ଓଡ଼ିଆ ଅଞ୍ଚଳ । ଏବେ ସେଠି ତେଲୁଗୁ ଭାଷା ଓ ସଂସ୍କୃତିର ପ୍ରଭାବ । ସେଠି ଆମେ ଭାଷଣ ଦେଲୁ । ଓଡ଼ିଆ ଜାତିର ଜାଗରଣ ପାଇଁ ମୁଁ ଆହ୍ୱାନ ଦେଲି । ଜଗନ୍ନାଥ ଧର୍ମ ଓ ସଂସ୍କୃତିର ମହାନତା ସଂପର୍କରେ କହିଲି । ସଭା ପରେ ଆମେ ମଂଜୁଷା ରାଜପ୍ରାସାଦ ବୁଲି ଦେଖିଲୁ ।

ପରଦିନ ଆମେ ଗଲୁ ଉଦ୍ୟାନ ଖଣ୍ଡ । ଏହି ଗ୍ରାମକୁ କୁଆଡ଼େ ପ୍ରତାପରୁଦ୍ରଦେବ ବସାଇଥିଲେ । ବିସ୍ତୀର୍ଣ୍ଣ ଅଞ୍ଚଳ । ଚାରିଆଡ଼େ ଆମ୍ବବଗିଚା । ସେତେବେଳେ ଆମ୍ବ ଫଳିଥାଏ । ଜଗୁଆଳି ଥାଆନ୍ତି ସେଠିକାର ଓଡ଼ିଆ ଲୋକ । ମାଲିକ ଆନ୍ଧ୍ରର ଲୋକ । ଓଡ଼ିଆମାନଙ୍କର ଜମି ଆନ୍ଧ୍ର ସରକାର ନେଇଯାଇଛି । ଓଡ଼ିଆଙ୍କ ଜମିକୁ ତେଲଙ୍ଗାମାନଙ୍କ ନାମରେ କରି ଦିଆଯାଇଛି । ସେମାନେ କାନ୍ଦି କାନ୍ଦି କହୁଥାନ୍ତି ସେମାନଙ୍କ ଦୁଃଖ । ତତ୍‌ପରେ ଆମେ ସେହି ଅଞ୍ଚଳ ବୁଲୁଥିଲାବେଳେ ଗୋଟିଏ ଡାକଘର ପାଖରେ ଯେଉଁ ଚିଠି ବାକ୍ସଟି ଥାଏ ତା' ଉପରେ ଆମ ଭିତରୁ କେହି ଜଣେ ଚକଖଡ଼ିରେ ଓଡ଼ିଆରେ 'ଡାକଘର' ଲେଖିଦେଲା । ଏତିକିରେ ପୋଷ୍ଟମାଷ୍ଟର ଓ ତାଙ୍କ ସହଯୋଗୀ କର୍ମଚାରୀ ସେହି ପିଲାକୁ ଧରି ନେଇଗଲେ ପୋଲିସରେ ଦେବାକୁ । ବହୁ କଷ୍ଟରେ ନେହୁରା ହୋଇ ଭୁଲ ମାଗି ଆମେ ସେ ପିଲାକୁ ଆଣିଲୁ । ସେଠି ଦେଖିଲୁ ଗୋଟିଏ ଓଡ଼ିଆ ସ୍କୁଲ । ଝାଟିମାଟିର କାନ୍ଥ । ବରଡ଼ା ପତ୍ରରେ ଛାଉଣୀ । ଦରଜା ଖୋଲା । ଝରକା ମଧ୍ୟ ଖୋଲା । ୧୪୦ ଜଣ ପିଲା ସେଠି ପଢ଼ନ୍ତି । ଓଡ଼ିଆ ଶିକ୍ଷକ ନାହାନ୍ତି । ତେଲୁଗୁ ଶିକ୍ଷକ ପଢ଼ାନ୍ତି । ମାତ୍ର ଜଣେ ଶିକ୍ଷକ । ସେହି ସ୍କୁଲକୁ ଲାଗି ଗୋଟିଏ ତେଲୁଗୁ ସ୍କୁଲ । ସେଠି ମାତ୍ର ଚାଳିଶ ଜଣ ପିଲା । ଶିକ୍ଷକ ତିନି/ଚାରି ଜଣ । କୋଠାଘର । ଏହା ଦେଖି ଭାରି ବାଧିଲା । କଟକ ଫେରିଆସି ସେକାଳର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନିକଟକୁ ଚିଠି ଲେଖିଲୁ । ସେ ଚିଠି ପାଇଲେ ମାତ୍ର ଉଦାସୀନ ରହିଲେ । କେବଳ ସେ ନୁହନ୍ତି; ଯେତେବେଳେ ଯିଏ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ସିଏ ମଧ୍ୟ ବିଚ୍ଛିନ୍ନାଞ୍ଚଳ ପ୍ରତି ଉଦାସୀନ ରହିଲେ । ନେତାମାନେ, ମନ୍ତ୍ରୀମାନେ ସବୁବେଳେ ନିଜ ପାଇଁ; ପର ପାଇଁ କେବଳ ଗୋଟାଏ ବାହାନା, ଛଳନା । ଓଡ଼ିଶାରୁ କେତେ କେତେ ଅଞ୍ଚଳ ବିଚ୍ଛିନ୍ନ ହୋଇ ପ୍ରତିବେଶୀ ପ୍ରଦେଶ ସହିତ ମିଶି ରହିଗଲା । ଓଡ଼ିଶା ସରକାର କୌଣସି ଗୋଟିଏ ଅଞ୍ଚଳକୁ ଆଣିପାରିଲେ ନାହିଁ । ବ୍ରଂ ଯଦି ଆନ୍ଦୋଳନ ହେଲା ପୋଲିସ ଗୁଳିରେ ଦବାଇ ଦିଆଗଲା । ୧୯୫୬ ମସିହାରେ ସୀମା ଆନ୍ଦୋଳନ ବେଳେ ସେଇଆ ହେଲା । କଟକରେ ସୁନୀଲ ଦେ ଓ ପୁରୀରେ ବେଙ୍ଗପାଣିଆ ପୋଲିସ ଗୁଳିରେ ମଲେ । ଆମ ନେତାଏ କେନ୍ଦ୍ର ସରକାର ପାଖରେ ସୁନାପୁଅ ହେଲେ । ସେହି ୧୯୫୬ ମସିହାରେ ମୁଁ ମୋ ସାଙ୍ଗମାନଙ୍କ ସହିତ କେନ୍ଦ୍ରାପଡ଼ାରେ ହରତାଳ କରୁଥିଲୁ । ସେଇ ଓଡ଼ିଶାପ୍ରୀତି ମୋ ଭିତରେ ସେହି ଦିନରୁ ଉଜ୍ଜୀବିତ ହୋଇ ରହିଗଲା । ନୀଳଚକ୍ର ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଗଲା ପରେ ମୋ ଭିତରେ ଓଡ଼ିଶାପ୍ରୀତିଟି ବଳିଷ୍ଠ ହୋଇ ଉଠିଲା । 'ନୀଳଚକ୍ର' ପରିବାର ସହିତ ମୋର ଆତ୍ମୀୟତା ବେଶ୍ ନିବିଡ଼ ଥିଲା । ଦୋଳମୁଣ୍ଡେଇସ୍ଥ ନୀଳଚକ୍ରର କେନ୍ଦ୍ର ଅଫିସ୍ ପାଖରେ ପ୍ରତି ବର୍ଷ ହେଉଥିଲା ବିଷୁବ ମିଳନ । ବଡ଼ ଶ୍ରଦ୍ଧାପୂର୍ଣ୍ଣ ଥିଲା ସେହି ଉତ୍ସବ ।

ବ୍ରହ୍ମାନନ୍ଦ ବାବୁ ନୀଳଚକ୍ରର ଆତ୍ମାସ୍ୱରୂପ । କିଛିଦିନ ପାଇଁ ବ୍ରହ୍ମାନନ୍ଦ ବାବୁ ନୀଳଚକ୍ରର ସଭାପତି ପଦରୁ ଅବ୍ୟାହତି ନେଲେ । ତାହାର କାରଣ ଥିଲା ହାଇକୋର୍ଟରେ ବିଚାରପତି ହେବାର ମୋହ । ନୀଳଚକ୍ର ପରି ଏକ ଜାତୀୟ ଅନୁଷ୍ଠାନର ସଭାପତି ହେବା ଦ୍ୱାରା ବିଚାରପତି ହେବାରେ ବାଧା ସୃଷ୍ଟି କରିବାରୁ ସେ ସେଥିରୁ ଇସ୍ତଫା ଦେଲେ; ମାତ୍ର ସେ ବିଚାରପତି ହୋଇପାରିଲେ ନାହିଁ । ଜଣେ ବିଶିଷ୍ଟ ଆଇନଜୀବୀ ସେ । ପରେ ସେ ହେଲେ ଲୋକସଭାର ସାଂସଦ । ତାଙ୍କର ହୋଇଗଲା ଅକାଳ ବିୟୋଗ । ନୀଳଚକ୍ର ଯେମିତି ତା'ର ଆତ୍ମାକୁ ହରାଇ ଶୂନ୍ୟଗର୍ଭ ହୋଇଗଲା । ଅବଶ୍ୟ ତାଙ୍କର ପତ୍ନୀ ନମିତା ପଣ୍ଡା ତାହାର ସଭାପତି ଦାୟିତ୍ୱ ଚଳାଉଛନ୍ତି । ତଥାପି ମୋର ମନେହେଉଛି ସେକାଳର ନୀଳଚକ୍ରର ପ୍ରାଣସ୍ପନ୍ଦନ, ଉଦାତ୍ତ କର୍ମପନ୍ଥା ଏବେ ଆଉ ନାହିଁ । ନୀଳଚକ୍ରର ପ୍ରତି ସ୍ରୋତରେ 'ନୀଳଶୈଳ' ପରି ଏକ ଅନୁଷ୍ଠାନ ଗଢ଼ିଉଠିଥିଲା ମାତ୍ର ନୀଳଚକ୍ର ହିଁ ଏକମାତ୍ର ଅନୁଷ୍ଠାନ, ଯାହା ଓଡ଼ିଆ ଜାତିର ହୃଦୟକୁ ଜିଣି ନେଇଥିଲା । ପଦ୍ମଭୂଷଣ ରାଧାନାଥ ରଥ ହିଁ ଥିଲେ ସେକାଳରେ ନୀଳଚକ୍ର ଅନୁଷ୍ଠାନ ପ୍ରତି ଅତ୍ୟନ୍ତ ଶ୍ରଦ୍ଧାଶୀଳ ଓ ପ୍ରେରଣାଦାତା ।

ନୀଳଚକ୍ରର ଲକ୍ଷ୍ୟ ଥିଲା ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆତ୍ୱର ଜାଗରଣ ଓ ସେସବୁ ଅଞ୍ଚଳର ଓଡ଼ିଆମାନଙ୍କୁ ନିଜର ବୋଲି ମନେ କରିବା । ସେସବୁ ଅଞ୍ଚଳରେ ଓଡ଼ିଆ ଶିକ୍ଷାର ବ୍ୟବସ୍ଥା କରିବା । ଏଥିସହିତ ଏହାର ଅନ୍ୟତମ ଲକ୍ଷ୍ୟ ଥିଲା ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାର ଓ ପ୍ରସାର କରିବା । ବିଭିନ୍ନ ଶିଳ୍ପାଞ୍ଚଳରେ ଓଡ଼ିଆମାନଙ୍କୁ ନିଯୁକ୍ତି ଦେବା ଓ ଏଥିପାଇଁ ଭାରତ ସରକାର ଓ ଓଡ଼ିଶା ସରକାରଙ୍କ ପାଖରେ ଦାବି କରିବା । ଓଡ଼ିଆ ଭାଷାକୁ ସରକାରୀ ଭାଷାରୂପେ ମାନ୍ୟତା ଦେବା ଓ ଓଡ଼ିଆ ଭାଷା ପ୍ରତି ମମତା ସୃଷ୍ଟି କରିବା ମଧ୍ୟ ଥିଲା ଏହାର ଆଦର୍ଶ । ତେଣୁ ଏ ଅନୁଷ୍ଠାନ କୁଳବୃଦ୍ଧ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ଓ ବୀର ସୁରେନ୍ଦ୍ର ସାଏଙ୍କୁ ପ୍ରେରଣାର ଉତ୍ସ ଭାବରେ ଗ୍ରହଣ କରିନେଇଥିଲା । କୁଳବୃଦ୍ଧଙ୍କ ଉଦାତ୍ତ ଉଚ୍ଚାରଣ–

ଜାତି ପ୍ରେମ ବହ୍ନି–    ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି
ସ୍ୱାର୍ଥ ମେଧ ଯଜ୍ଞେ    ଚାରିଆଡ଼େ ନାଚ
ମିଳାଇ ଛାତିକି ଛାତି

x x x

ଜାତି ନନ୍ଦିଘୋଷ    ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ
ଟାଣେ କିରେ ଘୋଡ଼ା    ଦାନାର ତୋବଡ଼ା
ଘୋଡ଼ା ମୁହଁ ବନ୍ଧା ଥିଲେ ।

କୁଳବୃଦ୍ଧ ଏବେ ଯେମିତି ଅଶରୀରୀ ଭାବରେ ପ୍ରେରଣା ଦେଉଛନ୍ତି– ଓଡ଼ିଶାକୁ ଭଲପାଅ, ସବୁ ଭେଦଭାବ ଭୁଲି ଏକ ହୁଅ, ସ୍ୱଦେଶପ୍ରେମ ବୃଦ୍ଧି କର, ଓଡ଼ିଆ ଜାତିର ସ୍ୱାଭିମାନକୁ ଉଜ୍ଜୀବିତ କର । ଅଥଚ ଏ ଜାତି ଶୁଣୁ ନାହିଁ । ବ୍ୟକ୍ତି–ସ୍ୱାର୍ଥ ପାଇଁ ବିକଳ ହେଉଛନ୍ତି ସଭିଏଁ । ରାଜନୀତି ନାଁରେ ଭାଗ ଭାଗ ହୋଇଯାଉଛନ୍ତି । ଗଣତନ୍ତ୍ର ହୋଇଯାଉଛି ଜଣତନ୍ତ୍ର । ଭୋଟ ବ୍ୟବସ୍ଥା ହୋଇଯାଇଛି ରାଜନୀତିର ବେଦ । କିଏ ଏପରି ଅବସ୍ଥାରୁ ଓଡ଼ିଆ ଜାତିକୁ ରକ୍ଷା କରିବ ? କେନ୍ଦ୍ରରେ ଓଡ଼ିଆ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇବାରୁ ବଞ୍ଚିତ । ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବାରୁ ମଧ ଉପେକ୍ଷିତ । ଯଦି 'ନୀଳଚକ୍ର' ଥାଆନ୍ତା ତେବେ ନିଶ୍ଚୟ ଆନ୍ଦୋଳନ କରିଥାନ୍ତା । ମୋ ଭିତରେ ସେଦିନର ନୀଳଚକ୍ର ଏବେ ମଧ ଉଜ୍ଜୀବିତ । ମୁଁ ଭୁଲିପାରେ ନାହିଁ ନୀଳଚକ୍ରକୁ ।

## ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ମୋର ସଂପର୍କ

ପ୍ରଜାତନ୍ତ୍ର ଓ ଝଙ୍କାର ପତ୍ରିକା ସହିତ ମୋର ପ୍ରତ୍ୟକ୍ଷ ସଂପର୍କ ବହୁ ଦିନରୁ । ୧୯୬୦ ମସିହାରେ ମୁଁ ଯେତେବେଳେ କଟକରେ ରହିଲି ପ୍ରତି ବର୍ଷ ବିଷୁବ ମିଳନକୁ ଦେଖିବାକୁ ଯାଏ । ସେ ସମୟରେ ମୁଁ ସଂପୂର୍ଣ୍ଣ ଅପରିଚିତ । ସେଠି ଦେଖେ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ଓ ବାହାରୁ ଆସିଥିବା ବିଶିଷ୍ଟ ଜ୍ଞାନୀ ଗୁଣୀ ଓ ବିଦ୍ୱାନ୍ ବ୍ୟକ୍ତିଙ୍କୁ । ଓଡ଼ିଆ ସାହିତ୍ୟର ବରିଷ୍ଠ ସାହିତ୍ୟିକ ଓ ବିଦ୍ୱାନ୍ ଯଥା ଡକ୍ଟର ମାୟାଧର ମାନସିଂହ, ସଚ୍ଚିଦାନନ୍ଦ ରାଉତରାୟ, କାଳିନ୍ଦୀଚରଣ ପାଣିଗ୍ରାହୀ, ଅନନ୍ତ ପଣ୍ଡା, ଗୋପୀନାଥ ମହାନ୍ତି, ବାମାଚରଣ ମିତ୍ର, ଅଖିଳ ମୋହନ ପଟ୍ଟନାୟକ, କାହ୍ନୁଚରଣ ମହାନ୍ତି, ଡକ୍ଟର ସଦାଶିବ ମିଶ୍ର, କୁଞ୍ଜବିହାରୀ ଦାଶ, ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ମହାପାତ୍ର ନୀଳମଣି ସାହୁ, ବଂଶୀଧର ମହାନ୍ତି, ଖଗେଶ୍ୱର ମହାପାତ୍ର, ଡକ୍ଟର କାହ୍ନୁଚରଣ ମିଶ୍ର, ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ମନ୍ମଥନାଥ ଦାସ, ମନୋଜ ଦାସ, ଗୋବିନ୍ଦ ଉଦ୍‌ଗାତା, ପଠାଣି ପଟ୍ଟନାୟକ, ଡକ୍ଟର ରେଖା ମହାନ୍ତି, ଶ୍ରୀନିବାସ ଉଦ୍‌ଗାତା, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଓ ଆହୁରି ଅନେକ ପ୍ରଥିତଯଶା ଲେଖକ ପ୍ରାୟ ପ୍ରତି ବର୍ଷ ଆସନ୍ତି । ଡକ୍ଟର ମହତାବ ଯୁବକମାନଙ୍କୁ ଉତ୍ସାହ ଓ ପ୍ରେରଣା ଦିଅନ୍ତି । ବହୁ ସଂଖ୍ୟାରେ ଯୁବଲେଖକ ଯୋଗ ଦିଅନ୍ତି । ୧୯୬୬ ମସିହାରେ ମୁଁ ଅଧ୍ୟାପକ ହେଲା ଦିନରୁ ବିଷୁବ ମିଳନରେ ଯୋଗ ଦେଇଆସିଲି । ଅନୁଭବ କଲି ପ୍ରଜାତନ୍ତ୍ର ଓ ଝଙ୍କାର ସତେ ଯେପରି ହୋଇଯାଇଛି ଏକ ସାହିତ୍ୟିକ ପରିବାର । ଯୁବକମାନଙ୍କ ସହିତ ଡକ୍ଟର ମହତାବ ଆଳାପ ଆଲୋଚନା କରନ୍ତି ସନ୍ଧ୍ୟାବେଳେ ତାଙ୍କ ପ୍ରାସାଦର ଉପରେ

ବସି । ଆଜି ଅନେକ ଦିନ ପରେ ମନେପଡୁଛି ଡକ୍ଟର ମହତାବଙ୍କର ପ୍ରାଣଖୋଲା ହସ ଓ ଯୁବକମାନଙ୍କୁ ଲେଖିବା ପାଇଁ ପ୍ରଦାନ କରୁଥିବା ଉତ୍ସାହ ।

ପ୍ରଜାତନ୍ତ୍ର ଯଦିଓ ୧୯୨୩ ମସିହାରେ ସାପ୍ତାହିକ ପତ୍ରିକା ଭାବରେ ପ୍ରଥମେ କଟକରୁ ପ୍ରକାଶ ପାଇଥିଲା ମାତ୍ର ୧୯୨୪ ମସିହାରୁ ତାହା ବାଲେଶ୍ୱର ଟାଉନ୍ ପ୍ରେସ୍‌ରୁ ପ୍ରକାଶିତ ହେଲା । ଡକ୍ଟର ମହତାବ ସ୍ୱାଧୀନତା ସଂଗ୍ରାମୀ । ଜଣେ ବିପ୍ଳବୀ ଜନନେତା । ମହାତ୍ମାଗାନ୍ଧୀଙ୍କ ଡାକରାରେ ସେ ସମସ୍ତ ସୁଖସଂଭୋଗକୁ ପରିତ୍ୟାଗ କରି ଆନ୍ଦୋଳନରେ ସକ୍ରିୟ ଭୂମିକା ନେଲେ । କାରାବରଣ କଲେ ବାରମ୍ବାର । ବ୍ରିଟିଶ ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଲା ପ୍ରଜାତନ୍ତ୍ର । ବନ୍ଦ ହୋଇଗଲା ମାତ୍ର ପୁନର୍ବାର ଲବଣ ସତ୍ୟାଗ୍ରହ ସମୟରେ ବାଲେଶ୍ୱରରୁ କିଛି କାଳ ପ୍ରକାଶ ପାଇ ବନ୍ଦ ହେଲା । ଇତିମଧ୍ୟରେ ଡ. ମହତାବ ପ୍ରକାଶ କଲେ କେତେ ଉପନ୍ୟାସ, କବିତା ଓ ନାଟକ । କାରାଗାରରେ ଥିଲାବେଳେ ସେ ରଚନା କଲେ ଓଡ଼ିଶାର ଇତିହାସ ଓ ଅନ୍ୟାନ୍ୟ କେତୋଟି ଉପନ୍ୟାସ । ତାଙ୍କର କାରାମୁକ୍ତି ପରେପରେ ଦେଶ ସ୍ୱାଧୀନ ହେଲା ଓ ସେ ହେଲେ ଓଡ଼ିଶାର ପ୍ରଧାନମନ୍ତ୍ରୀ । ଓଡ଼ିଶାର ନବ ନିର୍ମାଣ କଲେ । ତାଙ୍କ ନେତୃତ୍ୱରେ ଛବିଶିଟି ଗଡ଼ଜାତ ୧୯୪୮ ମସିହାରେ ଓ ମୟୂରଭଞ୍ଜ ୧୯୪୯ ମସିହାରେ ଓଡ଼ିଶା ସହିତ ମିଶିଲା । ଗଠିତ ହେଲା ବୃହତ୍ତର ଓଡ଼ିଶା । ତାଙ୍କରି ନିଷ୍ଠା ଓ ଉଦ୍ୟମକ୍ରମେ ଭୁବନେଶ୍ୱର ହେଲା ନୂତନ ରାଜଧାନୀ । ଓଡ଼ିଶାର ବିକାଶ ପାଇଁ ସେ ନାନା କାର୍ଯ୍ୟ କଲେ । 'ପ୍ରଜାତନ୍ତ୍ର'ର ନୂତନ ପ୍ରସ୍ତ ପୁଣି ପ୍ରକାଶିତ ହେଲା କଟକରୁ ଦୈନିକ ସମ୍ବାଦପତ୍ର ଭାବରେ । ସେତେବେଳେ 'ସମାଜ'କୁ ଛାଡ଼ିଦେଲେ ଆଉ ସେପରି ଖବରକାଗଜ ନ ଥିଲା । 'ପ୍ରଜାତନ୍ତ୍ର' ହେଲା ସମାଜର ପରିପୂରକ । ସଂଘର୍ଷରୁ ପ୍ରଜାତନ୍ତ୍ରର ଜନ୍ମ । ସଂଘର୍ଷ ଭିତର ଦେଇ ତା'ର ଗତି । ଜନତାର ସହାନୁଭୂତି ଓ ଯୁବକମାନଙ୍କର ଉତ୍ସାହ ଯୋଗୁଁ ସକଳ ସଂଘର୍ଷକୁ ଅତିକ୍ରମ କରି ଏହା ଗତି କରି ଆସିଛି ଏଯାବତ୍ । ମହତାବ ଜଣେ ଐତିହାସିକ ଓ ସାହିତ୍ୟିକ । ସେ ଚିନ୍ତା କଲେ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ନ ହେଲେ ଓଡ଼ିଶାର ଯଥାର୍ଥ ବିକାଶ ହେବ ନାହିଁ । ସାହିତ୍ୟ ହିଁ ଗୋଟିଏ ଜାତିର ପରିଚିତି । ଜାତିକୁ ଏହା ନେଇଯାଏ ଯୁଗରୁ ଯୁଗକୁ ଡେଇଁ ଅନେକ ଯୁଗକୁ । ତେଣୁ ସେ ପ୍ରକାଶ କଲେ ୧୯୪୯ ମସିହା ବିଷୁବ ସଂକ୍ରାନ୍ତି ଦିନ ଏକ କ୍ରାନ୍ତିକାରୀ ସାହିତ୍ୟ ପତ୍ରିକା 'ଝଙ୍କାର' । ପ୍ରତିଷ୍ଠା କଲେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' (୧୯୪୭ ଜୁଲାଇ) । ପ୍ରଜାତନ୍ତ୍ର ପ୍ରଚାର ସମିତି ହେଲା ଯଥାର୍ଥରେ ଏକ ସାଂସ୍କୃତିକ ଓ ଜାତୀୟ ଅନୁଷ୍ଠାନ । ଯୁବକମାନଙ୍କୁ ଲେଖାଲେଖି କରିବାକୁ ଏହା ପ୍ରେରଣା ଦେଲା । ଯୁବ ପ୍ରତିଭାର ଆବିଷ୍କାର ଉପରେ ଗୁରୁତ୍ୱ ଦେଲା । ପ୍ରଜାତନ୍ତ୍ର ପୃଷ୍ଠାରେ ନାରୀମହଲ, ଯୁବଜଗତ, ମୀନାବଜାର, ରୂପ-ରସଛନ୍ଦ, କ୍ରୀଡ଼ାଜଗତ ଆଦି ନୂତନ ନୂତନ ବିଭାଗର

ହେଲା ଉନ୍ମେଷ । ସାହିତ୍ୟ, ସଂସ୍କୃତି, ଧର୍ମ, ଦର୍ଶନ, କଳା, ସଙ୍ଗୀତ, ନାଟକ, ବିଜ୍ଞାନ, ରାଜନୀତି, ରାଜ୍ୟ ଓ ରାଷ୍ଟ୍ର ସମସ୍ୟା, ଆନ୍ତର୍ଜାତିକ ସମସ୍ୟା, ସାମାଜିକ ସମସ୍ୟା, କୃଷି ଓ କୃଷକର ସମସ୍ୟା, ନକସାଲ ସମସ୍ୟା, ଭୋଟ–ରାଜନୀତିକୁ କେନ୍ଦ୍ର କରି ଉପୁଜୁଥିବା ନାନା ସମସ୍ୟା ଆଦି ନାନା କଥା ପ୍ରଜାତନ୍ତ୍ରର ପୃଷ୍ଠାମଣ୍ଡନ କଲା ।

ମୁଁ ଲକ୍ଷ୍ୟ କରିଛି ମହତାବ ପ୍ରବୀଣ ଓ ବୟସ୍କ ହୋଇଥିଲେ ମଧ୍ୟ ଯୁବକମାନଙ୍କ ସହିତ ଆତ୍ମୀୟତା ପ୍ରକାଶ କରି ପାଲଟିଯାଉଥିଲେ ଯୁବକଟିଏ । ସବୁଠାରୁ ବଡ଼ କଥାଟିଏ ମୁଁ ଲକ୍ଷ୍ୟ କରିଛି ଯେ ସେ କାହାରି ଉପରେ ତାଙ୍କର ମତକୁ ଲଦି ଦେଉ ନ ଥିଲେ । ଯୁବକ ବା ପ୍ରବୀଣଙ୍କ ସହିତ ସେ ଆଲୋଚନା କରୁଥିଲେ କୌଣସି ସମସ୍ୟା ସଂପର୍କରେ । ଯୁକ୍ତି ପ୍ରତିଯୁକ୍ତି ମଧ୍ୟ ଦେଇ ଗୋଟିଏ ନିଷ୍କର୍ଷ ପ୍ରକାଶ ପାଉଥିଲା । ମହତାବ କୌଣସି ରୂଢ଼ିବାଦ ବା ଢଗଢମାଳିରେ ବିଶ୍ୱାସ କରୁ ନ ଥିଲେ ଠିକ୍ ସକ୍ରେଟିସ୍ ବା ଡିରେଜିଓଙ୍କ ପରି । ତେଣୁ ସେ ଆୟୋଜନ କଲେ ବୌଦ୍ଧିକ ଚେତନାର ଜାଗରଣ ପାଇଁ ପ୍ରତି ମାସରେ ପାଠଚକ୍ର । ଏବେ ମଧ୍ୟ ତାହା ଚାଲିଛି । ଏଇ ଲେଖକ କେତେଥର ସେହି ଆଲୋଚନା ଚକ୍ରରେ ଭାଗ ନେଇ ନିଜର ବକ୍ତବ୍ୟ ପ୍ରଦାନ କରିଛି । ଡକ୍ଟର ମହତାବଙ୍କ ଦେହାନ୍ତ ପରେ ଶ୍ରୀଯୁକ୍ତ ଭର୍ତ୍ତୃହରି ମହତାବ ଅନୁଷ୍ଠାନର ଦାୟିତ୍ୱ ବହନ କରିଆସୁ ଅଛନ୍ତି । ତାଙ୍କ ଭିତରେ ମୁଁ ଅନୁଭବ କରିଛି ପ୍ରଜାତନ୍ତ୍ରକୁ ଗୋଟିଏ ପରିବାର ଭାବିବାର ବ୍ୟକ୍ତିତ୍ୱକୁ । ମୋ ବଡ଼ଝିଅ ବାହାଘରକୁ ଯାଇ ଯେତେବେଳେ ଝିଅ ହାତରେ ଉପଢୌକନ ଦେଲେ ମୁଁ ବ୍ୟସ୍ତ ହୋଇପଡ଼ିବାରୁ ସେ କହିଲେ ପ୍ରଜାତନ୍ତ୍ର ପରିବାରର ସଦସ୍ୟ ହେତୁ ମୋର ମଧ୍ୟ ଏହା କର୍ତ୍ତବ୍ୟ । ସେଦିନର ସ୍ମୃତିକୁ ମୁଁ ଭୁଲିପାରି ନାହିଁ । ରାଜନୀତି ଭିତରେ ଥିଲେ ମଧ୍ୟ ତାଙ୍କର ଉଦାର ମାନବିକତା, ସଂସ୍କୃତି ଓ ସାହିତ୍ୟପ୍ରାଣତାକୁ ସେ ଭୁଲି ନାହାନ୍ତି । ପ୍ରଜାତନ୍ତ୍ର ପରିବାର ସହିତ ସଂପୃକ୍ତ ରାମପ୍ରସାଦ ମହାନ୍ତି, ମହେଶ୍ୱର ମୂଳିଆ, ନଗେନ ବେଉରିଆ, ନୃସିଂହଚରଣ ସାହୁ, ବିଶ୍ୱମ୍ଭର ପରିଡ଼ା, କୃଷ୍ଣଚନ୍ଦ୍ର ନାୟକଙ୍କ ସ୍ନେହ ଶ୍ରଦ୍ଧାକୁ ମୁଁ ଏବେ ମଧ୍ୟ ମନେରଖିଛି । 'ଝଙ୍କାର'ର ସଂପାଦକ ଥିଲେ ଡକ୍ଟର ମହତାବ ଓ ତାଙ୍କ ପରେ ସଂପାଦକ ଅଛନ୍ତି ଶ୍ରୀଯୁକ୍ତ ଭର୍ତ୍ତୃହରି ମହତାବ । ମାତ୍ର ସହଯୋଗୀ ସଂପାଦକ ଭାବରେ ଶ୍ରୀଯୁକ୍ତ ସରୋଜ ରଂଜନ ମହାନ୍ତିଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ । ପ୍ରଜାତନ୍ତ୍ରରେ ମୋର ଅନେକ ପ୍ରବନ୍ଧ ଓ ରମ୍ୟରଚନା ବାହାରିଛି । 'ଝଙ୍କାର'ରେ ମଧ୍ୟ ପ୍ରକାଶ ପାଇଛି ବହୁ ପ୍ରବନ୍ଧ ଓ ସମାଲୋଚନା । ମୋତେ ବିଷୁବ ମିଳନ ଅବକାଶରେ ଶ୍ରେଷ୍ଠ ସମାଲୋଚକ ଭାବରେ ଝଙ୍କାର ପୁରସ୍କାର ପ୍ରଦାନ କରାଯାଇଛି । ସେତେବେଳେ ମୁଁ ଲକ୍ଷ୍ୟ କରିଥିଲି ଝଙ୍କାରରେ ଲେଖାଟିଏ ନ ବାହାରିଲା ପର୍ଯ୍ୟନ୍ତ ଜଣେ ନିଜକୁ ଲେଖକ

ପରି ମନେ କରୁ ନ ଥିଲା । ଝଙ୍କାର ପ୍ରକୃତରେ ଓଡ଼ିଆ ସାହିତ୍ୟର ଗୌରବ । ପ୍ରଜାତନ୍ତ୍ର ଓ ଝଙ୍କାର ପ୍ରକୃତରେ ଓଡ଼ିଶାର ଲେଖକ/ଲେଖିକାମାନଙ୍କର ମିଳନ ଭୂମି ।

ବିଷୁବ ମିଳନ ଅବକାଶରେ ସଭା ହୁଏ, ସେମିନାର ମଧ୍ୟ ହୁଏ । କେତେଥର ମୁଁ ସେହି ସେମିନାରରେ ଯୋଗ ଦେଇ ପ୍ରବନ୍ଧ ପାଠ କରିଛି । କୌଣସି କୌଣସି ଅଧିବେଶନରେ ସଭାପତିତ୍ୱ କରିଛି । ଥରେ ମୁଁ ଓଡ଼ିଆ ଉପନ୍ୟାସରେ କୃଷି ଓ କୃଷକ ସଂପର୍କରେ ପ୍ରବନ୍ଧ ପଢ଼ି ବାହାରକୁ ଆସିଲାବେଳେ ଦେଖିଲି ଦ୍ୱାର ପାଖରେ ଗୋଟିଏ ଚେୟାର ପକାଇ ଡକ୍ଟର ମହତାବ ବସିଛନ୍ତି । ସେ ମୋତେ ଦେଖି ପାଖକୁ ଡାକି ଆଉଁଶି ଦେଲେ । ସମ୍ମିଳନୀ ଭଲ ଲାଗୁଛି କି ନାହିଁ ପଚାରିଲେ । ସେଦିନ ତାଙ୍କର ପିତୃସୁଲଭ ବ୍ୟବହାରରେ ମୁଁ ମୁଗ୍ଧ ହୋଇଗଲି । ଡକ୍ଟର ମହତାବଙ୍କ ଉପରେ ମୁଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଅନୁରୋଧକକ୍ରମେ ମନୋଗ୍ରାଫ ଲେଖିଛି । ସେଥିରେ ମୁଁ ଉଲ୍ଲେଖ କରିଛି ଡକ୍ଟର ମହତାବ ସାରା ଭାରତବର୍ଷରେ ଜଣେ ଅନନ୍ୟ ସ୍ୱାଧୀନ ଚିନ୍ତାନାୟକ । ସେ ଥିଲେ ପ୍ରକୃତରେ ଆର୍ଥସାମାଜିକ-ରାଜନୀତିକ ଦାର୍ଶନିକ । ଯଥାର୍ଥରେ ସେ ଜଣେ ରାଷ୍ଟ୍ରପୁରୁଷ ।

ଆଜି ଡକ୍ଟର ମହତାବ ନାହାନ୍ତି । ତାଙ୍କ ହୃଦୟର ଅନୁଷ୍ଠାନ ପ୍ରଜାତନ୍ତ୍ର ଅଛି; ଅଛି ମଧ୍ୟ 'ଝଙ୍କାର', 'ପ୍ରତିଭା', 'ମୀନାବଜାର' ଇତ୍ୟାଦି । ମାତ୍ର ମଳିନ ପଡ଼ିଯାଇଛି ସବୁ କିଛି । ବିଷୁବ ମିଳନ ହେଉଛି; ମାତ୍ର ସେକାଳର ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟ ନାହିଁ । ପ୍ରଜାତନ୍ତ୍ର ଓ ଝଙ୍କାର ମୋତେ ପ୍ରେରଣା ଦେଇଛି ଭାଷାକୁ ଭଲ ପାଅ, ନିଜ ସାହିତ୍ୟକୁ ଭଲ ପାଅ । କୌଣସି ପ୍ରାପ୍ତିର ଆଶା ନ ରଖି କିଛି ଲେଖ । ସେହି ଲେଖା ହେଉ ମଣିଷଙ୍କ ପାଇଁ, ସମାଜ ପାଇଁ, ରାଷ୍ଟ୍ର ପାଇଁ । ତାହା ଅଯଥା ଛଦ୍ମ ବୌଦ୍ଧିକତାରେ ପରିଣତ ନ ହେଉ, ଛଳନାସର୍ବସ୍ୱ ନ ହେଉ । 'ଝଙ୍କାର'ର ସଂପାଦକୀୟରେ ଡକ୍ଟର ମହତାବ ବହୁଥର ଏ ସଂପର୍କରେ ଚେତେଇ ଦେଇଛନ୍ତି । ସହ-ସଂପାଦକ ବିଶିଷ୍ଟ କବି ସରୋଜବାବୁ ମଧ୍ୟ ଅନେକଥର ସେହି ସଂପାଦକୀୟ ପୃଷ୍ଠାରେ ଓଡ଼ିଆ ଭାଷାର ଭ୍ରମପୂର୍ଣ୍ଣ ପ୍ରୟୋଗ ସଂପର୍କରେ ଚେତେଇ ଦେଇଛନ୍ତି । ମାତ୍ର କେହି ଶୁଣୁ ନାହାନ୍ତି । ସାହିତ୍ୟ ନାମରେ ସାହିତ୍ୟ ଲେଖା ହେଉଛି । ପାଶ୍ଚାତ୍ୟ ଜଗତର ନାନା ତତ୍ତ୍ୱ 'ବାଦ' ଇତ୍ୟାଦିକୁ ଆଣି ଆମ ସାହିତ୍ୟରେ ପ୍ରୟୋଗ କରାଯାଉଛି । ସାହିତ୍ୟ ସାଧାରଣ ଜନସମାଜରୁ ଦୂରେଇ ଯାଉଛି ।

ବିଷୁବ ମିଳନ ହିଁ ପ୍ରେରଣା ଦେଇଛି ଓଡ଼ିଶାର ବିଭିନ୍ନ ସ୍ଥାନରେ ନାନାବିଧ ସାହିତ୍ୟ ସମ୍ମିଳନୀ ପାଇଁ । ତଥାପି ମୋର ମନେହୁଏ ଏକମାତ୍ର ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବ ମିଳନ ହୋଇରହିଛି ଓଡ଼ିଆ ଭାଷା ଓ ସାହିତ୍ୟର ଏକ ଦୀପ୍ତିମନ୍ତ ସାଂସ୍କୃତିକ ଅନୁଷ୍ଠାନ ।

## ଓଡ଼ିଆ ଯୁବ ଲେଖକ ସମ୍ମେଳନ

ଓଡ଼ିଆ ଯୁବଲେଖକ ସମ୍ମିଳନୀ ଆରମ୍ଭ ହୁଏ ୧୯୬୪/୬୫ ମସିହାରୁ । ପୁରୀରେ ହୁଏ ଏହାର ପ୍ରଥମ ଅଧିବେଶନ । ସେତେବେଳେ ଯେଉଁମାନେ ଏପରି ଏକ ଅନୁଷ୍ଠାନ ଆରମ୍ଭ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ କୈଳାସ ଲେଙ୍କା, ଗୁରୁ ମହାନ୍ତି, ଅନ୍ନଦା ପ୍ରସାଦ ରାୟ, ସତ୍ୟ ମହାପାତ୍ର ପ୍ରମୁଖ । ପରବର୍ତ୍ତୀ ଅଧିବେଶନ ହେଲା ରାଜଧାନୀ ରବୀନ୍ଦ୍ର ମଣ୍ଡପରେ । ବହୁ ପ୍ରବୀଣ ଓ ନବୀନ ଲେଖକ/ଲେଖିକାଙ୍କର ସମାବେଶ ହେଲା । ସେହି ସମ୍ମିଳନୀକୁ ମୁଁ ଯାଇଥାଏ । ସେତେବେଳେ ମୁଁ ଏମ୍.ଏ. ପଢୁଥାଏ । ବଡ଼ ଆଗ୍ରହରେ ଯାଇଥିଲି । କବିତା ସଂପର୍କରେ ଆଲୋଚନା ଚାଲିଥାଏ । କୈଳାସ ଲେଙ୍କା, ହରି ମିଶ୍ର ଓ ଆହୁରି କେତେଜଣ ଆଲୋଚନା ପ୍ରସଙ୍ଗରେ ଇଲିୟଟ, କାମ୍ୟୁ, କାଫ୍‌କା ପ୍ରମୁଖ ବିଦେଶୀ ଲେଖକଙ୍କ ପ୍ରସଙ୍ଗରେ କହି ଓଡ଼ିଆ କବିତା ସେସବୁ ଚିନ୍ତନକୁ ନେଇପାରୁ ନାହିଁ ବୋଲି କହିବାରେ ମହାପାତ୍ର ନୀଳମଣି ସାହୁ ସଭାମଞ୍ଚକୁ ଉଠିଯାଇ କଡ଼ା ଭାଷାରେ କହିଲେ ଯେ ଆମ ଭାରତବର୍ଷରେ ବା ଓଡ଼ିଶାରେ କ'ଣ ଅତୀତରେ କେହି ନ ଥିଲେ ବା ଆଧୁନିକ ଯୁଗରେ କେହି ନାହାନ୍ତି, ଯେଉଁମାନଙ୍କ ଚିନ୍ତା ଓ ଚେତନାକୁ ନେଇ ଆମେ କିଛି ନୂତନ ଦିଗ୍‌ଦର୍ଶନ ଦେଇପାରିବା । ଏ କଥାଟା ମୋତେ ବହୁତ ଭଲ ଲାଗିଲା । ମୁଁ ଯେତେବେଳେ ଏମ୍.ଏ. ପାସ୍ କରି ଅଧ୍ୟାପକ ହେଲି ସେତେବେଳେ ମୁଁ ସମାଲୋଚନା ଲେଖିଲି; କବିତା ମଧ୍ୟ ଲେଖୁଥାଏ । ବିଭିନ୍ନ ପତ୍ରପତ୍ରିକାରେ ମୋର ଲେଖା ବାହାରୁଥାଏ । ପ୍ରାୟ ପ୍ରତିବର୍ଷ ମୁଁ ଯୁବ ଲେଖକ ସମ୍ମିଳନୀରେ ଯୋଗ ଦିଏ, ଆଲୋଚନାରେ ଭାଗ ନିଏ । ଯୁବଲେଖକ ସମ୍ମିଳନୀ ତରଫରୁ ସ୍ମରଣିକାଟିଏ ବାହାରେ । ମୁଁ ମଧ୍ୟ ଲେଖା ଦିଏ ।

ମୁଁ ଅନୁଭବ କଲି ଯେ ଯୁବଲେଖକମାନଙ୍କ ଭିତରେ କ୍ରମେ ଭେଦ ସୃଷ୍ଟି ହେଲା– ଗୋଟିଏ ମାର୍କସୀୟ ପ୍ରଗତିବାଦୀ ଧାରାକୁ ନେଇ ଅନ୍ୟଟି ପାଶ୍ଚାତ୍ୟ ଆଦର୍ଶରେ ପ୍ରୟୋଗବାଦୀ ଧାରାକୁ ନେଇ । ୧୯୭୦ ମସିହା ପରେ ଏହି ଦୁଇଟି ଧାରା ଭିତରେ ସଂଘର୍ଷ ଦେଖାଗଲା । ପ୍ରଗତିବାଦୀ ଧାରାର ଲେଖକମାନେ ପ୍ରୟୋଗବାଦୀ ଧାରାର ଲେଖକଙ୍କୁ ବୁର୍ଜୁୟା ଲେଖକ କହୁଥାଆନ୍ତି । ପ୍ରଗତିବାଦୀ ଲେଖକମାନେ ସର୍ବହରାର ମୁକ୍ତି ପାଇଁ ଲେଖୁଥାନ୍ତି । ସେହି ସମୟରେ ବାଲୁଗାଁରୁ ଗୋଟିଏ ପତ୍ରିକା ବାହାରିଲା– 'ବେଳା' । ପ୍ରସନ୍ନ ପାଟଶାଣୀ ଥିଲେ ତା'ର ସଂପାଦକ । ସେହିଠାରୁ 'Long March' ଶୀର୍ଷକରେ ଇଂରାଜୀ ଭାଷାରେ ଗୋଟିଏ ସାମୟିକ ପତ୍ରିକା ବାହାରିଲା, ଯାହାର ସଂପାଦକ

ଥିଲେ ନବୀନ କୁଅଁର । ଏହି ଦୁଇ ପତ୍ରିକାରେ ମୋର ଲେଖା ପ୍ରକାଶ ପାଉଥାଏ । ସାଲେପୁରରୁ ସଦାଶିବ ଦାଶଙ୍କ ସଂପାଦନାରେ ଅନ୍ୟ ଏକ ପ୍ରଗତିବାଦୀ ପତ୍ରିକା 'ଆଭା' ପ୍ରକାଶ ପାଇଲା । ପ୍ରସନ୍ନ ପାଟଶାଣୀ କଟକରେ ଆଇନ ଅଧ୍ୟୟନ କରୁଥାନ୍ତି ଓ ଆଇନ କଲେଜ ହଷ୍ଟେଲରେ ରହୁଥାନ୍ତି । ତାଙ୍କରି ରୁମ୍‌ରୁ ବାହାରୁଥାଏ ପ୍ରଗତିବାଦୀ ଚେତନାର ନାନା ଲେଖା । ପ୍ରସନ୍ନବାବୁ କବିତା ଓ ଗଳ୍ପ ଲେଖୁଥାନ୍ତି । ଜଣେ ବିପ୍ଳବୀ କବି । ସେ ହେଲେ ଯୁବଲେଖକ ସମ୍ମିଳନୀର ସଂପାଦକ । ସେ ଏହି ଅନୁଷ୍ଠାନକୁ ପ୍ରଗତିବାଦୀ ଆଦର୍ଶ ଅଭିମୁଖେ ମୁହାଁଇନେଲେ । ଥରେ ଜୟପୁରରେ ହେଲା ଯୁବଲେଖକ ସମ୍ମିଳନୀର ଅଧିବେଶନ । ସେଠାକୁ ଗୋପୀନାଥ ମହାନ୍ତି, ରାମନାଥ ପଣ୍ଡା, ମନମୋହନ ମିଶ୍ର, ଅଖିଳ ମୋହନ ପଟ୍ଟନାୟକ, ବୀଣାପାଣି ମହାନ୍ତି ପ୍ରମୁଖ ବହୁ ଲେଖକ/ଲେଖିକା ଯାଇଥାନ୍ତି । ମୁଁ ମଧ୍ୟ ସେଠାକୁ ଯାଇଥାଏ । ନିମାଇଁ ପଟ୍ଟନାୟକ, ହରିହର ମିଶ୍ର, ରତ୍ନାକର ଚଇନି, ହୁସେନରବି ଗାନ୍ଧୀ, ସଦାଶିବ ଦାଶ ପ୍ରମୁଖ ମଧ୍ୟ ଯାଇଥାନ୍ତି । ସେହି ସଭାରେ ଗୋପୀନାଥ ମହାନ୍ତି, ମନମୋହନ ମିଶ୍ର, ଅଖିଳ ମୋହନ ପଟ୍ଟନାୟକ ପ୍ରମୁଖ ବୟୋଜ୍ୟେଷ୍ଠ ଲେଖକମାନେ ନିଜ ନିଜକୁ ଯୁବକ ବୋଲି ଘୋଷଣା କଲେ ଓ ଯୁବଲେଖକ ସଂଗଠନରେ ସେମାନଙ୍କୁ ସାମିଲ କରିବାକୁ କହିଲେ । ବୟସ୍କ ହୋଇଗଲେ ମଧ୍ୟ ଯାହାଙ୍କ ଭିତରେ ଯୁବସୁଲଭ ଉତ୍ସାହ ଓ ଉଦ୍ଦୀପନା ଥାଏ ସେ ବୟସ୍କ ହୋଇଯାଇଥିଲେ ମଧ୍ୟ ଯୁବକ ହୋଇ ରହେ । ଯିଏ ଯୁବକ ହୋଇ ମଧ୍ୟ ବୃଦ୍ଧ ପରି ଆଚରଣ ଦେଖାଏ ଓ ହାୟ ହାୟ ହୁଏ ସିଏ ପ୍ରକୃତରେ ବୃଦ୍ଧ । ଏ କଥାଟା ମୋ ଭିତରେ ଆଲୋଡ଼ନ ସୃଷ୍ଟି କଲା ଓ ଏବେ ଚଉସ୍ତରୀ ବର୍ଷ ବୟସରେ ମଧ୍ୟ ମୋ ଭିତରୁ ଯୁବକର ଉଦ୍ଦାମତା ହ୍ରାସ ପାଇ ନାହିଁ ବୋଲି ମୁଁ ଲକ୍ଷ୍ୟ କରୁଛି ।

ସେହି ଯୁବଲେଖକ ସମ୍ମେଳନର କବିତା ପାଠଚକ୍ର ଅଧିବେଶନରେ ନିମାଇଁବାବୁ, ରତ୍ନାକରବାବୁ ଓ ମୁଁ ଜୟପୁର ଓ କୋରାପୁଟରୁ ପ୍ରକାଶ ପାଇଥିବା ପ୍ରାୟ ସାତଟି ପତ୍ରିକାରୁ ସାତଟି କବିତାର ପ୍ରଥମ ଧାଡ଼ିକୁ ନେଇ ଗୋଟିଏ କବିତା ଲେଖିଲୁ ଓ ତାହାକୁ ସେହି ଅଧିବେଶନରେ ପଢ଼ିଲୁ । ସମସ୍ତେ ବାହାବା କଲେ । ଯେତେବେଳେ ଆମେ କହିଲୁ ଯେ ଏଠାରେ ପ୍ରକାଶ ପାଇଥିବା ସାତଟି ପତ୍ରିକାର କେତେକ କବିତାର ସାତଟି ଧାଡ଼ିକୁ ନେଇ ରଚିତ ବୋଲି ସେତେବେଳେ ଲକ୍ଷ୍ୟ କଲୁ କେତେଜଣ ପତ୍ରିକାଗୁଡ଼ିକୁ ଖୋଲି ଦେଖିବାକୁ ଲାଗିଲେ । ମୋର କହିବାର କଥା ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ କିଛି କବି ଏପରି କାରସାଦି କରୁଥିବା ସହଜରେ ଜାଣିହୁଏ ନାହିଁ । ଯାହା ଲେଖାଗଲେ ମଧ୍ୟ ବାହା ବାହା କୁହାଯାଏ । ଯୋଡ଼ାଯୋଡ଼ି କରିଦେଲେ କବିତା ହୁଏ ନାହିଁ । କବିତା ଲେଖାଯାଏ ନାହିଁ; ଆପେ ଲେଖିହୁଏ । ଅଯଥା ବୌଦ୍ଧିକ କସରତ କବିତାର ଆତ୍ମାକୁ

ନଷ୍ଟ କରିଦିଏ । ଯେତେବେଳେ ଗଳ୍ପ ସଂପର୍କରେ ଆଲୋଚନା ହେଲା ସେତେବେଳେ ବକ୍ତାମାନେ ଖୁବ୍ ବଡ଼ ବଡ଼ କଥା କହିଲେ । ଦେଶୀ ବିଦେଶୀ ଗଳ୍ପକୁ ଉଦ୍ଧାର କରି ଶ୍ରେଷ୍ଠ ଗଳ୍ପ କଥା କହିଲେ । ନିମାଇଁବାବୁ ସଭାମଞ୍ଚକୁ ଉଠିଯାଇ ମନରୁ ବାନ୍ଧି ଗୋଟିଏ ଗଳ୍ପ କହିଲେ– ବରଗଛ, ଗୋଟିଏ ବୁଢ଼ୀ ଓ ଗୋଟିଏ ଚୁଲାଖଣ୍ଡ କଥା । ତାହାର ଲେଖକ କହିଲେ– ନଖୁର ଅଲ୍ଲୀ ଖାଁ । ଏହା ଯେ ଏକ ଶ୍ରେଷ୍ଠ ଗଳ୍ପ ଓଡ଼ିଆ ସାହିତ୍ୟର ଭଣ୍ଡାରରେ ତାହା ଏପରି ବ୍ୟଙ୍ଗାତ୍ମକ ଭାବରେ କହିଲେ ଯେ ସଭାରେ ହାସ୍ୟରୋଳ ହେଲା । ତାଙ୍କର କହିବାର ତାତ୍ପର୍ଯ୍ୟ ହେଲା ଆମେ ଓଡ଼ିଆ ଲେଖକମାନେ ସବୁବେଳେ ବାହାର ଲେଖକଙ୍କ ପ୍ରଶଂସା କରୁ । ଆମ ଲେଖକମାନଙ୍କୁ ଗୌଣ ମନେକରୁ । ଏହିପରି ଭାବରେ ସେ ବର୍ଷ ଯୁବଲେଖକ ସମ୍ମେଳନ ସମାପ୍ତ ହେଲା ।

ଯୁବଲେଖକ ସମ୍ମେଳନ ଏକ ଗତିଶୀଳ ସାରସ୍ୱତ ଅନୁଷ୍ଠାନ । ପ୍ରସନ୍ନ ପାଟଶାଣୀ ସଂପାଦକ ଥିଲାବେଳେ ଏହାକୁ ଶକ୍ତି ଦେଇଥିଲେ । ସେତେବେଳେ ସେ ଥିଲେ ମାର୍କସବାଦୀ ଦର୍ଶନରେ ବିଶ୍ୱାସୀ । ଆନ୍ଧ୍ରର ଜ୍ୱାଳାମୁଖୀ ଗୋଷ୍ଠୀ ସହିତ ତାଙ୍କର ସଂପର୍କ ଥାଏ । ନକ୍ସାଲମାନଙ୍କ ସହିତ ମଧ୍ୟ ସଂପର୍କ ଥିଲା । ତାଙ୍କର ବିଭାଘର ହେଲା ବାଲୁଗାଁରେ । ଆମେ କେତେଜଣ ବନ୍ଧୁ ତାଙ୍କ ବିଭାଘରକୁ ଯାଇଥିଲୁ । ସେଠି ହେଲା ଏକ ସାହିତ୍ୟ ସଭା । କବିତା ମଧ୍ୟ ପଢ଼ାଗଲା । ୧୯୭୫ ମସିହାର ଜରୁରିକାଳୀନ ପରିସ୍ଥିତି ବେଳେ ପ୍ରସନ୍ନବାବୁଙ୍କୁ ପୋଲିସ ଖୋଜୁଥାଏ ଆରେଷ୍ଟ କରିବା ପାଇଁ । ସେ ଚନ୍ଦକା ଜଙ୍ଗଲ ଭିତରେ ଲୁଚି ରହିଥାଆନ୍ତି । ପୋଲିସ କବଳରୁ ଖସିଯାଇ ସେ ଜଣେ ସନ୍ନ୍ୟାସୀଙ୍କ ପାଖରେ ରହି ଯୋଗ ସାଧନା କଲେ ଓ ମାର୍କସବାଦୀ ଦର୍ଶନରୁ ଅପସରି ଆସି ଅଧ୍ୟାତ୍ମବାଦୀ ଦର୍ଶନରେ ଅନୁପ୍ରାଣିତ ହେଲେ । ତାଙ୍କ ଉପରୁ ସମସ୍ତ ଅଭିଯୋଗ ମୁଖ୍ୟମନ୍ତ୍ରୀ ନନ୍ଦିନୀଦେବୀ ଉଠାଇ ଦେଲା ପରେ ସେ ବାହାରକୁ ଆସିଲେ । ପ୍ରଥମେ କଂଗ୍ରେସ ଦଳରେ ମିଶି ବିଧାୟକ ହେଲେ । ପରେ ସେ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ସହିତ ମିଶି ବିଧାୟକ ଓ ମନ୍ତ୍ରୀ ହେଲେ । ମହେଶଯୋଗୀଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଯୋଗ ସାଧନା କଲେ । ବିଜୁବାବୁଙ୍କ ପରେ ନବୀନବାବୁଙ୍କ ସହିତ ମିଶି ବିଜେଡି ଦଳର ସଦସ୍ୟ ହେଲେ ଓ ସାଂସଦ ହେଲେ । ଦୀର୍ଘକାଳ ଧରି ସେ ଓଡ଼ିଶାର ରାଜନୀତି ସହିତ ସଂପୃକ୍ତ । ବୋଧହୁଏ ତାଙ୍କ ପରି ଅନ୍ୟ କେହି ନେତା ନିରବଚ୍ଛିନ୍ନ ଭାବରେ ଦୀର୍ଘ ତିରିଶ ବର୍ଷ ଧରି ବିଧାୟକ ଓ ସାଂସଦ ହୋଇପାରି ନାହାନ୍ତି । ତେବେ ମୁଁ ଲକ୍ଷ୍ୟ କରିଛି ଯେ ରାଜନୀତି ତାଙ୍କୁ ଗ୍ରାସ କରିପାରି ନାହିଁ । ସେ କବିତା ଲେଖନ୍ତି ଓ ଏବେ ମଧ୍ୟ ଲେଖୁଛନ୍ତି । ରାମାୟଣ ଉପରେ ନିବନ୍ଧ ଲେଖି ସେ ଡି.ଲିଟ. ପାଇଛନ୍ତି । ସେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ଏବେ ଆଉ ତାଙ୍କ ସହିତ ସଂପର୍କ ନାହିଁ । ସେ ମୋ ବଡ଼ଝିଅ ବାହାଘରକୁ ଆସିଛନ୍ତି ।

ପୂର୍ବରୁ କେତେଥର ମୋ ଘରକୁ ଆସିଥିଲେ । ଏବେ ସେ ଖୁବ୍ ବଡ଼ ହୋଇଗଲେଣି । ଆମ ପରି ଲୋକଙ୍କୁ ଆଉ କାହିଁକି ମନେରଖିବେ ?

ପ୍ରସନ୍ନବାବୁଙ୍କ ପରେ ହୁସେନ ରବିଗାନ୍ଧୀ ଯୁବଲେଖକ ସମ୍ମେଳନର ସଂପାଦକ ହୋଇଛନ୍ତି, ସଭାପତି ହୋଇଛନ୍ତି । ସେ ପ୍ରଗତିବାଦୀ ଚେତନାର କବି । ସେହି ଧାରାରେ ଏପର୍ଯ୍ୟନ୍ତ ମଧ୍ୟ ଲେଖି ଆସୁଛନ୍ତି । ତାଙ୍କ ଭିତରେ ଧର୍ମଗତ ସଂକୀର୍ଣ୍ଣତା ନାହିଁ । ବଡ଼ ଉଦାର ଓ ସମ୍ବେଦନଶୀଳ । ସେ ମୋ ଘରକୁ ଅନେକଥର ଆସିଛନ୍ତି । ତାଙ୍କ କବିତା ପୁସ୍ତକର ମଧ୍ୟ ମୁଁ ମୁଖବନ୍ଧ ଲେଖିଛି । ସେ ଆଜନ୍ମ ବିପ୍ଳବୀ । ସମ୍ବଲପୁରର ଗଙ୍ଗାଧର ମେହେର କଲେଜରେ ପଢୁଥିବା ସମୟରୁ ସେ ବିବିଧ ସାମାଜିକ ଆନ୍ଦୋଳନ ସହିତ ସଂପୃକ୍ତ । ସମ୍ବଲପୁରୀ ଭାଷାରେ କହିବାରେ ସେ ଦକ୍ଷତା ଅର୍ଜନ କଲେ । କଟକ ଆସିବା ପରେ ସେ ଏମ୍.ଏ. ପଢ଼ିଲେ, ପିଏଚ.ଡି. ପାଇଲେ, ଆଇନ ପଢ଼ିଲେ ମାତ୍ର ସେ କବିତା ଲେଖାରୁ ବିରତ ହେଲେ ନାହିଁ । ବିଜୁବାବୁଙ୍କୁ ସେ ଖୁବ୍ ଭଲ ପାଇଲେ । ଓଡ଼ିଶା ଜୋତା ନିଗମର ଚେୟାରମ୍ୟାନ ହେଲେ । ନବୀନବାବୁଙ୍କ ସମୟରେ ସେ ହେଲେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି । ଏବେ ସେ ଉତ୍କଳ ପ୍ରସଙ୍ଗର ସଂପାଦକ । ବହୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସେ ଜଡ଼ିତ । ଯେତେବେଳେ ସେ ସାହିତ୍ୟ ଏକାଡେମୀର ସଭାପତି ହେଲେ ତାଙ୍କ ବିରୋଧରେ କେତେକ ଲେଖକ ଖବରକାଗଜରେ ଲେଖିଲେ । କଟକ ଶ୍ରୀରାମଚନ୍ଦ୍ର ଭବନରେ ତାଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ସଭା ହେଲା । ବହୁ ଜ୍ଞାନୀ ଗୁଣୀ ବିଦ୍ୱାନ୍ ଲୋକେ ଯୋଗ ଦେଇଥିଲେ । ମୁଁ ମଧ୍ୟ ସେହି ସଭାରେ ଥିଲି ଜଣେ ବକ୍ତା । ହୁସେନବାବୁ ଉତ୍ତର ଦେଲାବେଳେ କାନ୍ଦି ପକାଇଲେ । ସେ ପ୍ରକୃତରେ କୋମଳ ହୃଦୟର ମଣିଷ । ତାଙ୍କୁ କ୍ଷୁଦ୍ରତା ସ୍ପର୍ଶ କରିପାରି ନାହିଁ । ସିଏ ଯାହା ଠିକ୍ ମନେକରନ୍ତି ତାହା ସେ କରନ୍ତି । ତାଙ୍କ ଜୀବନ ସଂଘର୍ଷମୟ । ତେଣୁ ସେ ଜୀବନସାରା ସଂଘର୍ଷ କରି ଚାଲିଛନ୍ତି । ବଡ଼ ସ୍ପଷ୍ଟବାଦୀ । ଯୁବଲେଖକ ସମ୍ମିଳନୀକୁ ସେ ମଧ୍ୟ ଆଗେଇ ନେଇଥିଲେ । ଗୋକର୍ଣ୍ଣିକାର ସଂପାଦକ ରମାକାନ୍ତ ଜେନା ମଧ୍ୟ କିଛି ଦିନ ଯୁବଲେଖକ ସମ୍ମିଳନୀର ସଂପାଦକ ଥିଲେ । ଅନ୍ୟାନ୍ୟ ବହୁ ବନ୍ଧୁ ଯୁବଲେଖକ ସମ୍ମିଳନୀ ସହିତ ସଂପୃକ୍ତ ଥିଲେ । ତଥାପି ଏବେ କାହିଁକି ତାହା ମଳିନ ପଡ଼ିଯାଇଛି । ଏହା ସତ୍ତ୍ୱେ ଯୁବଲେଖକ ସମ୍ମେଳନ ଦୀର୍ଘ ପଞ୍ଚତିରିଶି/ଚାଳିଶ ବର୍ଷ ଧରି ସାହିତ୍ୟିକଙ୍କ ଜାଗରଣ ସୃଷ୍ଟି କରିଥିଲା । ଏହି ଅନୁଷ୍ଠାନର କୋଳରେ ଯେଉଁମାନେ ଆଦ୍ୟ ଓଁକାର ସୃଷ୍ଟି କରିଥିଲେ ସେମାନେ ଏ ସଂପର୍କରେ ସଚେତନ ହୋଇ ଏହାର ପୁନଃ ସଂଗଠନ କରିବା ଯେ କେତେ ଜରୁରୀ ତାହା ଆଉ ବୁଝାଇ କହିବାର ନୁହେଁ ।

## ଆଉ କେତେକ ଅନୁଷ୍ଠାନ ସହିତ ସଂପର୍କ

ଅଧ୍ୟାପନା ବୃତ୍ତିରେ ଯୋଗ ଦେବାଠାରୁ ମୁଁ ବହୁ ସାରସ୍ୱତ ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଗଲି । ପୂର୍ବରୁ ଯଦିଓ ମୁଁ ଲେଖାଲେଖି କରୁଥିଲି ପ୍ରକୃତରେ ୧୯୬୬/୬୭ ରୁ ମୁଁ ନିରବଛିନ୍ନ ଭାବରେ ଲେଖାଲେଖି କଲି । କବିତା, ଗଳ୍ପ, ରମ୍ୟରଚନା, ଶିଶୁ ସାହିତ୍ୟ ଇତ୍ୟାଦି ମଝିରେ ମଝିରେ ଲେଖୁଥିଲେ ମଧ୍ୟ ମୁଖ୍ୟତଃ ମୁଁ ସମାଲୋଚନା ଲେଖିଲି । ତେଣୁ ଯେତେବେଳେ ଯେଉଁ ପତ୍ରିକା ମୋତେ ଲେଖା ମାଗିଲେ ସେମାନଙ୍କ ଅନୁରୋଧକ୍ରମେ ସମାଲୋଚନା ଲେଖିଲି । ମୁଁ ତ ସାହିତ୍ୟକୁ ଗୋଟିଏ ଅଖଣ୍ଡ ଧାରା ଭାବରେ ଗ୍ରହଣ କରେ । ମୋ ପାଖରେ ବେଦବେଦାନ୍ତ, ରାମାୟଣ, ମହାଭାରତ, ଗୀତା, କାଳିଦାସ, ଶ୍ରୀହର୍ଷ, ମାଘ ପ୍ରମୁଖ ଯେମିତି ପ୍ରିୟ ସେହିପରି ପ୍ରାକୃତ ଓ ଅପଭ୍ରଂଶ ଭାଷାରେ ରଚିତ ବିବିଧ ରଚନା ଓ ସର୍ବୋପରି ମାଟିର ମହାକବି ସାରଳା ଦାସ, ପଞ୍ଚସଖା ସାହିତ୍ୟ, ମଧ୍ୟଯୁଗର ବିବିଧ କାବ୍ୟ, ଉପେନ୍ଦ୍ର ଭଂଜ, ଅଭିମନ୍ୟୁ, ଦୀନକୃଷ୍ଣ, କବିସୂର୍ଯ୍ୟ, ଆଧୁନିକ ଯୁଗର ରାଧାନାଥ, ଫକୀରମୋହନ, ନନ୍ଦକିଶୋର, ଗଙ୍ଗାଧର, ମଧୁସୂଦନ ରାଓ, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, ବିନୋଦ ନାୟକ, ସଚି ରାଉତରାୟ, ଗୁରୁପ୍ରସାଦ, ରମାକାନ୍ତ, ସୀତାକାନ୍ତ, ଗୋପୀନାଥ, କାହ୍ନୁଚରଣ, ସୁରେନ୍ଦ୍ର ମହାନ୍ତି, ଶାନ୍ତନୁ ଆଚାର୍ଯ୍ୟ, କୃଷ୍ଣପ୍ରସାଦ ମିଶ୍ର, ବାମାଚରଣ ମିତ୍ର, ରବି ପଟ୍ଟନାୟକ, ପ୍ରତିଭା ରାୟ, ମନୋରମା ମହାପାତ୍ର, ବୀଣାପାଣି ମହାନ୍ତି ଓ ଅନ୍ୟାନ୍ୟ ବହୁ ଲେଖକ ମଧ୍ୟ ସେହିପରି ମୋର ପ୍ରିୟ । ମୁଁ ପ୍ରାଚୀନ ପୁରାଣ ଓ କାବ୍ୟକବିତା ପଢ଼ିବା ସହିତ ଆଧୁନିକ ଯୁଗର କାବ୍ୟକବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ରମ୍ୟରଚନା, ଜୀବନୀ, ଆତ୍ମଜୀବନୀ, ଭ୍ରମଣ କାହାଣୀ ଇତ୍ୟାଦି ପଢ଼େ । ପଢ଼ିବା ମୋତେ ଆନନ୍ଦ ଦିଏ । ପ୍ରସଙ୍ଗକ୍ରମେ ବଙ୍ଗଳା, ହିନ୍ଦୀ, ଇଂରାଜୀ ଭାଷାରେ ରଚିତ ବିବିଧ ଗ୍ରନ୍ଥ ପଢ଼େ । ଶ୍ରୀଅରବିନ୍ଦ, ବିବେକାନନ୍ଦ, କ୍ରିଷ୍ଣମୂର୍ତ୍ତି, ସତ୍ୟସାଇ ପ୍ରମୁଖଙ୍କ ଲେଖା ମଧ୍ୟ ପଢ଼ିବାକୁ ଭଲ ପାଏ । ସବୁଠାରୁ ପ୍ରିୟ ଗ୍ରନ୍ଥ ମୋର- 'ଶ୍ରୀମଦ୍ ଭଗବତ ଗୀତା' । ପ୍ରତିଦିନ ରାତିରେ ଶୋଇବା ବେଳେ ମୁଁ ଏହାକୁ ପଢ଼େ, ତନ୍ମୟ ହୁଏ । ମୁଁ ଭାବେ ସର୍ବ ଶାସ୍ତ୍ର ସାରଭାଷ୍ୟ ଗୀତା ବୋଧହୁଏ ଶ୍ରେଷ୍ଠ ଗ୍ରନ୍ଥ ଓ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସକଳ ମଣିଷ ଜାତି ପାଇଁ ଏହା ପ୍ରେରଣାସଦୃଶ ।

ହଁ, ମୁଁ କହୁଥିଲି ବିଭିନ୍ନ ସାରସ୍ୱତ ଅନୁଷ୍ଠାନ ସହିତ ମୋର ସଂପର୍କ ବିଷୟରେ । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲା ପରେ ମୋର ବନ୍ଧୁତା ସୃଷ୍ଟି ହେଲା ସଂସ୍କୃତି ବିଭାଗର ଉପସଚିବ କବି ସୁଧାଂଶୁ ମୋହନ ରାଉତରାୟ ଓ ଗାଳ୍ପିକ ନାଟ୍ୟକାର ଗୁଣନିଧି

ଜେନାଙ୍କ ସହିତ । ସେମାନେ ମୋତେ ଓଡ଼ିଶା ସାହିତ୍ୟ ଏକାଡେମୀର ସାଧାରଣ ପରିଷଦର ସଭ୍ୟ କରିଦେଲେ । ମୁଁ ତିନି ଥର ସେହି ପରିଷଦରେ ସଭ୍ୟ ରହିଲି । ଯେତେବେଳେ ସାଧାରଣ ପରିଷଦର ସଭା ହୁଏ ମୁଁ ଦେଖେ ସଭ୍ୟମାନଙ୍କ ଭିତରେ ବାଦାନୁବାଦ, ସଭାପତିଙ୍କ ପ୍ରତି ତୀବ୍ର ଆକ୍ରମଣ । ଏହା ମୋତେ ଭଲ ଲାଗେ ନାହିଁ । ସମାଧାନ ପାଇଁ ସୂତ୍ର ବାହାର କରେ । ମୋର କୌଣସି ପଦପଦବୀ ପାଇଁ ଆକାଂକ୍ଷା ନ ଥାଏ; ଏବେ ମଧ୍ୟ ନାହିଁ ।

ମୁଁ ଲକ୍ଷ୍ୟ କଲି ଓଡ଼ିଶା ସାହିତ୍ୟ ଏକାଡେମୀର ଅନ୍ୟାନ୍ୟ କର୍ମଚାରୀମାନଙ୍କର ଦରମା ବା ଭତ୍ତା ବୃଦ୍ଧି ସଂପର୍କରେ କେହି ଆଲୋଚନା କରୁ ନାହାନ୍ତି । କେବଳ କିଏ କେଉଁ କମିଟିରେ ରହିବେ, 'କୋଣାର୍କ' ପତ୍ରିକାର କିଏ ସଂପାଦକ ହେବ, ଏକାଡେମୀ ତରଫରୁ କିଏ କେଉଁ ପ୍ରଦେଶକୁ ଯାଇ ପ୍ରତିନିଧିତ୍ୱ କରିବ ଇତ୍ୟାଦି ଘଟଣାକୁ ନେଇ ସଂଘର୍ଷ ଓ ଲବି । ପରବର୍ତ୍ତୀ କାଳରେ ଏହା ଆହୁରି ଉତ୍କଟ ହୋଇଯାଇଛି ବୋଲି ମୁଁ ଅନୁଭବ କରେ । ସଚ୍ଚିଦାନନ୍ଦ ରାଉତରାୟ, ସୁରେନ୍ଦ୍ର ମହାନ୍ତି, ମହାପାତ୍ର ନୀଳମଣି ସାହୁ ଓ ମନୋରମା ମହାପାତ୍ର ସଭାପତି ଥିଲାବେଳେ ମୋତେ କେତେକ ସେମିନାରରେ ଯୋଗ ଦେଇ ପ୍ରବନ୍ଧ ଉପସ୍ଥାପନ କରିବାକୁ କୁହାଯାଇଛି ଓ ମୁଁ ମଧ୍ୟ ପ୍ରବନ୍ଧ ଉପସ୍ଥାପନ କରିଛି । କୋଣାର୍କର ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ କରିବାର ଯେଉଁ ପରଂପରା ଥିଲା ସଭାପତି ମହାପାତ୍ର ନୀଳମଣି ସାହୁଙ୍କଠାରୁ ତାହା ଭାଙ୍ଗିଗଲା । ଗଳ୍ପ ଓ କବିତା ମଧ୍ୟ ପ୍ରକାଶ ପାଇଲା । ଶରତ କର ସଂସ୍କୃତି ମନ୍ତ୍ରୀ ଥିଲାବେଳେ ଗଣକବି ବୈଷ୍ଣବ ପାଣି ବିଶେଷାଙ୍କ ପାଇଁ ମୋତେ ଅନୁରୋଧ କରିଥିଲେ । କୋଣାର୍କ ପତ୍ରିକା ବୈଷ୍ଣବ ପାଣିଙ୍କ ସାରସ୍ୱତ କୃତି ଉପରେ ଏକ ବିଶେଷାଙ୍କ ବାହାର କରିଥିଲା । ମୁଁ ପୁନଶ୍ଚ ଲକ୍ଷ୍ୟ କଲି ଯେ ପୁରସ୍କାର ପ୍ରଦାନ ପାଇଁ ପ୍ରିୟାପ୍ରୀତି ଓ ଲବି ବିଶେଷ କାର୍ଯ୍ୟ କରୁଛି । ସଭାପତି ଓ ସଂପାଦକ ମିଳିତ ଭାବରେ ଓ କାର୍ଯ୍ୟନିର୍ବାହୀ ସମିତିର ପ୍ରଭାବଶାଳୀ ସଭ୍ୟମାନେ ନିଜ ନିଜର ପ୍ରିୟ ବନ୍ଧୁ ଲେଖକଙ୍କୁ ପୁରସ୍କାର ଦେବା ପାଇଁ ଉଦ୍ୟମ କରୁଛନ୍ତି । ସ୍ୱର୍ଗତ ମନମୋହନ ମିଶ୍ର ଥରେ ମୋତେ କହୁଥିଲେ ଯେ ସେ ଜଣଙ୍କୁ ଅନୁମୋଦିତ କରିଥିଲାବେଳେ ସଂପାଦକ ତାଙ୍କ ପାଖରେ ପହଞ୍ଚି ସେ ଲେଖକଙ୍କୁ ନ ଦେଇ ଅନ୍ୟଜଣଙ୍କୁ ଦେବା ପାଇଁ କହିଲେ ଓ ସେ ମଧ୍ୟ ତାଙ୍କୁ ଦେଲେ । ଏକାଡେମୀ ନିରପେକ୍ଷ ରହିବା କଥା ମାତ୍ର ତାହା ହେଉ ନାହିଁ । କେନ୍ଦ୍ର ସାହିତ୍ୟ ଏକାଡେମୀ କଥା ନ କହିବା ଭଲ । କାରଣ ଏଇ ଲେଖକ ଜାଣେ ସେଠି କ'ଣ ହୁଏ । ଯିଏ ଆବାହକ ଥାଆନ୍ତି ସିଏ ହିଁ ସବୁ କରନ୍ତି ।

ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ଆଧୁନିକ ଲେଖକ ପରିଚୟ ଗ୍ରନ୍ଥଟିଏ ପ୍ରସ୍ତୁତ କରିବା ପାଇଁ ମୋତେ ଦାୟିତ୍ୱ ଦିଆଯାଇଥିଲା । ମୁଁ ମଧ୍ୟ ସାରା ଓଡ଼ିଶାର

ଲେଖକ/ଲେଖିକାମାନଙ୍କର ପରିଚୟ ସଂଗ୍ରହ କଲି ଓ ଗ୍ରନ୍ଥ ପ୍ରସ୍ତୁତ କଲି । ସେତେବେଳେ ବିଶିଷ୍ଟ ଗବେଷକ ଓ ପ୍ରାବନ୍ଧିକ ରାଇଚରଣ ଦାସ ଥାଆନ୍ତି ସଂପାଦକ । ସେ ମୋତେ କହିଲେ କଟକରେ ଛପାଇ ଦେବାକୁ । ମୁଁ ମଧ୍ୟ ଶିକ୍ଷକ ଶ୍ରୀଯୁକ୍ତ ମାଗୁଣି ଚରଣ ସ୍ୱାଇଁଙ୍କ ପ୍ରେସ୍‌ରେ ଛାପିବାକୁ ଦେଲି । ପ୍ରାୟ ଚାରିଶହ ପୃଷ୍ଠା ଛପା ଯାଇଥିଲା । ଏହି ସମୟରେ ରାଇଚରଣବାବୁ ବଦଳି ହୋଇଗଲେ । ଚିନ୍ତାମଣି ବେହେରା ହେଲେ ସଂପାଦକ । ସେ ଛପା କାର୍ଯ୍ୟ ବନ୍ଦ କରି ଦେଇ ପାଣ୍ଡୁଲିପି ଓ ଛାପାଅଂଶକୁ ନେଇଗଲେ । ଏକଥା ଜାଣି ମୁଁ ଏକାଡେମୀ ଅଫିସକୁ ଯାଇ ଚିନ୍ତାମଣିବାବୁଙ୍କୁ କାରଣ ପଚାରିଲି । ସେତେବେଳେ ଚିତ୍ତରଂଜନ ଦାସ ସେଠି ଉପସ୍ଥିତ ଥାଆନ୍ତି । ଚିନ୍ତାମଣିବାବୁ କହିଲେ ଯେ ସେଥିରେ କେତେଗୁଡ଼ିଏ ଭୁଲ ଅଛି, ଅନେକ ଅଲେଖକଙ୍କ ନାମ ରହିଛି । ମୁଁ ପଚାରିଲି ଭୁଲ ଥିଲେ ସଂଶୋଧନ ହେବ; ତେବେ ଅଲେଖକ କେଉଁମାନେ ? ସେ କହିଲେ ଏ. ହମିଦ୍, ଅନାଦି ସାହୁ, ଖଗେନ୍ଦ୍ରନାଥ ମଲ୍ଲିକ କ'ଣ ଲେଖକ ? ମୁଁ ଉତ୍ତର ଦେଲି ଆପଣ ବୋଧହୁଏ ଏମାନଙ୍କ ସଂପର୍କରେ କିଛି ଜାଣି ନାହାନ୍ତି । ଏ. ହମିଦ୍ ବିଂଶ ଶତାବ୍ଦୀ ପ୍ରଥମ ଭାଗର ଜଣେ ଲୋକପ୍ରିୟ କବି । କଟକ ବେତାର କେନ୍ଦ୍ର ତାଙ୍କ ଉପରେ କିଛି ବକ୍ତବ୍ୟ ଦେବାକୁ ମୋତେ ଅନୁରୋଧ କରିଥିଲେ ଓ ତାଙ୍କର ବାଉନ ଖଣ୍ଡ ଛୋଟ ଛୋଟ କବିତା ବହି ସଂଗ୍ରହ କରି ମୁଁ ବକ୍ତବ୍ୟ ଦେଇଥିଲି । ସେ ଜଣେ ଲୋକକବି ହେଲେ ବୋଲି ତାଙ୍କୁ କ'ଣ କବି କୁହାଯିବ ନାହିଁ ? ଅନାଦି ସାହୁଙ୍କ ଲେଖା ଆପଣ ବୋଧହୁଏ କିଛି ପଢ଼ି ନାହାନ୍ତି । ଆପଣ ତ କେବଳ ବଡ଼ବଡ଼ିଆ ଲେଖକଙ୍କୁ ଲେଖକ ବୋଲି ମାନନ୍ତି । ଆଉ ଯେଉଁମାନେ ବଡ଼ବଡ଼ିଆଙ୍କ ଦୃଷ୍ଟି ଅନ୍ତରାଳରେ ରହିଯାଆନ୍ତି ସେମାନଙ୍କୁ କ'ଣ ଆପଣ ଜାଣନ୍ତି ? ଅନାଦି ସାହୁ ପ୍ରବନ୍ଧ ଲେଖନ୍ତି, ପ୍ରକାଶ ପାଇଛି 'ଭିନ୍ନ ବାଟ ଅନ୍ୟତ୍ରଠ' ପ୍ରବନ୍ଧ ପୁସ୍ତକ । ତାହା ଛଡ଼ା ତାଙ୍କର ଚମତ୍କାର ଗଳ୍ପ ପୁସ୍ତକ 'ପାଣ୍ଡୁର ବଳୟ', ଉପନ୍ୟାସ 'ମୁଣ୍ଡମେଖଳା', 'ଜଙ୍ଗଲୀ ସହର', 'କ୍ଷଣଭଙ୍ଗୁର', 'ଶୋଣିତ ଫଲ୍‌ଗୁ' ଆଦି ପ୍ରକାଶ ପାଇଛି ଓ ସେସବୁ ଆମ ଗଳ୍ପ ଓ ଉପନ୍ୟାସରୁ ସଂପୂର୍ଣ୍ଣ ଅଲଗା । ଆପଣ ତାଙ୍କର କିଛି ପଢ଼ିଛନ୍ତି କି ? ଖଗେନ୍ଦ୍ରନାଥ ମଲ୍ଲିକ ତ ଅନେକ କବିତା, ଗଳ୍ପ, ଉପନ୍ୟାସ ଓ ସମାଲୋଚନା ଲେଖିଛନ୍ତି । ଅଥଚ ଆପଣ କହୁଛନ୍ତି ଏମାନେ କ'ଣ ଲେଖକ ? ତେବେ ଲେଖକର ସଂଜ୍ଞା କ'ଣ ? ଆପଣ ତ ଜଣେ ସମାଲୋଚକ ଅଥଚ ସମାଲୋଚନାରେ ଏକାଡେମୀ ପୁରସ୍କାର ନ ପାଇ କବିତାରେ କାହିଁକି ପାଇଲେ ? ଏହିପରି କହୁଥିଲାବେଳେ ଚିତ୍ତଭାଇ ତାଙ୍କୁ କହିଲେ ଏପରି ଅନ୍ୟ ଲେଖକଙ୍କୁ କମେଣ୍ଟ କରିବା ଠିକ୍ ନୁହେଁ ।

ମୁଁ ଚାଲିଆସିଲି । ଶୁଣିଲି କିଛି ଦିନ ପରେ କୌଣସି ଏକ ଅପକୀର୍ତ୍ତି ଯୋଗୁଁ ସେ ବଦଳି ହୋଇଗଲେ । ସୁରେନ୍ଦ୍ରନାଥ ଶତପଥୀ ଆସିଲେ ସଂପାଦକ ହୋଇ । ସେ ଲେଖକ

ନୁହନ୍ତି, ତାଙ୍କୁ କିପରି ଓଡ଼ିଶା ସାହିତ୍ୟ ଏକାଡେମୀର ସଂପାଦକ କରାଗଲା ସେ ବିଷୟରେ କଟକ ଓ ଭୁବନେଶ୍ୱରର କିଛି ପଣ୍ଡିତମ୍ମନ୍ୟ ଲେଖକ ଖବରକାଗଜରେ ଲେଖୁଥାନ୍ତି । ଦୁର୍ଭାଗ୍ୟ ହେଉଛି ଯେ ଆମେ ଅନ୍ୟ କାହାର ଲେଖା ନ ପଢ଼ି ସମାଲୋଚନା କରୁ । ସୁରେନ୍ଦ୍ରବାବୁଙ୍କର ପ୍ରଥମ ବହି ୧୯୬୫ ମସିହାରେ ବାହାରିଥାଏ । ସେ ଜଣେ ବିଦ୍ୱାନ୍ ବ୍ୟକ୍ତି । ବୌଦ୍ଧ ଜାତକ କାହାଣୀଗୁଡ଼ିକୁ ସେ ଅନୁବାଦ କରି ବିଭିନ୍ନ ଖଣ୍ଡରେ ପ୍ରକାଶ କରିଥାନ୍ତି । ସେ ମଧ କବିତା ପୁସ୍ତକଟିଏ ପ୍ରକାଶ କରିବା ସହିତ ଭାରତୀୟ ସଂସ୍କୃତି ଉପରେ ଲେଖୁଥାନ୍ତି । ପରବର୍ତ୍ତୀ କାଳରେ ସେ ରାମାୟଣ ଓ ମହାଭାରତର ନାନା ଚରିତ୍ର ଓ ବିଷୟକୁ ନେଇ ରଚନା କଲେ ନାନା ଉପନ୍ୟାସ । ସେ ମଧ ମହାଭାରତର ଗଦ୍ୟାନୁବାଦ କଲେ । 'ମହାନଦୀ' ପତ୍ରିକାର ସଂପାଦନା କଲେ । ସେ ମୋତେ ଡକାଇ ଲେଖକ ପରିଚୟ ଗ୍ରନ୍ଥଟି ପୂର୍ଣ୍ଣାଙ୍ଗ କରିଦେବାକୁ ଅନୁରୋଧ କଲେ । ପ୍ରତ୍ୟେକ ଲେଖକଙ୍କ ସଂପର୍କରେ ମୁଁ ଯେଉଁ ଟିପ୍ପଣୀ ଦେଇଥିଲି ତାହାକୁ ନ ଦେବାକୁ କହିଲେ । ସେହି ଅନୁସାରେ ମୁଁ ପାଣ୍ଡୁଲିପି ପ୍ରସ୍ତୁତ କଲି । ସୁରେନ୍ଦ୍ରବାବୁ ବଦଳି ହୋଇଗଲା ପରେ ହରିହର ପରିଛା ପଟ୍ଟନାୟକ ହେଲେ ସଂପାଦକ । ତାଙ୍କୁ ମୁଁ ପାଣ୍ଡୁଲିପି ହସ୍ତାନ୍ତର କଲି ଓ କହିଲି ଛପାହେବା ପୂର୍ବରୁ ମୁଁ, ସଂପାଦକ ଓ ଅନ୍ୟ ଜଣେ ଲେଖକଙ୍କୁ ଡାକି ତାହାକୁ ଦେଖାଇ ଆନୁଷଙ୍ଗିକ ସଂଶୋଧନ କରିଦେଲେ ଭଲ ହେବ । ସେ ରାଜି ହେଲେ ମାତ୍ର ଗଭୀର ଦୁଃଖର ବିଷୟ ସେ ମୋତେ ଆଦୌ ନ ଜଣାଇ ଅନ୍ୟ ଦୁଇ ତିନିଜଣଙ୍କୁ ସ୍ୱତନ୍ତ୍ର ଭାବରେ ଚିଠି କରି ସେହି କାର୍ଯ୍ୟଟି କରାଇ ଦେଲେ । ସେମାନଙ୍କ ଭିତରେ ଥିବା ଡକ୍ଟର ବିଜୟାନନ୍ଦ ସିଂହ ଓ ଡକ୍ଟର ପ୍ରସନ୍ନ କୁମାର ମହାନ୍ତି ମୋତେ କହିଲେ ଯେ ମୁଁ ଯେଉଁ ପାଣ୍ଡୁଲିପି ଦେଇଥିଲି ତାହାକୁ ସେମାନେ କରି ଦେଇଛନ୍ତି । ଏ ସଂପର୍କରେ 'ସମ୍ବାଦ'ରେ ବାଦାନୁବାଦ ପ୍ରକାଶ ପାଇଲା । ମୁଁ ନୀରବ ରହିଲି । ଏପରିକି ପ୍ରକାଶିତ ଗ୍ରନ୍ଥରେ ମୋତେ ମଧ ଧନ୍ୟବାଦ ପଦେ ଦିଆଗଲା ନାହିଁ ।

ସାହିତ୍ୟ ଏକାଡେମୀ ଏହିପରି ଚାଲେ । ବେଳେବେଳେ ଏକାଡେମୀ ମୋତେ କୌଣସି କୌଣସି ବିଶିଷ୍ଟ ଲେଖକଙ୍କ ଜୟନ୍ତୀରେ ଯୋଗ ଦେବାକୁ ଡାକନ୍ତି । ମୁଁ ଯାଏ । ମୋ ଭିତରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୁଏ ଏକାଡେମୀର ସଭାପତି ଓ ସଂପାଦକଙ୍କର କାର୍ଯ୍ୟକଳାପକୁ ନେଇ । ମୁଁ ପ୍ରତିବାଦ କରେ ନାହିଁ । ମୁଁ ଭାବେ ସାହିତ୍ୟକୁ ନେଇ ପ୍ରତିବାଦ ଗୋଟାଏ କ'ଣ ? ମୁଁ ଜାଣେ ସାହିତ୍ୟ ଏକ ମିଳନ ଭୂମି । ଏଠି ସହାନୁଭୂତି ଓ ସମ୍ବେଦନା ମୁଖ୍ୟ । ଅଥଚ ଆଜି ସାହିତ୍ୟରେ ଏସବୁ କାହିଁ ? ସବୁଠି ପ୍ରିୟାପ୍ରୀତି, ମୁଁ ମୁଁ ର ବିଳାପ । ସଚ୍ଚା ସାହିତ୍ୟିକଟିଏ କାହାନ୍ତି ? ଯେଉଁ କେତେଜଣ ଅଛନ୍ତି ସେମାନେ ନୀରବ । ସେହି ନୀରବତା ଭିତରେ ସେମାନେ ସାହିତ୍ୟ ସାଧନା କରୁଛନ୍ତି । ସେହିମାନଙ୍କ ପାଇଁ ଓଡ଼ିଆ ସାହିତ୍ୟ ଧନ୍ୟ ।

## ଉତ୍କଳ ସାହିତ୍ୟ ସମାଜ ଓ ମୋର ସଂପର୍କ

ଦୀର୍ଘ ଏକଶହ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି 'ଉତ୍କଳ ସାହିତ୍ୟ ସମାଜ' (୧୯୦୩) ଓଡ଼ିଆ ଭାଷା ଓ ସାହିତ୍ୟର ସୁରକ୍ଷା ଓ ପ୍ରଚାର ପାଇଁ ଏକ ଗୌରବମୟ ପୀଠ । ଏହା ପ୍ରକୃତରେ ସମଗ୍ର ଓଡ଼ିଶାର ଲେଖକ/ଲେଖିକାମାନଙ୍କ ଏକ ମିଳନ ଓ ଭାବ ବିନିମୟର କେନ୍ଦ୍ର । ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷ ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ନବଜାଗରଣର କାଳ । ୧୮୬୯-୭୦ ମସିହା ବେଳକୁ ଓଡ଼ିଶାରୁ ଓଡ଼ିଆ ଭାଷା ଉଠାଇ ଦେଇ ବଙ୍ଗଳା ଭାଷା ଚଳାଇବା ପାଇଁ ସରକାରୀ ନିର୍ଦ୍ଦେଶନାମା ପ୍ରକାଶ ପାଇଲା ପରେ ଓଡ଼ିଶାରେ ନବ୍ୟଶିକ୍ଷିତ ଗୋଷ୍ଠୀଙ୍କ ଭିତରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । କର୍ମଯୋଗୀ ଗୌରୀଶଙ୍କର ରାୟ 'ଉତ୍କଳ ଦୀପିକା'ରେ ସରକାରଙ୍କର ତଥା ବଙ୍ଗୀୟ ଚକ୍ରାନ୍ତକାରୀ ଗୋଷ୍ଠୀଙ୍କ ବିରୋଧରେ ତୀବ୍ର ଭାବରେ ଆକ୍ରମଣ କରିବା ସହିତ ଓଡ଼ିଆ ଭାଷାର ପ୍ରାଚୀନତା ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ ସଂପର୍କରେ ବିବରଣୀ ଦେଲେ । ବାଲେଶ୍ୱରରେ ଫକୀରମୋହନ ସେନାପତି 'ସମ୍ବାଦ ବାହିକା' ପତ୍ରିକା ମାଧ୍ୟମରେ ସରକାର ଓ ବଙ୍ଗୀୟ ଲୋକଙ୍କ ଚକ୍ରାନ୍ତ ବିରୋଧରେ ଲେଖିଲେ । ବାଲେଶ୍ୱରର ତତ୍‌କାଳୀନ କଲେକ୍ଟର ଜନ୍ ବୀମ୍‌ସ ମଧ୍ୟ ଓଡ଼ିଆ ଭାଷାର ପ୍ରାଚୀନତା ଓ ଓଡ଼ିଆ ସାହିତ୍ୟର ଗୁରୁତ୍ୱ ସଂପର୍କରେ କେବଳ ଲେଖିଲେ ନାହିଁ; ବଙ୍ଗ ସରକାରଙ୍କ ନିକଟରେ ଯଥୋଚିତ ଦାବି ଉପସ୍ଥାପନ କଲେ । ତେଣୁ ଓଡ଼ିଆ ଭାଷା ମରଣ ସଙ୍କଟରୁ ରକ୍ଷା ପାଇଗଲା ଓ ଆଧୁନିକ ଓଡ଼ିଆ ସାହିତ୍ୟର ହେଲା ନବୋନ୍ମେଷ । ଫଳରେ ନୂତନ କବିତା, ପ୍ରବନ୍ଧ, ରମ୍ୟରଚନା, ଗଳ୍ପ, ଉପନ୍ୟାସ, ଜୀବନୀ ଆଦି ରଚିତ ହେଲା ଓ ବିଭିନ୍ନ ପତ୍ରପତ୍ରିକା ପ୍ରକାଶ ଲାଭ କଲା । ଭକ୍ତକବି ମଧୁସୂଦନ ରାଓ ୧୮୯୩ ମସିହାରେ ଯେଉଁ ଆଲୋଚନା ସଭା ଆରମ୍ଭ କରିଥିଲେ ତାହାହିଁ ୧୯୦୩ ମସିହାରେ 'ଉତ୍କଳ ସାହିତ୍ୟ ସମାଜ' ନାମ ଧାରଣ କଲା । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ଭାଷାକୁ ନେଇ ଯେଉଁ ଭାବାବେଗ ସୃଷ୍ଟି ହେଲା ଓଡ଼ିଆ ଭାଷାକୈନ୍ଦ୍ରିକ ଜାତୀୟତାବୋଧ ଓ ସେହି ୧୯୦୩ ମସିହାରେ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ନେତୃତ୍ୱରେ 'ଉତ୍କଳ-ସମ୍ମିଳନୀ' ଗଢ଼ି ଉଠି ଭାଷାରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନଜନିତ ଏକ ନୂତନ ଜାତୀୟତାବୋଧର ଜାଗରଣ କଲା । ଉତ୍କଳ ସାହିତ୍ୟ ସମାଜର ଭବନଟିଏ ତିଆରି ହେଲା ମୟୂରଭଞ୍ଜର ରାଜା ରାମଚନ୍ଦ୍ରଦେବଙ୍କ ଅନୁଦାନରେ ।

ଉତ୍କଳ ସାହିତ୍ୟ ସମାଜ ସମଗ୍ର ଓଡ଼ିଆ ଜାତିର ଏକ ଭବ୍ୟ ସାରସ୍ୱତ ଅନୁଷ୍ଠାନ । ବିଭିନ୍ନ ସମୟରେ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇ ବିଦ୍ୱାନ୍ ସାହିତ୍ୟିକମାନେ ସୁଚିନ୍ତିତ ଅଭିଭାଷଣ ପ୍ରଦାନ କଲେ । କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ

ସେନାପତି, ଭକ୍ତକବି ମଧୁସୂଦନ ରାଓ, ନାଟ୍ୟକାର ରାମଶଙ୍କର ରାୟ, ଚନ୍ଦ୍ରମୋହନ ମହାରଣା, ଅଭିରାମ ଭଂଜ, ସ୍ୱଭାବକବି ଗଙ୍ଗାଧର ମେହେର, ବିଶ୍ୱନାଥ କର, ମଧୁସୂଦନ ଦାଶ, ଶଶିଭୂଷଣ ରାୟ ପ୍ରମୁଖ ବହୁ ବିଦ୍ୱାନ୍ ଓ ସାହିତ୍ୟିକ ଅଭିଭାଷଣ ପ୍ରଦାନ କରି ଓଡ଼ିଆ ସାହିତ୍ୟର ବିକାଶ ପାଇଁ ପ୍ରେରଣା ଓ ଉତ୍ସାହ ପ୍ରଦାନ କଲେ । ପ୍ରାୟ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଏହି ଅନୁଷ୍ଠାନଟି ସାରା ଓଡ଼ିଶାର ସାରସ୍ୱତ ମିଳନ ଭୂମି ହୋଇ ରହିଥିଲା । ସ୍ୱାଧୀନତା ପୂର୍ବରୁ ଯେ ଦ୍ୱନ୍ଦ ଉପୁଜି ନ ଥିଲା; ନୁହେଁ ମାତ୍ର ତାହା ଉତ୍କଟ ହୋଇ ନ ଥିଲା । ସ୍ୱାଧୀନତା ପରେ ଏହି ଅନୁଷ୍ଠାନକୁ କେନ୍ଦ୍ର କରି ବାଦାନୁବାଦ ହେବା ସହିତ କ୍ରମେ ଏହା ରାଜନୀତି କବଳିତ ହୋଇଗଲା । ସମ୍ବିଧାନକୁ ବାରମ୍ବାର ସଂଶୋଧନ କରାଯାଇ ସେଥିରେ 'ସାହିତ୍ୟପ୍ରେମୀ' ଶବ୍ଦଟିଏ ଯୋଡ଼ି ଦିଆଗଲା, କେବଳ ଭୋଟରେ ଜିତିବା ପାଇଁ । କେହି ବୁଝିଲେ ନାହିଁ ଯେ ଏହାଦ୍ୱାରା ପବିତ୍ର ଅନୁଷ୍ଠାନଟି କଳୁଷିତ ହୋଇଯାଉଛି ବୋଲି । ଏହି ପବିତ୍ର ଅନୁଷ୍ଠାନରେ ମୁଁ ଆଜୀବନ ସଦସ୍ୟ ହେଲି ଓ ବିଭିନ୍ନ ଆଲୋଚନା ଚକ୍ରରେ ଯୋଗ ଦେଇ ମୋର ବକ୍ତବ୍ୟ ପ୍ରଦାନ କଲି । ଫକୀରମୋହନ କଲେଜରୁ ବଦଳି ହୋଇ ମୁଁ ରେଭେନ୍ସା କଲେଜରେ ଯୋଗ ଦେଲି ୧୯୭୦ ମସିହାରେ । ସେତେବେଳେ ଓଡ଼ିଶାର ବିଶିଷ୍ଟ ମାର୍କସବାଦୀ ବିପ୍ଳବୀ କବି ଶ୍ରୀଯୁକ୍ତ ଅନନ୍ତ ପଟ୍ଟନାୟକ ଥାଆନ୍ତି ଏହି ଅନୁଷ୍ଠାନର ସଭାପତି । ସେ ବିପ୍ଳବୀ କବି ସତ; ମାତ୍ର ଥିଲେ ସମ୍ବେଦନଶୀଳ ମାନବବାଦୀ ମଣିଷ ପରି ମଣିଷଟିଏ । ସ୍ୱାଧୀନତା ପୂର୍ବରୁ ସେ ଓ ତାଙ୍କ ସାନଭାଇ ଗୁରୁଚରଣ ପଟ୍ଟନାୟକ ଖୋର୍ଦ୍ଧା ନିକଟବର୍ତ୍ତୀ ଚଣାହାଟର ଜମିଦାରୀ ସୁଖକୁ ଜଳାଞ୍ଜଳି ଦେଇ ମାର୍କସବାଦୀ ଆନ୍ଦୋଳନରେ ଯୋଗ ଦେଇଥାନ୍ତି । ଢେଙ୍କାନାଳର ପ୍ରଜା ଆନ୍ଦୋଳନରେ ଭାଗ ନେଇ କାରାବରଣ ମଧ୍ୟ କରିଥାନ୍ତି । ଉଭୟେ ପ୍ରତିଭାବାନ୍ । ଅନନ୍ତବାବୁଙ୍କର ବହୁ କବିତା ପୁସ୍ତକ, ଗଳ୍ପ, ପ୍ରବନ୍ଧ ଆଦି ଅତ୍ୟନ୍ତ ପାଠକୀୟ ଶ୍ରଦ୍ଧା ଲାଭ କରିଥାଏ । ମାକ୍ସିମ୍ ଗୋର୍କିଙ୍କ 'ଦି ମଦର୍' ଉପନ୍ୟାସକୁ ସେ 'ମା' ଶୀର୍ଷକରେ ଅନୁବାଦ କରିଥାନ୍ତି । ଗୁରୁଚରଣବାବୁ ମଧ୍ୟ ଅନେକ ଚିନ୍ତାପୂର୍ଣ୍ଣ ଗ୍ରନ୍ଥ ରଚନା କରିଥାନ୍ତି । ବହୁ ପରବର୍ତ୍ତୀ ସମୟରେ ସେ 'ଜଗତ ଦର୍ଶନରେ ଜଗନ୍ନାଥ' ପୁସ୍ତକ ରଚନା କରି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ।

୧୯୭୨ ମସିହାର କୌଣସି ଏକ ସନ୍ଧ୍ୟାରେ ସେ ମୋ ବସାଘର ଚାଉଳିଆଗଞ୍ଜକୁ ଆସିଲେ କବି ଶ୍ରୀ ସୌଭାଗ୍ୟ ମିଶ୍ରଙ୍କ ସହିତ । ସାହିତ୍ୟ ସମାଜର ହୀରକ ଜୟନ୍ତୀ ଉତ୍ସବର ବିଶେଷାଙ୍କ ପାଇଁ ଗୋଟିଏ ପ୍ରବନ୍ଧ ଲେଖିବା ପାଇଁ କହିଲେ । ସେଦିନର ତାଙ୍କର ସ୍ନେହ ଓ ଶ୍ରଦ୍ଧା ମୋତେ ଅଭିଭୂତ କରିଦେଲା । ମୁଁ ମଧ୍ୟ ପ୍ରବନ୍ଧଟିଏ ଦେଲି– 'ଆଧୁନିକ ଓଡ଼ିଆ କବିତାରେ ଜୀବନବାଦୀ ଦୃଷ୍ଟିକୋଣ ।' ବିଶେଷାଙ୍କରେ ବାହାରିଲା । ତା'ପରେ

ତାଙ୍କ ଭଡ଼ାଘରକୁ କେତେଥର ମୁଁ ଯାଇଛି । ଲକ୍ଷ୍ୟ କରିଛି ପତ୍ରପତ୍ରିକା ଓ ପୁସ୍ତକମାନଙ୍କର ମେଳରେ ବସି କ'ଣ କିଛି ଲେଖୁଥିବା ଅନନ୍ତବାବୁଙ୍କୁ । ତାଙ୍କର ପୁତ୍ର ଆଲୋକେଶ ଓ ଅମରେଶ ମୋର ସାନଭାଇ ପରି । ଅମରେଶ ମୋତେ ବୈଷ୍ଣବ ଭାଇ ବୋଲି ଡାକନ୍ତି । ଅନନ୍ତବାବୁଙ୍କ ପତ୍ନୀ ନୀରୋଦବାଳା ସୁଲେଖିକା ଓ ବଡ଼ ସ୍ନେହୀ ମହିଳାଟିଏ । ମୋ ପ୍ରତି ତାଙ୍କର ସ୍ନେହ ଠିକ୍ ତାଙ୍କ ପୁତ୍ରମାନଙ୍କ ପରି । ଅମରେଶ ପିତାଙ୍କ ପଦାଙ୍କ ଅନୁସରଣ କରି କବିଟିଏ ହେଲେ । କିଛିକାଳ 'ସୋଭିଏଟ ଦେଶ' ପତ୍ରିକାର ସଂପାଦକ ହେଲେ । ପରେ ଭାଇ ତିଆରି କରିଥିବା ଶଙ୍କରପୁର ଘରେ ସପରିବାର ରହିଲେ । ଆଲୋକେଶଙ୍କର ଅକାଳ ବିୟୋଗ ହୋଇଗଲା । ଅନନ୍ତବାବୁ ସେହି ନୂଆଘରକୁ ଆସିବା ପୂର୍ବରୁ ମୃତ୍ୟୁବରଣ କରିଗଲେ । ଗୁରୁଚରଣ ବାବୁ ସେହି ଘରେ ରହି କିଛି ବର୍ଷ ପରେ ଇହଧାମ ତ୍ୟାଗ କଲେ । ଏବେ ମଧ୍ୟ ମୁଁ ଯାଏ ଓ ଅମରେଶ ସହିତ ଦୁଃଖ ସୁଖ ହୁଏ । ମାତୃସମ ନୀରୋଦପ୍ରଭା ଦେବୀଙ୍କର ଗଭୀର ସ୍ନେହ ଅନୁଭବ କରେ ।

ଅନନ୍ତବାବୁଙ୍କ ପରେ ଆହୁରି କେତେଜଣ ସଭାପତି ହେଲେ । କୁଞ୍ଜବିହାରୀ ଦାଶ, ପଠାଣି ପଟ୍ଟନାୟକ, ବ୍ରଜମୋହନ ମହାନ୍ତି, ଅନାଦି ସାହୁ, ରତ୍ନାକର ଚଇନି, ଅନ୍ନଦାପ୍ରସାଦ ରାୟ ପ୍ରମୁଖ ସଭାପତି ଭାବରେ କାର୍ଯ୍ୟ ନିର୍ବାହ କଲେ । ମୁଁ ସାହିତ୍ୟ ସମାଜର କାର୍ଯ୍ୟକାରୀ କମିଟିରେ ଚାରିଥର ସଦସ୍ୟ ରହିଥିଲି । ମୁଁ ଲକ୍ଷ୍ୟ କରିଥିଲି ସଭାପତି, ସଂପାଦକ, ସହ-ସଂପାଦକ ହେବାପାଇଁ ପରସ୍ପର ଭିତରେ ସଂଘର୍ଷ ଓ ପ୍ରତିଯୋଗିତା । ଯିଏ ଯେତେବେଳେ ସଭାପତି ଓ ସଂପାଦକ ରହିଲେ ସିଏ ସେତେବେଳେ ସଭ୍ୟ ସଂଖ୍ୟା ବଢ଼ାଇଲେ ଆଗାମୀ ନିର୍ବାଚନକୁ ଆଖିରେ ରଖି । ଏହା ଆରମ୍ଭ ହେଲା ବ୍ରଜମୋହନ ମହାନ୍ତି, ମୁରାରିମୋହନ ଜେନା, ପରମାନନ୍ଦ ଅଧିକାରୀ ପ୍ରମୁଖଙ୍କଠାରୁ । ଏମାନଙ୍କ ପରେ ଏହା ଆହୁରି ଉତ୍କଟ ହୋଇଗଲା । ଏବେ ତାହା ଏକ ରାଜନୀତିକ ଅନୁଷ୍ଠାନରେ ପରିଣତ ହୋଇଯାଇଛି । ନିର୍ବାଚନ ବେଳେ ରାଜନୀତି ପରି ପୋଷ୍ଟର ଛପା, ଭୋଜି, ଲବି, ପ୍ରଚାର ଇତ୍ୟାଦି ଏପରି ହୋଇଯାଇଛି ଯେ ମନେହେବ ଏହା ଯେପରି ସାହିତ୍ୟ ସମାଜର ଭୋଟ ନୁହେଁ; ରାଜନୀତିର ଭୋଟ । ଏଥିରେ ମଧ୍ୟ ବିଭିନ୍ନ ରାଜନୀତିକ ଦଳର ଲୋକେ ସଂପୃକ୍ତ ହୋଇଯାଉଛନ୍ତି । ଏହି ସାହିତ୍ୟ ସମାଜ ସାରା ଓଡ଼ିଶାର ନ ହୋଇ କେବଳ କଟକର ହୋଇଯାଉଛି । ଏଥିପାଇଁ ମୁଁ ସେକାଳରେ ପ୍ରସ୍ତାବ ଦେଇଥିଲି ବିଭିନ୍ନ ଜିଲ୍ଲାରେ ଶାଖାନୁଷ୍ଠାନ ଗଢ଼ିବା ସହିତ ସେସବୁ ସ୍ଥାନରେ ସାହିତ୍ୟ ସମାଜ ତରଫରୁ ସଭା କରିବା ପାଇଁ । ମାତ୍ର ତାହା ହେଲା ନାହିଁ । ଖବରକାଗଜରେ ନାଁ ଓ ଫଟୋ ବାହାର କରିବା ଯେମିତି କର୍ତ୍ତାମାନଙ୍କର ଆଭିମୁଖ୍ୟ ହୋଇଯାଇଛି ।

ଅନେକଥର ମୁଁ ଲକ୍ଷ୍ୟ କରିଛି ସଭା ଚାଲୁଥିଲାବେଳେ କେତେକ ସଦସ୍ୟ ଏଣୁତେଣୁ ବାକ୍ୟେ କଥା କହିବାର ଦୃଶ୍ୟ । ଥରେ ବାଳକୃଷ୍ଣ କରଙ୍କର ଜୟନ୍ତୀ ଉତ୍ସବ ଚାଲୁଥାଏ । ମୁଁ ମଧ୍ୟ ଜଣେ ବକ୍ତା ଥିଲି । ଶ୍ରୋତା ମଞ୍ଚରୁ ଜଣେ ଉଠି ବାଳକୃଷ୍ଣ କର ଜଣେ ମୁଦି ବ୍ୟବସାୟୀ, ସେ ସାହିତ୍ୟିକ ନୁହନ୍ତି ଇତ୍ୟାଦି ପ୍ରଳାପ କରିବାରୁ ପ୍ରବଳ ପାଟିତୁଣ୍ଡ ହେଲା । ଆଉ ଥରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସ୍ମୃତିସଭା ହେଉଥାଏ । ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ ମୁଖ୍ୟ ଅତିଥି ଭାବରେ ଭାଷଣ ଦେଉଥାନ୍ତି । ହଠାତ୍ ରବି ମହାପାତ୍ର କୁଞ୍ଜବାବୁଙ୍କୁ ଏପରି କଡ଼ା ଭାଷାରେ କହିଲେ ଯେ ସେ କାନ୍ଦି ପକାଇଲେ ଓ କହିଲେ– 'ରବିବାବୁ, ମୁଁ ଆପଣଙ୍କର କି ଦୋଷ କରିଛି ଯେ ମୋତେ ଏପରି କହୁଛନ୍ତି ?' ଏ ଘଟଣାକୁ ମୁଁ ସହିପାରିଲି ନାହିଁ । କୁଞ୍ଜବାବୁ ମୋର ଏମ୍.ଏ. ଶ୍ରେଣୀର ଶିକ୍ଷକ । ସେ ଜଣେ ଋଷିପ୍ରତିମ ବ୍ୟକ୍ତି । ବଡ଼ ଧୀର ସ୍ଥିର । ମୁଁ ରବିବାବୁଙ୍କୁ ବିରୋଧ କଲି । କୁଞ୍ଜବାବୁ ତାଙ୍କର ବକ୍ତବ୍ୟ ଦେଲେ । ଡକ୍ଟର ରତ୍ନାକର ଚଇନି ଯେତେବେଳେ ସଭାପତି ହେଲେ ଉତ୍କଳ ସାହିତ୍ୟ ସମାଜର ଉନ୍ନତି ପାଇଁ ଉଦ୍ୟମ ହେଲା । ଅନାଦିବାବୁ ସଭାପତି ଥିବା ସମୟରେ ତାଙ୍କର ବ୍ୟକ୍ତିଗତ ପ୍ରଭାବରୁ ସେ ସାହିତ୍ୟ ସମାଜର ବିକାଶ ପ୍ରକ୍ରିୟା ଆରମ୍ଭ କରିଥିଲେ । ଡକ୍ଟର ଚଇନି ସଂପାଦକ ଓ ସଭାପତି ସମୟରେ ତାହାକୁ ଆଗେଇ ନେଲେ । ଶତାବ୍ଦୀ ଭବନ ସହିତ ଶ୍ରୀଧର ଦାସ ସ୍ମୃତିଭବନ ନିର୍ମିତ ହେଲା । ଉତ୍କଳ-ସାହିତ୍ୟ ସମାଜ ତରଫରୁ 'ଉତ୍କଳ-ରତ୍ନ' ଉପାଧି ସଙ୍ଗେ ସଙ୍ଗେ ନାନା ପୁରସ୍କାର ଦେବାର ଏକ ନୂତନ ପରଂପରା ସୃଷ୍ଟି ହେଲା । ଆଉ ଗୋଟିଏ କଥା ଲକ୍ଷ୍ୟ କଲି ଯେ କିଛି ଲୋକ ଶ୍ରୀରାମଚନ୍ଦ୍ର ଭବନରେ ଫଟୋ ଟଙ୍ଗେଇବାର ପ୍ରତିଯୋଗିତା କଲେ । କେତେ ଫଟୋ ଟଙ୍ଗା ହେଲା, ଯେଉଁମାନେ ସାହିତ୍ୟିକ ନୁହନ୍ତି । ଏହି ପ୍ରକ୍ରିୟାରେ ଧୂଆମୂଳା ଓ ଅଧୁଆ ମୂଳା ସମାନ ହୋଇଗଲେ ।

ଉତ୍କଳ ସାହିତ୍ୟ ସମାଜର ବିଭିନ୍ନ ସଭାକୁ ମୁଁ ଯାଏ ଅତିଥି ହୋଇ । ସାହିତ୍ୟ ସମାଜର ସଭାପତି ପଦ ପାଇଁ ମୋତେ କେତେକ ବନ୍ଧୁ ବାଧ୍ୟ କରି ଛିଡ଼ା କରାଇ ଦେଲେ, ପ୍ରଥମଥର ଅନ୍ନଦା ପ୍ରସାଦ ରାୟଙ୍କ ବିରୋଧରେ । ସେ ମୋର ବନ୍ଧୁ । ତାଙ୍କ ସହିତ ମୋର ପାରିବାରିକ ସଂପର୍କ ଅଥଚ ମୁଁ ତାଙ୍କ ବିରୋଧରେ ଛିଡ଼ା ହେଲି । ମୁଁ କାହାରିକୁ କହିଲି ନାହିଁ ବା ପାନେଲ କଲି ନାହିଁ । ଯେଉଁମାନେ ମୋତେ ଛିଡ଼ା କରାଇଥିଲେ ସେମାନେ ନୀରବ ରହିଗଲେ । ଭୋଟ ଦିନ ଅନ୍ନଦାବାବୁଙ୍କୁ ମୁଁ ଅଭିନନ୍ଦନ ଜଣାଇ ଘରକୁ ଚାଲିଆସିଲି । ସେ ସଭାପତି ହେଲେ । ମୋର ମଧ୍ୟ ଦୁଃଖ ହେଲା ନାହିଁ । ପୂର୍ବପରି ଆମର ବନ୍ଧୁତା ରହିଲା । ଆଉ ଥରେ ମୋତେ ରତ୍ନାକର ଚଇନିଙ୍କ ବିରୋଧରେ ଛିଡ଼ା କରାଇ ଦିଆଗଲା ମାତ୍ର ଦୁଇ ତିନି ଦିନ ପୂର୍ବରୁ । ରତ୍ନାକର ମୋର ସାନଭାଇ

ପରି । ଉଭୟଙ୍କ ଭିତରେ ଥିଲା ନିବିଡ଼ ବନ୍ଧୁତା । ମୁଁ ଯେତେବେଳେ ସଭାପତି ପଦ ପାଇଁ ଛିଡ଼ା ହେଲି ସେତେବେଳେ ମୋର ଧାରଣା ଥିଲା ଯେ ରତ୍ନାକରବାବୁ ତ ସଂପାଦକ ହୋଇଛନ୍ତି, ସଭାପତି ହୋଇଛନ୍ତି; ସିଏ ବୋଧହୁଏ ଆଉ ଛିଡ଼ା ହେବେ ନାହିଁ । ମାତ୍ର ସେ ଛିଡ଼ା ହେଲେ । ମୋର ଅନ୍ତରଙ୍ଗ ବନ୍ଧୁ କେତେଜଣ ତାଙ୍କ ପାଇଁ ପ୍ରଚାର କଲେ । ଭୋଟ ପୂର୍ବଦିନ ବଡ଼ଚଣା ଥାନା ଇନ୍‌ସପେକ୍ଟରଙ୍କ ନାମ ନେଇ ମୋତେ ଧମକ ଦିଆଯିବାରୁ ମୁଁ ଆଉ ପ୍ରାର୍ଥୀପତ୍ର ପ୍ରତ୍ୟାହାର ନ କରି ପ୍ରତିଯୋଗିତା କଲି । ମୁଁ ପ୍ରାର୍ଥୀ ବୋଲି କାହାକୁ ମଧ୍ୟ କହିଲି ନାହିଁ । ଏଥର ମୁଁ ଅଳ୍ପ ଭୋଟରେ ହାରିଗଲି । ଅଥଚ ମୁଁ ଆଦୌ ଦୁଃଖିତ ହେଲି ନାହିଁ । ଏହି ଭୋଟ ମୋତେ ଜଣେଇ ଦେଲା ଯେ କେହି କାହାର ବନ୍ଧୁ ନୁହେଁ, ସମସ୍ତେ ସ୍ୱାର୍ଥର । ମୁଁ କିନ୍ତୁ ନିଆରା ମଣିଷ । ଶତ୍ରୁଙ୍କୁ ମଧ୍ୟ ମୁଁ ଶତ୍ରୁ ଭାବେ ନାହିଁ । ସମସ୍ତେ ମୋର ମିତ୍ର । ଏଥିପାଇଁ ବିପଦରେ ପଡ଼ିଛି ମାତ୍ର ମୁଁ ହୋଇଯାଇଛି ବିପଦମୁକ୍ତ ।

ସାହିତ୍ୟ ସମାଜକୁ ମୁଁ ଭଲ ପାଏ । ମୋ ଜାତି, ମୋ ଭାଷା, ମୋ ସାହିତ୍ୟ ଓ ସଂସ୍କୃତିର ଏହା ତୀର୍ଥଭୂମି । ଏହାର ମର୍ଯ୍ୟାଦା ବଢୁ ଓ ଏହା ରାଜନୀତିରୁ ମୁକ୍ତ ରହୁ– ଏହାହିଁ ମୋର ଅନ୍ତରର କାମନା । ଉତ୍କଳ ସାହିତ୍ୟ ସମାଜ ମୋତେ ଶ୍ରେଷ୍ଠ ପ୍ରାବନ୍ଧିକ ଓ ସମାଲୋଚକ ଭାବରେ ପୁରସ୍କୃତ କରିଅଛନ୍ତି । ଏଥିପାଇଁ ମୁଁ ଆନନ୍ଦିତ ।

## ଅନ୍ୟାନ୍ୟ ସାରସ୍ୱତ ଅନୁଷ୍ଠାନ ସହିତ ମୋର ସଂପର୍କ

କଟକ ସହରରେ ତଥା ଅନ୍ୟାନ୍ୟ ଅଞ୍ଚଳରେ ଗଢ଼ି ଉଠିଥିବା ବିବିଧ ସାରସ୍ୱତ ସଂଗଠନ ସହିତ ମୋର ସଂପର୍କ ରହିଛି । କଟକରେ ବହୁ ଦିନରୁ ପ୍ରତିଷ୍ଠିତ 'ଦି ୟୁନିଭର୍ସ' ସହିତ ମୋର ସଂପର୍କ ନିବିଡ଼ । ଶ୍ରୀଯୁକ୍ତ ଗିରିଜା ଭୂଷଣ ପଟ୍ଟନାୟକ ଏହାର ପ୍ରତିଷ୍ଠାତା । ତାଙ୍କରି ଉଦ୍ୟମରେ 'ଦି ୟୁନିଭର୍ସ' ସଂପ୍ରତି ଏକ ଅଗ୍ରଣୀ ସାଂସ୍କୃତିକ ଓ ସାହିତ୍ୟିକ ଅନୁଷ୍ଠାନରେ ପରିଣତ । ଅନେକ ଉପାଦେୟ ପୁସ୍ତକ ଏହି ଅନୁଷ୍ଠାନ ପ୍ରକାଶ କରିଅଛି । ବିଭିନ୍ନ ବିଷୟରେ ଭାବ ବିନିମୟ ପାଇଁ ଏହି ଅନୁଷ୍ଠାନରେ ପ୍ରତି ମାସରେ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥାଏ । ବହୁ ବିଦ୍ୱାନ୍ ବ୍ୟକ୍ତି, ରାଜନେତା, ସାହିତ୍ୟିକ, ସାମ୍ବାଦିକ, ସମାଜସେବୀ ପ୍ରମୁଖ ନିମନ୍ତ୍ରିତ ହୋଇ ନିର୍ଦ୍ଧାରିତ ବିଷୟ ଉପରେ ବକ୍ତବ୍ୟ ଦିଅନ୍ତି । ଏବେ କିଛି ଦିନ ହେଲା ଗିରିଜାବାବୁ ଅସୁସ୍ଥ ଓ ଶଯ୍ୟାଶାୟୀ । କିଶୋରବାବୁ ଏହି କାର୍ଯ୍ୟ ଚଳାଉଅଛନ୍ତି । ଗିରିଜାବାବୁ ମୋତେ ସାନଭାଇ ପରି ଦେଖନ୍ତି । ସେ ଓ ତାଙ୍କ ପତ୍ନୀ କମଳାକୁମାରୀ ଦେବୀ ମୋ ଝିଅ ଓ ପୁଅ ବାହାଘରକୁ ଆସି ବରକନ୍ୟାକୁ ଆଶୀର୍ବାଦ ଦେଇଛନ୍ତି । ଅନେକଥର ମୋତେ ୟୁନିଭର୍ସର ସଭାରେ ନିର୍ଦ୍ଦିଷ୍ଟ ବିଷୟ ଉପରେ ବକ୍ତବ୍ୟ

ଦେବାକୁ ଡାକିଛନ୍ତି, ଏବେ ମଧ ଡାକୁଛନ୍ତି । ମୁଁ ଯାଏ । ଉପସ୍ଥିତ ବିଦ୍ୱାନ୍‌ମାନଙ୍କ ସହିତ ଭାବ ବିନିମୟ ହୁଏ । ମୁଁ ବି ୟୁନିଭର୍ସ ସହିତ ଆତ୍ମିକ ବନ୍ଧନରେ ଅନୁବନ୍ଧିତ । ଗିରିଜାବାବୁଙ୍କ ସ୍ନେହ ଶ୍ରଦ୍ଧା ମୋତେ ବହୁ ଭାବରେ ଅନୁପ୍ରାଣିତ କରିଛି ।

'ଗବେଷଣା ପରିଷଦ' ଆଉ ଏକ ବଳିଷ୍ଠ ସାରସ୍ୱତ ଅନୁଷ୍ଠାନ । ଡକ୍ଟର କୃଷ୍ଣଚରଣ ବେହେରା ତାହାର ସଭାପତି । ପ୍ରତିଷ୍ଠାତା ସଂପାଦକ ଥିଲେ ଡକ୍ଟର କ୍ଷେତ୍ରବାସୀ ନାୟକ । ତାଙ୍କର ତିରୋଧାନ ପରେ ତାଙ୍କ ପତ୍ନୀ ଡକ୍ଟର ଲାବଣ୍ୟ ନାୟକ ସଂପାଦିକା ଅଛନ୍ତି । ଏହି ପରିଷଦର ମୁଁ ଜଣେ ସଦସ୍ୟ । ମୋର ଘନିଷ୍ଠ ବନ୍ଧୁ କ୍ଷେତ୍ରବାସୀ ବାବୁ । ସେ ଏହିପରି ଏକ ସାରସ୍ୱତ ଅନୁଷ୍ଠାନର ସ୍ୱପ୍ନ ଦେଖିଥିଲେ ଓ ସେହି ସ୍ୱପ୍ନକୁ ସାକାର କଲେ । ସେ ଥିଲେ ଜଣେ କବି, ଗାଳ୍ପିକ ଓ ସମାଲୋଚକ । ଗବେଷଣା ଥିଲା ତାଙ୍କର ଏକାନ୍ତ ଆପଣାର ବିଷୟ । ମୁଁ ତାଙ୍କୁ ବହୁତ ଭଲ ପାଏ । ବିନୋଦବିହାରୀ ବହି ଦୋକାନରେ ତାଙ୍କ ସହିତ ମୋର ବାରମ୍ବାର ଆଲୋଚନା ହୁଏ । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଥିଲାବେଳେ ଥରେ ଓଡ଼ିଆ ଅଧ୍ୟାପକମାନଙ୍କର ସମ୍ମିଳନୀ ହେଲା । ଶ୍ରୀଯୁକ୍ତ ଅବନୀ ବରାଳ ଥିଲେ ସଭାପତି । ସେ ବଡ଼ ସ୍ୱାଭିମାନୀ ଓ ସ୍ପଷ୍ଟବାଦୀ । ଓଡ଼ିଆ ଅଧ୍ୟାପକ ସମ୍ମିଳନୀକୁ ସେ ଯଥାର୍ଥରେ ନୂତନ କ୍ରାନ୍ତି ଦେଇଥିଲେ । କ୍ଷେତ୍ରବାସୀବାବୁ ମୋ ରୁମ୍‌କୁ ଆସି ମୋତେ ପ୍ରସ୍ତାବ ଦେଲେ– କେବଳ ସଭା କରିଦେଇ ଭାଷଣବାଜି କରିଦେଲେ କିଛି ହେବ ନାହିଁ । ଗୋଟିଏ ଅଧିବେଶନରେ ସେମିନାର କରିବା । ଏକ ନିର୍ଦ୍ଦିଷ୍ଟ ବିଷୟରେ ଆଲୋଚକମାନେ ପ୍ରବନ୍ଧ ଉପସ୍ଥାପନ କରିବା ଉଚିତ । ମୁଁ ଏଥିରେ ଏକମତ ହେଲି । ସେମିନାର ଖୁବ୍ ସୁନ୍ଦର ଭାବରେ ହେଲା । ପ୍ରବନ୍ଧ ମୁଁ ଲେଖିଲି, କ୍ଷେତ୍ରବାସୀବାବୁ ମଧ ଲେଖିଲେ । ମୁଁ ସେଦିନ ଅନୁଭବ କଲି କ୍ଷେତ୍ରବାସୀବାବୁ ଭାଷଣ ଦେଇ ଶୂନ୍ୟରେ ଭସେଇ ଦେବାକୁ ଚାହାନ୍ତି ନାହିଁ । ସିଏ ଯେଉଁଠିକୁ ଯାଆନ୍ତି ଲିଖିତ ଭାଷଣ ଦିଅନ୍ତି । ତାଙ୍କ ଗୁରୁ ଡକ୍ଟର କୃଷ୍ଣଚରଣ ବେହେରାଙ୍କଠାରୁ ସେ ଏକଥା ଶିଖିଥାଆନ୍ତି । ଗବେଷଣା ପରିଷଦ ସହିତ ମୁଁ ଜଡ଼ିତ ହୋଇଗଲି । ପୁରୀରେ ଅନୁଷ୍ଠିତ ଗବେଷଣା ପରିଷଦର ଏକ ସେମିନାରରେ ମୁଁ ଓଡ଼ିଆ ଗଳ୍ପରେ ହାସ୍ୟ ଓ ବ୍ୟଙ୍ଗ ଶୀର୍ଷକ ଏକ ପ୍ରବନ୍ଧ ଉପସ୍ଥାପନ କରିଥିଲି ଓ ତାହା ପ୍ରଶଂସିତ ହୋଇଥିଲା । ଥରେ କ୍ଷେତ୍ରବାସୀବାବୁ ପ୍ରସ୍ତାବ ଦେଲେ ଚାଉଳିଆଗଞ୍ଜ ଦୁର୍ଗାଘର ସଭାଗୃହରେ ସେମିନାର କରିବା ପାଇଁ । ମୁଁ ତ ଚାଉଳିଆଗଞ୍ଜରେ ରହୁଥାଏ । ମୁଁ ରାଜି ହୋଇଗଲି । ମୁଁ ଦୁର୍ଗା ମନ୍ଦିରର ପରିଚାଳନା କମିଟିରେ ସଭ୍ୟ ଥାଏ । ମୋତେ ଏହି ଅଞ୍ଚଳର ସମସ୍ତେ ଖୁବ୍ ଶ୍ରଦ୍ଧା କରନ୍ତି । ମୁଁ ଯେତେବେଳେ କମିଟିର ସଦସ୍ୟମାନଙ୍କୁ ଏ ପ୍ରସ୍ତାବ ଦେଲି ସମସ୍ତେ ରାଜି ହୋଇଗଲେ । ପ୍ରଥମଥର ପାଇଁ ଚାଉଳିଆଗଞ୍ଜରେ ବହୁ ବିଦ୍ୱାନ୍ ସାହିତ୍ୟିକମାନଙ୍କ ଉପସ୍ଥିତିରେ ସେମିନାର ହେବ, ଏ

ପ୍ରସ୍ତାବରେ ବୟସ୍କ ସଦସ୍ୟମାନଙ୍କ ସହିତ ଯୁବକମାନେ ମଧ୍ୟ ଉତ୍ସାହିତ ହେଲେ । ସେମାନେ ଚା' ଜଳଖିଆ ଓ ପ୍ରସାଦର ବ୍ୟବସ୍ଥା କରିଦେଲେ । ସେଦିନ ସଭାରେ ପ୍ରଫେସର ଲୋକରତ୍ନ କୁଞ୍ଜବିହାରୀ ଦାଶ ସଭାପତି ହେଲେ । ଅନ୍ୟମାନଙ୍କ ମଧ୍ୟରେ ଡକ୍ଟର କୃଷ୍ଣଚରଣ ବେହେରା, ଚିତ୍ତରଂଜନ ଦାସ, ଡକ୍ଟର କ୍ଷେତ୍ରବାସୀ ନାୟକ (ସଂପାଦକ), ଡକ୍ଟର ଲାବଣ୍ୟ ନାୟକ, ଡକ୍ଟର କୁଳମଣି ରାଉତ ପ୍ରମୁଖ ପ୍ରାୟ ତିରିଶ/ଚାଳିଶି ଜଣ ବିଦ୍ୱାନ ଉପସ୍ଥିତ ଥିଲେ । ଦୁର୍ଗା କମିଟିର ସଭାପତି ରାମଚନ୍ଦ୍ର ପୃଷ୍ଟି, ବିଶିଷ୍ଟ ବ୍ୟକ୍ତି ଲୋକନାଥ ପାତ୍ର, କୃଷ୍ଣଚନ୍ଦ୍ର ପାତ୍ର ପ୍ରମୁଖ ମଧ୍ୟ ଉପସ୍ଥିତ ଥିଲେ । ସେଦିନ ମୁଁ ପ୍ରବନ୍ଧ ପଢ଼ିଲି 'ଓଡ଼ିଆ ଅଭିଭାଷଣ' ସଂପର୍କରେ । ସେ ପର୍ଯ୍ୟନ୍ତ ଅଭିଭାଷଣ ସଂପର୍କରେ କୌଣସି ସମାଲୋଚକ ଦୃଷ୍ଟିପାତ କରି ନ ଥିଲେ । ମୁଁ ପ୍ରଥମଥର ପାଇଁ ଏକ ଦୀର୍ଘ ପ୍ରବନ୍ଧରେ ବକ୍ତୃତା, ଭାଷଣ ଓ ଅଭିଭାଷଣର ସ୍ୱରୂପ ସଂପର୍କରେ ବିଶ୍ଳେଷଣ କରି ଓଡ଼ିଆ ଅଭିଭାଷଣର ତାତ୍ପର୍ଯ୍ୟ ବିଷୟରେ ଉଲ୍ଲେଖ କରିଥିଲି । ମୋ ପ୍ରବନ୍ଧରେ କୁଳବୃଦ୍ଧ ମଧୁସୂଦନ ଦାସଙ୍କର ଅଭିଭାଷଣ ବିଷୟରେ ଆଲୋଚନା କରି ତାଙ୍କର ଓଡ଼ିଆ ପ୍ରୀତି, ସ୍ୱାଭିମାନବୋଧ ଓ ତ୍ୟାଗ ବିଷୟରେ ଉଲ୍ଲେଖ ମଧ୍ୟ କରିଥିଲି । ମୋ ପ୍ରବନ୍ଧ ପାଠ ସରିବା ପରେ ପ୍ରଥମେ ଚିତ୍ତରଂଜନ ଦାସ ଆଲୋଚନା କଲେ । ସେ ମଧୁସୂଦନଙ୍କୁ ସଂକୀର୍ଣ୍ଣ କହିବା ସଙ୍ଗେ ସଙ୍ଗେ ତାଙ୍କର ଓଡ଼ିଶା ବାହାରେ ଯେ ବିରାଟ ବିଶ୍ୱ ଅଛି ସେ ସଂପର୍କରେ ଆଦୌ ଜ୍ଞାନ ନ ଥିଲା ବୋଲି କହିଲେ । କେବଳ ଓଡ଼ିଆ ଓଡ଼ିଆ, ଓଡ଼ିଶା ଓଡ଼ିଶା ହୋଇ କେବଳ ମଧୁବାବୁ ନୁହନ୍ତି; ସେକାଳର ଅନ୍ୟମାନେ ମଧ୍ୟ ଚାଲିଗଲେ । ମୁଁ ତାଙ୍କର ମନ୍ତବ୍ୟର ବିରୋଧରେ କହିଲି ମଧୁସୂଦନ ଯଦି ଓଡ଼ିଆ ଓ ଓଡ଼ିଶା କଥା କହି ନ ଥାନ୍ତେ, ଉତ୍କଳ ସମ୍ମିଳନୀ ଗଠନ କରି ଯଦି ଆନ୍ଦୋଳନ ଓ ଦାବି ଉପସ୍ଥାପନ କରି ନ ଥାନ୍ତେ ତେବେ ଓଡ଼ିଶା ପ୍ରଦେଶ ତ ଗଠିତ ହୋଇ ନ ଥାନ୍ତା, ଚିତ୍ତବାବୁ ମଧ୍ୟ ଆଜି ଓଡ଼ିଆ କହିବାକୁ ବୋଧହୁଏ ସମର୍ଥ ହୋଇ ନ ଥାନ୍ତେ । ଓଡ଼ିଶାର ପ୍ରଥମ ବ୍ୟକ୍ତି ମଧୁସୂଦନ ୧୮୯୭ ମସିହାରେ ଲଣ୍ଡନ ଯାଇ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଦାବି ଉପସ୍ଥାପନ କରିଥିଲେ, ପରେ ମଧ୍ୟ ଲଣ୍ଡନ ଯାଇଥିଲେ, ଭାରତୀୟ ଜାତୀୟ କଂଗ୍ରେସରେ ପ୍ରଥମ ସଦସ୍ୟ ହୋଇଥିଲେ (୧୮୮୬) ଓ ଓଡ଼ିଶାର ଦାବି ଗ୍ରହଣ ନ କରିବାରୁ ମାଡ୍ରାସ କଂଗ୍ରେସ ଅଧିବେଶନରେ ପ୍ରତିବାଦସ୍ୱରୂପ ଇସ୍ତଫା ଦେଇଥିଲେ, ଉତ୍ତର ଭାରତରେ ଅନୁଷ୍ଠିତ ସର୍ବଭାରତୀୟ ଖ୍ରୀଷ୍ଟଧର୍ମ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ, ଓଡ଼ିଶାର ଦାବି ସଂପର୍କରେ ଲର୍ଡ କର୍ଜନଙ୍କ ସହିତ ସିମିଳାରେ ଆଲୋଚନା କରିଥିଲେ, ଗାନ୍ଧିଜୀ ତାଙ୍କର ଜୋତା କାରଖାନା ଦେଖି ତନ୍ମୟ ହୋଇ ୟଙ୍ଗ ଇଣ୍ଡିଆରେ ପ୍ରଶଂସା କରି ଲେଖିଥିଲେ, ତାଙ୍କର ଓଡ଼ିଶା ବାହାରେ ଜ୍ଞାନ ନାହିଁ, ସଂକୀର୍ଣ୍ଣ ହୋଇଗଲେ; ଆଉ କେବଳ ଚିତ୍ତ ଭାଇଙ୍କର ଜ୍ଞାନ ଅଛି ଏହା ମୋତେ ବିସ୍ମିତ

କରୁଛି । ଏପରି ମୁଁ କହୁଥିଲାବେଳେ ସଭାପତି କୁଞ୍ଜବିହାରୀ ଦାଶ ଚିତ୍ତଭାଇଙ୍କ ବକ୍ତବ୍ୟକୁ ନିନ୍ଦା କଲେ ଓ ଅନ୍ୟମାନେ ମଧ୍ୟ ମୋ କଥାକୁ ସମର୍ଥନ କଲେ ।

ଗବେଷଣା ପରିଷଦର ମୁଖପତ୍ର 'ଏଷଣା' । ଏ ପର୍ଯ୍ୟନ୍ତ ଏହି ପତ୍ରିକା ପ୍ରକାଶ ପାଇ ଆସୁଅଛି ଓ ବିଭିନ୍ନ ସମୟରେ ସେମିନାର ଅନୁଷ୍ଠିତ ହେଉଅଛି । ମୋତେ ମଧ୍ୟ 'କ୍ଷେତ୍ରବାସୀ ବିଦ୍ୟା ପୁରସ୍କାର' ପ୍ରଦାନ କରାଯାଇଛି । କ୍ଷେତ୍ରବାସୀବାବୁଙ୍କ ତିରୋଧାନ ହୋଇଗଲା ଅକାଳରେ । ମୁଁ ତାଙ୍କ ରୋଗଶଯ୍ୟା ପାଖରେ ଥିଲି । ତାଙ୍କର ଦେହାନ୍ତ ହେଲା । ଓଡ଼ିଆ ସାହିତ୍ୟର ଏକ ସମ୍ଭାବନାମୟ ପ୍ରତିଭାର ଅବସାନ ଘଟିଗଲା । ଏବେ ମଧ୍ୟ ମୁଁ ସମୟେ ସମୟେ ଗବେଷଣା ପରିଷଦର ସେମିନାରକୁ ଓ କ୍ଷେତ୍ରବାସୀ ବାବୁଙ୍କ ସ୍ମୃତି ସଭାକୁ ଯାଏ । ଡକ୍ଟର କୃଷ୍ଣଚରଣ ବେହେରା ଜଣେ ସ୍ନେହୀ ମଣିଷ । ସେ ମୋତେ ବହୁ ଶ୍ରଦ୍ଧା କରନ୍ତି । ତାଙ୍କର ଓଡ଼ିଆତ୍ୱର ସ୍ୱାଭିମାନକୁ ମୁଁ ବାରମ୍ବାର ପ୍ରଣାମ ଜଣାଏ । ତାଙ୍କର ପୁତ୍ର ଶୁଭକାନ୍ତ ଭାରତ ସରକାରଙ୍କର ବିଦେଶ ସେବା ବିଭାଗର ଜଣେ ବରିଷ୍ଠ ଅଧିକାରୀ ଭାବରେ ଅଷ୍ଟ୍ରେଲିଆରେ ଥିଲାବେଳେ ହୃଦ୍‌ଘାତରେ ତାଙ୍କର ବିୟୋଗ ହୋଇଗଲା । ସେତେବେଳେ କୃଷ୍ଣବାବୁଙ୍କ ଧୈର୍ଯ୍ୟକୁ ମୁଁ ଲକ୍ଷ୍ୟ କରିଛି । କିଛିଦିନ ପୂର୍ବରୁ ତାଙ୍କର ପତ୍ନୀ ବିୟୋଗ ହୋଇଥିଲା । ସେ ଦୁଃଖକୁ ସେ ସହିଥିଲେ । ପୁତ୍ର ବିୟୋଗ ତାଙ୍କୁ ଗଭୀର ଦୁଃଖ ଦେଇଥିଲେ ମଧ୍ୟ ଗବେଷଣା ପରିଷଦ କାର୍ଯ୍ୟ ସେ ପୂର୍ବବତ୍ ତୁଲାଉଅଛନ୍ତି । ଏପରି ଜଣେ ସ୍ନେହୀ ଓ ସ୍ୱାଭିମାନୀ ବ୍ୟକ୍ତି କ୍ୱଚିତ୍ ଦେଖିଛି । ତାଙ୍କ ସହିତ ମାଧ୍ୟମିକ ଶିକ୍ଷା ପରିଷଦର ସିଲାବସ୍ କମିଟିରେ କାର୍ଯ୍ୟ କରୁଥିଲାବେଳେ ମୁଁ ତାଙ୍କର ବିଦ୍‌ବତ୍ତାକୁ ଲକ୍ଷ୍ୟ କରିଛି । ମୁଁ ମଧ୍ୟ ତାଙ୍କର ଗଳ୍ପ ସମଗ୍ର ଉପରେ ଆଲୋଚନା ଲେଖିଛି । ଶୁଭକାନ୍ତବାବୁ ମାଧ୍ୟମିକ ଶିକ୍ଷା ପରିଷଦର ସଭାପତି ଥିଲାବେଳେ ମୁଁ ତାଙ୍କ ସଂପର୍କରେ ଆସିଛି । ମୁଁ ଅନୁଭବ କଲି ତାଙ୍କର ଗଭୀର ଓଡ଼ିଆ ଭାଷାପ୍ରୀତିକୁ । ଗବେଷଣା ପରିଷଦକୁ ନେଇ ଦିଲ୍ଲୀରେ ସେ ଗୋଟିଏ ସେମିନାର କରିଥିଲେ । ବୋର୍ଡ଼ର ସଭାପତି ଭାବରେ ସେ ନବମ ଦଶମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କୁ ସରଳ ଭାଷାରେ ଓଡ଼ିଆ ସାହିତ୍ୟର ଇତିହାସ ସଂପର୍କରେ ଜାଣିବା ପାଇଁ ସାହିତ୍ୟ ବହିରେ ଲେଖା ଦେବାପାଇଁ କହିଲେ । ସେଦିନ ମୁଁ ଅନୁଭବ କଲି ତାଙ୍କର କ୍ରାନ୍ତିକାରୀ ଦୃଷ୍ଟିକୋଣ ବିଷୟରେ । ତାଙ୍କ ଅନୁରୋଧକ୍ରମେ ମୁଁ ନବମ ଓ ଦଶମ ଶ୍ରେଣୀ ପାଇଁ ଓଡ଼ିଆ ସାହିତ୍ୟର ଇତିହାସ ସଂକ୍ଷେପରେ ଲେଖିଲି । ଆଜି ସେ ନାହାନ୍ତି ସତ; ମାତ୍ର ତାଙ୍କର ସାରସ୍ୱତ ବ୍ୟକ୍ତିତ୍ୱ ଏବେ ମଧ୍ୟ ଉଜ୍ଜୀବିତ ରହିଛି । ଡକ୍ଟର କୃଷ୍ଣଚରଣ ବେହେରା ମଧ୍ୟ ଚିନ୍ତା କଲେ ଓଡ଼ିଆ ବିଶ୍ୱବିଦ୍ୟାଳୟ ପାଇଁ । ଶୁଭକାନ୍ତ ବାବୁ ଏ ଦିଗରେ ନେତୃତ୍ୱ ନେଲେ । ଅଧ୍ୟାପିକା ଓ ବିଧାୟିକା କବି ଡକ୍ଟର ସିପ୍ରା ମଲ୍ଲିକ ଏ ବିଷୟରେ ବିଧାନସଭାରେ ପ୍ରସ୍ତାବ ଆଗତ

କଲେ । ସେ ମଧ୍ୟ ମୋତେ ଏପରି ଏକ ବିଷୟର ଗୁରୁତ୍ୱ ସଂପର୍କରେ କହିଥିଲେ । ଏହା ଏବେ ମଧ୍ୟ କାର୍ଯ୍ୟକାରୀ ହୋଇ ନାହିଁ । ଏଥିପାଇଁ ଯେଉଁ ଓଡ଼ିଆ ମାନସିକତା ଦରକାର ତାହା ଏ ପର୍ଯ୍ୟନ୍ତ ସୃଷ୍ଟି ହୋଇ ନାହିଁ ।

ଅନ୍ୟାନ୍ୟ ବହୁ ସାରସ୍ୱତ ଓ ସଂସ୍କୃତି ଅନୁଷ୍ଠାନ ସହିତ ମୋର ସଂପର୍କ ରହିଛି । ସେହି ସବୁ ଅନୁଷ୍ଠାନର ସଂପାଦକ ଓ ଅନ୍ୟ କର୍ମକର୍ତ୍ତାମାନେ ମୋ ଘରକୁ ଆସନ୍ତି । ମୋତେ ମଧ୍ୟ ନିମନ୍ତ୍ରଣ କରନ୍ତି ସେମାନଙ୍କ ସଭାକୁ ଯିବା ପାଇଁ । ଏପରି ଗୋଟିଏ ସାରସ୍ୱତ ଅନୁଷ୍ଠାନ 'ଧର୍ମଶାଳାର ଗୋକର୍ଣ୍ଣିକା ସାହିତ୍ୟ ସମାଜ' । ତାହାର ସଭାପତି ଥିଲେ ଆଦର୍ଶ ଶିକ୍ଷକ ଓ ଉଚ୍ଚକୋଟୀର ଚିନ୍ତାଶୀଳ ପ୍ରାବନ୍ଧିକ ବୈକୁଣ୍ଠନାଥ ରଥ । ସେ ଜଣେ ବହୁପାଠୀ ବିଦ୍ୱାନ୍ ବ୍ୟକ୍ତି । ମୋ ପ୍ରତି ତାଙ୍କର ଧାରଣା ଉଚ୍ଚକୋଟୀର । ତାଙ୍କ ଉଦ୍ୟମରେ 'ଗୋକର୍ଣ୍ଣିକା' ସାହିତ୍ୟ ପତ୍ରିକା ବାହାରୁଥିଲା । ଏହି ପତ୍ରିକାର ସଂପାଦକ ଥିଲେ ରମାକାନ୍ତ ଜେନା । ବଡ଼ ଉଦ୍ୟମୀ ବ୍ୟକ୍ତି । ନିଜେ ମଧ୍ୟ କବିତା ଲେଖନ୍ତି । କେତୋଟି କବିତା ପୁସ୍ତକ ତାଙ୍କର ପ୍ରକାଶିତ । ସେ ପତ୍ରିକା ପ୍ରକାଶନ ସହିତ ଅନ୍ୟମାନଙ୍କର କେତୋଟି ପୁସ୍ତକ ପ୍ରକାଶ କରିଛନ୍ତି ଓ ଗୋଟିଏ ପାଠାଗାର ମଧ୍ୟ ପ୍ରତିଷ୍ଠା କରିଛନ୍ତି । ଏହି ପତ୍ରିକା, ପାଠାଗାର ଓ ସାରସ୍ୱତ ଅନୁଷ୍ଠାନ ପ୍ରତି ସେ ଅଙ୍ଗୀକାରବଦ୍ଧ । ଗୋକର୍ଣ୍ଣିକା ସାହିତ୍ୟ ସଭାକୁ ମୁଁ ଅନେକଥର ଅତିଥି ହୋଇଯାଇଛି । ମୋତେ ମଧ୍ୟ ଗୋକର୍ଣ୍ଣିକା ସାହିତ୍ୟ ପୁରସ୍କାର ପ୍ରଦାନ କରାଯାଇଛି । ବୈକୁଣ୍ଠ ବାବୁଙ୍କ ଘରକୁ ଯାଇଛି । ତାଙ୍କର ପୁତ୍ର ତୁହିନାଂଶ ଜଣେ କବି ଓ ଅଧ୍ୟାପକ । ସେ ମଧ୍ୟ ମୋତେ ସମ୍ମାନ ଦିଅନ୍ତି । ବୈକୁଣ୍ଠବାବୁଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଯାଇଥିଲେ କଲିକତା ତାଙ୍କ ଝିଅଙ୍କ ପାଖକୁ । ସେତେବେଳେ ମୁଁ ବିଶ୍ୱଭାରତୀରେ ଥାଏ । କଲିକତାରୁ ସେ ହଠାତ୍ ମୋ ପାଖକୁ ଆସିଗଲେ । ମୋ ବସାରେ ରହିଲେ । ସେଦିନ ତାଙ୍କର ଉଚ୍ଛ୍ୱସିତ ବ୍ୟବହାରରେ ମୁଁ ମୁଗ୍ଧ ହେଲି । ସଦ୍ୟ ପ୍ରକାଶିତ ତାଙ୍କ ଆତ୍ମଜୀବନୀ 'ଗବାକ୍ଷ' ମୋତେ ପ୍ରଦାନ କଲେ । ସେହି ଆତ୍ମଜୀବନୀ ପଢ଼ି ମୁଁ ତନ୍ମୟ ହେଲି । ତାଙ୍କ ପ୍ରବନ୍ଧ ଉପରେ ମୁଁ ଦୀର୍ଘ ଆଲୋଚନା ମଧ୍ୟ ଲେଖିଥିଲି । ସେ କଲିକତାରୁ ଗ୍ରାମକୁ ଫେରିବା ପରେ ତାଙ୍କର ହେଲା ଅକାଳ ବିୟୋଗ ।

'ଗୋକର୍ଣ୍ଣିକା' ଏବେ ସାମୟିକ ପ୍ରକାଶ ପାଉଛି । ରମାକାନ୍ତବାବୁ ମିଥ୍ୟା ମୋକଦ୍ଦମାରେ ଛନ୍ଦି ହୋଇ ସାରସ୍ୱତ କାର୍ଯ୍ୟକୁ ଧିମେଇ ଦେଲେ । ଏବେ ଗୋକର୍ଣ୍ଣିକା ସାହିତ୍ୟ ପରିଷଦ ରାଜନୀତି ଆଡ଼କୁ ମୁହାଁଇ ଯାଇଥିଲା ପରି ମନେହୁଏ । ରାଜନେତା ନ ହେଲେ ଯେପରି ସାହିତ୍ୟ ସଭା ହେବା ସମ୍ଭବ ନୁହେଁ । ମୁଁ ପୁଣି ଲକ୍ଷ୍ୟ କରୁଛି ଯେ ବଡ଼ବଡ଼ିଆ ଲେଖକମାନଙ୍କୁ ସଭାକୁ ଆମନ୍ତ୍ରଣ କରି ଭବ୍ୟ ସମ୍ବର୍ଦ୍ଧନା ନ ଦେଲେ ନିଜେ ହୁଏତ କୌଣସି ସମ୍ମାନ ବା ପୁରସ୍କାର ପାଇବା ସହଜ ହୁଏ ନାହିଁ । ଏପରି ମନୋବୃତ୍ତି

ଯେଉଁଠି ପ୍ରକାଶ ପାଉଛି ସେହି ଅନୁଷ୍ଠାନ ବେଶିଦିନ ତିଷ୍ଠିପାରୁ ନାହିଁ । ରମାକାନ୍ତବାବୁ ମୋର ବନ୍ଧୁ । ସେ ଆସନ୍ତି ମୋ ଘରକୁ, ବିବାହ ବ୍ରତକୁ ।

ସେହି ଯାଜପୁର ଅଞ୍ଚଳରୁ ଅଧ୍ୟାପକ ଡକ୍ଟର ନବକିଶୋର ମିଶ୍ରଙ୍କ ସଂପାଦନାରେ ପ୍ରକାଶ ପାଉଛି 'ବର୍ତ୍ତିକା' ପରି ଏକ ମନୋଜ୍ଞ ପତ୍ରିକା । ନବବାବୁ ବଉଳାଙ୍ଗ କଲେଜର ସଂସ୍କୃତ ବିଭାଗର ଅଧ୍ୟାପକ । ପ୍ରଫେସର ଡକ୍ଟର ଶ୍ରୀନିବାସ ମିଶ୍ରଙ୍କର ସେ ସାନଭାଇ । ସେ ନିଜେ ଲେଖକ ଓ ଲେଖକ/ଲେଖିକାମାନଙ୍କୁ ଉତ୍ସାହିତ କରନ୍ତି । ସେ ମଧ୍ୟ ମଙ୍ଗଳପୁର ନିକଟବର୍ତ୍ତୀ ଦଶରଥପୁରଠାରେ 'ସଂସ୍କୃତି ଭବନ' ପ୍ରତିଷ୍ଠା କରିଛନ୍ତି । 'ସାରସ୍ୱତ ସାହିତ୍ୟ ସାଂସ୍କୃତିକ ପରିଷଦ' ଗଠନ କରି ଯାଜପୁର ଅଞ୍ଚଳରେ ଏକ ସାରସ୍ୱତ ବିପ୍ଳବର ସୂତ୍ରପାତ କରିବା ସଙ୍ଗେ ସଙ୍ଗେ 'ବର୍ତ୍ତିକା' ପତ୍ରିକା ପ୍ରକାଶ କରୁଅଛନ୍ତି । ଏହା ସହିତ ମଧ୍ୟ ସେ ସଂସ୍କୃତି ଭବନରେ ପଣ୍ଡିତ ଗୋଦାବରୀଶ ମିଶ୍ର ସ୍ମାରକ ସଦ୍‌ଗ୍ରନ୍ଥ ପାଠାଗାର କରିଛନ୍ତି । ସୁପ୍ରିମକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ଓ ପୂର୍ବତନ ସାଂସଦ ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ରଙ୍କ ସାହାଯ୍ୟ ଏପରି ଅନୁଷ୍ଠାନକୁ ଭବ୍ୟ ରୂପ ଦେବାରେ ସାହାଯ୍ୟ କରିଛି ।

ମୁଁ ସେଠାକୁ ଯାଇଛି । ବର୍ତ୍ତିକା ଅନୁଷ୍ଠାନର ସଭାରେ ଯୋଗ ଦେଇଛି । ଏହାର ଉପଦେଷ୍ଟା ଗବେଷକ ଓ ସୁସମାଲୋଚକ ପ୍ରଫେସର ବାଉରୀବନ୍ଧୁ କର ମୋର ଗୋଟିଏ ସାକ୍ଷାତ୍‌କାର ବର୍ତ୍ତିକାରେ ଛାପିଛନ୍ତି । ପ୍ରତିବର୍ଷ ପୂଜା ସଂଖ୍ୟାରେ ମୋର ପ୍ରବନ୍ଧ ବର୍ତ୍ତିକାରେ ଛପା ହୁଏ । ଶ୍ରଦ୍ଧେୟ ନବବାବୁଙ୍କର ନିଷ୍ଠା ଓ ଆନ୍ତରିକତା ମୋତେ ମୁଗ୍ଧ କରେ । 'କଟକ ପୂର୍ବାଞ୍ଚଳ କଲ୍ୟାଣ ସମିତି' ନୂଆବଜାରଠାରେ ପ୍ରତିଷ୍ଠିତ । ଏହାର ସଭାପତି ଅବସରପ୍ରାପ୍ତ ପୋଲିସ ଅଫିସର ତୁଷାରକାନ୍ତି ମିଶ୍ର । ଅବସରପ୍ରାପ୍ତ ପ୍ରାଧ୍ୟାପକ ଶ୍ରୀଯୁକ୍ତ ଭାଗୀରଥି ବିଶ୍ୱାଳ ଏହାର ପ୍ରକୃତ କର୍ଣ୍ଣଧାର । ସେ ଆମ ଇନ୍ଦୁପୁର ହାଇସ୍କୁଲର ଛାତ୍ର ଓ ମୋର ବଡ଼ଭାଇ ପରି । ସ୍କୁଲରେ ପଢ଼ିଲାବେଳେ ସେ ସ୍କୁଲ ଡ୍ରାମାରେ ଅଭିନୟ କରୁଥିଲେ । ସେହି ଦିନରୁ ଭଞ୍ଜ-ସାହିତ୍ୟ ପ୍ରତି ତାଙ୍କର ଥିଲା ପ୍ରବଣତା । ସେ ଓଡ଼ିଆରେ ଏମ୍.ଏ. ପାସ୍ କରି ସରକାରୀ ମହାବିଦ୍ୟାଳୟମାନଙ୍କରେ ଅଧ୍ୟାପନା କରି ଅବସର ଗ୍ରହଣ କଲାପରେ କଟକ ନୂଆବଜାର ଶାସ୍ତ୍ରୀନଗରରେ ଘର କରି ରହୁଛନ୍ତି । ପୂର୍ବରୁ ସେ ସମାଲୋଚନା ଓ ପ୍ରବନ୍ଧ ରଚନା କରୁଥିଲେ । ତାଙ୍କର ଖଣ୍ଡେ ସମାଲୋଚନା ପୁସ୍ତକ ମୁଁ ପ୍ରକାଶ କରାଇଥିଲି । ପରିଣତ ବୟସରେ ଗଳ୍ପ ଲେଖୁଛନ୍ତି, ଅନୁବାଦ କରୁଛନ୍ତି ଓ କବିତା ମଧ୍ୟ ଲେଖୁଛନ୍ତି, ତାଙ୍କର କେତେଖଣ୍ଡ ଗଳ୍ପ ଓ କବିତା ପୁସ୍ତକ ବାହାରିଛି । ପୂର୍ବାଞ୍ଚଳ କଲ୍ୟାଣ ସମିତି ଓ ରାମଚନ୍ଦ୍ର ଭବନରେ ସେସବୁ ପୁସ୍ତକ ଉନ୍ମୋଚିତ ହୋଇଛି । ସେ ମଧ୍ୟ ମୋପାସାଁ ଏବଂ ଓ' ହେନେରୀଙ୍କ ଗଳ୍ପଗୁଡ଼ିକୁ ଅନୁବାଦ କରି ପ୍ରକାଶ କରିଅଛନ୍ତି । ମୋ ଭାଉଜ ଉଷାଦେବୀ ତାଙ୍କ ସାରସ୍ୱତ ସୃଷ୍ଟିର ପ୍ରେରଣା । ଭାଗୀରଥିବାବୁ ବଡ଼ ସରଳ ଅମାୟିକ ନିରଭିମାନ

ମଣିଷ । ସେ ମଧ ଜଣେ ରୋଟାରିୟାନ । ପୂର୍ବାଞ୍ଚଳ କଲ୍ୟାଣ ସମିତି ଗଠନରେ ସେ ପ୍ରମୁଖ ଭୂମିକା ନେଇଛନ୍ତି । ତୁଷାରବାବୁ ସଂସ୍କୃତି ଓ ସାହିତ୍ୟପ୍ରାଣ । କଲ୍ୟାଣ ସମିତିର ବହୁ ସଭାକୁ ମୁଁ ଅତିଥି ହୋଇ ଯାଇଛି । ବନ୍ଧୁମାନଙ୍କର ସ୍ନେହ ଓ ଶ୍ରଦ୍ଧା ମୋତେ ବିହ୍ୱଳ କରିଛି । ଚାଉଳିଆଗଞ୍ଜ ଓ ନୂଆବଜାର ପୂର୍ଣ୍ଣତଃ ବ୍ୟାବସାୟିକ ଅଞ୍ଚଳ । ଏହି ଅଞ୍ଚଳରେ ସାଂସ୍କୃତିକ ଚେତନା ନାହିଁ କହିଲେ ବୋଧହୁଏ ଭୁଲ ହେବ ନାହିଁ । ଚାଉଳିଆଗଞ୍ଜ ଦୁର୍ଗାଘରକୁ କେନ୍ଦ୍ର କରି ମୁଁ ସାଂସ୍କୃତିକ ଜାଗରଣ ପାଇଁ ଉଦ୍ୟମ କରିଥିଲି । ତେବେ ଏହା ଥିଲା ଲଙ୍କାରେ ହରିଶବ୍ଦ । ନୂଆବଜାରରେ କଲ୍ୟାଣ ସମିତି ଗଢ଼ି ଉଠିଲା ସେହି ଅଞ୍ଚଳରେ ବାହାରର ଶିକ୍ଷିତ ଲୋକେ ଘର କରି ରହିବା ପରେ । ବସ୍ତୁତଃ ସେହିମାନଙ୍କର ସଂଗଠିତ ଉଦ୍ୟମରେ ଏପରି ଏକ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିଉଠିଛି । ମୋର ମନେହୁଏ ଏହି ଅନୁଷ୍ଠାନଟି ଏକ ସାମାଜିକ/ସାଂସ୍କୃତିକ ଅନୁଷ୍ଠାନ ହୋଇଥିଲେ ମଧ ଏହା ଯେପରି ଏକ ସୁସ୍ଥ ପାରିବାରିକ ଅନୁଷ୍ଠାନରେ ପରିଣତ ହୋଇଯାଇଛି ।

କଟକ ସହରରେ ଉତ୍କଳ ସମ୍ମିଳନୀ ଏକ ଗୌରବପୂର୍ଣ୍ଣ ଜାତୀୟ ଅନୁଷ୍ଠାନ । କୁଳବୃଦ୍ଧ ମଧୁସୂଦନ ଦାସ ୧୯୦୩ ମସିହା ଡିସେମ୍ବର ମାସ ୩୦ ଓ ୩୧ ତାରିଖ ଦିନ କଟକର ଇଦଗା ପଡ଼ିଆରେ ଦୁଇଦିନ ଧରି ଉତ୍କଳ ସମ୍ମିଳନୀରେ ପ୍ରଥମ ଅଧିବେଶନ କରିଥିଲେ । ଭାଷା ସୂତ୍ରରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସେହିଁ ପ୍ରଥମେ ସ୍ୱପ୍ନ ଦେଖିଥିଲେ । ନାନା ସଂକଟ ଓ ବିରୋଧ ସତ୍ତ୍ୱେ ସେ ଗଠନ କରିଥିଲେ ଓଡ଼ିଆ ଜାତିର ଏକ ମିଳନ ମଞ୍ଚ– ଯାହାକୁ କୁହାଗଲା ମାତୃପୂଜା ମଣ୍ଡପ । ଯେତେବେଳେ ସେ ସମ୍ମିଳନୀ ଆରମ୍ଭ କଲେ ସେତେବେଳେ ସେ ଦେଖିଲେ ଉତ୍କଳ ଜନନୀ ଛିନ୍ନମସ୍ତା ଓ ବିଖଣ୍ଡିତ କଳେବରା । ସେ ଓଡ଼ିଆମାନଙ୍କୁ ଭାଇ ଭାଇ ବୋଲି ଡାକିଲେ ମାତ୍ର କେହି ଶୁଣିଲେ ନାହିଁ । ମାଆକୁ ଖୋଜିଲେ ମାତ୍ର ପାଇଲେ ନାହିଁ । ସେ ତେଣୁ ଲେଖିଲେ–

ମାଆ ମାଆ ବୋଲି ଯେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ
ଭାଇ ଭାଇ ବୋଲି ଯେତେ ମୁଁ ଡାକିଲି
ଉତ୍ତର ନ ଦେଲେ କେହି ।

ଯାବତୀୟ ମାନ-ଅପମାନ ବିରୋଧ ସତ୍ତ୍ୱେ ସେ ଉତ୍କଳ ସମ୍ମିଳନୀକୁ ବଞ୍ଚେଇ ରଖିଲେ । ତାଙ୍କ ସହିତ କେତେ ଜାତିପ୍ରେମୀ ବିଦ୍ୱାନ୍ ଯୋଗ ଦେଲେ । ପାରଳାର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବ ତାଙ୍କ ପ୍ରେରଣାରେ ଲଣ୍ଡନ ଯାଇ ସେଠାରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ଉପରେ ଦାବି ଉପସ୍ଥାପନ କଲେ । ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହେଲା । ତା' ପୂର୍ବରୁ ମହାନାୟକ ମଧୁସୂଦନ ସବୁଦିନ ପାଇଁ ଆଖିବୁଜି ଦେଲେ । ସ୍ୱତନ୍ତ୍ର ପ୍ରଦେଶ

ଗଠନ (୧୯୩୬ ଏପ୍ରିଲ ପହିଲା) ପରେ ଉତ୍କଳ ସମ୍ମିଳନୀ ମଳିନ ପଡ଼ିଗଲା । ବହୁ ଅଞ୍ଚଳ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ପ୍ରତିବେଶୀ ରାଜ୍ୟମାନଙ୍କ ସହିତ ମିଶି ରହିଲା । ସ୍ୱାଧୀନତା ପରେ ସମାଜ ସଂପାଦକ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ ଏହାର ସଭାପତି ଓ ବ୍ରହ୍ମପୁରର ଏଡ଼ଭୋକେଟ ବସନ୍ତ କୁମାର ପାଣିଗ୍ରାହୀ ସଂପାଦକ ରହି ମଝିରେ ମଝିରେ ସମ୍ମିଳନୀ କାର୍ଯ୍ୟ କଲେ ମାତ୍ର ଏହା ହୋଇଗଲା ପୂର୍ଣ୍ଣତଃ ସଭାସର୍ବସ୍ୱ । କ୍ରମେ ଉତ୍କଳ ସମ୍ମିଳନୀ ଆଉ ସାରା ଓଡ଼ିଆ ଜାତିର ଅନୁଷ୍ଠାନ ହୋଇ ରହିଲା ନାହିଁ । ପରେ ସୁସାହିତ୍ୟିକ ପଶୁପାଳନ ବିଭାଗର ଅବସରପ୍ରାପ୍ତ ନିର୍ଦ୍ଦେଶକ ଡକ୍ଟର ଗୁରୁପ୍ରସାଦ ମହାନ୍ତି ହେଲେ ଏହି ଅନୁଷ୍ଠାନର ସଭାପତି ଓ ଅଭୟଚରଣ ସାମନ୍ତରାୟ ହେଲେ ସଂପାଦକ । ଏହି ସମୟରେ ସେମାନଙ୍କ ଉଦ୍ୟମରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ହେଲା ଆମର ଜାତୀୟ ସଙ୍ଗୀତ । କିଛି ଦିନ ପରେ ଅଭୟବାବୁ ସେଥିରୁ ଇସ୍ତଫା ଦେଇ 'ଆମ ଓଡ଼ିଶା' ସଂଗଠନ କଲେ ଓ ପ୍ରତି ବର୍ଷ 'ଆମ ଓଡ଼ିଶା' ଶୀର୍ଷକ ଏକ ଶିକ୍ଷାପ୍ରଦ ପତ୍ରିକାଟିଏ ସ୍ୱତନ୍ତ୍ର ବିଶେଷାଙ୍କ ରୂପେ ବାହାର କରି ସାହିତ୍ୟ, ସଂସ୍କୃତି, ଶିଳ୍ପ, ଶିକ୍ଷା ଆଦି ନାନା ବିଷୟରେ ଉଚ୍ଚକୋଟୀର ପୁସ୍ତକ ପ୍ରକାଶ କରୁଅଛନ୍ତି । 'ଉତ୍କଳ ସମ୍ମିଳନୀ' ପୁନଶ୍ଚ ଦୁଇ ଭାଗ ହୋଇଯାଇଛି । ମୋର ଯାହା ମନେହୁଏ କେବଳ କ୍ଷମତା–ଲାଳସା ହୋଇଛି ଏପରି ବିସଙ୍ଗତିର କାରଣ । ଗୁରୁବାବୁ ବିଚ୍ଛିନ୍ନାଞ୍ଚଳମାନଙ୍କୁ ଯାଇ ସେଠାରେ ଓଡ଼ିଆ ସଂଗଠନ କରୁଛନ୍ତି । ଝାଡ଼ଖଣ୍ଡରେ ଓଡ଼ିଆ ଭାଷାକୁ ଦ୍ୱିତୀୟ ସରକାରୀ ଭାଷା ରୂପେ ପ୍ରଚଳନ କରିବାର କୃତିତ୍ୱ ନିଶ୍ଚୟ ତାଙ୍କର । ମୁଁ ଉତ୍କଳ ସମ୍ମିଳନୀର ବିଭିନ୍ନ ସଭାକୁ ଯାଇଛି । ମୁଁ ଗୁରୁତ୍ୱ ଦେଇଛି ଆମର ଇତିହାସ ଓ ଐତିହ୍ୟ ସଚେତନତା ଏବଂ ଆମର ଐକ୍ୟ ଉପରେ ।

କଟକ ଲେଖକ ସହଯୋଗ ସମିତି ଅନ୍ୟ ଏକ ସାରସ୍ୱତ ସଂଗଠନ । ଏହାର ଆରମ୍ଭରେ ଫତୁରାନନ୍ଦଙ୍କ ଭୂମିକା ସ୍ମରଣୀୟ । ଡଗର ପ୍ରେସ୍‌ରେ ହିଁ ଏହାର ପରିକଳ୍ପନା । ସେତେବେଳେ ଡଗର ପ୍ରେସ୍ ଥିଲା ଲେଖକମାନଙ୍କର ଅନ୍ୟ ଏକ ମିଳନ ଭୂମି । ଫତୁରାନନ୍ଦ (ରାମଚନ୍ଦ୍ର ମିଶ୍ର) ଥିଲେ ଡଗରର ଆତ୍ମାସ୍ୱରୂପ । ଯଦିଓ ନିତ୍ୟାନନ୍ଦ ମହାପାତ୍ର ଥିଲେ ଡଗରର ସଂପାଦକ, ସବୁ କିଛି ବୁଝୁଥିଲେ ଫତୁରାନନ୍ଦ । ଡଗର ପତ୍ରିକାରେ ୧୯୭୦ ମସିହା ପୂର୍ବରୁ ମୋର ସଂସ୍କୃତି ଓ ସାହିତ୍ୟ ସଂପର୍କିତ ଅନେକ ଲେଖା ସହିତ ସଚ୍ଚିଦାନନ୍ଦ ରାଉତରାୟଙ୍କର କବିତା–୧୯୬୯ ଓ ରବି ସିଂହଙ୍କର ପଥପ୍ରାନ୍ତରର କବିତା ବହି ସଂପର୍କିତ ଆଲୋଚନା ପ୍ରକାଶ ପାଇଥାଏ । ଫତୁରାନନ୍ଦ ପିଠାପୁରର ଜମିଦାର ପରିବାରର ଦାୟାଦ । ସେ ଡାକ୍ତରୀ ପଢ଼ିଥିଲେ । ସୁନ୍ଦର ଚେହେରା ମାତ୍ର ତାଙ୍କୁ ଦୁରାରୋଗ୍ୟ ବ୍ୟାଧି ହେବାରୁ ତାଙ୍କର ଦୃଷ୍ଟିଶକ୍ତି କ୍ଷୀଣ ହୋଇଗଲା ଓ ଦେହରେ ବିକୃତି ଦେଖାଗଲା । ସେ ଆଉ

ବିବାହ କଲେ ନାହିଁ । କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ତାଙ୍କ ପାଖକୁ ଆସି ସେଇଠି ରହିଲେ ଓ ଡଗର ନିୟମିତ ପ୍ରକାଶ କଲେ । କାନ୍ତକବିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଫତୁରାନନ୍ଦ ହାସ୍ୟରସାତ୍ମକ ଗଳ୍ପ କବିତା ଲେଖିଲେ । ସେ ଆଧୁନିକ ଦୁର୍ବୋଧ କବିତାକୁ ଭଲ ପାଆନ୍ତି ନାହିଁ । ତେଣୁ ଡଗରରେ ପ୍ରକାଶ କରନ୍ତି ନାହିଁ । ମୁଁ ରେଭେନ୍ସା କଲେଜକୁ ଆସିଲା ପରେ ପ୍ରାୟ ପ୍ରତିଦିନ ତାଙ୍କ ପାଖକୁ ଯାଏ । ସେ ମୋତେ ବହୁତ ଶ୍ରଦ୍ଧା କରନ୍ତି । ସ୍ୱର୍ଗତ ବେଣୁଧର ରାଉତ ତାଙ୍କ ହାସ୍ୟରସାତ୍ମକ ଗଳ୍ପକୁ ଏକ ବିକୃତ ରଚନା ରୂପେ ଲେଖିଥିବାରୁ ସେ ବ୍ୟସ୍ତ ହୋଇ ମୋତେ କହିଲେ । ମୁଁ ତାଙ୍କ ଲେଖାର ବୈଶିଷ୍ଟ୍ୟ ସଂପର୍କରେ ଆଲୋଚନା ଲେଖିଲି । ସେତେବେଳେ ତାଙ୍କ ପାଖକୁ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ମୁରାରିମୋହନ ଜେନା, ଅନାଦି ସାହୁ, ସୁରେନ୍ଦ୍ର ସ୍ୱାଇଁ ପ୍ରମୁଖ ବହୁ ବ୍ୟକ୍ତି ଆସୁଥାନ୍ତି । ଫତୁରାନନ୍ଦ ସତ୍ୟସାଇଙ୍କର ଭକ୍ତ ହୋଇଥାଆନ୍ତି । ତାଙ୍କ ସାନଭାଇ ଡଃ ଶ୍ୟାମସୁନ୍ଦର ମିଶ୍ର ସୁଲେଖକ ଓ ତାଙ୍କୁ ସେ ଖୁବ୍ ଭଲ ପାଆନ୍ତି । ଫତୁରାନନ୍ଦ ମୋତେ ନେଇ ଗୋଟିଏ ହାସ୍ୟରସାତ୍ମକ ଗଳ୍ପ ପ୍ରକାଶ କରିଥାନ୍ତି । ସେ ମଧ ମୋ ଝିଅ ବାହାଘରକୁ ଆମ ଘରକୁ ଆସିଛନ୍ତି । ଅନେକ ଲେଖା ମୋର ଡଗରରେ ବାହାରିଛି । ଶ୍ରଦ୍ଧେୟ ବିଜୟାନନ୍ଦ ସିଂହ ତାଙ୍କରି ପାଖରେ ରହି ଏମ୍.ଏ. ପରୀକ୍ଷା ଦେଇ ଅଧ୍ୟାପକ ହେଲେ । ଫତୁରାନନ୍ଦଙ୍କ ଗଳ୍ପ ସାହିତ୍ୟ ଉପରେ ଗବେଷଣା କରି ପିଏଚ୍.ଡି. ପାଇଲେ । ଥରେ ସୁରେନ୍ଦ୍ର ସ୍ୱାଇଁଙ୍କର ଏକ ପ୍ରେମ ଉପନ୍ୟାସ 'ବାରିଧି ନିସ୍ତରଙ୍ଗ' ପ୍ରକାଶ ପାଇଲା ପରେ ସେ ତାକୁ ପଢ଼ି ଏପରି ମୁଗ୍ଧ ହେଲେ ଯେ ସେହି ପୁସ୍ତକକୁ ରାମଚନ୍ଦ୍ର ଭବନରେ ଉନ୍ମୋଚନ କରିବାକୁ ମୋତେ ବାଧ କଲେ । ସେହି ପୁସ୍ତକ ଉନ୍ମୋଚିତ ହେଲା । ଏହିପରି ଅନେକ କଥା । ହାସ୍ୟପରିଷଦ ପ୍ରତିଷ୍ଠା କରି ବ୍ୟାଙ୍କରେ ସେହି ଅନୁଷ୍ଠାନ ନାମରେ ଅର୍ଥ ଜମା କଲେ ଓ ପ୍ରତିବର୍ଷ ସେହି ଅର୍ଥର ସୁଧରେ ବିଶିଷ୍ଟ ହାସ୍ୟରସ ସ୍ରଷ୍ଟାଙ୍କୁ ପୁରସ୍କୃତ କରାଗଲା ଓ ଏବେ ମଧ କରାଯାଉଛି । ଇତିମଧ୍ୟରେ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର ଡଗରକୁ କଟକରୁ ଭୁବନେଶ୍ୱର ନେଇଗଲେ । କିଛି ଦିନ ପରେ ତାହା ବନ୍ଦ ହୋଇଗଲା । ସତେ ଯେପରି ଫତୁରାନନ୍ଦଙ୍କର ଆତ୍ମା ଚାଲିଗଲା ଓ ସେ ଅଳ୍ପ କେତେଦିନ ପରେ ଆଖି ବୁଜି ଦେଲେ ।

ଫତୁରାନନ୍ଦ ହିଁ କଟକ ଲେଖକ ସହଯୋଗ ସମିତିର ମନ୍ତ୍ରଦାତା । ସେହି ଅନୁଷ୍ଠାନ ଗଢ଼ି ଉଠିଲା । ରଘୁନାଥ ମହାପାତ୍ର ହେଲେ ସଂପାଦକ । ଅନେକ ପୁସ୍ତକ ପ୍ରକାଶ ପାଇଲା । ଏକ ସ୍ଥାୟୀ ଘର ପାଇଁ ଉଦ୍ୟମ ହେଲା । ମୁଁ ଏହି ଅନୁଷ୍ଠାନର କାର୍ଯ୍ୟକାରୀ କମିଟିର ସଦସ୍ୟ । ରଘୁବାବୁ ନିଜେ ଜଣେ ବିଶିଷ୍ଟ ଗାଳ୍ପିକ ଓ ଔପନ୍ୟାସିକ । ସେ ମଧ କଥାକାର, ଅଧୁନାର ମୁଖ୍ୟ ସଂପାଦକ ଯଦିଓ ଅନ୍ୟମାନେ ଥିଲେ, ତାହାର ସଂପାଦନା ଦାୟିତ୍ୱ ନେଇ ସେ ଦୁଇଟିକୁ ନିୟମିତ ପ୍ରକାଶ କରୁଥିଲେ । ମୋର ଅନେକ ଲେଖା ଏହି

ଦୁଇଟି ପତ୍ରିକାରେ ପ୍ରକାଶ ପାଇଥିଲା । ବିଶେଷତଃ ଓଡ଼ିଆ ଗଳ୍ପକାରଙ୍କ ଉପରେ ମୁଁ କଥାକାର ପତ୍ରିକାର ପ୍ରତି ସଂଖ୍ୟାରେ ପ୍ରବନ୍ଧ ଲେଖୁଥିଲି । ରଘୁବାବୁ ସ୍ନେହୀ ମଣିଷ ଓ ବନ୍ଧୁବତ୍ସଳ । ମୋ ପ୍ରତି ତାଙ୍କର ବିଶ୍ୱାସ ଅଖଣ୍ଡ । କଟକ ଲେଖକ ସହଯୋଗ ସମିତିର ସ୍ଥାୟୀ ଗୃହ ସେ ବହୁ କଷ୍ଟରେ ନିର୍ମାଣ କରାଇଛନ୍ତି କାଠଯୋଡ଼ି ନଦୀବନ୍ଧ ପାଖରେ । ସେଠି ପ୍ରକାଶନ ସଂସ୍ଥା ରହିଛି । ଆଲୋଚନା ଚକ୍ର ମଧ୍ୟ ଅନୁଷ୍ଠିତ ହୁଏ । ବର୍ତ୍ତମାନ ଏହାର ସଭାପତି ଡକ୍ଟର ଗୁରୁପ୍ରସାଦ ମହାନ୍ତି । ସେ ଜଣେ ଓଡ଼ିଆ ଓ ଓଡ଼ିଶାପ୍ରେମୀ ମଣିଷ । ବହୁ ଗଳ୍ପ ପୁସ୍ତକ ସେ ରଚନା କରିଛନ୍ତି ଓ ମୁଁ ତାଙ୍କ ଗଳ୍ପ ଉପରେ ଆଲୋଚନା ମଧ୍ୟ ଲେଖିଛି । ସେ ଉତ୍କଳ ସମ୍ମିଳନୀରେ ସଭାପତି ଦାୟିତ୍ୱ ତୁଲାଇବା ସହିତ କଟକ ଲେଖକ ସହଯୋଗ ସମିତିର ମଧ୍ୟ ସଭାପତି ଭାବରେ ଦାୟିତ୍ୱ ତୁଲାଉଅଛନ୍ତି ।

ମାହାଙ୍ଗାର ଗଣକବି ସ୍ମୃତି ପରିଷଦ ଏକ ବିଶିଷ୍ଟ ସାରସ୍ୱତ ଅନୁଷ୍ଠାନ । ଏହି ପରିଷଦଟି ୧୯୬୪-୬୫ ମସିହାରୁ ଆରମ୍ଭ ହୋଇଥିଲା । ସେତେବେଳେ ଏହା ଏତେ ପ୍ରଭାବ ପକାଇ ନ ଥିଲା । ପ୍ରଶାନ୍ତ କୁମାର କାନୁନ୍‌ଗୋ ଥିଲେ ସଂପାଦକ । ସେ ଅତ୍ୟନ୍ତ ସରଳ ଅମାୟିକ ଓ ମାହାଙ୍ଗାପ୍ରେମୀ । ଶ୍ରୀଯୁକ୍ତ ଶରତ କର ଏହି ପରିଷଦ ସହିତ ସଂପୃକ୍ତ ହେଲେ । ସେ ମଧ୍ୟ ମାହାଙ୍ଗାର ବିଧାୟକ ହେଲେ ଓ ମନ୍ତ୍ରୀ ମଧ୍ୟ ହେଲେ । ତେଣୁ ଗଣକବି ସ୍ମୃତି ପରିଷଦକୁ ବ୍ୟାପକତର କଲେ । ୧୯୬୭ ମସିହାରେ ସେକ୍ ମତ୍‌ଲୁବ୍ ଅଲ୍ଲି ପ୍ରକାଶ କଲେ ସର୍ବପ୍ରଥମେ ଗଣକବି ସ୍ମରଣିକା । ୧୯୭୦ ମସିହା ପରେ ସେ ସାଲେପୁର କଲେଜରୁ ଅଧ୍ୟାପନା ବୃତ୍ତି ଛାଡ଼ି ରାଜନୀତିରେ ଯୋଗ ଦେଲେ । ସେ ମଧ୍ୟ ମୌସୁମୀ ନାମରେ ଏକ ଗଳ୍ପ ସଂକଳନ ପ୍ରକାଶ କଲେ । ସେ ଆରମ୍ଭ କଲେ ସ୍ୱତନ୍ତ୍ର ଭାବରେ ଗଣକବି ସାହିତ୍ୟ ପରିଷଦ । ଫଳରେ ଦୁଇଟି ଦଳ ହୋଇଗଲା ଓ ପ୍ରତି ବର୍ଷ ଗଣକବି ଜୟନ୍ତୀ ବେଳକୁ ଉଭୟ ଦଳ ଗଣକବି ଜୟନ୍ତୀ ପାଳନ କରିବା ସହିତ ମାହାଙ୍ଗାର ବିଭିନ୍ନ ସ୍ଥାନରେ ଗଣକବି ସାହିତ୍ୟ ସଂପର୍କରେ ଆଲୋଚନା କରିବାର ପରଂପରାଟିଏ ସୃଷ୍ଟି କରିଦେଲେ । ବିଭିନ୍ନ ସ୍ଥାନରେ ମଧ୍ୟ ସଭା ପରେ ଗଣକବିଙ୍କ ନାଟକ ପ୍ରତିଯୋଗିତା ହେଲା ସାତ ରାତି, ପାଞ୍ଚ ରାତି ଧରି । ପ୍ରକୃତରେ ମାହାଙ୍ଗାରେ ଗଣକବିଙ୍କ ଜୟନ୍ତୀକୁ କେନ୍ଦ୍ର କରି ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି ହେଲା । ପରେପରେ ଗଣକବି ଜୟନ୍ତୀ ପାଳନ କଲେ ଶ୍ରୀଯୁକ୍ତ ବିକ୍ରମ କେଶରୀ ବର୍ମା ଓ ଚାୟାଁପାଳରେ ଶ୍ରୀ ବିଜୟ ଚକ୍ରବର୍ତ୍ତୀ । ଏହି ଦୁଇଜଣ ଆଉ ପରେ ଜୟନ୍ତୀ ପାଳନ କଲେ ନାହିଁ । ମତଲୁବ୍ ବାବୁ ମୋର ବନ୍ଧୁ । ସେ ସଂସ୍କୃତି ପ୍ରାଣ । ବିଶେଷତଃ ଜଗନ୍ନାଥ ସଂସ୍କୃତି ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା । ସେ ମୁସଲମାନ ହେଲେ ମଧ୍ୟ ତାଙ୍କୁ ଧର୍ମଗତ ସଂକୀର୍ଣ୍ଣତା ସ୍ପର୍ଶ କରି ନ ଥିଲା । ତେଣୁ ସେ ବସ୍ତୁତଃ ଗଣକବି ଜୟନ୍ତୀକୁ ପ୍ରସାରିତ କରିଦେଲେ । ଭୁବନେଶ୍ୱର, କଟକ କଥା ଅନ୍ୟ ସ୍ଥାନରେ ମଧ୍ୟ ଜୟନ୍ତୀ କଲେ ।

ମତଲୁବ ବାବୁ ପୁନଶ୍ଚ ମାହାଙ୍ଗାର ସମସ୍ତ ବରପୁତ୍ରଙ୍କର ଜୟନ୍ତୀ ଓ ଶ୍ରାଦ୍ଧଦିବସ ପାଳନ କଲେ । ଔପନ୍ୟାସିକ କବି ପ୍ରାଣକୃଷ୍ଣ ସାମଲ, ପଲ୍ଲୀକବି ନନ୍ଦକିଶୋର ବଳ ଆଦି ନାଟ୍ୟକାର ଜଗନ୍ମୋହନ ଲାଲ, ପ୍ୟାରୀମୋହନ ଆଚାର୍ଯ୍ୟ, ବାଗ୍ମୀ ବିଶ୍ୱନାଥ କର, ଗୋଲୋକଚନ୍ଦ୍ର ପ୍ରଧାନ ପ୍ରମୁଖ ବହୁ ବରପୁତ୍ରଙ୍କର ଜୟନ୍ତୀ ପାଳନ କରିବା ସହିତ ରଜଉତ୍ସବ ଓ କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ ଜୟନ୍ତୀ ମଧ୍ୟ ପାଳନ କଲେ । ମୁଁ ମାହାଙ୍ଗାକୁ ପ୍ରତିବର୍ଷ ଗଣକବି ଜୟନ୍ତୀକୁ ତିନିରାତି/ ଦୁଇରାତି ଧରି ଯାଇଛି । ବସ୍ତୁତଃ ଗଣକବି ବୈଷ୍ଣବ ପାଣିଙ୍କର ଗୀତିନାଟ୍ୟର ବୈଶିଷ୍ଟ୍ୟ, ତାଙ୍କର କବିତ୍ୱ ଓ ସାମାଜିକ ତଥା ରାଜନୀତିକ ଦୃଷ୍ଟିକୋଣ, ଆଧ୍ୟାତ୍ମିକତା ଓ ଭକ୍ତିଭାବନା, ନାରୀ ଚରିତ୍ର ପ୍ରତି ସହାନୁଭୂତି, ସ୍ୱଦେଶ ପ୍ରାଣତା ଓ ଜାତୀୟତାବୋଧ, ପୌରାଣିକ ଚେତନା, ଐତିହାସିକତା ଓ ଐତିହ୍ୟ ସଚେତନତା, ଜଗନ୍ନାଥ–ଭକ୍ତି ଇତ୍ୟାଦି ନାନା ବିଷୟରେ ମୁଁ ଦୃଷ୍ଟି ଆକର୍ଷଣ କଲି ମୋ ବକ୍ତବ୍ୟରେ । ମୁଁ ମଧ୍ୟ ଅନେକ ଲେଖା ଗଣକବିଙ୍କ ଉପରେ ଲେଖିଲି । ପିଲାଙ୍କ ପାଇଁ 'ଗଣକବି' ଶୀର୍ଷକରେ ବହିଟିଏ ଲେଖିବା ସହିତ ଗଣକବିଙ୍କ ସାହିତ୍ୟ କୃତି ଉପରେ 'ଗଣକବି ସାହିତ୍ୟ ସମୀକ୍ଷା' ଶୀର୍ଷକ ଏକ ବିସ୍ତୃତ ଆଲୋଚନା ପୁସ୍ତକ ଲେଖିଲି ଓ ତାହାକୁ ପ୍ରକାଶ କଲେ କଟକର ବିଶିଷ୍ଟ ପ୍ରକାଶନ ସଂସ୍ଥା 'ଫ୍ରେଣ୍ଡସ୍ ପବ୍ଲିଶର୍ସ' । ମାହାଙ୍ଗା ସହିତ ମୋର ଗୋଟାଏ ଭାବାତ୍ମକ ସଂପର୍କ ସୃଷ୍ଟି ହୋଇଗଲା । କେତେକ ଗବେଷକ ମଧ୍ୟ ମୋ ଅଧୀନରେ ଗଣକବି, ଜଗମୋହନ ଲାଲଙ୍କ ସଂପର୍କରେ ଗବେଷଣା କରି ପିଏଚ.ଡି. ଉପାଧି ପାଇଛନ୍ତି । ମୁଁ ଭଲପାଇଛି ମାହାଙ୍ଗା ମାଟିକୁ । ପ୍ରତି ବର୍ଷ ଯାଇଛି, ଏବେ ମଧ୍ୟ ଯାଉଛି । ମାହାଙ୍ଗାର ବିଧାୟକ ପୂର୍ବତନ ମନ୍ତ୍ରୀ ପ୍ରତାପ ଜେନା ମଧ୍ୟ ମୋତେ ଡାକିଛନ୍ତି ଗଣକବି ଜୟନ୍ତୀକୁ । ଆଦି ନାଟ୍ୟକାର ସ୍ମୃତି ସଂସଦ ମଧ୍ୟ ମୋତେ ଜଗନ୍ମୋହନଙ୍କ ଉପରେ କହିବାକୁ ଡାକିଛନ୍ତି ।

ମାହାଙ୍ଗାର ବିବିଧ ସଭାକୁ ଯିବା ମୋର ଦୀର୍ଘ ଚାଳିଶ ବର୍ଷର ସ୍ମୃତି । ମାହାଙ୍ଗା ଲୋକଙ୍କ ଶ୍ରଦ୍ଧା ମୁଁ ଭୁଲି ନାହିଁ । ମୁଁ ଯେତେବେଳେ ପ୍ରଥମେ ପ୍ରଥମେ ଗଣକବିଙ୍କ ଜୟନ୍ତୀକୁ ଯାଉଥିଲି ସେତେବେଳେ ଶ୍ରଦ୍ଧେୟ ବିଜୟ ସିଂହ ହାଇସ୍କୁଲରେ ପଢୁଥିଲେ । ମୁଁ ତାଙ୍କୁ ଜାଣି ନ ଥିଲି । ସେ କୁଆଡ଼େ ସେହି ସଭାକୁ ଯାଉଥିଲେ ଶୁଣିବା ପାଇଁ । ସେ ମୋତେ ସେତେବେଳେ ଦେଖିଥିଲେ ଓ ମୋ ଭାଷଣ ଶୁଣିଥିଲେ । ପରେ ଯେତେବେଳେ ମୋ ସହିତ ତାଙ୍କର ସଂପର୍କ ବଢ଼ିଉଠିଲା ସେତେବେଳେ ସେ ତାଙ୍କର ଅତୀତ ସ୍ମୃତିଚାରଣ କରି ମୋତେ ସେକାଳର କଥା କହନ୍ତି । ସେ ଅଧ୍ୟାପକ ହେଲା ପରେ ଜୟନ୍ତୀ ସଭାକୁ ବକ୍ତା ଭାବରେ ଗଲେ । ମତ୍‌ଲୁବ୍‌ବାବୁଙ୍କ ସହିତ ତାଙ୍କର ଘନିଷ୍ଠତା ଥିବାରୁ ସେ ତାଙ୍କ ସଭାକୁ ଯାଆନ୍ତି । ମୋ ସହିତ ତାଙ୍କର ସଂପର୍କ ଅତୁଟ ରହିଛି । ପିଏଚ.ଡି. ଓ ଡି.ଲିଟ.

କଲାବେଳେ ସେ ମୋ ପାଖକୁ ବାରମ୍ବାର ଆସନ୍ତି । ମୁଁ ମଧ୍ୟ ତାଙ୍କୁ ସାହାଯ୍ୟ କରେ । ଥରେ ଶ୍ରୀଯୁକ୍ତ ଶରତ କର ମୋତେ କହିଲେ- ମୁଁ ତାଙ୍କ ସଭାକୁ ଯାଉ ନାହିଁ । ମୁଁ ତାଙ୍କୁ କହିଲି- ଆପଣ ତ ମୋତେ କେବେ ଡାକି ନାହାନ୍ତି, ମୁଁ ଯିବି କିପରି ? ସେ ବର୍ଷ ସେ ମୋତେ ଡାକିଲେ ଓ ତାଙ୍କ ସଭାରେ ମୁଁ ଗଣକବିଙ୍କ ଉପରେ କହିଲି । ମତ୍‌ଲୁବ୍ ବାବୁ ଯେତେବେଳେ ଜଳସେଚନ ବିଭାଗର ମନ୍ତ୍ରୀ ହେଲେ ସେତେବେଳେ ଆମେ ତାଙ୍କୁ ରାମଚନ୍ଦ୍ର ଭବନରେ ସମ୍ବର୍ଦ୍ଧନା ଦେଲୁ । ସେଦିନ ରାତିରେ ସେ ମୋ ଘରକୁ ଆସିଲେ । ମୋ ଶଳା ଜଳସେଚନ ବିଭାଗରେ ଏସ୍.ଡ଼ି.ଓ. ଥାଆନ୍ତି । ତାଙ୍କ ବଦଳି କଥା କହିଲି । ପରେ ତାଙ୍କ କ୍ୱାର୍ଟରକୁ ଗଲି । ସେ ବିରକ୍ତ ହେଲେ ଓ ବିଧାୟକଙ୍କ ମାଧ୍ୟମରେ ଯିବାକୁ କହିଲେ । ଏହାର ଉଦ୍ଦେଶ୍ୟ ମୋ ପାଖରେ ଅସ୍ପଷ୍ଟ ରହିଲା ନାହିଁ । ସେଦିନ ମୋର ମନ ଭିତରେ ଗୋଟାଏ ଭିନ୍ନ ଧାରଣା ସୃଷ୍ଟି ହେଲା । ବୋଧହୁଏ ଗଣତନ୍ତ୍ରିକ ରାଜନୀତିରେ ଏଇଆ ହୁଏ । ଆଉ ଥରେ ସେ ମୋତେ କହିଲେ- ଛତିଆବଟ ତାଙ୍କ ଘର ପାଖରେ, ଅଥଚ ସେ ଛତିଆବଟ ଦେଖି ନାହାନ୍ତି । ସେ ପୁରୀ ଯାଇ ଜଗନ୍ନାଥଙ୍କୁ ଦୁଇ ତିନିଥର ଦେଖିଛନ୍ତି । ଏବେ ଆଉ ତା' ଭିତରକୁ ଯାଇପାରୁ ନାହାନ୍ତି । କ'ଣ ଛତିଆବଟ ମୁଁ ଦେଖିପାରିବି ନାହିଁ ? ମୁଁ କହିଲି- ଆପଣ ନିଶ୍ଚୟ ଦେଖିପାରିବେ । କେଉଁ ଦିନ ଆସିବେ କୁହନ୍ତୁ ? ମୁଁ ତ ଛତିଆବଟର ମଣିମା ଶ୍ରୀରାମଚନ୍ଦ୍ର ଦାସଙ୍କଠାରୁ ଶୁଣିଥାଏ । ଛତିଆବଟରେ ଜାତି ନାହିଁ, ଧର୍ମ ନାହିଁ । ସମସ୍ତେ ଆସିପାରିବେ । ମୁଁ ମଧ୍ୟ ଏକଥା 'ସତ୍ୟବାଣୀ' ବହିରେ ଲେଖିଥିଲି । ସେତେବେଳକୁ ଶ୍ରୀ ରାମଚନ୍ଦ୍ର ଦାସଙ୍କର ସମାଧି ହୋଇଗଲାଣି । ମଣିମା ଥାଆନ୍ତି ତାଙ୍କର ପୁତ୍ର ଶ୍ରୀ ପ୍ରଦ୍ୟୁମ୍ନ କୁମାର ଦାସ । ସେ ଉଦାରଚେତା । ତାଙ୍କର ମଧ୍ୟ ସଂକୀର୍ଣ୍ଣତା ନ ଥିଲା । ତାଙ୍କୁ କହିବାରୁ ସେ ଆଗ୍ରହର ସହିତ ମତଲୁବ୍‌ବାବୁଙ୍କୁ ବଟକୁ ଆଣିବାକୁ କହିଲେ ।

ଏହା ପରେ ମୁଁ ମତଲୁବ୍‌ବାବୁଙ୍କୁ ସାଙ୍ଗରେ ନେଇ ବଟକୁ ଗଲି । ତାଙ୍କ ସାଙ୍ଗରେ ଥାଆନ୍ତି ଶରତ ପଟ୍ଟନାୟକ । ଆମେ ପ୍ରାୟ ବାରଟା ପରେ ବଟରେ ପହଞ୍ଚିଲୁ । ମଣିମା ବଟର ଦ୍ୱିତୀୟ ଗେଟ ପାଖରେ ଅପେକ୍ଷା କରିଥାନ୍ତି । ଆମେ ପହଞ୍ଚିଲା ପରେ ସେ ଖୁସି ହୋଇ ମତ୍‌ଲୁବ୍‌ବାବୁଙ୍କୁ ଭିତରକୁ ନେଇଗଲେ ଓ କହିଲେ ଏବେ ମନ୍ଦିରମାନଙ୍କରେ ପହଡ଼ ପଡ଼ିଗଲାଣି । ଅଫିସ୍ ଘରେ ବିଶ୍ରାମ ନିଅନ୍ତୁ । ଆପଣଙ୍କ ପାଇଁ ପ୍ରସାଦ ବ୍ୟବସ୍ଥା ହୋଇଛି । ଆପଣ ପ୍ରସାଦ ପାଇ ବିଶ୍ରାମ କରନ୍ତୁ । ମୁଁ ନୀତି ସାରି ଆସିବି ଓ ଆପଣଙ୍କୁ ସବୁ ବୁଲାଇ ଦେଖାଇବି । ମତ୍‌ଲୁବ୍‌ବାବୁ ରହିଲେ । ସେ ତ ମନ୍ତ୍ରୀ ଥାଆନ୍ତି । ସେ ବଟକୁ ଆସିଥିବା ଶୁଣି କେତେକ ସ୍ଥାନୀୟ କଂଗ୍ରେସ କର୍ମୀ ତାଙ୍କ ପାଖକୁ ପଶିଆସିଲେ । ସେମାନଙ୍କ ଉପରେ ମତ୍‌ଲୁବ୍‌ବାବୁ ବିରକ୍ତ ହେଲେ । ଧର୍ମ ସ୍ଥାନରେ ସେ କା ବି କଥା

ଶୁଣିବେ ନାହିଁ ବୋଲି ରୋକଠୋକ କହିବାରୁ ସେମାନେ ଚାଲିଗଲେ । ପ୍ରସାଦ ସେବନ କରି ଆମ୍ଭେ ବିଶ୍ରାମ ନେଲୁ । ମଣିମା ଆସି ତାଙ୍କୁ ମନ୍ଦିରମାନ ବୁଲାଇ ଦେଖାଇଲେ । ବଡ଼ଦେଉଳ ଅର୍ଥାତ୍ ମହାପୁରୁଷ ହାଡ଼ିଦାସଙ୍କ ସମାଧି ଉପରେ ବଳଭଦ୍ରଙ୍କ ବିଗ୍ରହ ବିଦ୍ୟମାନ । ସେହି ମନ୍ଦିରକୁ ମତ୍ଲୁବ୍‌ବାବୁ ଗଲା ପରେ ପୂଜକ ତାଙ୍କୁ ଠାକୁରଙ୍କ ଫୁଲହାର ପିନ୍ଧାଇ ଦେଲେ । ସେ ସେଠି କ'ଣ ଗୋଟାଏ ଅନୁଭବ କଲେ । ତଳେ ମୁଣ୍ଡ ଲଗାଇ ପ୍ରଣାମ କଲେ । ଛତିଆବଟର ବିଚିତ୍ର ଦେବଦେବୀଙ୍କୁ ଦେଖି ଓ ତାହାର ଇତିହାସ ଶୁଣି ସେ ଆନନ୍ଦିତ ହେଲେ । ସେ ବଟ ପାଇଁ କ'ଣ କରିପାରିବେ ବୋଲି କହିଲେ । ମଣିମା ତାଙ୍କୁ ମହାପୁରୁଷ ହାଡ଼ିଦାସ ମହାବିଦ୍ୟାଳୟ ବିଷୟରେ ସାହାଯ୍ୟ କରିବାକୁ ସୂଚାଇ ଦେଲେ ।

ଆମେ ସେଠାରୁ ବିଦାୟ ନେଇ ଆସିଲୁ । କିଛିଦିନ ପରେ ମତ୍ଲୁବ୍‌ବାବୁ ଶିକ୍ଷା ମନ୍ତ୍ରୀ ହେଲେ । ମହାବିଦ୍ୟାଳୟର ସମସ୍ୟା ସମାଧାନ ପାଇଁ ମଣିମା ମୋତେ ତାଙ୍କୁ କହିବାକୁ କହିଲେ । ସେଦିନ ମୁଁ ଓ ପ୍ରଫେସର କାହ୍ନୁଚରଣ ମିଶ୍ର ତାଙ୍କ କ୍ୱାର୍ଟରକୁ ଗଲୁ । କାହ୍ନୁବାବୁ ସେକ୍ରେଟେରିଏଟ୍‌କୁ ଯିବାପାଇଁ ତାଙ୍କ ପାଖ୍‌ଟି ଘରେ ଛାଡ଼ି ଆସିଥିଲେ । ମତ୍ଲୁବ୍‌ବାବୁ ତ ତାଙ୍କର ଛାତ୍ର, ତେଣୁ ସେ ମୋତେ ସେକ୍ରେଟେରିଏଟ୍‌ରେ ଛାଡ଼ି ଦେବାପାଇଁ ମତଲୁବ୍‌ବାବୁଙ୍କୁ କହିବାକୁ କହିଲେ । ଆମେ ଯେତେବେଳେ ତାଙ୍କ ବୈଠକଖାନାକୁ ଗଲୁ ଦେଖିଲୁ ମତ୍ଲୁବ୍‌ବାବୁ ଦୁଇ ହାତକୁ ସୋଫା ଉପରେ ପକାଇ ବସିଛନ୍ତି ଓ ତାଙ୍କ ଆଗରେ ବହୁଲୋକ ବସିଛନ୍ତି । ଆମକୁ ସେ ବସିବା ପାଇଁ କହିଲେ ନାହିଁ । ମୁଁ ତାଙ୍କୁ ଛତିଆବଟ କଲେଜ କଥା କହିବାରୁ ସେ ଚିଡ଼ିଉଠିଲେ । ସେ କହିଲେ କ'ଣ ଚାହଁ– ଛତିଆ କଲେଜ କଥା ନା ବନ୍ଧୁତା ? କଲେଜ କଥା କହିଲେ ବନ୍ଧୁତା କଟିଯିବ । ମୁଁ ତାଙ୍କୁ ଧନ୍ୟବାଦ ଦେଇ ସେ କଥାକୁ ବନ୍ଦ କରିଦେଲି । ତତ୍‌ପରେ କାହ୍ନୁବାବୁଙ୍କ କଥା ଯେମିତି କହିଲି ସେ ଖୁବ୍ ରାଗିଗଲେ ଓ କହିଲେ ମୁଁ କ'ଣ ଠିକା ନେଇଛି ମୋ ଗାଡ଼ିରେ ସମସ୍ତଙ୍କୁ ନେଇ କେଉଁଠି ଛାଡ଼ିବି । କାହ୍ନୁବାବୁ ମୋତେ କହିଲେ– ଚାଲ, ପଳେଇବା । ଏଠି ଆଉ ରହିବା ନାହିଁ । ଆମେ ଚାଲିଆସିଲୁ ଓ ସେହି ଦିନରୁ ଏଯାବତ୍ ମୁଁ ତାଙ୍କ ଘରକୁ ଯାଇ ନାହିଁ । ମୁଁ ଭାବିଲି ରାଜନୀତି କ'ଣ ଏଇଆ ? କ୍ଷମତା ସିଂହାସନ ପାଇଗଲେ କ'ଣ ମଣିଷ ଏମିତି ହୋଇଯାଏ ? ମୋ ମନ ଭିତରେ ଯେଉଁ ପ୍ରତିକ୍ରିୟା ହେଲା ତାହାକୁ ମୁଁ 'ସିଂହାସନ' ଶୀର୍ଷକ ରମ୍ୟ ରଚନାରେ ପ୍ରକାଶ କଲି । ପରୋକ୍ଷରେ ମତ୍ଲୁବ୍‌ବାବୁ ହିଁ ମୋତେ ପ୍ରେରଣା ଦେଲେ ରମ୍ୟ ରଚନା ଲେଖିବା ପାଇଁ ।

ଏହା ସତ୍ତ୍ୱେ ମତ୍ଲୁବ୍‌ବାବୁ ମୋର ବନ୍ଧୁ । ତାଙ୍କର 'ପଦ୍ମାର ସଙ୍ଗୀତ' ଗଳ୍ପ ବହିକୁ ମୁଁ ପ୍ରକାଶକଙ୍କ ଦ୍ୱାରା ଛାପି ଦେଇଥିଲି । ତାଙ୍କର ସାହିତ୍ୟ ଓ ସଂସ୍କୃତି ମନସ୍କତାକୁ ମୁଁ

ଭଲ ପାଏ । ମୁଁ ଭଲ ପାଏ ମାହାଙ୍ଗାର ଅନେକ ଲୋକଙ୍କୁ । ପ୍ରଶାନ୍ତ କାନୁନ୍‌ଗୋଙ୍କ ପରି ଜଣେ ଉଦାରଚେତା ସଂସ୍କୃତିପ୍ରାଣ ବ୍ୟକ୍ତିଙ୍କୁ ଗଭୀର ଶ୍ରଦ୍ଧା କରେ । ତାଙ୍କର ପରୋପକାରିତା ଗୁଣ ମୋତେ ମୁଗ୍ଧ କରେ । ତାଙ୍କ ଜୟନ୍ତୀରେ ମଧ୍ୟ ମୁଁ ଯୋଗ ଦେଇଥିଲି । ମୁଁ ଜାଣେ ଯେ ମାହାଙ୍ଗା ଏକ ସଂସ୍କୃତିର ମାଟି । ବାରମ୍ବାର ଯାଇ ମୁଁ ମନେକରେ ସତେ ଯେପରି ମାହାଙ୍ଗା ମାଟିର ମୁଁ ଜଣେ ମଣିଷ । ଶ୍ରଦ୍ଧେୟ ଡକ୍ଟର ବିଜୟାନନ୍ଦ ସିଂହ ମୋର ସ୍ନେହଧନ୍ୟ । ତାଙ୍କର ମାହାଙ୍ଗା ପ୍ରୀତି ଓ ମାହାଙ୍ଗା ସ୍ୱାଭିମାନ ମୋତେ ବିମୁଗ୍ଧ କରେ । ସଂପ୍ରତି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ସମ୍ଭାବନାମୟ ବ୍ୟକ୍ତିତ୍ୱ ।

ଗଣକବି ବୈଷ୍ଣବ ପାଣିଙ୍କ ସାହିତ୍ୟ ଚର୍ଚ୍ଚାରୁ ମୋ ଭିତରେ ଗୋଟାଏ ଆଗ୍ରହ ପ୍ରକାଶ ପାଇଲା ମୋ ଗାଁ ନିକଟବର୍ତ୍ତୀ ପଳସିଙ୍ଗାର ଗଣକବି ଗୋପାଳ ଦାଶଙ୍କ ସ୍ମୃତି ରକ୍ଷା ପାଇଁ । ସେହି ଗାଁର ଅବସରପ୍ରାପ୍ତ ଶିକ୍ଷକ ଓ ସଂସ୍କୃତିପ୍ରେମୀ ନିତ୍ୟାନନ୍ଦ ବିଶ୍ୱାଳ ମୋତେ ଏ ଦିଗରେ ଉତ୍ସାହ ଦେଲେ । ସେହି ଗାଁରେ ଗଢ଼ିଉଠିଲା ଗଣକବି ଗୋପାଳ ଦାଶ ସ୍ମୃତି ସଂସଦ । ଗୋପାଳ ଦାଶ ୧୮୭୬ ମସିହାରେ ପଳସିଙ୍ଗା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ବାପା କହ୍ନେଇ ଦାଶ ଗୋଟିଏ ଯାତ୍ରାଦଳ ଗଠନ କରି ଅଭିନୟ ଦେଖାଉଥିଲେ । ୧୨/୧୩ ବର୍ଷ ବୟସରେ ଗୋପାଳ ସେହି ଦଳରେ ନାରଦ ଭୂମିକାରେ ଅଭିନୟ କରି ଦର୍ଶକମାନଙ୍କୁ ମୁଗ୍ଧ କରି ଦେଇଥିଲେ । କେନ୍ଦ୍ରାପଡ଼ା ନରେନ୍ଦ୍ର ପରିବାରର ଭ୍ରମରବର ରାୟଙ୍କ ପ୍ରେରଣାରେ ଗୋପାଳ ଗଠନ କଲେ ୧୮୯୮ ମସିହାରେ ଯାତ୍ରାଦଳ । ସେହି ଯାତ୍ରାଦଳ କ୍ରମଶଃ ସାରା ଓଡ଼ିଶାରେ, କଲିକତାରେ, ଟାଟାନଗରରେ ଅଭିନୟ ଦେଖାଇ ବହୁ ପ୍ରଶଂସିତ ହେଲା । ଗୋପାଳ ନିଜେ ନାଟ୍ୟକାର, ଅଭିନେତା ଓ ନିର୍ଦ୍ଦେଶକ । ସେ ରାଜା ଭୂମିକାରେ ଅଭିନୟ କରନ୍ତି । ଅନେକ ସ୍ଥାନରେ ତାଙ୍କର ବନ୍ଧା ଯାତ୍ରା ହୁଏ । ସେ ଅତ୍ୟନ୍ତ ଭଦ୍ର, ସଚ୍ଚରିତ୍ର ଓ ଉଚ୍ଚକୋଟୀର ଅଭିନେତା । ତାଙ୍କର ବହୁ ନାଟକ ସେ କାଳରେ ଛପା ହୋଇଥାଏ । କେତେ ମଧ୍ୟ ପାଣ୍ଡୁଲିପି ଆକାରରେ ରହିଥାଏ । ତାଙ୍କର ଦେହାନ୍ତ ହେଲା ୧୯୩୯ ମସିହାରେ । ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି, କୃଷ୍ଣପ୍ରସାଦ ବସୁଙ୍କ ସହିତ ତାଙ୍କର ମଧ୍ୟ ବାଦୀଯାତ୍ରା ହୋଇଥାଏ । ଓଡ଼ିଆ ଗୀତିନାଟ୍ୟର ପରଂପରାରେ ଜଗନ୍ନାଥ ପାଣିଙ୍କ ଛାନ୍ଦନାଟକ ପରେ ସେହିଁ ପ୍ରଥମେ ଗୀତିନାଟ୍ୟର ଧରା ଓ ଧାରାକୁ ବଦଳାଇ ଦେଲେ । ତାଙ୍କ ଗ୍ରାମର କେତେଜଣ ଉତ୍ସାହୀ ଲୋକଙ୍କ ଅନୁରୋଧକ୍ରମେ ସେହି ଗ୍ରାମରେ ଆମେ ସଭା କଲୁ । ସେହି ଅନୁଷ୍ଠାନଟି ରେଜିଷ୍ଟ୍ରିଭୁକ୍ତ ହେଲା । ମତ୍ଲୁବ୍‌ବାବୁ ମନ୍ତ୍ରୀ ଥିଲାବେଳେ ତାଙ୍କୁ ମୁଁ ସେହି ଅନୁଷ୍ଠାନକୁ ଡାକିଥିଲି । ସେ ଗୋପାଳ ଦାଶଙ୍କ ଏକ ସୁନ୍ଦର ପ୍ରତିମୂର୍ତ୍ତି ପ୍ରଦାନ କଲେ ଓ ତାହା ପ୍ରତିଷ୍ଠା ହେଲା । ପରବର୍ତ୍ତୀ ସଭାକୁ ମୁଁ ଡାକିଥିଲି ମନ୍ତ୍ରୀ ବଟକୃଷ୍ଣ ଜେନା ଓ ଶିଳ୍ପପତି ବୈଷ୍ଣବ ଚରଣ ମହାନ୍ତିଙ୍କୁ । ବୈଷ୍ଣବବାବୁ ଜଣେ

ସାହିତ୍ୟ ସଂସ୍କୃତି ଓ ଧର୍ମପ୍ରେମୀ ଉଦାର ମଣିଷ । ତାଙ୍କୁ ଅହଙ୍କାର ସ୍ପର୍ଶ କରି ନ ଥିଲା । ମୋ ପ୍ରତି ତାଙ୍କର ଥିଲା ଗଭୀର ଶ୍ରଦ୍ଧା । ମୋ ବଡ଼ଝିଅ ବାହାଘରକୁ ସେ ଆସିଥିଲେ ଓ ବିଭାଘର କାର୍ଯ୍ୟ ପାଇଁ ଗାଡ଼ିଟିଏ ମଧ୍ୟ ଦେଇଥିଲେ । ତାଙ୍କର ଆର୍ଥିକ ସହାୟତାରେ ମୁଁ ଛାପିଲି ଗୋପାଳ ଦାଶ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ । ତାହାର ଏକ ବିସ୍ତୃତ ମୁଖବନ୍ଧ ଲେଖିଲି । ଗୋପାଳ ଦାଶଙ୍କ ଗୀତି ନାଟକର ବୈଶିଷ୍ଟ୍ୟ ଦର୍ଶାଇଲି । ଆମ ଅଞ୍ଚଳର ବିଭିନ୍ନ ଗ୍ରାମକୁ ଯାଇ ତାଙ୍କ ଯାତ୍ରାଦଳରେ ଅଭିନୟ କରିଥିବା ଲୋକଙ୍କଠାରୁ ଲେଖା ସଂଗ୍ରହ କଲି । ପରେ ମୁଁ ଗ୍ରନ୍ଥାବଳୀ ଦ୍ୱିତୀୟ ଖଣ୍ଡ ପ୍ରକାଶ କଲି । ଏ ଦିଗରେ ମୋତେ ଜର୍ମାନରେ ରହୁଥିବା ଡ. ରାଜେନ୍ଦ୍ର ପ୍ରସାଦ ଦାସ ଓ ଉଦୀୟମାନ ଶିଳ୍ପପତି ଇଂଜିନିୟର ଭଗବାନ ବିଶ୍ୱାଳ ସାହାଯ୍ୟ କରିଥିଲେ । ଗୋପାଳ ଦାଶଙ୍କ ଗୀତାବଳି ମଧ୍ୟ ମୁଁ ପ୍ରକାଶ କରିଥିଲି । ଗୋପାଳ ଦାଶଙ୍କ ଗ୍ରନ୍ଥାବଳୀ ପ୍ରକାଶ ଓ ତାଙ୍କର ସ୍ମୃତିରକ୍ଷା ପାଇଁ କେନ୍ଦ୍ରାପଡ଼ା ଜିଲ୍ଲାର ବହୁ ରାଜନେତାଙ୍କୁ ଅନୁରୋଧ କରି ବିଫଳ ହୋଇଥିଲି । ମୁଁ ଅନୁଭବ କଲି ସେମାନେ ଚାହାନ୍ତି କେବଳ କ୍ଷମତା ଓ ଆତ୍ମସୁଖ । ସଂସ୍କୃତି ଓ ସାହିତ୍ୟ ପ୍ରତି ସେମାନେ ବଡ଼ ଉଦାସୀନ । ଏବେ ସେହି ଅନୁଷ୍ଠାନକୁ ସରକାରଙ୍କ ତରଫରୁ କେନ୍ଦ୍ରାପଡ଼ାର କଲେକ୍ଟର ବୁଝାବୁଝି କରୁଛନ୍ତି ଓ ଜୟନ୍ତୀ ପାଳନ କରାଉଅଛନ୍ତି ।

ପ୍ରଫେସର ଗଙ୍ଗାଧର ବଳ ତାଙ୍କ ବାସଭବନରେ ପ୍ରତିଷ୍ଠା କରିଥିଲେ 'ପ୍ରାଚ୍ୟବିଦ୍ୟା ପରିଷଦ' । ମୁଁ ଥିଲି ସେହି ପରିଷଦର ଉପସଭାପତି । ପ୍ରତି ମାସରେ ପରିଷଦ ତରଫରୁ ସେମିନାର ହୁଏ । ଜଣେ ଜଣେ ବିଦ୍ୱାନ୍ ପ୍ରବନ୍ଧ ପାଠ କରନ୍ତି । ଏହି ସେମିନାରରେ ପ୍ରଫେସର ପଠାଣି ପଟ୍ଟନାୟକ, ପ୍ରଫେସର ଗଙ୍ଗାଧର ବଳ, ପଣ୍ଡିତ ଅନ୍ତର୍ଯାମୀ ମିଶ୍ର, ଶ୍ରୀ ତପନ କୁମାର ଶତପଥୀ, ଡକ୍ଟର ସୁବୋଧ କୁମାର ଚାଟାର୍ଜୀ, ଡକ୍ଟର ଖଗେନ୍ଦ୍ରନାଥ ମଲ୍ଲିକ, ଡକ୍ଟର ରବୀନ୍ଦ୍ରନାଥ ମିଶ୍ର, ଡକ୍ଟର ନିରଂଜନ ସାହୁ, ଡକ୍ଟର ହେମନ୍ତ କୁମାର ମହାନ୍ତି, ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ ପ୍ରମୁଖ ବିଦ୍ୱାନ୍‌ମାନେ ପ୍ରବନ୍ଧ ପଢ଼ିଥିଲେ । ମୁଁ ମଧ୍ୟ ଦୁଇଥର ପ୍ରବନ୍ଧ ଉପସ୍ଥାପନ କରିଥିଲି । ସେତେବେଳେ ଆମେ ଭଦ୍ରକରେ, ଢେଙ୍କାନାଳରେ ଓ ଦେବଗଡ଼ରେ ଶାଖା ଖୋଲି ସେଠାରେ ମଧ୍ୟ ସଭା ଓ ସେମିନାର କରିଥିଲୁ । ସେମିନାରରେ ପାଠ କରାଯାଇଥିବା ପ୍ରବନ୍ଧଗୁଡ଼ିକୁ ଆମେ ପୁସ୍ତକ ଆକାରରେ ପ୍ରକାଶ କରି ଶ୍ରୀରାମଚନ୍ଦ୍ର ଭବନରେ ଉନ୍ମୋଚନ କରିଥିଲୁ । ବିଶିଷ୍ଟ ବିଦ୍ୱାନ୍ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟଅତିଥି ଭାବରେ ଯୋଗ ଦେଇ ପ୍ରାଚ୍ୟ ବିଦ୍ୟା ପରିଷଦର ପ୍ରଶଂସା କରିଥିଲେ । ଡକ୍ଟର ରବୀନ୍ଦ୍ରନାଥ ମିଶ୍ର ଏହି ପରିଷଦର ସଂପାଦକ । ପ୍ରଫେସର ବଳଙ୍କ ମୃତ୍ୟୁ ପରେ ଏହି ପରିଷଦର ସଭାପତି ଭାବରେ ମୁଁ ରହିଅଛି । ଏଥି ସହିତ ଗଙ୍ଗାଧର ବଳ ସ୍ମୃତି କମିଟିର ମଧ୍ୟ ମୁଁ ଅଛି ସଭାପତି । ତାଙ୍କର ପୁତ୍ରମାନେ ଏ ଦିଗରେ

ସମସ୍ତ ସାହାଯ୍ୟ କରୁଅଛନ୍ତି । ତାଙ୍କ ଉପରେ ଆମେ ପ୍ରକାଶ କରିଛୁ ସ୍ମାରକୀ ଗ୍ରନ୍ଥ 'ଗଙ୍ଗା–ଗଙ୍ଗୋତ୍ରୀ' ଓ ପ୍ରାଚ୍ୟ ବିଦ୍ୟା ସଂପର୍କିତ ପ୍ରବନ୍ଧ ପ୍ରତିଯୋଗିତା କରାଇ ଯୋଗ୍ୟ ଲେଖକ/ଲେଖିକାଙ୍କୁ ପୁରସ୍କୃତ କରୁଅଛୁ ।

କଟକ ବେତାର କେନ୍ଦ୍ର ସହିତ ମୋର ସଂପର୍କ ୧୯୭୦ ମସିହାରୁ । ବହୁଥର ମୁଁ ବେତାର କେନ୍ଦ୍ରରୁ ମୋର ବକ୍ତବ୍ୟ ପ୍ରଦାନ କରିଅଛି । ଏବେ ମଧ୍ୟ ବିଭିନ୍ନ ବିଷୟରେ ମୁଁ ବେତାର ମାଧ୍ୟମରେ ବକ୍ତବ୍ୟ ପ୍ରଦାନ କରେ । ବେତାର କେନ୍ଦ୍ରରୁ ମଧ୍ୟ ମୁଁ ଭାଗବତ ଓ ଦାର୍ଢ୍ୟତା ଭକ୍ତି ଉପରେ ଆଲୋଚନାରେ ଭାଗ ନେଇଛି ଓ ଏହି ଗ୍ରନ୍ଥ ଦୁଇଟି ମଧ୍ୟ ସଂପାଦିତ ହୋଇ ପ୍ରଚାରିତ ହୋଇଛି । ନିୟମିତ ଭାବରେ 'ଅନୁଚିନ୍ତା' କାର୍ଯ୍ୟକ୍ରମରେ ମୁଁ ବିଭିନ୍ନ ବିଷୟରେ କହିଥାଏ । କଟକ ବେତାର କେନ୍ଦ୍ର ହିଁ ମୋତେ ରମ୍ୟରଚନା ଓ ଲଘୁରଚନା ଲେଖିବାକୁ ପ୍ରେରଣା ଦେଇଛି । ଏ ଦିଗରେ ଡକ୍ଟର ବ୍ରଜମୋହନ ମହାନ୍ତି, ଡକ୍ଟର ତପନେନ୍ଦୁ ଦତ୍ତ, ଡକ୍ଟର ମୃତ୍ୟୁଞ୍ଜୟ ସାମଲ, ଡକ୍ଟର ଦୀପକ ମହାନ୍ତି ମୋତେ ଉତ୍ସାହ ପ୍ରଦାନ କରିଅଛନ୍ତି । କଟକ ବେତାର କେନ୍ଦ୍ରର ହୀରକ ଜୟନ୍ତୀ ଉତ୍ସବରେ ମୋତେ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଛି ଓ ମୁଖ୍ୟଅତିଥି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମୋତେ ସମ୍ବର୍ଦ୍ଧନା ଜଣାଇ ମାନପତ୍ର, ଉତ୍ତରୀୟ ଓ ରୌପ୍ୟ ଫଳକ ପ୍ରଦାନ କରିଅଛନ୍ତି । କଟକରେ ଦୂରଦର୍ଶନ କେନ୍ଦ୍ର ଥିଲାବେଳେ ନିୟମିତ ମୁଁ ସେଠି ଅଂଶଗ୍ରହଣ କରୁଥିଲି । ଭୁବନେଶ୍ୱରକୁ ଏହି କେନ୍ଦ୍ର ଚାଲିଗଲା ପରେ ମୁଁ କ୍ୱଚିତ୍ ସେଠାକୁ ଯାଇ ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରେ । ରଥଯାତ୍ରାବେଳେ ଧାରା ବିବରଣୀ ଦେବାକୁ ମଧ୍ୟ ସମୟେ ସମୟେ ମୋତେ ଡାକିଛନ୍ତି ।

'ଜନସୁଧା' ଏକ ଉଚ୍ଚକୋଟୀର ସାହିତ୍ୟ ପତ୍ରିକା । ଏହାର ସଂପାଦକ ଶ୍ରୀ ଦିଲୀପ କୁମାର ବେଉରା । ପ୍ରଥମେ ଏହାକୁ ମୃତ୍ୟୁଞ୍ଜୟ ନାୟକ ବୁଝାବୁଝି କରୁଥିଲେ । ଏବେ ଦିଲୀପବାବୁ ଏହାର ସମସ୍ତ ଦାୟିତ୍ୱ ବୁଝୁଛନ୍ତି । ଅଧ୍ୟାପକ ଡକ୍ଟର ପ୍ରକାଶ କୁମାର ପରିଡ଼ା ଏହାର ଲେଖାଗୁଡ଼ିକୁ ଦେଖାଦେଖି କରନ୍ତି । ଦିଲୀପବାବୁ ଦୁଃସାହସୀ । ଶଙ୍କରପୁରଠାରେ 'ବିଜୟିନୀ ପବ୍ଲିକେଶନ୍ସ' ସଂସ୍ଥା କରି ସେହିଠାରେ ନିଜର ପ୍ରେସ୍ ପକାଇ ବହିପତ୍ର ଛାପୁଛନ୍ତି । 'ଜନସୁଧା' ଏଠାରୁ ନିୟମିତ ପ୍ରକାଶ ପାଉଛି । ମୋର ଲେଖା ମଧ୍ୟ ଜନସୁଧାରେ ପ୍ରକାଶ ପାଏ । ଜନସୁଧାର ବାର୍ଷିକ ଉତ୍ସବରେ ତଥା ତା'ର ପଞ୍ଚଦଶତମ ସ୍ୱନକ୍ଷତ୍ର ଉତ୍ସବରେ ମୋତେ ସମ୍ବର୍ଦ୍ଧନା ପ୍ରଦାନ କରିବା ସହିତ ମାନପତ୍ର ଓ ଉପଢୌକନ ପ୍ରଦାନ କରିଅଛନ୍ତି । ଦିଲୀପବାବୁ ଶ୍ରଦ୍ଧାଶୀଳ ମଣିଷ । ତାଙ୍କ କାର୍ଯ୍ୟାଳୟକୁ ପ୍ରାୟ ବିଭିନ୍ନ ସମୟରେ ଲେଖକ/ଲେଖିକାମାନେ ଆସିଥାନ୍ତି । ତାହା ଯେପରି ପାଲଟିଯାଏ ଏକ ସାରସ୍ୱତ ଆଲୋଚନା କ୍ଷେତ୍ର । ଅନେକ ଉପାଦେୟ ପୁସ୍ତକ ସେ ପ୍ରକାଶ କରିଛନ୍ତି । ମୋ ପ୍ରତି ତାଙ୍କର ଅନାବିଳ ଶ୍ରଦ୍ଧା ମୁଁ ଉପଲବ୍ଧି କରେ ।

କବିବର ରାଧାନାଥ ରାୟ ସାହିତ୍ୟ ପରିଷଦ, ସୋରୋ ସହିତ ମୋର ସଂପର୍କ ନିବିଡ଼ । ବାରମ୍ବାର ରାଧାନାଥ ଜୟନ୍ତୀକୁ ମୁଁ ଯାଇଛି । ସେଠି ମଧ୍ୟ ମୁଁ ସମ୍ବର୍ଦ୍ଧିତ ହୋଇଛି । ଜଳେଶ୍ୱରର ଦୀନକୃଷ୍ଣ ସାହିତ୍ୟ ପରିଷଦକୁ ଅନେକଥର ମୁଁ ଅତିଥି ହୋଇ ଯାଇଛି । ଡକ୍ଟର ବିପିନ ବିହାରୀ ବିଶ୍ୱାଳଙ୍କ ଦୀନକୃଷ୍ଣ ସାହିତ୍ୟ ପ୍ରୀତିକୁ ମୁଁ ଲକ୍ଷ୍ୟ କରିଛି । ଏହି ପରିଷଦ ମଧ୍ୟ ମୋତେ ଦୀନକୃଷ୍ଣ ସାହିତ୍ୟ ପୁରସ୍କାର ପ୍ରଦାନ କରିଛି । ବାଲେଶ୍ୱରର ଫକୀରମୋହନ ସାହିତ୍ୟ ପରିଷଦକୁ ଅତିଥି ଭାବରେ କେତେଥର ମୁଁ ଯାଇଛି । ସଂପ୍ରତି ବାଲେଶ୍ୱରର ଡକ୍ଟର ହରିଶ୍ଚନ୍ଦ୍ର ବେହେରାଙ୍କ ସଂପାଦନାରେ 'ଅକ୍ଷାଂଶ' ଓ ଅରୁଣା ରାୟଙ୍କ ସଂପାଦନାରେ 'ପରିଚୟ' ପତ୍ରିକା ପ୍ରକାଶ ପାଉଛି । ଏହି ପତ୍ରିକା ଦୁଇଟିରେ ମୋ ଲେଖା ପ୍ରକାଶ ପାଏ । ସଂପାଦକ ଦ୍ୱୟଙ୍କର ଗଭୀର ଶ୍ରଦ୍ଧାକୁ ମୁଁ ଅନୁଭବ କରେ । କଟକ ସାରଳା ଭବନ ଓ ସାରଳା ସାହିତ୍ୟ ପରିଷଦ ଅନ୍ୟ ଏକ ମହାନ୍ ଅନୁଷ୍ଠାନ । ଇଂଜିନିୟର ଓ ସାହିତ୍ୟିକ ପ୍ରଭାକର ସ୍ୱାଇଁଙ୍କ ଉଦ୍ୟମ ଓ ନିଷ୍ଠା ବଳରେ ଏହି ଅନୁଷ୍ଠାନ ଗଢ଼ିଉଠିଛି । ମୋତେ ସେଠାକୁ ସେ କେତେଥର ଡାକିଛନ୍ତି ଓ ମୁଁ ମଧ୍ୟ ଯାଇ ମୋର ବକ୍ତବ୍ୟ ଦେଇଛି । ଏହି ଅନୁଷ୍ଠାନ ମୋତେ ମାୟାଧର ମାନସିଂହ ସ୍ମାରକ ସମ୍ବର୍ଦ୍ଧନା ଦେଇଛି । ଏହା ଯେପରି ସାରଳା ପୁରସ୍କାର ପ୍ରଦାନ କରୁଛନ୍ତି ତାହା ବାସ୍ତବିକ୍ ପ୍ରଶଂସନୀୟ । ସାରଳା ଦାସଙ୍କ ସାରସ୍ୱତ କୃତି ଉପରେ ମଧ୍ୟ ଏହି ଅନୁଷ୍ଠାନ କେତୋଟି ଗ୍ରନ୍ଥ ସଂପାଦନା କରିଅଛି । ମୋର ଲେଖା ଏହି ଗ୍ରନ୍ଥଗୁଡ଼ିକରେ ମଧ୍ୟ ସ୍ଥାନିତ ହୋଇଅଛି । ପ୍ରଭାକରବାବୁ ବଡ଼ ସ୍ନେହୀ । ସେ ମୋ ଘରକୁ ଆସନ୍ତି । ମୁଁ ଭାବେ ତାଙ୍କ ପାଖରେ ଅସମ୍ଭବ ବୋଲି କିଛି ନାହିଁ । ସବୁ ସେ କରି ଦେଇପାରନ୍ତି ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମାନସ-ସନ୍ତାନ ସମାଜ ୧୯୧୯ ମସିହାରେ ପ୍ରଥମେ ପ୍ରକାଶ ପାଇ ଓଡ଼ିଆ ସାମ୍ବାଦିକତା କ୍ଷେତ୍ରରେ ନିର୍ଭୀକତାର ପରିଚୟ ଦେଇଥିଲା । ତାଙ୍କର ୧୯୨୮ ମସିହାରେ ଦେହାନ୍ତ ପୂର୍ବରୁ ସେ 'ସମାଜ'କୁ ଲୋକସେବକ ମଣ୍ଡଳକୁ ହସ୍ତାନ୍ତର କରି ଦେଇଥିଲେ । ତାଙ୍କ ପରେ ରାଧାନାଥ ରଥ ସମାଜର ପରିଚାଳନା କଲେ । କେତେ ବିଦ୍ୱାନ୍ ଓ ଓଡ଼ିଶା ପ୍ରାଣ ବ୍ୟକ୍ତି ଏହା ସହିତ ସଂପୃକ୍ତ ହେଲେ । ସ୍ୱାଧୀନତା ସଂଗ୍ରାମ କାଳରେ ଏହା ଇଂରେଜ ସରକାରଙ୍କ ବିଷ ଦୃଷ୍ଟିରେ ପଡ଼ିଛି । ରାଧାନାଥବାବୁ ମଧ୍ୟ କାରାଦଣ୍ଡ ଭୋଗିଛନ୍ତି । ତଥାପି ସମାଜ ହୋଇଯାଇଛି ଓଡ଼ିଆ ଜାତିର ହୃଦୟର ଅନୁଷ୍ଠାନ । ସ୍ୱାଧୀନତା ପରେ ପଦ୍ମଭୂଷଣ ଡକ୍ଟର ରାଧାନାଥ ଏହାର ଦୀର୍ଘକାଳ ଧରି ସଂପାଦକ ଦାୟିତ୍ୱ ତୁଲାଇଥିଲେ । ତାଙ୍କର 'ଝିଟିପିଟି କହେ' ଏକ ଉପାଦେୟ ରଚନା । ତାଙ୍କ ଉପରେ ଡକ୍ଟର ପ୍ରମୋଦ ମହାପାତ୍ର ପିଏଚ୍.ଡି. କରିଛନ୍ତି । ରାଧାନାଥବାବୁଙ୍କ ସମୟରେ ସମାଜରେ ମୋର ବହୁ ଲେଖା ବିଭିନ୍ନ ସମୟରେ ପ୍ରକାଶ ପାଇଛି । ସେହି

ସବୁ ଲେଖାପାଇଁ ମୁଁ ପାଠକମାନଙ୍କଠାରୁ କେତେ ଚିଠି ପାଇଛି । ରାଧାନାଥବାବୁଙ୍କ ପରେ ଅଧ୍ୟାପିକା ମନୋରମା ମହାପାତ୍ର ହେଲେ କାର୍ଯ୍ୟକାରୀ ସଂପାଦିକା । ସେ ବିଦୂଷୀ ଓ ସ୍ନେହୀ । ଅନେକ କବିତା ଗ୍ରନ୍ଥ, ଗଳ୍ପ ପୁସ୍ତକ, ଅନୁବାଦ ପୁସ୍ତକ ଓ ପ୍ରବନ୍ଧ ପୁସ୍ତକର ସେ ରଚୟିତା । ତାଙ୍କ ସମୟରେ ଦେଖାଗଲା ଯେ କିଛି ବ୍ୟକ୍ତି ତାଙ୍କୁ ବିରୋଧ କରୁଛନ୍ତି, କୁତ୍ସିତ ଭାଷାରେ ଗାଳି ଦେଉଛନ୍ତି । ସେ କାହାକୁ କିଛି ନ କହି କାନ୍ଦନ୍ତି । ମୋତେ ସେ ସାନଭାଇ ପରି ଶ୍ରଦ୍ଧା କରନ୍ତି । ତାଙ୍କ ରମ୍ୟରଚନା ଉପରେ ମୁଁ ଆଲୋଚନା ଲେଖିଛି । ତାଙ୍କରି ସମୟରେ ସମାଜକୁ କେନ୍ଦ୍ର କରି ନାନା ଗଣ୍ଡଗୋଳ ହେଲା । ତାହାର ପରିସମାପ୍ତି ପରେ ଏବେ ମଧ୍ୟ ଗଣ୍ଡଗୋଳ ହେଲା । କିଛି ଲୋକ ଚାହିଁଲେ ସମାଜକୁ ଜବରଦସ୍ତ ଦଖଲ କରିନେବାକୁ । ଯେପରି ଘଟଣା ଘଟିଲା ତାହା ନିନ୍ଦନୀୟ । 'ସମାଜ' ଏକ ଜାତୀୟ ଅନୁଷ୍ଠାନ । ଏହା କୌଣସି ବ୍ୟକ୍ତିର ନୁହେଁ; ଓଡ଼ିଆ ଜାତିର । ବିରୋଧ ଦୂର କରି ଓ ସଂଘର୍ଷର ଉପସଂହାର କରି ଏହାର ମର୍ଯ୍ୟାଦା ରକ୍ଷା କରାଯିବା ଉଚିତ । ଲୋକସେବକ ମଣ୍ଡଳର କର୍ତ୍ତୃପକ୍ଷ ମଧ୍ୟ କାହାରି ଦ୍ୱାରା ପ୍ରଭାବିତ ନ ହୋଇ ଏହି ପବିତ୍ର ଅନୁଷ୍ଠାନର ମର୍ଯ୍ୟାଦା ରକ୍ଷା କରିବା ଏକାନ୍ତ ଆବଶ୍ୟକ ।

ମୋର ସଂପର୍କ ମଧ୍ୟ ଓଡ଼ିଆ ଭାଷା ପ୍ରତିଷ୍ଠାନ ସହିତ ରହିଛି । ଏ ସଂପର୍କ କିନ୍ତୁ କ୍ଷୀଣ । ମୋର ଛାତ୍ର ଡକ୍ଟର କୈଳାସ ଟିକାୟତ ରାୟ ଥିଲେ ଏହାର ପ୍ରଥମ ନିର୍ଦ୍ଦେଶକ । ତାଙ୍କର ବ୍ୟକ୍ତିତ୍ୱ ବଳରେ ଏହି ଅନୁଷ୍ଠାନକୁ ସେ ଏକ ମର୍ଯ୍ୟାଦାଜନକ ରୂପ ଦେଲେ । ତାଙ୍କ ପରେ ଏହା କ୍ରମଶଃ ମର୍ଯ୍ୟାଦା ହରାଇ ଦେଉଥିବା ଲକ୍ଷ୍ୟ କରାଯାଉଛି । ସଂପ୍ରତି ଓଡ଼ିଆ ଭାଷାର ପ୍ରାଚୀନତାକୁ ପ୍ରମାଣ କରିବା ପାଇଁ ଏହି ଅନୁଷ୍ଠାନ ଯେପରି ନଥି ପ୍ରସ୍ତୁତ କରିଛି ତାହା ନିଶ୍ଚୟ ପ୍ରଶଂସନୀୟ ।

କେନ୍ଦ୍ରାପଡ଼ା ଜିଲ୍ଲା ସାହିତ୍ୟ ପରିଷଦ ସହିତ ମଧ୍ୟ ମୋର ସଂପର୍କ ନିବିଡ଼ । ଏହାର ବାର୍ଷିକ ଉତ୍ସବକୁ ମୁଁ ପ୍ରତି ବର୍ଷ ଯାଏ । ସେଠିକାର ବନ୍ଧୁମାନେ ମୋତେ ଗଭୀର ଶ୍ରଦ୍ଧା କରନ୍ତି । ଖଣ୍ଡାୟତ କ୍ଷତ୍ରିୟ ମହାସଭାକୁ ମୋତେ ନିମନ୍ତ୍ରଣ କରାଯାଏ । ମୁଁ ଯାଏ । ପ୍ୟାରୀମୋହନ ସାମନ୍ତରାୟ ଓ ଅରୁଣ ସାମନ୍ତରାୟଙ୍କ ବିୟୋଗ ପରେ ଏହା ଦୁଇ ଭାଗ ହୋଇଯାଇଛି । ଏହା କେବେ ଶୁଭ ଲକ୍ଷଣ ନୁହେଁ ବୋଲି ମୁଁ ଅନୁଭବ କରେ । ଉତ୍କଳ ପାଟରା ମହାସଭା ବାଲା ମୋତେ ମଧ୍ୟ ଅତୀତରେ ଡାକିଛନ୍ତି । ମୋ'ଠାରୁ ଲେଖା ନେଇଛନ୍ତି । ଓଡ଼ିଶାରେ ମୁଁ ଲକ୍ଷ୍ୟ କରିଛି ଯେ ଏଇ କେତେ ବର୍ଷ ହେଲା ଜାତିକୁ ନେଇ ନାନା ସଂଗଠନ ସୃଷ୍ଟି ହୋଇଛି । ଏହା ଓଡ଼ିଆ ଜାତିର ଐକ୍ୟକୁ ଖଣ୍ଡ ଖଣ୍ଡ କରି ଦେଉଛି । ଆମେ ଯେମିତି ଗୋଟିଏ ଗୋଟିଏ ଜାତି, ଯେମିତି ବ୍ରାହ୍ମଣ-କରଣ-ଖଣ୍ଡାୟତ-ଯାଦବ-ତେଲି-ପାଟରା-ଗୁଡ଼ିଆ ଇତ୍ୟାଦି ହୋଇଯାଉଛୁ; କେହି ଓଡ଼ିଆ ହେଉ ନାହୁଁ ।

ଏପରି ମନୋଭାବକୁ ମୁଁ ପସନ୍ଦ କରେ ନାହିଁ । ମନେ ରଖିବାକୁ ହେବ ଆମେ ଓଡ଼ିଆ- ଓଡ଼ିଶା ରହିଲେ ଆମେ ରହିବା । ଏପରି ଦୃଢ଼ ମନୋଭାବ ସୃଷ୍ଟି ନ ହେଲେ ଆମେ ଅବହେଳିତ ହୋଇ ରହିବା ।

ଏହିପରି ସାରା ଓଡ଼ିଶାର ବିଭିନ୍ନ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ମୋର ସଂପର୍କ ରହିଛି । ଓଡ଼ିଶାର ବିଭିନ୍ନ ସ୍ଥାନରେ ହେଉଥିବା ବୋଇତ ବନ୍ଦାଣ ଉତ୍ସବକୁ ମୁଁ ଯାଇଛି ଅତିଥି ହୋଇ । କେଉଁଠି ମୁଁ ବାନ୍ଧି ହୋଇ ରହି ନାହିଁ । ସବୁ ଅନୁଷ୍ଠାନକୁ ଆପଣାର ମନେକରିଛି । ମୋର ଧାରଣା ସଂଘର୍ଷ ନୁହେଁ; ସଂହତିରେ ହିଁ ଜାତିର ଉନ୍ନତି, ସାହିତ୍ୟର ଉନ୍ନତି, ସଂସ୍କୃତିର ବିକାଶ । ଏ ଦିଗରେ ଗୁଣ୍ଡୁଚିମୂଷା ପରି ମୋର କାର୍ଯ୍ୟ । ତଥାପି ମୁଁ ଖୁସି ଯେ ମୋ ଦ୍ୱାରା ଯେତିକି ହେବା କଥା ତାହା ହେଉଛି ।

## ମୋ ସମୟର ଧର୍ମାନୁଷ୍ଠାନ ଓ ନର ରୂପରେ ଭଗବାନ୍

ମୁଁ ପିଲାଦିନରୁ ଦିଅଁଦେବତା ପ୍ରତି ଏତେଟା ବିଶ୍ୱାସ କରୁ ନ ଥିଲି । ହାଇସ୍କୁଲରେ ପଢ଼ିଲାବେଳେ ମୁଁ ମାର୍କସବାଦ କ'ଣ ଜାଣି ନ ଥିଲି ମାତ୍ର ମୁଁ ସ୍ୱତଃ ସେହିପରି ଗୋଟିଏ ଧାରଣାକୁ ମୋ ଭିତରେ ଅନୁଭବ କରୁଥିଲି । ମୋ ବାପାଙ୍କର ମାନବତାବାଦୀ ଦୃଷ୍ଟିକୋଣଟି ମୋ ଉପରେ ପ୍ରଭାବ ପକାଇଥାଏ । ତେଣୁ ମୁଁ ଛୁଆଁଅଛୁଆଁ ମାନୁ ନ ଥାଏ । ମୁଁ ସବୁ ମଣିଷଙ୍କୁ ଭଲ ପାଉଥାଏ । ଏପରିକି ଚଉଦକୁଲାଟ ଓ ଦୋବନ୍ଧାରୁ ଯେଉଁ ମୁସଲମାନ ବ୍ୟକ୍ତିମାନେ କିରୋସିନି ଟିଣା ବାଉଙ୍ଗିରେ କାନ୍ଧେଇ ଆମ ଗାଁକୁ ବିକିବାକୁ ଆସୁଥିଲେ ସେମାନେ ମଧ୍ୟ ଆମ ଘରେ କିରୋସିନି ଦେଉଥିଲେ । ମୋ ବୋଉ ସେମାନଙ୍କୁ ବସାଇ ଜଳଖିଆ ଦେଉଥିଲା । ମୁଁ ସେମାନଙ୍କୁ ଚାଚା ଡାକୁଥିଲି । ସେମାନଙ୍କର ସ୍ନେହ ମୋ ପିଲା ହୃଦୟରେ ରେଖାପାତ କରୁଥିଲା । କେତେ ଘର ସହିତ ସେମାନଙ୍କର ସୁହୃଯ ମୈତ୍ର ସମ୍ବନ୍ଧ ଥିଲା । ବିବାହ ବ୍ରତ ଇତ୍ୟାଦିରେ ଭାରବେଭାର ଦିଆନିଆ ହେଉଥିଲା । କ'ଣ ହେଲା କେଜାଣି ସ୍ୱାଧୀନତା ପରେ ସେହି ସଂପର୍କ କୁଆଡ଼େ ଉଭେଇଗଲା । ମୋର ଗୋଟିଏ ଧାରଣା ହେଲା ଯେ ହିନ୍ଦୁ ମୁସଲମାନମାନଙ୍କ ଭିତରେ ଯେଉଁ ଫାଟ ସୃଷ୍ଟି ହେଲା ତାହାର ମୁଖ୍ୟ କାରଣ ରାଜନୀତି । କେବଳ ହିନ୍ଦୁ ମୁସଲମାନ ନୁହଁନ୍ତି; ସବର୍ଣ୍ଣ ହରିଜନଙ୍କ ମଧ୍ୟରେ ସୁଦ୍ଧା ଫାଟ ସୃଷ୍ଟି ହୋଇଗଲା । ଗଣତନ୍ତ୍ରରେ ଭୋଟ ପ୍ରକ୍ରିୟା ଏପରି ଦୁରବସ୍ଥା ପାଇଁ ଦାୟୀ । ରାଜନେତାମାନେ ଭୋଟ ପାଇଁ ସାଂପ୍ରଦାୟିକ ଭେଦ ସୃଷ୍ଟି କରି ଦେଲେ । ଉପରେ ହରିନାମ କହି ଭିତରେ ଫାଟ ସୃଷ୍ଟି କରିଦେଲେ । ଏଥିରେ ପୁଣି ସଂରକ୍ଷଣ ରାଜନୀତି ଆହୁରି ଇନ୍ଧନ ଯୋଗାଇଲା । ନେତାମାନେ ସେଥିରେ ଘିଅ

ଢାଳିଲେ । ଏହାର ଭୟଙ୍କର ପରିସ୍ଥିତି ମଣ୍ଡଳ କମିଶନ ବେଳେ ସୃଷ୍ଟି ହେଲା । ଏହି ଯେଉଁ ସଂରକ୍ଷଣ ବ୍ୟବସ୍ଥା ଆମ ଦେଶରେ ଚାଲିଛି ତାହା ପୃଥିବୀର ଅନ୍ୟ ଦେଶମାନଙ୍କରେ ଅଛି କି ନାହିଁ ତାହା ମୁଁ ଜାଣେନା । ତେବେ ଏହା ଯେ ଭାରତୀୟ ଜନଗଣଙ୍କୁ ଭାଗ ଭାଗ କରିଦେଉଛି ତାହା ଜଳ ଜଳ ଦେଖାଯାଉଛି । ଏବେ କିଛି ବର୍ଷ ହେଲା ବିଭିନ୍ନ ସଂପ୍ରଦାୟ ସଂରକ୍ଷଣ ପାଇଁ ଦାବି କରୁଛନ୍ତି । କେତେକ ସଂପ୍ରଦାୟ ଧର୍ମ ସଂରକ୍ଷଣ ଆଇନ ଭିତରକୁ ଗଲେଣି । ଯାହା ଦେଖାଯାଉଛି ସଭିଏଁ କେବଳ ସଂରକ୍ଷିତ ହେବାକୁ ଚାହାଁନ୍ତି । ଆମ ଦେଶରେ ବହୁ ଦଳୀୟ ରାଜନୀତି, କେତେ ଜାତୀୟ ସ୍ତରର, କେତେ ମଧ୍ୟ ଆଞ୍ଚଳିକ ସ୍ତରର । ସବୁଦଳ ସଂରକ୍ଷଣ ରାଜନୀତିକୁ ଗୁରୁତ୍ୱ ଦେଉଛନ୍ତି । କେହି ଚାହୁଁ ନାହାନ୍ତି ଏଥିରେ ହାତ ଦେବାକୁ । ଦେଲେ ସେମାନଙ୍କ ଡଙ୍ଗା ମଝିନଈରେ ବୁଡ଼ିବା ସାର ହେବ । ରାଜନେତାମାନେ ମଧ୍ୟ ଧର୍ମ ନିରପେକ୍ଷତାର ଧ୍ୱନି ଦେଇ ଦେଶଟାକୁ କୁଆଡ଼େ ମୁହାଁଇ ନେଉଛନ୍ତି କହିବା ମୁସ୍କିଲ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଧର୍ମ ଓ ଧର୍ମାନୁଷ୍ଠାନ ସ୍ଥାପନକୁ ନେଇ ଯେପରି ଆମ ଓଡ଼ିଶାରେ ଗୋଟାଏ ପ୍ରତିଯୋଗିତା ଲାଗିଥିବା ଅନୁଭବ କରାଯାଏ । ଏବେ କେତେ ଯେ ମଠ ମନ୍ଦିର ଗଢ଼ାଗଲାଣି ତାହାର ହିସାବ କରିବା ସମ୍ଭବ ନୁହେଁ । ଯିଏ ଯେଉଁଠି ପାରୁଛି ସିଏ ସେଠି ଗୋଟିଏ ମନ୍ଦିର ବା ମଠ ତିଆରି କରିଦେଉଛି । କିଏ ମଧ୍ୟ ଆଶ୍ରମ କରୁଛି । ସେଥିରେ ପୁଣି ଓଡ଼ିଶା ବାହାରୁ କେତେ ସାଧୁସନ୍ଥ ମାଡ଼ି ଆସୁଛନ୍ତି ଏଇ ପ୍ରଦେଶକୁ । ସେମାନେ ମଧ୍ୟ ଆସନ ଜମେଇ ବସିଛନ୍ତି ଆମ ପ୍ରଦେଶରେ । ଆମରି ଲୋକେ ସେମାନଙ୍କର ଶିଷ୍ୟ ବନି ସେମାନଙ୍କର ଜୟଗାନ କରୁଛନ୍ତି । ସେମାନେ କୁଆଡ଼େ ସ୍ୱୟଂ ଭଗବାନ୍ । କିଏ ପୁରୁଷୋତ୍ତମ ତ ଆଉ କିଏ ରାମ, କୃଷ୍ଣ ଇତ୍ୟାଦି । ବାହାରୁ ସେହି ସାଧୁଙ୍କ ସହିତ ଆସିଥିବା ଶିଷ୍ୟା ବା ଶିଷ୍ୟ ପ୍ରବଚନ ଦେଇ ଲୋକଙ୍କୁ ଏପରି ଆକର୍ଷଣ କରୁଛନ୍ତି ଯେ ଲୋକ ପାଗଳ ହୋଇ ଧାଉଁଛନ୍ତି । ଏଣେ ସେହି ଅବତାର ପୁରୁଷମାନେ ଭକ୍ତମାନଙ୍କଠାରୁ କୋଟି କୋଟି ଟଙ୍କା ଓ ଅନ୍ୟାନ୍ୟ ଜିନିଷ ନେଉଛନ୍ତି ।

ବାହାର ସାଧୁସନ୍ଥଙ୍କୁ ଦେଖି ଆମ ଓଡ଼ିଶାର ମଧ୍ୟ କେତେ ସାଧୁସନ୍ଥ ନିଜ ନିଜକୁ ଅବତାର ବୋଲି ଶିଷ୍ୟ/ଶିଷ୍ୟାଙ୍କ ଦ୍ୱାରା ପ୍ରଚାର କରି ଦେଇ ବେଶ୍ ବିଳାସ ବ୍ୟସନରେ ରହୁଥିବା ଦେଖାଯାଉଛି । ଏମାନଙ୍କ ଭିତରେ ସଂହତି ନାହିଁ । ପ୍ରତ୍ୟେକ ତ ଅବତାର, ଜଣେ ଅନ୍ୟକୁ ସହିବ କିପରି ? ସାରା ଓଡ଼ିଶାରେ ଛତୁ ଫୁଟିଲା ପରି କେତେ ଯେ ଅବତାର ପୁରୁଷଙ୍କର ଆବିର୍ଭାବ ଘଟିଲାଣି ତାହାର ହିସାବ କିଏ ରଖିଛି ? ପ୍ରତ୍ୟେକଙ୍କର ଥାଆନ୍ତି ଜଣେ ଜଣେ ପ୍ରବକ୍ତା । ସେମାନେ ପ୍ରବଚନ ଦେଇ ନିଜ ନିଜ ଗୁରୁଙ୍କୁ ସପ୍ତଦ୍ୱୀପା ମେଦିନୀର ସମ୍ରାଟ୍ ମଧ୍ୟ କୁହନ୍ତି । ସିଏ କୁଆଡ଼େ ଘଡ଼ିକେ ଧଳା ଘୋଡ଼ା କଳା ଘୋଡ଼ାରେ

ଚଢ଼ି ପୃଥିବୀକୁ ଧ୍ୱଂସ କରିଦେବେ । ପ୍ରବଚକମାନେ ପ୍ରଚୁର ଅର୍ଥ ବିନିମୟରେ ବ୍ୟାବସାୟିକ ସୂତ୍ରରେ ପ୍ରବଚନ ଦିଅନ୍ତି । ସେମାନେ ଯେ ଧର୍ମ ନାମରେ ପ୍ରବଞ୍ଚନା କରନ୍ତି, ଗୁଡ଼ାଏ ଭାକ୍ତିକ ମିଥ୍ୟା କଥା କହି ଜନମନ ରଂଜନ କରନ୍ତି ତାହା କେହି ବୁଝନ୍ତି ନାହିଁ । ଏହା ଆଜିକାଲି ଗୋଟାଏ ଫେସନ ହୋଇଯାଇଛି । ପୁଣି କେତେ ଅବତାର ପୁରୁଷ ମଧ୍ୟ ଦୂରଦର୍ଶନ ପରଦାରେ ବିଚିତ୍ର ଢଙ୍ଗରେ ଆବିର୍ଭୂତ ହୋଇ ନିଜକୁ ସ୍ୱୟଂ ନାରାୟଣ ବୋଲି ପ୍ରଚାର କରୁଛନ୍ତି । ଲୋକେ ସେହି ପରଦାରେ ମାଳା ତିଳକ ନାଇ ହରିବୋଲ ହୁଳହୁଳି ଦେଇ ନାଚ କରୁଥିବା ଦେଖାଯାଏ । ଏସବୁ ମୋ ଭିତରେ ପ୍ରତିକ୍ରିୟା ସୃଷ୍ଟି କରେ । ମୁଁ ଭାବେ ଭଗବାନ୍‌ଙ୍କର କ'ଣ ଆଉ କିଛି କାମ ନାହିଁ; ଏକ ସମୟରେ ଏତେ କଳ୍କୀ ଅବତାର ହୋଇଗଲେ ଏଇ ଓଡ଼ିଶା ଭୂଇଁରେ କେବଳ ! ଏତେ ତ ଅବତାର ହେଲେଣି; କାହିଁ ସେମାନଙ୍କର ପ୍ରଭାବ ? ହାତ ବୁଲେଇଦେଲେ ତ ଅସମ୍ଭବ ସମ୍ଭବ ହୋଇଯାଆନ୍ତା, ଦୁଷ୍ଟ ସଇତାନମାନଙ୍କର ଧ୍ୱଂସ ହୋଇଯାଆନ୍ତା, ଯୁଦ୍ଧଖୋରମାନଙ୍କର ତ ବିନାଶ ହୋଇଯାଆନ୍ତା, ଧର୍ଷକମାନଙ୍କର ପତନ ହୋଇଯାଆନ୍ତା, କାହିଁ ସେପରି ତ କିଛି ହେଉ ନାହିଁ ? ଯାବତୀୟ ଦୁର୍ନୀତି, ହତ୍ୟାକାଣ୍ଡ, ଧର୍ଷଣ ବଢ଼ି ବଢ଼ି ଚାଲିଛି । ତଥାପି ଲୋକେ ମାତିଛନ୍ତି । ସେମାନଙ୍କ ଭିତରେ ପ୍ରତିଯୋଗିତା ଚାଲିଛି– କାହା ଭଗବାନ୍ ବଡ଼ । ଧର୍ମ ନାମରେ ଏପରି ଏକ କଳୁଷିତ ବାତାବରଣ ସୃଷ୍ଟି ହୋଇଛି । ଅବତାରମାନେ ସାଧାରଣ ଲୋକଙ୍କ ସରଳ ବିଶ୍ୱାସର ସୁଯୋଗ ନେଇ ସେମାନଙ୍କୁ ଲୁଣ୍ଠନ କରୁଛନ୍ତି । ଏହା ଧର୍ମ ନୁହେଁ । କୌଣସି ସଂପ୍ରଦାୟ ମଧ୍ୟ ଧର୍ମ ନୁହେଁ । ଧର୍ମ ମଧ୍ୟ ମଠ ମନ୍ଦିର ମସଜିଦ୍ ଗିର୍ଜା ନୁହେଁ । ଧର୍ମ ସ୍ୱୟଂ ଭଗବାନ୍ । ତାହା ସର୍ବତ୍ର ପରିପୂର୍ଣ୍ଣ । ଅଥଚ ଆମେ ଧର୍ମକୁ ସଂକୀର୍ଣ୍ଣ ସ୍ତରକୁ ନେଇଆସିଲୁଣି । ଧର୍ମକୁ ଗୋଟାଏ ବ୍ୟବସାୟରେ ପରିଣତ କରିଦେଲୁଣି । ଧର୍ମ ପ୍ରତି ସାଧାରଣ ଲୋକଙ୍କର ଦୁର୍ବଳତା ରହିଛି । ଏହି ଦୁର୍ବଳତାକୁ ଠିକ୍ ଜାଣନ୍ତି ଆଜିକାଲିକାର ସନ୍ଥମାନେ, ଅବତାରମାନେ । ଏପରି ଅବସ୍ଥା ଭିତରେ ଆମ ଓଡ଼ିଶାରେ କେତେ ମଧ୍ୟ ପାରଂପରିକ ମଠ, ମନ୍ଦିର ଅଛି । ଏଇ ଯେମିତି ପୁରୀର ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ଝଙ୍କଡ଼ର ଶାରଳା ମନ୍ଦିର, କାକଟପୁରର ମଙ୍ଗଳା ମନ୍ଦିର, ଯାଜପୁରର ବିରଜା ମନ୍ଦିର, ରେମୁଣାର ଗୋପୀନାଥ ମନ୍ଦିର, ସମ୍ବଲପୁରର ସମଲେଶ୍ୱରୀ ମନ୍ଦିର ଇତ୍ୟାଦି । ଏସବୁ ମନ୍ଦିର ସହିତ ଆମ ରାଜ୍ୟର ଇତିହାସ ସମ୍ବନ୍ଧିତ । ବିଶେଷତଃ ଜଗନ୍ନାଥଙ୍କୁ ଆମେ ଜଗତର ନାଥ କୋଟି ବ୍ରହ୍ମାଣ୍ଡର ଠାକୁର ବୋଲି କହୁ । ସେ ଅନ୍ୟ ଦେବତାଙ୍କ ପରି ପ୍ରତିମା ନୁହନ୍ତି । ସେ ଏକ ପ୍ରତୀକ । ରୂପ ହୋଇ ମଧ୍ୟ ସେ ଅରୂପ । ସଗୁଣ ପରି ଜଣାଯାଉଥିଲେ ମଧ୍ୟ ନିର୍ଗୁଣ । ସାକାର ହେଲେହେଁ ନିରାକାର । ତାଙ୍କ ପାଖରେ ଜାତି ଅଜାତି ସମାନ । ଉଚ୍ଚନୀଚ ସମାନ । ଧନୀ ନିର୍ଦ୍ଧନ ସମାନ । ଅଥଚ

ଆମେ ସଂକୀର୍ଣ୍ଣ ମନୋଭାବ ନେଇ ତାଙ୍କୁ ବାନ୍ଧି ରଖିଛୁ । ସାରା ବିଶ୍ୱର ସେ ହୋଇପାରୁ ନାହାନ୍ତି । ମୁଁ ଭାବେ କ'ଣ ସେହି ବିଶ୍ୱ ଦେବତାଙ୍କୁ ସକଳ ସଂକୀର୍ଣ୍ଣତାରୁ ମୁକ୍ତ କରି ସାରା ବିଶ୍ୱର କରିପାରିବା ନାହିଁ ?

ଏଇ ଅର୍ଦ୍ଧଶତାବ୍ଦୀ ଭିତରେ ଆମ ଓଡ଼ିଶାରେ ଶିବାନନ୍ଦ ଆଶ୍ରମ, ନିଗମାନନ୍ଦ ଆଶ୍ରମ, ଅନୁକୂଳଚନ୍ଦ୍ର ଆଶ୍ରମ, ଶ୍ରୀଅରବିନ୍ଦ ଆଶ୍ରମ, ଶ୍ରୀରାମକୃଷ୍ଣ ଆଶ୍ରମ, ସତ୍ୟସାଇ ଆଶ୍ରମ, ଶିରିଡ଼ିସାଇ ମନ୍ଦିର ଆଦି କେତେ ଅନୁଷ୍ଠାନ ଗଢ଼ିଉଠିଛି । ପ୍ରତ୍ୟେକର ମଧ୍ୟ ଅଛନ୍ତି ଶହ ଶହ ଆଶ୍ରିତ ଭକ୍ତ । ଏଥିସହିତ ଅଛି ମଧ୍ୟ ବଳିଆବାବା ଆଶ୍ରମ, କେଶବବାବା ଆଶ୍ରମ, ବାୟାବାବା ଆଶ୍ରମ, ସାରଥି ଆଶ୍ରମ, ଜଳୌକା ବୈକୁଣ୍ଠବାବା ଆଶ୍ରମ, କାଳିଆବୋଦାର ପାଗଳା/ ବାୟା ଆଶ୍ରମ, ବ୍ରହ୍ମକ୍ଷେତ୍ର ଇତ୍ୟାଦି କେତେ ଆଶ୍ରମ । ପରଂପରାକ୍ରମେ ଅଛି ଛତିଆବଟ, ନେମ୍ଦାଳ ଅଚ୍ୟୁତାନନ୍ଦ ଗାଦି, ମହିମା ଆଶ୍ରମ । ମୁଁ ପ୍ରାୟ ସମସ୍ତ ଆଶ୍ରମକୁ ଯାଇଛି ଅତିଥି ହୋଇ । ମୁଁ ପ୍ରାୟ ଦେଖେ ଯେଉଁମାନେ ମାଳିକା ମୁଖସ୍ଥ କରି ଗାଆନ୍ତି, ତାଳ ଦେଇ ବାଜା ବଜାନ୍ତି ତାହାକୁ ଲୋକେ ଶୁଣନ୍ତି, ଭାବନ୍ତି ମାଳିକାରେ ଯାହା ଲେଖାଯାଇଛି ତାହା ନିଶ୍ଚୟ ହେବ । ମାଳିକା ଯେ ସକଳ ଶାସ୍ତ୍ରଠାରୁ ଶ୍ରେଷ୍ଠ; ଏମାନେ କହନ୍ତି । ମାଳିକା କିନ୍ତୁ ଭୟ ସୃଷ୍ଟି କରେ ନାହିଁ; ସାମାଜିକ ଚେତନା ସୃଷ୍ଟି କରେ । ଏକଥା ଏମାନେ ବୁଝନ୍ତି ନାହିଁ । ମୁଁ ଏହି ପଚାଶ/ଷାଠିଏ ବର୍ଷ ଭିତରେ କେତେ କେତେ ସାଧୁଙ୍କୁ ଦେଖିଲିଣି । ମୋ ଗାଁରେ ଥରେ ଦେଖିଥିଲି ଗୋଟିଏ ବାବାଜୀଙ୍କୁ । ସେ ଆସି ଆମ ଛକପାଖରେ ଗୋଟିଏ ବଢ଼େଇ ଘରେ ରହୁଥିଲେ । ତାଙ୍କୁ ଲୋକେ ଶୁକୁଟା ମା ବାବାଜୀ ବୋଲି ଡାକନ୍ତି । ମୁଁ ଥରେ ତାଙ୍କୁ ଦେଖିବା ପାଇଁ ଗଲି । ସେ ଲୋକଙ୍କୁ କହୁଥାନ୍ତି ଯେ ସେ ପରିସ୍ରା କରନ୍ତି ନାହିଁ, ଝାଡ଼ା ଯାଆନ୍ତି ନାହିଁ; ଯାହା ଖାଆନ୍ତି ତାହା ଅନନ୍ତ ଗର୍ଭରେ ଲୀନ ହୋଇଯାଏ । ଲୋକେ ତାଙ୍କର ପୂଜା କରୁଥାନ୍ତି । ଆମ ଗାଁରୁ ସେ ଆଉ ଏକ ପାଖ ଗାଁକୁ ଗଲେ । ଜଣେ ଲୋକଙ୍କ ଘରେ ରହିଲେ । ଦିନେ ରାତିରେ ଫକୀରମୋହନ ସେନାପତିଙ୍କ ଛ'ମାଣ ଆଠଗୁଣ୍ଠର ଲଳିତା ଦାସ ବାବାଜୀ ପରି ଗୋଟିଏ ଯୁବତୀକୁ ଧରି କୁଆଡ଼େ ଚାଲିଗଲେ । ଲୋକେ ଖୋଜିଲେ । ତା'ପରେ କ'ଣ ହେଲା ମୁଁ ଜାଣି ନାହିଁ । ସେହି ଦିନରୁ ମୋର ବାବାଜୀ ମାତାଜୀଙ୍କ ପ୍ରତି ଗୋଟାଏ ଘୃଣା ସୃଷ୍ଟି ହୋଇଗଲା । ମୁଁ ତ ସହଜରେ ପ୍ରଗତିବାଦୀ ଚେତନାର ମଣିଷଟିଏ । ତେଣୁ ମୁଁ ଧର୍ମକୁ ନେଇ ବୀଭତ୍ସ କାଣ୍ଡ କରୁଥିବା ବାବା ମାତାଙ୍କୁ ଆଦୌ ପସନ୍ଦ କଲି ନାହିଁ ।

ମୋ ସାଆନ୍ତଙ୍କ ବାରମ୍ବାର ତାଗିଦାରେ ମୁଁ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯାଇଛି । ମୁଁ ମନେକରେ ଓଡ଼ିଶାରେ ଏତେ ବଡ଼ ଠାକୁର ଥାଉଁ ଥାଉଁ ଆଉ କାହିଁକି କେଉଁ ବାବା ମାତାଙ୍କ ପାଖକୁ ଯିବ ? ମୁଁ କାହା ପାଖକୁ ଯାଉ ନ ଥାଏ । ମନେପଡୁଛି ମୋ ପିଲାଦିନ

କଥା । ଥରେ ଆମ ପୋଖରୀରେ ଗାଧୋଇ ସାରି ଓଦା ଗାମୁଛା ପିନ୍ଧି ଆମ ଛକ ଉପରେ ଛିଡ଼ା ହୋଇଥାଏ । ଦେଖିଲି ଜଣେ ବଲ୍‌କଳ ପିନ୍ଧା ସାଧୁ ହାତରେ ଖଣ୍ଡେ ତାଳପତ୍ର ଛତା ଧରି ଆସୁଥାନ୍ତି । ତାଙ୍କ ପଛରେ ଆସୁଥାନ୍ତି ଜଣେ ଗେରୁଆବସ୍ତ୍ରଧାରୀ ସନ୍ୟାସୀଟିଏ । ସେପର୍ଯ୍ୟନ୍ତ ମୁଁ ବଲ୍‌କଳଧାରୀ ବାବାଙ୍କୁ ଦେଖି ନ ଥାଏ । ମୁଁ ତାଙ୍କ ପାଦଛୁଇଁ ପ୍ରଣାମ କରିବାରୁ ସେ ଛିଡ଼ା ହୋଇ ମୋତେ ଆଉଁଶି ଦେଲେ । ମହିମା ଅଲେଖ କହି ମୋର ମଙ୍ଗଳ ପାଇଁ ପ୍ରାର୍ଥନା କଲେ । ପରେ ସେ ଆମ ଗାଁର କଲ୍ୟାଣ କଲେ । ସେ ମୋତେ କହିଲେ– ବାବା ! ମୁଁ ଏଇ ଘାଗରା ପାଖ ବେରୁହାଁ ଗ୍ରାମକୁ ଯାଉଛି । ସେଠି ଆମର ଧୁନି ଲାଗିବ ଓ ଯଜ୍ଞ ହେବ । ଯଦି ସୁବିଧା ହୁଏ ସନ୍ଧ୍ୟାବେଳକୁ ସେଠିକୁ ଆସିବ । ଏହା କହି ସେ ଚାଲିଗଲେ । ପରେ ଜାଣିଲି ସେ ମହିମାଧର୍ମର ପର ସନ୍ୟାସୀ ଅବଧୂତ କ୍ଷେତ୍ରବାସୀ ବାବା ।

ମୁଁ ଯେତେବେଳେ ଅଧ୍ୟାପକ ହେଲି ତାଙ୍କର ଶିଷ୍ୟ ପାଗଳବାବା (ନିତ୍ୟାନନ୍ଦ ଦାସ) ମୋ କଟକ ବସାକୁ ବହୁଥର ଆସିଛନ୍ତି । ମୋତେ ଡାକିଛନ୍ତି ମହିମାଧର୍ମ ସଭାକୁ । ଏହି ଅବକାଶରେ ମୁଁ ମହିମା ଧର୍ମର ତତ୍ତ୍ୱ ଓ ଦର୍ଶନ ସଂପର୍କରେ ପଢ଼ାପଢ଼ି କଲି । ମୁଁ ଭଲ ପାଇଲି ଏହି ଧର୍ମର ମାନବିକ ଆଦର୍ଶକୁ । ମହିମାଧର୍ମ ମୂର୍ତ୍ତି ପୂଜାକୁ ବିରୋଧ କରେ । ଜାତି ଅଜାତି ଭେଦକୁ ମାନେ ନାହିଁ । ଏକ ଶୂନ୍ୟ ଅଲେଖ ବ୍ରହ୍ମଙ୍କୁ ମାନେ । ସାରା ବିଶ୍ୱ ଯେ ମହିମା ପରିବାର ଘୋଷଣା କରେ । କ୍ଷେତ୍ରବାସୀ ବାବାଙ୍କର ପ୍ରବୃନ୍ଧ ପୁରାଣର ଦୁଇ ଖଣ୍ଡର ମୁଁ ମୁଖବନ୍ଧ ଲେଖିଲି । ଥରେ ସେ ଉତ୍ତର ବାଲେଶ୍ୱରର ମଙ୍ଗଳପୁରଠାରେ ମହିମାଧର୍ମର ସଭା କରୁଥାନ୍ତି । ମୋତେ ମଧ ସେହି ସଭାକୁ ମୁଖ୍ୟବକ୍ତା ଭାବରେ ନିମନ୍ତ୍ରଣ କରିଥାନ୍ତି । ମହିମା ଧର୍ମର ବିଶିଷ୍ଟ ଅନୁଗତ ପ୍ରଫେସର ଶତ୍ରୁଘ୍ନ ନାଥ ମଧ ଯାଇଥାନ୍ତି । ସେ ଜ୍ଞାନୀ ଓ ସ୍ନେହୀ ମଣିଷ । ବଡ଼ ସରଳ ଓ ଅମାୟିକ । ଗେରୁଆ ମଧ ପିନ୍ଧନ୍ତି । ଜଣେ ପ୍ରଫେସରର ଅହମିକା ତାଙ୍କର ନ ଥାଏ । ସେ ମୋତେ ବହୁତ ସ୍ନେହ କରନ୍ତି । ମୁଁ ମଧ ତାଙ୍କ ପ୍ରବନ୍ଧ ଉପରେ ଦୀର୍ଘ ଆଲୋଚନା ଲେଖିଥାଏ । ସେଦିନ ସଭାରେ ସେକାଳର ପୋଲିସ ବିଭାଗର ଡିଜି ଶ୍ରୀଯୁକ୍ତ ଗୋବିନ୍ଦ ସେନାପତି ମଧ ଜଣେ ଅତିଥି ଥାଆନ୍ତି । ତାଙ୍କ ଘର ସେଇଠି । ତାଙ୍କ ପ୍ରତି ସେଠିକାର ଲୋକଙ୍କ ଶ୍ରଦ୍ଧା ଓ ସଂଭ୍ରମତାକୁ ଲକ୍ଷ୍ୟ କଲି । ସେ ଅଞ୍ଚଳର ମନ୍ତ୍ରୀ ଭୂପାଳଚନ୍ଦ୍ର ମହାପାତ୍ର, ସାଂସଦ ଚିନ୍ତାମଣି ଜେନା ଓ ଅନ୍ୟାନ୍ୟ ରାଜନେତାମାନେ ଯାଇଥାନ୍ତି । ହଠାତ୍ ସେମାନଙ୍କୁ ବିରୋଧ ହେଲା । ସେତେବେଳେ ଉତ୍ତର-ବାଲେଶ୍ୱରରେ ସରକାରଙ୍କ ତରଫରୁ ସାମରିକ ଘାଟି ପ୍ରତିଷ୍ଠା ପାଇଁ ଉଦ୍ୟମ ଚାଲୁଥାଏ । ଲୋକେ କିନ୍ତୁ ବିରୋଧ କରୁଥାନ୍ତି । ଘାଟି ଅଞ୍ଚଳରୁ ଗୋଟିଏ ବିରାଟ ଶୋଭାଯାତ୍ରା ମାଡ଼ିଆସିଲା । ସଭା ପାଖ ରାସ୍ତାରେ ପହଞ୍ଚି ମନ୍ତ୍ରୀ ସାଂସଦ ଓ

ବିଧାୟକମାନଙ୍କ ଫେରିଯିବାକୁ ସ୍ଲୋଗାନ ଦେଉଥାନ୍ତି । ପୋଲିସ ଜମା ହୋଇଥାଆନ୍ତି । ମୁଁ କୌତୂହଳବଶତଃ ସେମାନଙ୍କ ନିକଟକୁ ଗଲି । ଦେଖିଲି ବାଲେଶ୍ୱର ଫକୀରମୋହନ କଲେଜରେ କେତେଜଣ ପୁରାତନ ଛାତ୍ରନେତା ଅଛନ୍ତି । ସେମାନଙ୍କୁ ମୁଁ କହିଲି– ଏଠି ଗୋଟିଏ ଧର୍ମସଭା ହେବ । ଏହାକୁ ବିରୋଧ କରୁଛ କାହିଁକି ? ଏଣେ ଶତ୍ରୁଘ୍ନବାବୁ ବ୍ୟସ୍ତ । ପୋଲିସ ଲାଠି ଚାର୍ଯ କରିବ । ଗଣ୍ଡଗୋଳ ହେବ । ମୋ ଅବସ୍ଥା କ'ଣ ହେବ ? ସେ ଲୋକ ପଠାଉଥାନ୍ତି ମୋତେ ନେଇଯିବା ପାଇଁ । ମୁଁ କିନ୍ତୁ ଗଲି ନାହିଁ । ଆନ୍ଦୋଳନକାରୀଙ୍କ ସହିତ ମୁଁ ଆଲୋଚନା କରୁଥାଏ । ଏତିକିବେଳେ କ୍ଷେତ୍ରବାସୀ ବାବା ତାଙ୍କ ଯଜ୍ଞମଣ୍ଡପକୁ ଯାଇ ଘୃତାହୁତି ଦେଇ ବଡ଼ପାଟିରେ ମହିମା ଅଲେଖ ଡାକ ଦେଲେ । ଅନ୍ୟାନ୍ୟ ସମବେତ ସନ୍ନ୍ୟାସୀଗଣ ତାଙ୍କ ସହିତ ସ୍ୱର ମିଳାଇ ମହିମା ଅଲେଖ ଧ୍ୱନି ଦେଲେ । ହଠାତ୍ ଆନ୍ଦୋଳନକାରୀ ଶାନ୍ତ ପଡ଼ିଗଲେ । ଗୋବିନ୍ଦବାବୁ ସ୍ଥାନୀୟ ବ୍ୟକ୍ତି ହୋଇଥିବାରୁ ସେ ମଧ୍ୟ ସମସ୍ତଙ୍କୁ ବୁଝାଉଥାଆନ୍ତି । ବିପ୍ଳବୀମାନେ କହିଲେ– ଆମର ଲକ୍ଷ୍ୟ ନୁହେଁ ଧର୍ମ ସଭାକୁ ଭାଙ୍ଗିଦେବା । ଆମେ କେବଳ ଗୋଟିଏ ଦାବିପତ୍ର ଦେବୁ । ମନ୍ତ୍ରୀ ଓ ସାଂସଦ ଆସି ଆମଠାରୁ ତାହାକୁ ନିଅନ୍ତୁ ଓ ଆମ୍ଭେମାନେ ଚାଲିଯିବୁ । କଲେକ୍ଟର, ଗୋବିନ୍ଦବାବୁ ଓ ଅନ୍ୟ କେତେଜଣ ଅଧିକାରୀ ଦାବିପତ୍ର ନେଲେ । ମନ୍ତ୍ରୀ ବା ସାଂସଦ ଭୟରେ ଆସିଲେ ନାହିଁ । ସେମାନେ ଫେରିଗଲା ପରେ ସଭା ହେଲା । ମୁଁ ଯେଉଁ ଭାଷଣ ଦେଇଥିଲି ତାହାକୁ ପାଗଳବାବା ରେକର୍ଡ କରି ପରେ ତାହାକୁ ଛାପି ଦେଇଥିଲେ । କିଛିଦିନ ପରେ ଜଣାଗଲା ଯେ ସେହି ଅଞ୍ଚଳରୁ ଘାଟି ଉଠିଗଲା । ମୁଁ ମଧ୍ୟ ଏହା ପୂର୍ବରୁ ଭୋଗରାଇ ଅଞ୍ଚଳକୁ କେତେଥର ବିଭିନ୍ନ ସାଂସ୍କୃତିକ ସଭାରେ ଭାଷଣ ଦେବାକୁ ଯାଇଥିଲି । ମୁଁ ପ୍ରତ୍ୟକ୍ଷ ଭାବରେ ଅନୁଭବ କରିଥିଲି ଯେ ଏପରି ଏକ ବିସ୍ତୃତ ଉର୍ବର ଚାଷଜମିକୁ ଘାଟି କରିବା ପାଇଁ ସରକାରଙ୍କ ହାତରେ ଟେକିଦେବା ଆଦୌ ଉଚିତ ନୁହେଁ ।

ମହିମା ଧର୍ମର ବିଭିନ୍ନ ସଭାକୁ ମୁଁ ଯାଇଛି । ମହିମା ସନ୍ନ୍ୟାସୀମାନେ ଖୁବ୍ ଶ୍ରଦ୍ଧା କରନ୍ତି । ୧୯୮୪ ମସିହାରେ ମୁଁ ଏକ ତୀବ୍ର ମାନସିକ ସଂକଟରେ ଥାଏ । ଆମ ଘରେ ପାଗଳା ବାବା ପହଞ୍ଚି ମୋତେ ଚାନ୍ଦିନିଚୌକ ମହିମା ଆଶ୍ରମରେ ବିଜେ ହୋଇଥିବା ବିଶ୍ୱନାଥ ବାବାଙ୍କ ପାଖକୁ ନେଇଗଲେ । ମୁଁ ପହଞ୍ଚି ତାଙ୍କୁ ପ୍ରଣାମ କଲି । ତମ୍ବା ରଙ୍ଗର ଚେହେରା । ମୁଣ୍ଡରେ ଜଟା ବନ୍ଧା ହୋଇଥାଏ । ସେତେବେଳକୁ ତାଙ୍କୁ ୧୦୫ ବର୍ଷ ବୟସ । ତାଙ୍କ ଆଖିର ଦୃଷ୍ଟି ଶକ୍ତି ଲୋପ ପାଇଥାଏ । କାନକୁ କିଛି ଶୁଣାଯାଉ ନ ଥାଏ । ଛିଡ଼ା ହୋଇପାରୁ ନ ଥାନ୍ତି । ଧୀରସ୍ଥିର ଭାବରେ ସେ ପଦ୍ମାସନରେ ବସିଥାନ୍ତି । ମୁଁ ତ ତାଙ୍କ ସଂପର୍କରେ କିଛି ଜାଣି ନ ଥାଏ । ମୁଁ ତାଙ୍କୁ କ'ଣ ପ୍ରଶ୍ନ ପଚାରିଲି ମନେ ନାହିଁ । ପାଗଳବାବା ତାଙ୍କ କାନ ପାଖରେ ବଡ଼ ପାଟିରେ କହିବାରୁ ସେ ଶୁଣିଲେ ।

ତା'ପରେ ସେ ଉପନିଷଦର ବ୍ରହ୍ମଜ୍ଞାନ ବିଷୟରେ କହିଲେ । ମୋର ଅନୁରୋଧକ୍ରମେ ସେ ମୋ ଚାଉଳିଆଗଞ୍ଜ ଘରକୁ ଆସିଲେ । ସେଦିନ ରାତ୍ରିର ଅନୁଭୂତି ମୁଁ ପୂର୍ବରୁ ଲେଖିଛି । ସେ ଯେ ଜଣେ ବ୍ରହ୍ମଦର୍ଶୀ ଦିବ୍ୟପୁରୁଷ, ତାହା ଅନୁଭବ କଲି । ପରଦିନ ସେ ଆମ ଘରୁ ବିଦାୟ ନେଇଗଲେ । ମୋର ସଂକଟ କୁଆଡ଼େ ଉଭେଇଗଲା । ପରେ ସେ ମୋତେ ମହିମା ଧର୍ମାଲୋଚନା ପରିଷଦର ଜଣେ ସଭ୍ୟ କରିନେଲେ । ସେହି ପରିଷଦରେ ପ୍ରଫେସର ଶତ୍ରୁଘ୍ନ ନାଥ, ପଦ୍ମଭୂଷଣ ରାଧାନାଥ ରଥ, ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀ, ପ୍ରଫେସର ସର୍ବେଶ୍ୱର ଦାସ ପ୍ରମୁଖ ଜ୍ଞାନୀ-ଗୁଣୀମାନେ ଥିଲେ । ମୁଁ ହେଲି ସର୍ବକନିଷ୍ଠ ସଦସ୍ୟ । ବାବାଙ୍କର ବ୍ରହ୍ମଲୀନ ହେଲା ୧୯୯୨ ମସିହାରେ । ଠିକ୍ ପୂର୍ବରୁ ସେ ତିନିଦିନ ଧରି ମହିମାଧର୍ମ ସଭାର ଆୟୋଜନ କରିଥିଲେ । ଶେଷଦିନ ଭାଷଣ ସରିଗଲା ପରେ ସେ ପ୍ରତ୍ୟୁଷ ସମୟରେ ଶରଣ ନେଇ ବସିଗଲେ ଓ ପ୍ରଭୁଙ୍କର ଡାକରା ଆସିଲା କହି ବ୍ରହ୍ମଲୀନ ହୋଇଗଲେ । ପରେ ତାଙ୍କର ଶିଷ୍ୟ ଅବଧୂତ ଭରତବାବା ଗଠନ କଲେ ବିଶ୍ୱନାଥବାବା ସ୍ମୃତି ପରିଷଦ । ମହିମା ଧର୍ମାଲୋଚନା ପରିଷଦର ଉପସଭାପତି ଭାବରେ ମୁଁ କାର୍ଯ୍ୟ କଲି । ବିଶ୍ୱନାଥ ବାବା ସ୍ମୃତିକମିଟିର ମୁଁ ହେଲି ସଭାପତି । ଏହି ଦୁଇଟି ଅନୁଷ୍ଠାନ ଦ୍ୱାରା ମହିମା ତରଙ୍ଗ ଓ ସମର୍ପଣ ପତ୍ରିକା ବାହାରିଲା । ମୁଁ ମଧ୍ୟ ସ୍ତୁତି ଚିନ୍ତାମଣି ଓ ଚିନ୍ମୟ ବ୍ରହ୍ମଗୀତା ଦୁଇଟି ପୁସ୍ତକର ସଂପାଦନା କରି ପ୍ରକାଶ କଲି । ମହିମା ଧର୍ମର ଯେଉଁ ଆଦର୍ଶ ଥିଲା ତାହା କ୍ରମେ ହ୍ରାସ ପାଉଥିବା ଅନୁଭବ କଲି । ସନ୍ନ୍ୟାସୀମାନଙ୍କ ମଧ୍ୟରେ ଦେଖାଦେଲା ମନୋମାଳିନ୍ୟ । ନିଜ ନିଜର ଅଧିକାର ସାବ୍ୟସ୍ତ ପାଇଁ ହେଲା ମକଦ୍ଦମା । ମୋର ଗୋଟିଏ ଧାରଣା ଥିଲା ଯେ ଯେଉଁମାନେ ସଂସାରତ୍ୟାଗୀ ଓ ବ୍ରହ୍ମବାଦୀ ସେମାନଙ୍କୁ କ୍ଷୁଦ୍ରତା ସ୍ପର୍ଶ କରେ ନାହିଁ । ମିଥ୍ୟା ମାଲିମକଦ୍ଦମା କରନ୍ତି ନାହିଁ । ମାତ୍ର ମୋର ଭ୍ରମ ଭାଙ୍ଗିଗଲା । ମହିମାଧର୍ମ ସତ୍ୟନିଷ୍ଠ ଧର୍ମ । ଭୀମଭୋଇ ତାଙ୍କର ସ୍ତୁତି ଚିନ୍ତାମଣି ଗ୍ରନ୍ଥରେ ସତ୍ୟର ମହିମା ଓ ମହତ୍ତ୍ୱ ସଂପର୍କରେ ବର୍ଣ୍ଣନା କରି ମିଥ୍ୟାକୁ ପାପ ବୋଲି କହିଛନ୍ତି । ଅଥଚ ଏବର ମହିମା ସନ୍ନ୍ୟାସୀମାନେ ସେହି ଧର୍ମର ଆଦର୍ଶକୁ ଭୁଲି କ୍ଷମତା ପାଇବା ପାଇଁ ସଂକୀର୍ଣ୍ଣ ସ୍ୱାର୍ଥରେ ମାତି ମିଥ୍ୟା ମକଦ୍ଦମା କରୁଅଛନ୍ତି । ଏହା ମୋତେ ଗଭୀର ଦୁଃଖ ଦେଇଛି । ମୁଁ ଭାବୁଛି ଲୋକେ କାହିଁକି ଏହି ସନ୍ନ୍ୟାସୀମାନଙ୍କ ପାଖକୁ ଯିବେ ? କ'ଣ ମିଥ୍ୟା ଓ ଉପଭୋଗବାଦ ଶିକ୍ଷା କରିବା ପାଇଁ ? ଏବେ ମୁଁ ଭାବୁଛି କୁଆଡ଼େ ଗଲେ ବିଶ୍ୱନାଥ ବାବା, କ୍ଷେତ୍ରବାସୀ ବାବା, ଶ୍ରୀଚରଣ ବାବା, ବାମନବାବା ପ୍ରମୁଖ ସିଦ୍ଧ ସନ୍ନ୍ୟାସୀଗଣ ? ସେମାନେ କ'ଣ ଅନ୍ୟ ରୂପରେ ଆଉ ଆବିର୍ଭୂତ ହେବେ ନାହିଁ ? ମହିମାଧର୍ମ ପରି ଓଡ଼ିଶା ମାଟିର ଗୋଟିଏ କ୍ରାନ୍ତିକାରୀ ଧର୍ମ କ'ଣ ଲୋପ ପାଇଯିବ ? ଏ ଧର୍ମର ପ୍ରବୀଣ ସନ୍ନ୍ୟାସୀମାନଙ୍କର ଚେତନା ଫେରୁ- ଏହା ମୋର ମହିମା ପ୍ରଭୁଙ୍କ ନିକଟରେ ପ୍ରାର୍ଥନା ।

ପ୍ରାୟ ୧୯୮୫ ମସିହାବେଳକୁ ମୁଁ ଛତିଆବଟ ସହିତ ସଂପୃକ୍ତ ହୋଇଗଲି । ମୋ ଭିତରେ ଏ ସମୟକୁ ଗୋଟିଏ ଭଗବତ ଭାବନା ଜାଗ୍ରତ ହେଲାଣି । ମୁଁ ଜଗନ୍ନାଥଙ୍କୁ ମାନେ, ଈଶ୍ୱରଙ୍କୁ ମାନେ ମାତ୍ର ନାନାଦି ଧର୍ମାଚାର ଭିତରେ ଭାକ୍ତିକ ମିଥ୍ୟାକୁ ମାନେ ନାହିଁ । ମୁଁ ବେଦବେଦାନ୍ତ, ଗୀତା, ଭାଗବତ, ରାମାୟଣ, ମହାଭାରତ ଇତ୍ୟାଦି ପଢ଼ିବା ସହିତ ସ୍ୱାମୀ ବିବେକାନନ୍ଦଙ୍କ ରଚନାବଳୀ, ଶ୍ରୀଅରବିନ୍ଦଙ୍କ ମହାକାବ୍ୟ ସାବିତ୍ରୀ, ଲଭ୍ ଏଣ୍ଡ୍ ଡେଥ୍ କାବ୍ୟ, ବିବିଧ ସନେଟ୍, ଏସେଜ୍ ଅନ୍ ଗୀତା, ଲାଇଫ୍ ଡିଭାଇନ୍, ଶିବାନନ୍ଦ ଓ ନିଗମାନନ୍ଦଙ୍କ ରଚନାବଳୀ ଇତ୍ୟାଦି ପଢୁଥାଏ । ସତ୍ୟସାଇଙ୍କ ବିବିଧ ରଚନା ମଧ୍ୟ ପଢ଼େ । ପଢ଼େ ମଧ୍ୟ ଆମ ଓଡ଼ିଶାର ମହାକବି ସାରଳା ଦାସଙ୍କ ବିବିଧ ପୁରାଣ, ଜଗନ୍ନାଥ ଦାସଙ୍କ ଭାଗବତ ଓ ଅନ୍ୟାନ୍ୟ ରଚନା, ମହାପୁରୁଷ ଅଚ୍ୟୁତାନନ୍ଦଙ୍କର ବିବିଧ ଗ୍ରନ୍ଥ, ବଳରାମ ଦାସ, ଅରକ୍ଷିତ ଦାସ, ହାଡ଼ି ଦାସ, ଭୀମଭୋଇ, ଅଭିରାମ ପରମହଂସ ଦେବ ପ୍ରମୁଖଙ୍କ ନାନା ଗ୍ରନ୍ଥ । ଏସବୁ ମୋ ଭିତରେ ଗୋଟିଏ ଅଧ୍ୟାତ୍ମ ଉଦ୍ଦୀପିତ ମାନବବାଦୀ ଚେତନା ସୃଷ୍ଟି କରିଥାଏ ।

ଏହିପରି ଏକ ସମୟରେ ମୋ ଘରକୁ ଆସିଲେ ଜଣେ ଭଦ୍ରବ୍ୟକ୍ତି– ତାଙ୍କ ନାମ ଆର୍ତ୍ତବନ୍ଧୁ ମହାନ୍ତି । ସେ ୱାରଲେସ୍ ବିଭାଗରେ ଚାକିରି କରୁଥାନ୍ତି । ସେ ଆମ ଘରେ ଆସି ମାଳିକା ବୋଲିଲେ । ମୁଁ ତାହା ଶୁଣେ ନାହିଁ । ସେ କିନ୍ତୁ ମୋ ସ୍ତ୍ରୀ ଓ ପିଲାଙ୍କ ପାଖରେ ନାଚିକୁଦି ମାଳିକା ଓ ଭଜନ ବୋଲନ୍ତି । ବାରମ୍ବାର ସେ ମୋ ଘରକୁ ଆସି ମୋ ସ୍ତ୍ରୀଙ୍କ ମନରେ ଗୋଟାଏ ଧାରଣା ସୃଷ୍ଟି କରିଦେଲେ ଯେ ଜଗନ୍ନାଥ ଆଉ ପୁରୀରେ ନାହାନ୍ତି । ସେଠି କେବଳ ଦାରୁବ୍ରହ୍ମ ଅଛନ୍ତି । ଜଗନ୍ନାଥ ସ୍ୱୟଂ ନରବ୍ରହ୍ମ ରୂପରେ ଛତିଆବଟରେ ଲୀଳା କରୁଛନ୍ତି । ସେ ମୋ ସ୍ତ୍ରୀକୁ ପ୍ରଭାବିତ କରି ଛତିଆବଟକୁ ନେଇଗଲେ । ସେତେବେଳେ ମୋ ଝିଅ ଓ ପୁଅ ସାନ ସାନ । ସେମାନେ ମଧ୍ୟ ବୋଉ ସହିତ ଗଲେ । ବଟରୁ ଫେରିଆସି ମୋ ସ୍ତ୍ରୀ ମୋତେ କହିଲେ ଯେ ସେ ସାକ୍ଷାତ୍ ଭଗବାନ୍‌ଙ୍କୁ ଦେଖିଆସିଛି । ମୁଁ ତାଙ୍କୁ କହିଲି ଭଗବାନ୍ କ'ଣ ଗୋଡ଼ିମାଟି ହୋଇଛନ୍ତି ଯେ ତମେ ଖୋଦ ଭଗବାନ୍‌ଙ୍କୁ ଦେଖିଆସିଲ ? ଏସବୁ ମାୟା । ସେ କିନ୍ତୁ ମୋତେ କହିଲେ– ତମେ ସେମିତି କିଛି କୁହନା । ସବୁ କଥା ସେ ଜାଣିଯିବେ । ଏମିତି କେତେ ଦିନ ଗଲା ପରେ ଏକଦା ମୁଁ ବସ୍‌ରେ ବାଲେଶ୍ୱରରୁ ଫେରୁଥାଏ । ସେତେବେଳେ ବସ୍ ଛତିଆବଟ ଆଗରେ ରହୁଥିଲା । ମୁଁ ବସ୍‌ରୁ ଓହ୍ଲାଇ ଛତିଆବଟ ଦେଖିବା ପାଇଁ ମନ ବଳାଇଲି । ମୁଁ ତ ଆଗରୁ କେବେ ଛତିଆବଟ ଯାଇ ନ ଥିଲି । ତେଣୁ ପାହାଚ ପରେ ପାହାଚ ଚଢ଼ି ବଟ ଉପରକୁ ଗଲି । ସେହି ସମୟରେ ମୋ ସ୍ତ୍ରୀ ଓ ମୋ ବଡ଼ଝିଅ ମଞ୍ଜୁଶ୍ରୀ ଧର୍ମଗାଦି ଉପରେ ବସିଥିବା ମଣିମା ଶ୍ରୀରାମଚନ୍ଦ୍ର ଦାସଙ୍କୁ ମୋ କଥା କହୁଥାନ୍ତି । ମୁଁ

ବଟକୁ ନ ଗଲେ ସେମାନେ ଆଉ ଆସିପାରିବେ ନାହିଁ । ଏହି ସମୟରେ ମୁଁ ପହଞ୍ଚିଯିବାରୁ ମୋ ପୁଅ ଝିଅ ମୋ ପାଖକୁ ଦୌଡ଼ିଆସିଲେ । ମଣିମାଙ୍କୁ ମୁଁ ପ୍ରଣାମ କଲି । ଏହାହିଁ ମୋର ପ୍ରଥମ ଛତିଆବଟକୁ ଯିବା । ତାହା ପରେ ମୁଁ ମଣିମା ଶ୍ରୀରାମଚନ୍ଦ୍ର ଦାସଙ୍କ ସ୍ନେହ ଓ ଶ୍ରଦ୍ଧାରେ ବାନ୍ଧି ହୋଇଗଲି । ବାରମ୍ବାର ମୁଁ ବଟକୁ ଗଲି । ତାଙ୍କର ସୁଖଦୁଃଖ ସହିତ ଜଡ଼ିତ ହୋଇଗଲି । ସେ ସମୟର ଛତିଆବଟର ମୁଖ୍ୟ ସେବକ ନୃସିଂହଚରଣ ସାହୁ ମୋତେ ବଟ ବିଷୟରେ ନାନା କଥା କହିଲେ । ପୂର୍ବରୁ ସେ ଭଦ୍ରକର ପ୍ରସିଦ୍ଧ ଯାତ୍ରାକାର ଓ ନାଟ୍ୟକାର ରଘୁନାଥ ପଣ୍ଡାଙ୍କ ଯାତ୍ରା ଦଳରେ ମୁଖ୍ୟ ଚରିତ୍ର ଭାବରେ ଅଭିନୟ କରୁଥିଲେ । ତାଙ୍କୁ ସେଠାରୁ ନେଇ ଆସିଲେ ମଣିମା ହରେକୃଷ୍ଣ ଦାସ । ସେହି ଦିନରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ବଟର ଅନୁଗତ ସେବକ ଭାବରେ କାର୍ଯ୍ୟ କଲେ । ସେ ଜଣେ କବି ଓ ନାଟ୍ୟକାର । ଅନେକ କବିତା ଗ୍ରନ୍ଥ ସେ ଲେଖିଥିଲେ । ତାଙ୍କର ପାରିବାରିକ ଅବସ୍ଥା ଶୋଚନୀୟ । ତେଣୁ ମୁଁ ତାଙ୍କର କଳାକାର ପେନ୍‌ସନ ସେକାଳର ସଂସ୍କୃତି ମନ୍ତ୍ରୀ ଶ୍ରୀଯୁକ୍ତ ଚୈତନ୍ୟ ମାଝୀଙ୍କୁ କହି କରାଇଦେଇଥିଲି । ମଣିମା ରାମଚନ୍ଦ୍ର ଦାସ ମୋତେ ଭାରି ସ୍ନେହ କରନ୍ତି । ମୁଁ କ'ଣ କହିଲେ ସେ କାଟି ଦିଅନ୍ତି ନାହିଁ । ସେ ମଧ୍ୟ ମହାପୁରୁଷ ହାଡ଼ିଦାସଙ୍କ ନାମରେ ଛତିଆରେ କଲେଜ କରିଥାନ୍ତି ନାନା ବିରୋଧ ଓ ସଂଘର୍ଷ ଭିତରେ । ତାଙ୍କରି ଅନୁଦାନରେ ହିଁ ସେହି କଲେଜ ଆରମ୍ଭ ହୋଇଥିଲା । ତାଙ୍କ ତିରୋଧାନର ଅଳ୍ପ କେତେ ଦିନ ପୂର୍ବରୁ ସେ ବିଧାୟକ ସୀତାକାନ୍ତ ମହାପାତ୍ରଙ୍କୁ କଲେଜର ସଂପାଦକ କରିଦେଲେ । ତାଙ୍କର ଉତ୍ସାହ ଓ ପ୍ରେରଣାରେ ମୁଁ ପ୍ରକାଶ କଲି 'ସତ୍ୟବାଣୀ' । ୧୯୮୮ ମସିହାରେ ତାଙ୍କର ତିରୋଧାନ ହୋଇଗଲା । ତାଙ୍କର କନିଷ୍ଠା ପତ୍ନୀଙ୍କର ଚାରି ପୁତ୍ର ଓ ଗୋଟିଏ କନ୍ୟା । ପ୍ରଥମା ପତ୍ନୀଙ୍କର କନ୍ୟାମାନେ ବିବାହ କରିଯାଇଥିଲେ । ତାଙ୍କର ମଧ୍ୟ ବିୟୋଗ ହୋଇଥିଲା । ମଧ୍ୟମା ପତ୍ନୀଙ୍କର ଦୁଇଟି ଝିଅ । ଗୋଟିଏ ବିବାହ କରିଥିଲା, ଅନ୍ୟ ଜଣେ ବିବାହ କରି ନ ଥିଲେ ।

ଶ୍ରୀରାମଚନ୍ଦ୍ର ଦାସଙ୍କ ବିୟୋଗ ପରେ ବଡ଼ପୁଅ ପ୍ରଦ୍ୟୁମ୍ନ କୁମାର ଦାସ ହେଲେ ବଟର ମଣିମା । ଅନ୍ୟ ତିନି ଭାଇ ତାଙ୍କୁ ସାହାଯ୍ୟ କରୁଥିଲେ । ଏହି ଚାରି ଭାଇଙ୍କୁ ଭକ୍ତମାନେ ଚତୁର୍ବ୍ରହ୍ମ ବୋଲି କହୁଥିଲେ । ମାଳିକାପଦ ଉଦ୍ଧାର କରି 'ଚାରିକି ଘେନି ଚୌକଳା' ମଧ୍ୟ କହୁଥିଲେ । ସମସ୍ତେ ପୁଣି କଳ୍କି ଅବତାର । ଏହା ମୁଁ ବୁଝିପାରେ ନାହିଁ । ମୋ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହେଉଥାଏ ଭଗବାନ୍ କ'ଣ ଏକାଥରେ ଚାରୋଟି ରୂପରେ ଅବତାର ନେଇଗଲେ ? କେବଳ ଏତିକି ନୁହେଁ ଭକ୍ତମାନେ ଛତିଆବଟର ପ୍ରପିତାମହ ପିତାମହ ପିତା-ପୁତ୍ର-ନାତି ଇତ୍ୟାଦି ସମସ୍ତଙ୍କୁ କଳ୍କୀ ଅବତାର କହୁଥିବା ମୁଁ ଶୁଣିଲି । ଏହାକୁ ମୁଁ ଗ୍ରହଣ କରିପାରେ ନାହିଁ । ଏହି ସମୟରେ ମଣିମା ପ୍ରଦ୍ୟୁମ୍ନ

କୁମାର ଦାସ ଭଉଣୀ ଓ ଭାଇମାନଙ୍କୁ ବିବାହ କରାଇଲେ । ସୁପ୍ରିମକୋର୍ଟରେ ତାଙ୍କର ମକଦ୍ଦମା ଥାଏ । ରାୟ ପ୍ରକାଶ ପାଇଲା ଯେ ଛତିଆବଟ ଆଉ ଘରୋଇ ଅନୁଷ୍ଠାନ ନୁହେଁ; ସର୍ବସାଧାରଣ ଅନୁଷ୍ଠାନ । ଏହାର ପରିଚାଳନା କରିବେ ଛତିଆବଟର ଉତ୍ତରାଧିକାରୀମାନେ । ଏହି ଘଟଣାକୁ କେନ୍ଦ୍ର କରି ଚାରି ଭାଇଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ବଡ଼ଭାଇ ସିଂହାସନରେ ଏକା ବସିପାରିବେ ନାହିଁ; ସମସ୍ତେ ପାଳିକରି ବସିବେ– ଏଇ ହେଲା ଦ୍ୱନ୍ଦ୍ୱର କାରଣ । ତାହା ଛଡ଼ା ଟଙ୍କାପଇସା କିଏ ଆଦାୟ କରିବ ଓ କିଏ ରଖିବ ଏହାକୁ ନେଇ ମଧ୍ୟ ସଂଘର୍ଷ ହେଲା । ଭକ୍ତ ସମାଜ ସମସ୍ତଙ୍କ ଗୋଡ଼ ଧରି ସମାଧାନ କରିଦେବାକୁ ଅନୁରୋଧ କଲେ । ବଡ଼ଭାଇଙ୍କ ପ୍ରତି ସାନଭାଇମାନଙ୍କର ଆଦୌ ସମ୍ମାନ ରହିଲା ନାହିଁ । ସମାଧାନ କରିବା ଦିଗରେ ପ୍ରଫେସର ଶାରଦା ରଂଜନ ମହାନ୍ତି ଓ ମୁଁ ନେତୃତ୍ୱ ନେଇଥିଲୁ । କେହି ମାନିଲେ ନାହିଁ । ବଡ଼ଭାଇଙ୍କୁ ସାନଭାଇମାନେ ମାଡ଼ ଦେଲେ । କଦର୍ଯ୍ୟ ବ୍ୟବହାର ଦେଖାଇଲେ । ଫଳରେ ଭକ୍ତସମାଜ ଦୁଇ ଭାଗ ହୋଇଗଲା । ଭକ୍ତ ସମାଜର ବଡ଼ଅଂଶଟି ବଡ଼ଭାଇଙ୍କ ସପକ୍ଷରେ ଓ ସାନଅଂଶଟି ତିନିଭାଇଙ୍କ ସପକ୍ଷରେ ରହିଲେ । ମାଲି ମକଦ୍ଦମା ଚାଲିଲା । ମୁଁ ଗୋଟିଏ କଥା ଲକ୍ଷ୍ୟ କଲି ନିଜକୁ କଳ୍କୀ ଅବତାର ବୋଲାଉଥିବା ଯତୀନ ଦାସ ମିଥ୍ୟା ମକଦ୍ଦମା କଲେ । ମୁଁ ଏପରି ବୀଭତ୍ସ ଅବସ୍ଥା ଦେଖି ବଟକୁ ଗଲି ନାହିଁ । କଟକ ପୋତାପୋଖରୀ ପାଖରେ ଆମେ ଗୋଟିଏ ଆଶ୍ରମ କରିଥିଲୁ । ତାହା ହେଉଛି ଅନନ୍ତ ଗୋପାଳ ଭକ୍ତ ସେବା ସଂଘ । ଏହା ଏକ ରେଜିଷ୍ଟ୍ରି ଅନୁଷ୍ଠାନ । ଏହା ମାଧ୍ୟମରେ ଆମେ ସାରା ଓଡ଼ିଶାରେ ନାନାବିଧ ସେବା କାର୍ଯ୍ୟ କରୁ ଓ ବର୍ଷକୁ ଦୁଇଥର ରକ୍ତଦାନ ଶିବିର କରୁ । ଅଥଚ ଆମ ଆଶ୍ରମକୁ ଭାଙ୍ଗିଦେବା ପାଇଁ ଯତୀନବାବୁ ନାନା କୁଚକ୍ରାନ୍ତ କଲେ । ଦେବୋତ୍ତର କମିଶନର ଛତିଆବଟର ପରିଚାଳନା ପାଇଁ ଗୋଟିଏ ଉପଦେଷ୍ଟା କମିଟି କରିଛନ୍ତି । ତାହାର ଆବାହକ ଅଛନ୍ତି ମଣିମା ପ୍ରଦ୍ୟୁମ୍ନ କୁମାର ଦାସ । ମୁଁ ମଧ୍ୟ ଏହି କମିଟିରେ ଜଣେ ସଦସ୍ୟ ।

ଛତିଆବଟର ଯେଉଁ ଗୌରବ ଥିଲା ତାହା ହ୍ରାସ ପାଇଯାଇଛି । ଏକଦା ମୁଁ ମହାପୁରୁଷ ହାଡ଼ି ଦାସ ଗ୍ରନ୍ଥାବଳୀ, ମହାପୁରୁଷ ହାଡ଼ିଦାସ ଚଉତିଶାବଳୀ, ବଟକଥା ଓ ଅନନ୍ତତତ୍ତ୍ୱ, ମା' ଆଦି ନାନା ପୁସ୍ତକ ପ୍ରସ୍ତୁତ କରି ଛପାଇଛି । ସତ୍ୟବାଣୀ ଦୁଇ ଭାଗରେ ପ୍ରକାଶ ପାଇଥିଲା । ଏ ଦିଗରେ ମହାପୁରୁଷ ପ୍ରଦ୍ୟୁମ୍ନ କୁମାର ଦାସଙ୍କ ପ୍ରେରଣା ଅନସ୍ୱୀକାର୍ଯ୍ୟ । ମୁଁ ଲକ୍ଷ୍ୟ କଲି ଯେଉଁମାନେ ପୂର୍ବରୁ ଚତୁର୍ବ୍ରହ୍ମ କହି ଚାରିଭାଇଙ୍କୁ କଳ୍କୀ ଅବତାର କହୁଥିଲେ ସେହିମାନେ ପୁଣି ସ୍ୱର ବଦଳାଇ କେବଳ ବଡ଼ଭାଇଙ୍କୁ କଳ୍କୀ ଅବତାର କହିଲେ । ତାଙ୍କ ପୁତ୍ରଙ୍କୁ ମଧ୍ୟ ସେହି ସ୍ଥାନ ଦେଲେ । ମାଳିକା ବୋଲି ନାନା କଥା କହିଲେ । ଏସବୁକୁ ମୁଁ ପସନ୍ଦ କରେ ନାହିଁ । ମୁଁ ଅନୁଭବ କରେ ଈଶ୍ୱରତ୍ୱ ନାମରେ

ଅହଂକାରର ପରିପ୍ରକାଶ । ଈଶ୍ୱରତ୍ୱ କୌଣସି ମୁଁକାର ଭିତରେ ନ ଥାଏ, ଧର୍ମାନୁଷ୍ଠାନ କୌଣସି ବ୍ୟାବସାୟିକ ମନୋବୃତ୍ତି ଉପରେ ନିର୍ଭରଶୀଳ ନୁହେଁ । ଏହା ସଂପୂର୍ଣ୍ଣ ତ୍ୟାଗ ଓ ସମର୍ପଣ ଉପରେ ପ୍ରତିଷ୍ଠିତ । ସକଳ କ୍ଷୁଦ୍ରତାରୁ ମୁକ୍ତ ହୋଇ ଏହା ପ୍ରସାରିତ ହୋଇଯିବାକୁ ପ୍ରେରଣା ଦିଏ । ଅଥଚ ଛତିଆବଟରେ ମୁଁ ଏହା ଲକ୍ଷ୍ୟ କଲି ନାହିଁ । ମଣିମା ପ୍ରଦ୍ୟୁମ୍ନ କୁମାର ଦାସଙ୍କର ସକଳ ରାଗ, କ୍ରୋଧ ଓ ବ୍ୟକ୍ତିଗତତା ସତ୍ତ୍ୱେ ତାଙ୍କ ଭିତରେ ଥିବା ମଣିଷପଣିଆକୁ ମୁଁ ଭଲ ପାଏ । ଭକ୍ତମାନଙ୍କୁ ସେବା କାର୍ଯ୍ୟରେ ଯେପରି ସେ ଉତ୍ସାହ ପ୍ରଦାନ କରନ୍ତି ତାହା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ତଥାପି ସେ ଯେ ବ୍ୟକ୍ତିଗତତାରୁ ମୁକ୍ତ ହୋଇ ପ୍ରସାରିତ ହୋଇଯାଇଛନ୍ତି ଏ ଧାରଣା ମୋର ଏପର୍ଯ୍ୟନ୍ତ ହୋଇ ନାହିଁ । ମୁଁ ଆଦୌ ଭଲ ପାଏ ନାହିଁ ଭାକ୍ତିକ ମିଥ୍ୟାକୁ । ମୁଁ ବିଶ୍ୱାସ କରେ ଈଶ୍ୱରୀୟ ସତ୍ତାରେ । ସେହି ସତ୍ତା ସର୍ବତ୍ର ପରିପୂର୍ଣ୍ଣ । ଯିଏ ସକଳ ଭୂତରେ ଏକ ଅବିଭକ୍ତ ସତ୍ତାକୁ ଉପଲବ୍ଧି କରେ, ଯିଏ ବ୍ରହ୍ମଭୂତ ପ୍ରସନ୍ନାତ୍ମା ହୋଇଯାଏ, ସକଳ ଜୀବକୁ ଯିଏ ସମାନ ଦେଖେ, କାମ୍ୟ କର୍ମକୁ ଯିଏ ସଂପୂର୍ଣ୍ଣ ନ୍ୟାସ କରି ଦେଇଥାଏ, ସିଏ ହୁଏ ଯଥାର୍ଥ ସନ୍ନ୍ୟାସୀ, ଯଥାର୍ଥ ଦିବ୍ୟପୁରୁଷ । ଏପରି ଗୋଟିଏ ଧାରଣା ମୋ ଭିତରେ ଗୀତା ଓ ଉପନିଷଦ ଦେଇଛି । ମୁଁ ଏହି ବିଶ୍ୱାସରେ ଯାଏ । ଯେଉଁଠି ଉପଲବ୍ଧି କରେ ସେଇଠି ବାନ୍ଧି ହୋଇଯାଏ । ଯେଉଁଠି ନ ଥାଏ ଦୂରେଇ ଆସେ ।

ମହାନଦୀ କୂଳରେ ପ୍ରତିଷ୍ଠା ଲାଭ କରିଛି ବ୍ରହ୍ମକ୍ଷେତ୍ର । କ୍ରିଷ୍ଣାଦେବୀ ତାହାର ପ୍ରତିଷ୍ଠାତା । ସେ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଆଶୀର୍ବାଦ ପ୍ରାପ୍ତ । ସାଧାରଣ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠ । ସଂସାର ତ୍ୟାଗ କରି ମହାପୁରୁଷଙ୍କ ଭକ୍ତିରେ ତନ୍ମୟା । ତାଙ୍କ ଆଶୀର୍ବାଦରୁ ସେ ପାଇଛନ୍ତି ସୁନାପୋଥି, ତାମ୍ରପୋଥି, ରୌପ୍ୟପୋଥି, ତାଳପତ୍ର ପୋଥି ଓ ପଥର ପୋଥି । ଆଶ୍ରମରେ ପ୍ରତିଷ୍ଠା କରିଛନ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତି । ସେଠି ଯେତେ ଯେତେ ମୂର୍ତ୍ତି ଅଛନ୍ତି ସବୁର କାହାଣୀ ଅଲୌକିକ । ମୋତେ ସେ ଆଶ୍ରମକୁ କେତେଥର ଭାଷଣ ଦେବାକୁ ଡାକିଛନ୍ତି । ସମ୍ମାନିତ କରିଛନ୍ତି । 'ପ୍ରଜ୍ଞାଭାରତୀ' ଉପାଧି ସାଧୁସନ୍ଥ ଓ ଜ୍ଞାନୀଗୁଣୀଙ୍କ ସମାବେଶରେ ଦେଇଛନ୍ତି । ସେ ମଧ୍ୟ ଭାରତର ବିଭିନ୍ନ ତୀର୍ଥ ସ୍ଥାନରେ ବାରମ୍ବାର ଯଜ୍ଞ କରିଛନ୍ତି ଓ ଏବେ ମଧ୍ୟ କରୁଛନ୍ତି । ବୃନ୍ଦାବନରେ ଓ ପୁରୀରେ ସେ ପ୍ରତିଷ୍ଠା କରିଛନ୍ତି ଆଶ୍ରମ । କଟକ ଆଶ୍ରମକୁ ପୁରୀର ଶଙ୍କରାଚାର୍ଯ୍ୟ ଓ ଅନ୍ୟାନ୍ୟ ବହୁ ବଡ଼ ବଡ଼ ସନ୍ନ୍ୟାସୀ ଆସିଛନ୍ତି । ସେଠି ମୁଁ ଅନୁଭବ କଲି କ୍ରିଷ୍ଣାଦେବୀଙ୍କର ଅହଙ୍କାର ନାହିଁ, କୌଣସି ବିଳାସ ନାହିଁ । ବଡ଼ ସ୍ନେହୀ ସେ । କେହି ଦୁଃଖୀ ଆର୍ତ୍ତୀ ତାଙ୍କ ପାଖକୁ ଗଲେ ସେ ପଥର ପୋଥିକୁ ପଚାରି ପ୍ରତିକାର ବ୍ୟବସ୍ଥା କରିଦିଅନ୍ତି । ସେ ନିଜକୁ ଅତି ସାମାନ୍ୟ ମଣିଷଟିଏ ମନେକରନ୍ତି । ଯାହା

ମହାପୁରୁଷ ଅଚ୍ୟୁତାନନ୍ଦ କହନ୍ତି ତାହା ସେ କେବଳ କହନ୍ତି ବୋଲି ବତାଇ ଦିଅନ୍ତି । ମୁଁ ତାଙ୍କ ଅମାୟିକ ବ୍ୟବହାର ଓ ସରଳତାରେ ଅଭିଭୂତ ହୁଏ । ଜଣେ ସନ୍ନ୍ୟାସିନୀ ହୋଇ ମଧ୍ୟ ତାଙ୍କର ପରୋପକାରିତା ଉଲ୍ଲେଖଯୋଗ୍ୟ ।

ମୁଁ ଅନେକ ସାଧୁସନ୍ଥଙ୍କ ଆଶ୍ରମକୁ ଯାଇଛି । ପ୍ରାୟ ଅଧିକାଂଶ ସ୍ଥାନରେ ମୁଁ ଭାଷଣ ଦେଇଛି । ମୁଁ କହିଛି ପ୍ରକୃତ ଧର୍ମର ମାହାତ୍ମ୍ୟ, ଭକ୍ତିର ତାତ୍ପର୍ଯ୍ୟ ଓ ସର୍ବୋପରି ମାନବିକ ମୂଲ୍ୟବୋଧ ଉପରେ । ଯେତେ ଯେତେ ଶାସ୍ତ୍ର ପୁରାଣ ଇତ୍ୟାଦି ମୁଁ ପଢ଼ିଛି ସେ ସବୁଥିରେ ମୁଁ ଅନୁଭବିଛି ସତ୍ୟ ଏକ ବ୍ରହ୍ମ, ମଣିଷ ହିଁ ଶ୍ରେଷ୍ଠ ଜୀବ, ପ୍ରତ୍ୟେକ ମଣିଷର ଶରୀର ଗୋଟିଏ ଦେବାଳୟ, ମଣିଷକୁ ଭଲ ପାଇବା ଓ ମଣିଷର ସେବା କରିବାରେ ମାଧବଙ୍କ ଉପଲବ୍ଧି, ଅହଙ୍କାର ବିନିର୍ମୁକ୍ତ ଚିତ୍ତ ହେଲେହେଁ ଭକ୍ତିର ବିକାଶ । ଏବେ କିନ୍ତୁ ଧର୍ମ ନାମରେ ଦେଖୁଛି ସାଧୁସନ୍ଥମାନଙ୍କର ନିଜ ନିଜକୁ ଭଗବାନ୍ ରୂପେ ପ୍ରତିପାଦନ ଓ ଏଥିରେ ସାଧାରଣ ଲୋକମାନଙ୍କର ବିଶ୍ୱାସ । ମନ୍ଦିର ତ ବହୁତ ହେଉଛି, କେତେ କେତେ ଦିଅଁ ଦେବତା ଜୀବନ୍ୟାସ ପାଇ ପୂଜା ପାଉଛନ୍ତି, ତଥାପି ମଣିଷମାନେ ଠିକଣା ବାଟକୁ ଆସୁ ନାହାନ୍ତି କାହିଁକି ? ଏତେ ଦୁର୍ନୀତି, ଏତେ ନାରକୀୟତା, ଉପଭୋଗବାଦର ଏତେ ପ୍ରମତ୍ତତା ହେଉଛି କେମିତି ? ଏତେ ମନ୍ଦିର କଟକ ସହରରେ ଭଙ୍ଗା ହୋଇଗଲା, ଦେବତାମାନେ କ'ଣ କଲେ ? ଏହିପରି କେତେ କେତେ ଭାବନା ମୋ ମନ ଭିତରକୁ ଆସୁଛି । ତଥାପି ମୁଁ ଈଶ୍ୱରଙ୍କୁ ବିଶ୍ୱାସ କରୁଛି ଓ ଭାବୁଛି ତାଙ୍କ ଇଛାହିଁ ଏକମାତ୍ର ସତ୍ୟ ।

## ମୋ ସମୟର ରାଜନୀତି

୧୯୪୭ ଅଗଷ୍ଟ ମାସ ୧୫ ତାରିଖରେ ଆମ ଦେଶ ସ୍ୱାଧୀନ ହେଲା । ସେଦିନ ଭୋରୁ ଭୋରୁ ମୁଁ ଦେଖିଥିଲି ମୋ ବାପା ଆମ ଘର ଦୁଆରମୁହଁ ପାଖରେ କଦଳୀଗଛ ପୋତି ଘର ଚାଳ ଉପରେ ତ୍ରିରଙ୍ଗା ପତାକା ଉଡ଼ାଇବାର ଦୃଶ୍ୟ । ଆମେ ପିଲାମାନେ ଗାଁ ଦାଣ୍ଡରେ ମହାତ୍ମାଗାନ୍ଧି କୀ ଜୟ, ଭାରତମାତା କୀ ଜୟ, ନେତାଜୀ ସୁଭାଷବୋଷ କୀ ଜୟ, ପଣ୍ଡିତ ନେହେରୁ କୀ ଜୟ, ସର୍ଦ୍ଦାର ପଟେଲ କୀ ଜୟ ଧ୍ୱନି ଦେଇ ନାଚି ନାଚି ଗାଁ ଦାଣ୍ଡ କଂପେଇ ଦେଉଥିଲୁ । ସେଦିନର ଦୃଶ୍ୟ ଏବେ ମୋର ସ୍ପଷ୍ଟ ମନେପଡୁଛି । ଲୋକେ ତ ବିହ୍ୱଳ ହୋଇଯାଇଥିଲେ । ଇଂରେଜ ଶାସନ ଗଲା, ରାଜା ଜମିଦାରଙ୍କ ଶୋଷଣ ଗଲା । ଲୋକେ ହେଲେ ଦେଶର ଶାସକ । ସମ୍ବିଧାନ ତିଆରି ହୋଇଗଲା । ଆଇନକାନୁନ୍ ହେଲା । ଗଣତନ୍ତ୍ର ଶାସନ ପ୍ରତିଷ୍ଠା ହେଲା । ନିର୍ବାଚନ ହେଲା । ଆମ ଲୋକେ ନିର୍ବାଚିତ

ହୋଇ ବିଧାୟକ ହେଲେ, ସାଂସଦ ହେଲେ, ମନ୍ତ୍ରୀ ହେଲେ, ମୁଖ୍ୟମନ୍ତ୍ରୀ ହେଲେ, ପ୍ରଧାନମନ୍ତ୍ରୀ ହେଲେ । ଅଳ୍ପ ଦିନ ଭିତରେ ମୋହଭଙ୍ଗ ଘଟିଗଲା । ଲୋକେ କହିବାକୁ ଲାଗିଲେ– ବ୍ରିଟିଶ ଶାସନ ଥିଲା, ଭଲ ଥିଲା, ଇଏ ଯେଉଁ ଦେଶୀ ଶାସନ, ଏଥିରେ କପାଳରେ କର ମାରିବାକୁ ହେଲା । ଖାଲି ନେତା ମନ୍ତ୍ରୀ ନୁହଁନ୍ତି; ସେମାନଙ୍କ ବାହୁଛାୟାକୁ ଆଶ୍ରୟ କରି ସ୍ୱାଧୀନତା ପରେ ନୂଆ କରି ଯେଉଁ କର୍ମୀ ସମାଜ ଗଢ଼ି ଉଠିଲା ସେଇମାନଙ୍କ ସଂଖ୍ୟା ରକ୍ତବୀର୍ଯ୍ୟ ପରି ବଢ଼ି ବଢ଼ି ଚାଲିଲା । ସେମାନଙ୍କ ହୁଙ୍କାରରେ ଥରହର ହେଲେ ଲୋକେ, ପ୍ରଶାସକ ଓ ପୋଲିସ୍ । ଫଳରେ ପ୍ରଶାସନ ଓ ପୋଲିସ ହୋଇଗଲେ କ୍ଷମତାସୀନ ଦଳର ବଶମ୍ବଦ । ସେମାନେ ସାଧୁଙ୍କୁ ଚୋର କହିଲେ ଏମାନେ ଗାଉଁ କରି ମାଡ଼ି ବସିବେ । ସ୍ୱାଧୀନତା ପରର ସରକାରୀ ଚାକିରିଆ ଗୋଷ୍ଠୀ ମନ୍ତ୍ରୀ ନେତାଙ୍କ ହାତବାରିସି ସାଜି ଧଳାକୁ କଳା, କଳାକୁ ଧଳା କରିବାକୁ ପଛେଇଲେ ନାହିଁ । ଚାକିରିଆମାନେ ହେଲେ ସୁନାପୁଅ । ନେତାଏ ହାତୀର ଛଅଟା ଗୋଡ଼ କହିଲେ ଏମାନେ କହିଲେ 'ହଁ' । ଆଇ.ଏ.ଏସ୍., ଆଇ.ପି.ଏସ୍. ବା ଏଇପରି ବଡ଼ବଡ଼ିଆ ଚାକିରିଆ ଗୋଷ୍ଠୀଙ୍କ କଥା ନ କହିବା ଭଲ । ସେମାନେ ଇନ୍ଦ୍ରପଦ ପାଇଛନ୍ତି । ସେମାନେ ଯାହା ଚାହାନ୍ତି ତାହା କରନ୍ତି । ଏଣେ ରାଜନୀତି ଦରବାରରେ ଗୋଡ଼ଭାଙ୍ଗି ଛିଡ଼ା ହୁଅନ୍ତି । ୧୮୫୮ ମସିହାରେ ବ୍ରିଟିଶ ସରକାର ଆଇ.ସି.ଏସ୍. ପଦ ସୃଷ୍ଟି କଲେ । ଏଇମାନେ ବ୍ରିଟିଶ ଶାସନକୁ ମଜଭୁତ କରିବାକୁ ଲାଗିଲେ । ଏମାନେ ସାହେବ ହେଲେ । ସ୍ୱାଧୀନତା ପରେ ସେଇ ପଦବୀ ବଦଳି ହେଲା ଆଇ.ଏ.ଏସ୍. । ଏମାନେ ମଧ୍ୟ ସେଇ ସାହେବ । କ୍ଷମତାସୀନ ଦଳର ରକ୍ଷାକବଚ ସାଜି ନିଜେ ଉପଭୋଗ ବୃତ୍ତରେ ବୁଡ଼ି ରହିଲେ । ଆଇ.ପି.ମାନେ ଆଇ.ପି.ଏସ୍. ହେଲେ । ମାତ୍ର ସବୁ ସେଇ ବ୍ରିଟିଶ ଢାଞ୍ଚା ।

ଆମ ଓଡ଼ିଶାରେ ୧୯୪୬ ମସିହାରୁ ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ ଥିଲେ ପ୍ରଥମ ନିର୍ବାଚନ ଆରମ୍ଭ ପର୍ଯ୍ୟନ୍ତ । ତା'ପରେ ମୁଖ୍ୟମନ୍ତ୍ରୀ ହେଲେ ନବକୃଷ୍ଣ ଚୌଧୁରୀ । ସେହି ସମୟରୁ ସିଂହାସନ ପାଇବା ପାଇଁ ଦେଖାଦେଲା କଂଗ୍ରେସ ଦଳ ଭିତରେ ନାନା ଦ୍ୱନ୍ଦ୍ୱ ଓ ସଂଘର୍ଷ । ସେହି ସମୟରେ ମଧ୍ୟ ଗାଁଗହଳିଠାରୁ ଆରମ୍ଭ କରି ସହର ବଜାର ପର୍ଯ୍ୟନ୍ତ ଗୋଟିଏ ନୂତନ କର୍ମୀଶ୍ରେଣୀର ଆବିର୍ଭାବ ଘଟିଲା । ବ୍ଲକ ବ୍ୟବସ୍ଥା ଓ ଗ୍ରାମ ଗୋଷ୍ଠୀ ଯୋଜନା ମଧ୍ୟ ଦେଇ ଯେଉଁସବୁ ଉନ୍ନତିମୂଳକ କାର୍ଯ୍ୟ ହେଲା ସେଥିରେ ଏହି କର୍ମୀମାନେ ନେଲେ ମୁଖ୍ୟ ଭୂମିକା । ଫଳରେ ଦୁର୍ନୀତି ପକ୍ଷବିସ୍ତାର କଲା । ୧୯୫୭ ନିର୍ବାଚନରେ ଡକ୍ଟର ମହତାବ ସ୍ୱତନ୍ତ୍ର ଦଳ ସହିତ ମିଶି ମନ୍ତ୍ରିମଣ୍ଡଳ ଗଠନ କଲେ । ସେ ହେଲେ ମୁଖ୍ୟମନ୍ତ୍ରୀ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ ହେଲେ ଉପମୁଖ୍ୟମନ୍ତ୍ରୀ । ଏହି ମନ୍ତ୍ରିମଣ୍ଡଳ ପରେ ୧୯୬୨ ମସିହାରେ ଯେଉଁ ନିର୍ବାଚନ ହେଲା ସେଥିରେ ବିଜୁ

ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ଦଳ ଜିତି ମନ୍ତ୍ରିମଣ୍ଡଳ ଗଠନ କଲେ ଓ ବିଜୁବାବୁ ହେଲେ ମୁଖ୍ୟମନ୍ତ୍ରୀ । ସେ କାମରାଜନାଦର ଯୋଜନାରେ ଇସ୍ତଫା ଦେଇ ବୀରେନ ମିତ୍ରଙ୍କୁ ମୁଖ୍ୟମନ୍ତ୍ରୀ କଲେ । ଏହି ଦୁଇ ନେତା ଡକ୍ଟର ମହତାବଙ୍କ ମାନସ ପୁତ୍ର । ଏମାନେ ଏକଦା ୧୯୫୧ ମସିହାରେ ରେଭେନ୍ସା କଲେଜର ଅଧକ୍ଷ ପ୍ରଫେସର ଗୋଲୋକ ବାନାର୍ଜୀଙ୍କ କଲର ଧରି ମାରଧର କରିଥିଲେ । ଏଥିପାଇଁ ଛାତ୍ର ଆନ୍ଦୋଳନ ହୋଇଥିଲା । ଦେଖାଗଲା ଯେ ୧୯୬୦ ମସିହା ପରବର୍ତ୍ତୀ ସମୟରେ ପୂର୍ବର ଗାନ୍ଧିବାଦୀ ନେତାମାନଙ୍କର ଅବସାନ ଘଟିଗଲାଣି । ରାଜନୀତିରେ ଗୋଟାଏ ଉପଭୋଗବାଦୀ ମନୋଭାବ ସବାର ହୋଇଗଲାଣି । ପଣ୍ଡିତ ଜବାହରଲାଲ ନେହେରୁ ୧୯୫୫ ମସିହାରେ ଚୀନ ସହିତ ବନ୍ଧୁତା କଲେ ଓ ପଞ୍ଚଶୀଳ ନୀତି ଘୋଷଣା କଲେ । ମୁଁ ହାଇସ୍କୁଲରେ ପଢ଼ିଲାବେଳେ ଲକ୍ଷ୍ୟ କରିଥିଲି- ସର୍ବତ୍ର 'ହିନ୍ଦ୍-ଚୀନ୍ ଭାଇ ଭାଇ' ନାଦ । ଏଥିରେ ଆମେ କୃତକୃତ୍ୟ ହୋଇଯାଇଥିଲୁ । ମାତ୍ର ସାତଟି ବର୍ଷ ଭିତରେ ଚୀନ ଭାରତର ଉତ୍ତର ଦିଗରେ ଅନେକ ସ୍ଥାନ ମାଡ଼ି ବସିଲା । ଭାରତୀୟ ସେନା ଚୀନ ସେନାର ପ୍ରତିରୋଧ କରିପାରିଲେ ନାହିଁ । ତିବ୍ବତକୁ ମାଡ଼ି ବସିଲା । ସନ୍ଧି ସ୍ଥାପିତ ହେଲା ମାତ୍ର ଚୀନ ଲଦାକ ସହିତ ଅନେକ ଅଞ୍ଚଳକୁ ନିଜ ଅକ୍ତିଆରରେ ରଖିଲା । ତିବ୍ବତର ସ୍ୱାଧୀନତା ଲୋପ ପାଇଲା । ଦଲେଇଲାମା ସେହି ଦିନରୁ ଭାରତର ଅତିଥି ହୋଇ ରହିଲେ । ପଣ୍ଡିତ ନେହେରୁଙ୍କର ହେଲା ମୃତ୍ୟୁ । ଭାରତର ରାଜନୀତିରେ କଂଗ୍ରେସ ଦଳର ଏକଚାଟିଆ ପତିଆରା ହ୍ରାସ ପାଇବାକୁ ଲାଗିଲା । ଲାଲ ବାହାଦୁର ଶାସ୍ତ୍ରୀ ହେଲେ ପ୍ରଧାନମନ୍ତ୍ରୀ । ତାଙ୍କରି ସମୟରେ ପାକିସ୍ଥାନ ସହିତ ଯୁଦ୍ଧ ହେଲା । ପାକିସ୍ଥାନର ହେଲା ଘୋର ବିପର୍ଯ୍ୟସ୍ତ । ରୁଷିଆର ମଧ୍ୟସ୍ଥିରେ ତାସ୍କେଣ୍ଟଠାରେ ଉଭୟ ଦେଶର ପ୍ରଧାନମନ୍ତ୍ରୀଙ୍କ ମଧ୍ୟରେ ଯୁଦ୍ଧ ବିରତି ପାଇଁ ଚୁକ୍ତି ସ୍ୱାକ୍ଷରିତ ହେଲା । ମାତ୍ର ଶାସ୍ତ୍ରିଜୀଙ୍କର ସେଇଠାରେ ହେଲା ମୃତ୍ୟୁ । ଶାସ୍ତ୍ରିଜୀଙ୍କ ପରି ଜଣେ ତ୍ୟାଗୀ ଗାନ୍ଧିବାଦୀ ଜନନାୟକଙ୍କ ମୃତ୍ୟୁରେ ସାରା ଦେଶ ଶୋକାଭିଭୂତ ହୋଇଗଲା ।

ଶାସ୍ତ୍ରିଜୀଙ୍କ ପରେ ଭାରତର ରାଜନୀତିରେ ହେଲା ଘୋର ଘଟପରିବର୍ତ୍ତନ । ଇନ୍ଦିରାଗାନ୍ଧୀ ହେଲେ ପ୍ରଧାନମନ୍ତ୍ରୀ । କଂଗ୍ରେସ ଦୁଇ ଭାଗ ହୋଇଗଲା । ଇନ୍ଦିରାଗାନ୍ଧୀଙ୍କ ନାମାନୁସାରେ ଇନ୍ଦିରା କଂଗ୍ରେସ ପ୍ରଭାବ ବିସ୍ତାର କଲା । ରାଜନୀତିରେ ବ୍ୟକ୍ତିବାଦ ମୁଣ୍ଡଟେକି ଉଠିଲା । ଦେଖାଗଲା ସେହି ତୁଙ୍ଗ ବ୍ୟକ୍ତିଟି ଯାହା କହେ ତାହାକୁ ଦଳର ଅନ୍ୟ ସମସ୍ତେ ମୁଣ୍ଡପାତି ମାନିନେବାକୁ ବାଧ୍ୟ ହେଲେ । ସେହି ବ୍ୟକ୍ତିଙ୍କ ମର୍ଜି ଉପରେ ଦଳର ସଦସ୍ୟମାନଙ୍କ ଭାଗ୍ୟ ସୂତାଖିଅରେ ଝୁଲିଲା । ଇନ୍ଦିରାଗାନ୍ଧୀଙ୍କ ସମୟରେ ବଙ୍ଗଳାଦେଶରେ ଆନ୍ଦୋଳନ ହେଲା, ପାକିସ୍ଥାନଠାରୁ ଛିନ୍ନ ହୋଇ ସ୍ୱତନ୍ତ୍ର ଦେଶ ଗଠନ

ପାଇଁ । ମୁଜିବୁର୍ ରହମନ ତା'ର ନେତୃତ୍ୱ ନେଲେ । ଇନ୍ଦିରାଗାନ୍ଧୀ ମୁଜିବର୍‌ଙ୍କୁ ସାହାଯ୍ୟ କଲେ । ବଙ୍ଗଳାଦେଶ ସ୍ୱତନ୍ତ୍ର ଦେଶର ମାନ୍ୟତା ପାଇଲା । ଇନ୍ଦିରାଗାନ୍ଧୀଙ୍କ ଖ୍ୟାତି ବଢ଼ିଗଲା । ମାତ୍ର ତାଙ୍କର ଅହମିକା ଖୁବ୍ ତୀବ୍ର ହେଲା । ଇତ୍ୟବସରରେ ଜୟପ୍ରକାଶ ନାରାୟଣ ସଂପୂର୍ଣ୍ଣ ବିପ୍ଳବର ଆହ୍ୱାନ ଦେଲେ । ସାରା ଭାରତବର୍ଷରେ ଆନ୍ଦୋଳନ ତୀବ୍ରତର ହେଲା । ଇନ୍ଦିରାଗାନ୍ଧୀ ଇମର୍‌ଜେନ୍‌ସି ଘୋଷଣା କଲେ ୧୯୭୫ ମସିହାରେ । ଗୋଟାଏ ଏକଛତ୍ରବାଦୀ ଶାସନର ରାହୁ ଗ୍ରାସରେ ଦେଶ ପଡ଼ିଗଲା । ଏହି ସମୟରେ ଅଫିସର ଓ ପୋଲିସ ହୋଇଗଲେ ସର୍ବ ଶକ୍ତିଶାଳୀ । ବ୍ୟକ୍ତିଗତ ଆକ୍ରୋଶ ନେଇ କେତେ ନେତା, କେତେ ଚାକିରିଜୀବୀ ସରକାରଙ୍କର ଶିକାର ହେଲେ । ବାକ୍ ସ୍ୱାଧୀନତା ଲୋପ ପାଇଲା । ଓଡ଼ିଶାରେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ହେଲେ । ସେ ଇନ୍ଦିରାଗାନ୍ଧୀଙ୍କର ପ୍ରିୟପାତ୍ରୀ ଥିଲେ ମାତ୍ର ଅଳ୍ପ କେତୋଟି ବର୍ଷ ଭିତରେ ସେ ଇନ୍ଦିରାଙ୍କ ବିଷଦୃଷ୍ଟିରେ ପଡ଼ିଲେ । ସେ ମୁଖ୍ୟମନ୍ତ୍ରୀ ପଦରୁ ଗଲେ । ୧୯୭୭ ମସିହାରେ ହେଲା ନିର୍ବାଚନ । ଏହି ନିର୍ବାଚନରେ କେବଳ କମ୍ୟୁନିଷ୍ଟ ଦଳକୁ ଛାଡ଼ି ଆଉ ଅନ୍ୟାନ୍ୟ ଯେତେ ଦଳ ଥିଲେ ସମସ୍ତେ ଜୟପ୍ରକାଶଙ୍କ ଉପଦେଶକ୍ରମେ ଗୋଟିଏ ଦଳ ଗଠନ କଲେ- ତାହା ହେଲା ଜନତା ଦଳ । କଂଗ୍ରେସ ଦଳ ସହିତ ପ୍ରତିଯୋଗିତା କରି ଜନତା ଦଳ ନିର୍ବାଚିତ ହେଲା ଓ ଭାରତବର୍ଷରେ ପ୍ରଥମଥର ପାଇଁ ଗଠିତ ହେଲା ଅଣକଂଗ୍ରେସ ସରକାର । ଦୁଇବର୍ଷ ମାତ୍ର ଏମାନେ ରହିପାରିଲେ ନାହିଁ । ପୁନର୍ବାର ହେଲା ନିର୍ବାଚନ ୧୯୮୦ ମସିହାରେ । କଂଗ୍ରେସ ପୁଣି କ୍ଷମତାକୁ ଆସିଲା । ଇନ୍ଦିରାଗାନ୍ଧୀ ହେଲେ ପ୍ରଧାନମନ୍ତ୍ରୀ । ୧୯୮୪ ମସିହାରେ ତାଙ୍କୁ ନିହତ କଲା ତାଙ୍କର ଦେହରକ୍ଷୀ । ପ୍ରଥମଥର ପାଇଁ ଭାରତବର୍ଷରେ ଜଣେ ପ୍ରଧାନମନ୍ତ୍ରୀଙ୍କୁ ହତ୍ୟା କରାଗଲା । ତାଙ୍କ ପରେ ତାଙ୍କ ପୁତ୍ର ରାଜୀବ ଗାନ୍ଧୀ ହେଲେ ପ୍ରଧାନମନ୍ତ୍ରୀ । ସେ ମଧ୍ୟ ନିହତ ହେଲେ । କଂଗ୍ରେସ ଦଳ ଭିତରେ ଅନ୍ତର୍ଦ୍ୱନ୍ଦ୍ୱ ଲାଗି ରହିଲା । ବର୍ତ୍ତମାନ ସୋନିଆ ଗାନ୍ଧୀ କଂଗ୍ରେସର ମଙ୍ଗ ଧରିଛନ୍ତି । ମଝିରେ ଭାରତୀୟ ଜନତା ଦଳ କେନ୍ଦ୍ରରେ ଅନ୍ୟ ତେରଟି ଦଳକୁ ନେଇ ସରକାର ଗଠନ କଲେ । ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀ ହେଲେ ପ୍ରଧାନମନ୍ତ୍ରୀ । ସେ ଜଣେ ବିଦ୍ୱାନ୍ ବ୍ୟକ୍ତି । ଦେଶ ପ୍ରତି ଅଙ୍ଗୀକାରବଦ୍ଧ ମଣିଷ । ପାଞ୍ଚବର୍ଷ ପରେ ପୁନର୍ବାର କଂଗ୍ରେସ ଦଳ ଗଠନ କଲା ସରକାର ।

୧୯୬୫ ମସିହାରୁ ଏପର୍ଯ୍ୟନ୍ତ ଭାରତବର୍ଷର ରାଜନୀତିରେ ଲାଗି ରହିଛି ଅସ୍ଥିରତା । ରାଜନୀତି ହୋଇଯାଇଛି ଗୋଟିଏ ବେଉସା । ପାରିବାରିକ ରାଜନୀତି ଯେମିତି ଅସ୍ଥିମଜ୍ଜାଗତ ହୋଇଯାଇଛି । ଏପରି ଅବସ୍ଥାରେ ଓଡ଼ିଶାର ରାଜନୀତିରେ ମଧ୍ୟ ଦେଖାଦେଇଛି ଦ୍ୱନ୍ଦ୍ୱ ଓ ସଂଘର୍ଷ । ମନେହେଉଛି ଯେଉଁମାନେ ରାଜନୀତି କରୁଛନ୍ତି

ସେହିମାନଙ୍କର ଯେମିତି ସବୁ କିଛି ଅଧିକାରଭୁକ୍ତ ହୋଇଯାଇଛି । ଆମ ଓଡ଼ିଶାରେ ସ୍ୱାଧୀନତା ପରବର୍ତ୍ତୀ ଦୀର୍ଘ ପଞ୍ଚଷଠି ବର୍ଷ ଧରି ସବୁ କିଛି ହୋଇଯାଇଛି ରାଜନୀତିକରଣ । ଏବେ ରାଜନୀତି ପ୍ରବେଶ କରିଯାଇଛି ଢିଙ୍କିଶାଳରୁ ହାଣ୍ଡିଶାଳ ପର୍ଯ୍ୟନ୍ତ, ଗାଧୁଆତୁଠରୁ ଦାଣ୍ଡଦୁଆର ଆଉ ଠାକୁରଘର ପର୍ଯ୍ୟନ୍ତ । ଏଇ ରାଜନୀତି ଯୋଗୁଁ ରାଇଜସାରା ଫାଟ ସୃଷ୍ଟି ହୋଇଯାଇଛି । ଆମ ସମ୍ବିଧାନରେ ଯେଉଁ ସର୍ବେ ସମାନ କଥାଟା କୁହାଯାଇଛି ତାହା ବିଡ଼ମ୍ବିତ ହୋଇଯାଇଛି । ମୁଁ ଦେଖିଥିଲି ପ୍ରଥମ ନିର୍ବାଚନଠାରୁ ପ୍ରାୟ ଦଶପନ୍ଦର ବର୍ଷ ପର୍ଯ୍ୟନ୍ତ ହରିଜନଙ୍କୁ ଭୋଟବ୍ୟାଙ୍କ କରାଯାଇ ନିର୍ବାଚନ ବୈତରଣୀକୁ ପାରି ହେବାକୁ ରାଜନେତାମାନେ ଉଦ୍ୟମ କରିଥିଲେ । ଏଇ ଭୋଟ ବ୍ୟାଙ୍କଟା ଆଉ ଏତେ କାମ ଦେଖେଇଲା ନାଇଁ । ସେଇଠୁ ଆସିଲା ଆହୁରି କେତେ କେତେ ଭୋଟ ବ୍ୟାଙ୍କ । କେତେ କେତେ ଧର୍ମ ଓ ଜାତିପ୍ରଥାକୁ ନେଇ ସଂରକ୍ଷଣ ବ୍ୟବସ୍ଥା ହେଲା । ଗୋଟାଏ ମହାଜାତି ଭିତରେ କେତେ କେତେ ଫାଟ ସୃଷ୍ଟି ହୋଇଗଲା । ଏବେ ଗୋଟାଏ ନୂଆ ଧାରା ସୃଷ୍ଟି ହୋଇଛି ଭୋଟ ପାଇଁ । ବ୍ୟାଧ ଚାଉଳ ବିଞ୍ଚି ଜାଲ ବିଛେଇ ଛକିବସି କପୋତମାନଙ୍କୁ ଧରିବା ପାଇଁ ଉଦ୍ୟମ କଲା ପରି ଏବେ ଚାଲିଛି ଦି'ଟଙ୍କିଆ ଚାଉଳରୁ ଏକଟଙ୍କିଆ ଚାଉଳ ବଣ୍ଟନ, ମାଗଣା ସାଇକେଲ, ଛତାବଣ୍ଟନ, ଇନ୍ଦିରା ଆବାସ, ଚାଷୀମାନଙ୍କୁ ମୋବାଇଲ୍ ଫୋନ୍ ଇତ୍ୟାଦି କେତେ କ'ଣ ଯୋଗାଣ । ଇଏ ସବୁ ସେଇ ବ୍ୟାଧର ଚାଉଳ ବିଞ୍ଚି କପୋତ ଧରିବା ପରି । ଏଇ ଯେଉଁ ନେତାମାନେ ଏତେ ଦାନୀ ବୋଲାଉଛନ୍ତି ସେମାନେ କାହା ଧନ ଦେଉଛନ୍ତି ? ଇଏ କ'ଣ ସେମାନଙ୍କ କଷ୍ଟଲବ୍ଧ ରୋଜଗାର କରୁଥିବା ଧନ । ଛାନ୍ଦୋଗ୍ୟ ଉପନିଷଦରେ ରାଜା ଜାଣଶ୍ରୁତିଙ୍କର ରାଜକୋଷରୁ ଦାନ କରୁଥିବା ଅହଙ୍କାରକୁ ଭାଙ୍ଗିଦେଲା ଗୋଟାଏ ଶଗଡ଼ିଆ ରୈକ୍ୱ । ସେ ପଚାରିଥିଲା ରାଜାଙ୍କୁ– କାହା ଧନ ସେ ଦାନ କରୁଛନ୍ତି ? ଏଇ ଧନ ତ ଲୋକମାନଙ୍କର । କର ଆକାରରେ ରାଜା ଆଦାୟ କରି ରାଜକୋଷରେ ରଖିଛନ୍ତି । ଏଇ ଧନର ସେ ମାଲିକ ହେଲେ କିପରି ? ତାହାକୁ ଦାନ କରି ସିଏ ଦାନୀ ହେଲେ କିପରି ? ଏଇପରି ପରାନ୍ନଭୋଜୀମାନେ କ'ଣ ମହାପାପୀ ନୁହନ୍ତି ? ଏକଥା କିଏ ବୁଝିବ ? କ୍ଷମତାସୀନମାନେ ବୁଝନ୍ତି ନାହିଁ । ନିଜକୁ ସର୍ବେସର୍ବା ମନେକରନ୍ତି । ଏବେକାର ନେତା ଓ ମନ୍ତ୍ରୀମାନଙ୍କୁ ଦେଖିଲେ କିଏ କହିବ ରାଜାମାନେ ଚାଲିଗଲେଣି ବୋଲି ? ନୂଆ ପୋଷାକରେ ଏମାନେ କ'ଣ ରାଜା ମହାରାଜାଙ୍କଠାରୁ ବଳି ନୁହନ୍ତି ? ଆମ ପ୍ରଚଳିତ ଗଣତାନ୍ତ୍ରିକ ରାଜନୀତି ଦଳଙ୍କୁ ଉପରଥାକର କରିଦେଇଛି । ସେମାନେ ହୋଇଯାଇଛନ୍ତି ଉପଭୋଗୀ । ସେମାନଙ୍କର ବଶମ୍ବଦ ହୋଇ ବଡ଼ ବଡ଼ ଅଧିକାରୀ, ପୋଲିସ, ଡାକ୍ତର, ଇଂଜିନିୟର, କଣ୍ଟ୍ରାକ୍ଟର ସମସ୍ତେ ହୋଇଛନ୍ତି ସେହି ଏକା ନାଉର ମଙ୍ଗି । ସମସ୍ତଙ୍କ

ଭିତରେ ସେଇ ଉପଭୋଗୀ ମନୋଭାବ, ସମସ୍ତଙ୍କର ବୁର୍ଜୁୟା ଟେଣ୍ଡେନ୍‌ସି । ପୋଲିସ ନେତାଙ୍କ ରକ୍ଷାକବଚ । ଯେତେ ପାପ କଲେ ବି ପୋଲିସ ତଦନ୍ତ ରିପୋର୍ଟରେ ଏମାନଙ୍କର ନାମ ରହେ ନାହିଁ । ବିରୋଧୀଙ୍କୁ ଜବତ କରିବା ପାଇଁ ପୋଲିସ ହୋଇଛି ହାତବାରିସି ।

ଆଜିର ରାଜନୀତିରେ ସବୁଠୁଁ ବେଶି ଅବହେଳିତ ଶିକ୍ଷାବିଭାଗ । ଏହି ବିଭାଗଟା ସରକାରଙ୍କର ଲାଭଜନକ ନୁହେଁ । ତେଣୁ ଏ ବିଭାଗରେ ଶିକ୍ଷକ ରହିଲେ କେତେ, ନ ରହିଲେ କେତେ । ଶିକ୍ଷା ଓ ଶିକ୍ଷକକୁ ଅବହେଳା କଲେ କ'ଣ ହୁଏ ତାହା ଭାଗବତର ବେଣୁରାଜା ଉପାଖ୍ୟାନରୁ ତ ଜାଣିଥିବେ । ସେଇ ଅବସ୍ଥା ହେବାକୁ ଯାଉଛି । ରାଜନୀତିରେ ତ ସଂରକ୍ଷଣ ବ୍ୟବସ୍ଥା ବଢ଼ି ବଢ଼ି ଚାଲିଛି । ଏଇ କେତେ ବର୍ଷ ପୂର୍ବେ ଦଳିତ ସଂରକ୍ଷଣ ବ୍ୟବସ୍ଥା ହେଲା । ଆହୁରି କେତେ କେତେ ସଂରକ୍ଷଣ । ଏଇଆ ଯଦି ଚାଲେ କ'ଣ ହେବ ଏ ଦେଶର ବିପୁଳ ଅସଂରକ୍ଷିତ ଛାତ୍ରଛାତ୍ରୀଙ୍କର ଅବସ୍ଥା ? ଆମ ରାଜ୍ୟରେ ଦୁର୍ନୀତି ବଢ଼ି ବଢ଼ି ଚାଲିଛି । ସାରା ଦେଶରେ ଦୁର୍ନୀତି । କୋଟି କୋଟି ଟଙ୍କା ସୁଇସ୍ ବ୍ୟାଙ୍କରେ, ବାହାର ଦେଶର ବ୍ୟାଙ୍କରେ । ଆମ ରାଜ୍ୟରେ ରାଜନେତା, ଅଧିକାରୀ, ପୋଲିସ, ଇଂଜିନିୟର, ଡାକ୍ତର, କଣ୍ଟ୍ରାକ୍ଟର, ଶିଳ୍ପପତିମାନଙ୍କର କଟକ ଓ ରାଜଧାନୀରେ କେତେ କେତେ ଜାଗା, କେତେ କେତେ ଲୋଭନୀୟ ପ୍ରାସାଦ । କେଉଁଠୁ ଏ ଅର୍ଥ ଆସିଲା ? ଏହାର ଯଦି ନିରପେକ୍ଷ ତଦନ୍ତ ହୁଅନ୍ତା ତେବେ ଜଣାଯାଆନ୍ତା ଏହାର ରହସ୍ୟ । କିଏ କହିବ ? ସମସ୍ତେ ତ ଏକା ନାଉର ମଞ୍ଜି । ତେଣୁ ରାଜ୍ୟ ଚାଲିଛି, ଦେଶ ଚାଲିଛି । ଚାଲିଛି ମଧ ହରିଲୁଟ, ଧର୍ଷଣ, ହରଣ, ହତ୍ୟା । ରୋକିବାକୁ କେହି ନାହିଁ । ଆଜି ମଣିଷ ନିଜକୁ ନିରାପଦ ମଣୁ ନାହିଁ । ଛାତ୍ରୀଟିଏ, ଯୁବତୀଟିଏ ମଧ ଅସହାୟ ମଣୁଛି । ପୋଲିସ ଶୁଣୁ ନାହିଁ, ନେତା ଶୁଣୁ ନାହିଁ, ଅଧିକାରୀ ଶୁଣୁ ନାହିଁ । ଏଇ ସୁନାପୁଅମାନେ ଭାବୁଛନ୍ତି ସେମାନେ ଠିକ୍ ଅଛନ୍ତି, ଆଉ କାହାର କ'ଣ ହେଲା ସେଥିରେ କ'ଣ ଅଛି ?

ଆମ ରାଜ୍ୟର କେତେ କେତେ ନେତାଙ୍କ ବିରୋଧରେ କେତେ କେତେ କମିଶନ ବସିଛି । ଏବେ ମଧ ବସୁଛି । କ'ଣ ମିଳୁଛି ଏଥିରୁ ? ଏହା କେବଳ ପର୍ବତର ମୂଷିକ ପ୍ରସବ । ଏଇ ଯେଉଁ ସୁନାପୁଅମାନେ ଅଛନ୍ତି ସେଇମାନଙ୍କ ଯୋଗୁ ଯେ ଆମ ଭାଷା, ସଂସ୍କୃତି, ଧର୍ମ, ପରଂପରା, ଇଜ୍ଜତ ସବୁ କିଛି ବିପର୍ଯ୍ୟସ୍ତ ହୋଇଯାଉଛି ତାହାକୁ ଅସ୍ୱୀକାର କରି ହେଉ ନାହିଁ । ପାଶ୍ଚାତ୍ୟ ମାର୍କା ବୁଦ୍ଧିଜୀବୀମାନଙ୍କର ଏଠି ଭିଡ଼ । ଏଠି ଯାହା କିଛି ହେଉଛି ସବୁ ରାଜନୀତି ନିୟନ୍ତ୍ରିତ । ସାହିତ୍ୟ କୁହ, କଳା କୁହ, ସଂସ୍କୃତି କୁହ କି ଧର୍ମ କୁହ ସବୁ ରାଜନୀତି କବଳିତ । ସାହିତ୍ୟ ଏକାଡେମୀର କିଏ ସଭାପତି କି ସଦସ୍ୟ ହେବ ତାହା ମଧ ସରକାର ନିୟନ୍ତ୍ରିତ । ଭାଷା ପ୍ରତିଷ୍ଠାନର ମଧ ଏକା ଦୁର୍ଦ୍ଦଶା । ରାଜନୀତି ତ ହୋଇଯାଇଛି ପାରିବାରିକ । ନେତାଏ ମନେ କରୁଛନ୍ତି ସେମାନଙ୍କ ପରିବାର ବ୍ୟତୀତ

ଆଉ ସମସ୍ତେ ରାଜନୀତି ପାଇଁ ଅଯୋଗ୍ୟ । ସ୍ୱୟଂ ସୋନିଆ ଗାନ୍ଧୀ ଏଇଆ କଲେ, ଲାଲୁପ୍ରସାଦ ଯାଦବ କଲେ ଓ ଆହୁରି ଅନେକ ସେଇଆ କଲେ । ଆମ ଓଡ଼ିଶାରେ ଏଇ ପାରିବାରିକ ରାଜନୀତି କାୟାବିସ୍ତାର କରିଯାଇଛି । ବାପାପୁଅ ବିଧାୟକ, ମନ୍ତ୍ରୀ । କେଉଁଠି ଶ୍ୱଶୁର ଜ୍ୱାଇଁ, କେଉଁଠି ସ୍ୱାମୀ ସ୍ତ୍ରୀ, କେଉଁଠି ଭାଇ ଭାଇ । ଏମିତି କେତେ ଢଙ୍ଗରେ ରାଜନୀତି ଚାଲିଛି । ଏଇ ରାଜନୀତିରେ ଉତ୍କଳ ପ୍ରସଙ୍ଗର ସଂପାଦକ ପୂର୍ବତନ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଡକ୍ଟର ହୁସେନ୍ ରବିଗାନ୍ଧୀ ମରଣାନ୍ତକ ଆକ୍ରମଣର ଶିକାର ହେଲେ । କିଏ କାହାକୁ କହିବ ? ସବୁ ରାଜନୀତିର ଚକ୍ରବ୍ୟୂହ । ଅଭିମନ୍ୟୁ କାହିଁ ଯେ ଚକ୍ରବ୍ୟୂହକୁ ଭେଦ କରିବ ? ଅର୍ଜୁନ କାହାନ୍ତି ଯେ ସ୍ୱେଚ୍ଛାଚାରୀମାନଙ୍କୁ ନିହତ କରିବ ? ବିଦୁର କାହାନ୍ତି ଯେ ଅନ୍ଧରାଜାମାନଙ୍କର ମୋହଭଙ୍ଗ କରିବ ଓ ଦୁର୍ଗତମାନଙ୍କୁ ରକ୍ଷା କରିବ ? ଶ୍ରୀକୃଷ୍ଣ କାହାନ୍ତି ଯେ ଅଧର୍ମ ଅନ୍ୟାୟ ଅସତ୍ୟକୁ ବିନାଶ କରି ସତ୍ୟ ଓ ଧର୍ମର ପ୍ରତିଷ୍ଠା କରିବେ ? ଆଜି ରାଜନୀତିରେ ଦୁର୍ଯ୍ୟୋଧନମାନଙ୍କର ରାଜୁତି, ଶକୁନିମାନଙ୍କର କୂଟଚକ୍ରାନ୍ତ ।

ଏବେ ଆମ ରାଜ୍ୟର ରାଜନୀତି ଏହିପରି ଅବସ୍ଥାରେ ଚାଲିଛି । ମୁଖ୍ୟ ଶାସକଦଳ ବିଜେଡି । ତାହା ପୁଣି ବ୍ୟକ୍ତିବିଶେଷଙ୍କ ନାମରେ ନାମିତ । ଏଠି ମଧ୍ୟ ସେହି ବ୍ୟକ୍ତିବାଦ । ସମୂହ ଦୃଷ୍ଟିକୋଣ କାହିଁ ? ରାଜାଙ୍କ ମର୍ଜି ଜଗି କାମ କରିବାକୁ ହୁଏ । ଟିକିଏ କେହି ସ୍ୱାଧୀନ ମତ ପ୍ରକାଶ କଲେ ସିଏ ଚାରିପାଞ୍ଚିରୁ ଯାଏ । ବିରୋଧୀ ଦଳ କଂଗ୍ରେସର ଚେର ଓଡ଼ିଶାରେ ନାହିଁ । ଦିଲ୍ଲୀରେ ତା'ର ଚେର । ସେଠି ହାଇକମାଣ୍ଡଙ୍କ ଆଦେଶ ଶିରୋଧାର୍ଯ୍ୟ । ଏବେ ଭାରତୀୟ ରାଜନୀତିରେ ରାହୁଲ ଗାନ୍ଧୀଙ୍କର ଆବିର୍ଭାବ ହେଲାଣି । କଂଗ୍ରେସ ଡଙ୍ଗାର ସେ କର୍ଣ୍ଣଧାର । ଏମିତି ଅବସ୍ଥା ହୋଇଛି ଯେ ଦେଶର ବଡ଼ ବଡ଼ ଜ୍ଞାନୀ ଗୁଣୀ ନେତା ରାହୁଲଙ୍କ ଗୋଡ଼ାଣିଆ ସାଜିଲେଣି । ମୋର ମନେଅଛି ଇନ୍ଦିରାଗାନ୍ଧୀଙ୍କ ରାଜୁତି ସମୟରେ ତାଙ୍କ ସାନପୁଅ ସଂଜୟ ଗାନ୍ଧୀ ଥିଲେ ସବୁ ନିଷ୍ପତ୍ତି ନେବାର କେନ୍ଦ୍ର । ସିଏ ଥରେ ଓଡ଼ିଶାକୁ ଆସିଥିଲେ । କଟକର ରେଭେନ୍ସା କଲେଜଛକରେ ସଭା ହେଲା, ସେଦିନ ମୁଁ ଶୁଣିଲି ଜଣେ ବିଶିଷ୍ଟ ରାଜନେତା ତାଙ୍କୁ 'ଋତୁରାଜ ବସନ୍ତ' କହି ତାଙ୍କର ଭୂୟସୀ ପ୍ରଶଂସା କଲେ । ଏହା ମୋ ଭିତରେ ପ୍ରତିକ୍ରିୟା ସୃଷ୍ଟି କଲା । ଅତୀତର ରାଜତନ୍ତ୍ରରେ ତୋଷାମୋଦ କରିବାର ପ୍ରକ୍ରିୟା ଯେପରି ସ୍ୱାଧୀନତା ପରବର୍ତ୍ତୀ ଗଣତନ୍ତ୍ରୀ ରାଜନୀତିରେ ଆହୁରି ବ୍ୟାପକ ଓ ଗଭୀର ହୋଇଗଲା । ଶେଷ ପର୍ଯ୍ୟାୟରେ ଓଡ଼ିଶାର ପ୍ରବାଦପୁରୁଷ ବିଜୁବାବୁ ଯେତେବେଳେ ମୁଖ୍ୟମନ୍ତ୍ରୀ ହେଲେ ସେତେବେଳେ ସେ 'ମାଡି' ତତ୍ତ୍ୱଟିଏ ଆବିଷ୍କାର କଲେ । ଯେଉଁ ସରକାରୀ କର୍ମଚାରୀ ଲୋକଙ୍କ କାର୍ଯ୍ୟ ନ କରି ହଇରାଣ କରୁଛନ୍ତି, ଯିଏ ଲାଞ୍ଚ ନେଉଛି ତାଙ୍କୁ ମାଡ଼ ଦେବାକୁ ଘୋଷଣା କଲେ । ଏହା

ସେତେବେଳେ ମୋ ଭିତରେ ଭାବାନ୍ତର ସୃଷ୍ଟି କଲା । ଓଡ଼ିଶାରେ ଲୋକେ କହୁଥିବା କଥା ମନେପଡ଼ିଲା– 'ମାଡ଼କୁ ମହାଦେବ ଡରନ୍ତି ।' ଏହି କଥାକୁ ନେଇ ମୁଁ 'ସମାଜ'ରେ 'ମାଡ଼' ଶୀର୍ଷକ ରମ୍ୟରଚନାଟିଏ ଲେଖିଥିଲି । ରାଜନେତା ଓ ଅଧିକାରୀଙ୍କ ଗର୍ବ ଓ ଅହଙ୍କାରକୁ ନେଇ କେତେ ରମ୍ୟରଚନା ସେତେବେଳେ ଲେଖିଥିଲି– ଏଇ ଯେମିତି ଇଛନ୍ତି ଦାମ୍ଭିକେ, କହିବାକୁ ଲାଜ, ଦୁଧ ଉତୁରିଲେ ଚୁଲିରେ ପଶେ ଇତ୍ୟାଦି ।

ମୋ କେନ୍ଦ୍ରାପଡ଼ା ଜିଲ୍ଲାର କେତେଜଣ ରାଜନେତାଙ୍କ ସଂପର୍କରେ ମୁଁ ଆସିଲି । ସ୍ୱର୍ଗତ ଦୀନବନ୍ଧୁ ସାହୁ ସ୍ୱାଧୀନତା ସଂଗ୍ରାମୀ ଓ ନିର୍ବାଚନରେ ଜିଣି ମନ୍ତ୍ରୀ ହୋଇଥିଲେ । ମୋ ବାପା ସ୍ୱାଧୀନତା ସଂଗ୍ରାମୀ ଥିବାରୁ ତାଙ୍କ ସହିତ ବାପାଙ୍କର ଘନିଷ୍ଠ ସଂପର୍କ ଥାଏ । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ଯଦୁମଣି ମଙ୍ଗରାଜ । ଖଣ୍ଡାୟତମାନଙ୍କୁ ସଂଗଠିତ କରି ତାଙ୍କ ସପକ୍ଷରେ ସେ ଭିତ୍ତି ସ୍ଥାପନ କରିଥାଆନ୍ତି । ଆମ ଛକ ଉପରେ ସେ ନିର୍ବାଚନ ସଭା କଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ଯାଇଥାନ୍ତି ତାଙ୍କ ସଂପର୍କରେ କହିବାକୁ । ସେଦିନ ମୁଁ ପ୍ରଥମେ ଗୋଦାବରୀଶ ମିଶ୍ରଙ୍କୁ ଦେଖିଲି । ତାଙ୍କର ଗୋରା ଟକଟକ ଚେହେରା ମୋତେ ଖୁବ୍ ପ୍ରଭାବିତ କରିଦେଲା । ସେତେବେଳକୁ ସେ କଂଗ୍ରେସରୁ ବିଦାୟ ନେଇ ଗଣତନ୍ତ୍ର ପରିଷଦ ନାମକ ଏକ ରାଜନୀତିକ ଦଳ ଗଠନ କରିଥିଲେ । ତାଙ୍କର ମୃତ୍ୟୁ ହେଲା ୧୯୫୬ ମସିହାରେ । ତାଙ୍କ ସଂପର୍କରେ ମୁଁ ଲେଖିଲି କବିତାଟିଏ 'ଚାଲିଗଲ ଆହା' । ପରବର୍ତ୍ତୀ କାଳରେ ମୁଁ ତାଙ୍କର ସମସ୍ତ ଗ୍ରନ୍ଥ ପଢ଼ିଲି । ତନ୍ମୟ ହେଲି । ତାଙ୍କ ଉପରେ ଜଣେ ପିଲା ମୋ ଅଧୀନରେ ଗବେଷଣା କରି ପିଏଚ.ଡି. ଉପାଧି ପାଇଲେ ।

ବାପା ମରିଗଲା ପରେ ଆମର ଜମିଜମା ସଂକ୍ରାନ୍ତୀୟ ଗୋଟିଏ ମୋକଦ୍ଦମା ପାଇଁ ଦୀନବନ୍ଧୁବାବୁଙ୍କ କଟକ ବସାକୁ ଆସିଥିଲି । ସେ ମୋ ବାପାଙ୍କ ପରିଚୟ ପାଇ ମୋତେ ଖୁବ୍ ଶ୍ରଦ୍ଧା କଲେ । ସେ କେନ୍ଦ୍ରାପଡ଼ା ଅଞ୍ଚଳର ଉନ୍ନତି ପାଇଁ ଅନେକ କାର୍ଯ୍ୟ କରିଥିଲେ । କେନ୍ଦ୍ରାପଡ଼ା କଲେଜ ତାଙ୍କ କୀର୍ତ୍ତିର ସ୍ମାରକୀ ହୋଇ ଏବେ ଛିଡ଼ା ହୋଇ ରହିଛନ୍ତି । ପୁରୁଷୋତ୍ତମ ନାୟକ ଜଣେ ଗାନ୍ଧିବାଦୀ ସମାଜସେବୀ । ସେ ମଧ୍ୟ ବିଧାୟକ ହୋଇଥିଲେ । ସାଇକେଲ ଚଢ଼ି ସେ ଗାଁମାନଙ୍କୁ ଯାଉଥିବା ମୁଁ ଦେଖିଛି । ଏବେ ସେ ଶହେ ବର୍ଷରୁ ଊର୍ଦ୍ଧ୍ୱ ବୟସର ବ୍ୟକ୍ତି । ଚାଲିବା ପାଇଁ କ୍ଷମତା ନାହିଁ । ଯେତେବେଳେ ସେ ମୋର ଦେଖା ହୁଅନ୍ତି ମୋତେ ଆଉଁଶି ଦିଅନ୍ତି । ତାଙ୍କ ସହିତ ମୋର ସଂପର୍କ ପିତା ପୁତ୍ରର ସଂପର୍କ । କେନ୍ଦ୍ରାପଡ଼ାର ପ୍ରସିଦ୍ଧ ଡାକ୍ତର ସରୋଜକାନ୍ତ କାନୁନ୍‌ଗୋ । ଗରିବ ଲୋକେ ତାଙ୍କ ଦ୍ୱାରା ଉପକୃତ ହୁଅନ୍ତି । ସେପରି ଜଣେ ଡାକ୍ତରଙ୍କୁ ମୁଁ ଯେପରି ଦେଖିଥିଲି ଆଜି ବହୁ ବର୍ଷ ପରେ ଅନୁଭବ କରୁଛି କାହାନ୍ତି ସେପରି ସେବା ମନୋବୃତ୍ତି ନେଇ ଚିକିତ୍ସା କରୁଥିବା ଡାକ୍ତର ? କଟକରେ ରହିଲା ପରେ ମୁଁ ଦେଖିଥିଲି ଡାକ୍ତର ମହେନ୍ଦ୍ର

ମିଶ୍ର, ଶରତ ମିଶ୍ର, ସୁରେଶଚନ୍ଦ୍ର ମିଶ୍ର ପ୍ରମୁଖ କେତେଜଣଙ୍କୁ । ଆଜି ସେପରି ଡାକ୍ତର ସ୍ୱପ୍ନ । କେନ୍ଦ୍ରାପଡ଼ାର ରାଜନୀତିରେ ଭାଗବତ ପ୍ରସାଦ ମହାନ୍ତି, ପ୍ରହ୍ଲାଦଚନ୍ଦ୍ର ମଲ୍ଲିକ, ବେଦପ୍ରସାଦ ଅଗ୍ରୱାଲା, ନଳିନୀକାନ୍ତ ମହାନ୍ତି, ଶରତଚନ୍ଦ୍ର ଦେଓ, ବିଜୟ ମହାପାତ୍ର, ଗଣେଶ୍ୱର ବେହେରା ପ୍ରମୁଖଙ୍କୁ ମୁଁ ଦେଖିଛି ଓ ସେମାନଙ୍କ ସଂପର୍କରେ ଆସିଛି । ଭାଗବତବାବୁ ପ୍ରଜା ସୋସାଲିଷ୍ଟ ଦଳରେ ଥିବା ସମୟରୁ ତାଙ୍କୁ ମୁଁ ଜାଣେ । ପରେ ସେ କଂଗ୍ରେସରେ ମିଶିଲେ, ମନ୍ତ୍ରୀ ହେଲେ । କେନ୍ଦ୍ରାପଡ଼ାକୁ ଜିଲ୍ଲା କରିବାରେ ତାଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ତେବେ ମୁଁ ଲକ୍ଷ୍ୟ କରିଛି ଏସବୁ ରାଜନେତାଙ୍କ ଭିତରେ ବସା ବାନ୍ଧିଥିବା ମୁଁକାରକୁ । ଏହାକୁ ମୁଁ ପସନ୍ଦ କରେ ନାହିଁ । ନଳିନୀବାବୁଙ୍କର ଲୋକପ୍ରିୟତା ମୋତେ ମୁଗ୍ଧ କରେ । ସେ ଯାହା କୁହନ୍ତି କାର୍ଯ୍ୟରେ ପରିଣତ କରନ୍ତି । ରାଜନୀତି ସବୁବେଳେ ଅସ୍ଥିର । ଆଜି ଯିଏ ଗୋଟିଏ ଦଳରେ ଥାଆନ୍ତି କାଲି ସେ ଅନ୍ୟ ଏକ ଦଳକୁ ଡିଆଁ ମାରନ୍ତି । ଗୋଟାଏ କ'ଣ କିଛି ହୋଇଯିବାର ମୋହ ହିଁ ଏହାର କାରଣ । ବିଜୁବାବୁଙ୍କ ସ୍ନେହଧନ୍ୟ ବିଜୟବାବୁ, ନଳିନୀବାବୁ, ଶ୍ରୀକାନ୍ତ ଜେନା ପ୍ରମୁଖ ବିଜେଡିରୁ ବିଦାୟ ନେଇଗଲେ । ନଳିନୀବାବୁ ଓ ଶ୍ରୀକାନ୍ତ ବାବୁ କଂଗ୍ରେସରେ ମିଶିଲେ । ବିଜୟବାବୁ ଏବେ ବିଜେପିରେ ଅଛନ୍ତି ।

ଓଡ଼ିଶା ସ୍ତରର କେତେକ ରାଜନେତାଙ୍କ ସହିତ ମୋର ସଂପର୍କ ଥିଲା । କେବେ କୌଣସି ଦିନ ମୁଁ ମୋର ବ୍ୟକ୍ତିଗତ ଫାଇଦା ପାଇଁ କାହାରିକୁ କହି ନାହିଁ । ଜାନକୀବଲ୍ଲଭ ପଟ୍ଟନାୟକ ଓଡ଼ିଶା ରାଜନୀତିରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଥିଲେ । ଦୀର୍ଘ ପନ୍ଦର ବର୍ଷ ଧରି ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ପୂର୍ବରୁ ମଧ୍ୟ କେନ୍ଦ୍ରମନ୍ତ୍ରୀ ଥିଲେ । ମୂଳତଃ ସେ ଜଣେ ସାମ୍ବାଦିକ ଓ ସାହିତ୍ୟିକ । ପ୍ରଜାତନ୍ତ୍ରର ସେ ସଂପାଦକ ଥିଲେ । ତା'ପରେ ସେ ରାଜନୀତିକୁ ଆସିଲେ । ସେ ସଂସ୍କୃତିପ୍ରେମୀ ମଣିଷ । ଜଗନ୍ନାଥ ଧର୍ମ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା । ତାଙ୍କ ସଂପାଦିତ 'ପୌରୁଷ' ଏକ ଜ୍ଞାନକୋଷ ପରି ମନେହୁଏ । ସେ ମୁଖ୍ୟ ଥିଲାବେଳେ କୌଣସି କୌଣସି ସାମୂହିକ କାର୍ଯ୍ୟରେ ମୁଁ ଯାଇଛି ତାଙ୍କ ପାଖକୁ । ସେ ତାହା କରିଦେଇଛନ୍ତି । ଏବେ ସେ ଆସାମର ରାଜ୍ୟପାଳ । ସେ ଯେଉଁଠି ଥାଆନ୍ତୁ ନା କାହିଁକି ଓଡ଼ିଶା ତାଙ୍କର ପ୍ରାଣ । ନିଜେ ସେ ଜଣେ ସୁଲେଖକ । ଭର୍ତ୍ତୃହରିଙ୍କ 'ଶୃଙ୍ଗାର ଶତକ', 'ନୀତି ଶତକ' ଓ 'ବୈରାଗ୍ୟ ଶତକ'କୁ ସେ ପଦ୍ୟରେ ଅନୁବାଦ କରିବା ସହିତ ବଙ୍କିମ ଚନ୍ଦ୍ରଙ୍କ ସମସ୍ତ ଉପନ୍ୟାସକୁ ଓଡ଼ିଆରେ ଅନୁବାଦ କରି ଦୁଇ ଖଣ୍ଡରେ ପ୍ରକାଶ କରିଅଛନ୍ତି । ତାଙ୍କର 'ସ୍ୱପ୍ନ ଓ ସଂକଳ୍ପ' ଏକ ଚିନ୍ତାମୂଳକ ପ୍ରବନ୍ଧ ଗ୍ରନ୍ଥ । ନିଜେ ମଧ୍ୟ କବିତା ଲେଖନ୍ତି । କବିତା ପୁସ୍ତକ 'ସିନ୍ଧୁ ଉପତ୍ୟକା' ପାଇଁ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ତାଙ୍କର 'ରାମାୟଣ' ଓ 'ମହାଭାରତ' ଗ୍ରନ୍ଥ ଦୁଇଟି

ଉଚ୍ଚକୋଟୀର ବିଶ୍ଳେଷଣାତ୍ମକ ପୁସ୍ତକ । ସଂସ୍କୃତ ଭାଗବତର ଗଦ୍ୟରୂପ ମଧ୍ୟ ତାଙ୍କ ପ୍ରତିଭାର ନିଦର୍ଶନ । ତାଙ୍କର କୃପା ଧନ୍ୟ ହୋଇ ଓଡ଼ିଶାର ବହୁ ଲେଖକ ନାନା ପଦପଦବୀ ମଣ୍ଡନ କରିଛନ୍ତି । ଲେଖକ ସାମ୍ମୁଖ୍ୟ ମଧ୍ୟ ତାଙ୍କ କୃପାର ଏକ ସାରସ୍ୱତ ଅନୁଷ୍ଠାନ । ତାଙ୍କ ସ୍ୱପ୍ନର ସାକାର ରୂପ ପୁରୀର ସଂସ୍କୃତ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ସଂସ୍କୃତି ବିଶ୍ୱବିଦ୍ୟାଳୟ । ତାଙ୍କର ପତ୍ନୀ ଜୟନ୍ତୀ ପଟ୍ଟନାୟକ ମଧ୍ୟ ଜଣେ ସୁସାହିତ୍ୟିକା । ତାଙ୍କୁ ମୁଁ ମାତୃଜ୍ଞାନରେ ଶ୍ରଦ୍ଧା କରେ । ମୋ ଝିଅ ଓ ପୁଅ ବାହାଘରକୁ ଜାନକୀବାବୁ ଆସି ଆଶୀର୍ବାଦ ଦେଇଛନ୍ତି । ଏବେ ମଧ୍ୟ ତାଙ୍କର ଶ୍ରଦ୍ଧା ମୋ ପ୍ରତି ଅତୁଟ ଥିବା ଲକ୍ଷ୍ୟ କରେ । ଥରେ ସେ ଡକ୍ଟର ଗୋବିନ୍ଦ ଭୂୟାଁଙ୍କୁ କହିଲେ– 'ବୈଷ୍ଣବବାବୁ ତ କେତେଥର ମୋ ପାଖକୁ ଆସିଛନ୍ତି, କାହିଁ ଥରେ ହେଲେ ତ ନିଜ କଥା କହିଲେ ନାହିଁ ?' ଗୋବିନ୍ଦ ତାଙ୍କୁ ଉତ୍ତର ଦେଇଥିଲେ– 'ସେ କେବେ ନିଜ କଥା କାହାକୁ କହନ୍ତି ନାହିଁ ।'

ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ହେଲା ପରେ ତାଙ୍କର ଗୋଟିଏ ଭ୍ରାନ୍ତ ଅହମିକା ପ୍ରକାଶ ପାଇଲା । ସେ ମୁଖ୍ୟମନ୍ତ୍ରୀ ପଦରୁ ଗଲେ । ଥରେ ତାଙ୍କ ସହିତ ଗୋଟିଏ ସଭାକୁ ମୁଁ ଯାଇଥାଏ ରତ୍ନଗିରି । ସେଠାରୁ ମୁଁ ତାଙ୍କ ସହିତ ଫେରିଲାବେଳେ ମୋତେ ସେ କହିଲେ– ତାଙ୍କ ଦଳରେ ମିଶିବା ପାଇଁ । ମୋତେ ଟିକେଟ ଦେବେ ବୋଲି ମଧ୍ୟ କହିଲେ । ମୁଁ ମନା କଲି । ମୋର ପାରିବାରିକ ଅବସ୍ଥା ଭଲ ନୁହେଁ । ରାଜନୀତିରେ ପଶି ଅର୍ଥ ରୋଜଗାର କରିବାକୁ ମୁଁ ଘୃଣା କରେ । କାହ୍ନୁଚରଣ ଲେଙ୍କାଙ୍କ ସହିତ ମୁଁ ଗୋଟିଏ ସଭାକୁ ଯାଇଥିଲି । ଫେରିଲାବେଳେ ସେ ମଧ୍ୟ ମୋତେ ତାଙ୍କ ଦଳରେ ମିଶିବାକୁ କହିଥିଲେ । ମୁଁ ମନା କରିଥିଲି । କାହ୍ନୁବାବୁ ସ୍ୱାଭିମାନୀ ମଣିଷ । ସେ ମଧ୍ୟ 'ଫାଲଗୁନୀ' ଶୀର୍ଷକ ପତ୍ରିକାଟିଏ ପ୍ରକାଶ କରିଥିଲେ । ସେଥିରେ ମଧ୍ୟ ମୋର ଲେଖା ପ୍ରକାଶ ପାଇଥିଲା । ଯଦୁନାଥ ଦାଶ ମହାପାତ୍ର ଜଣେ କବି, ଗାଳ୍ପିକ, ନାଟ୍ୟକାର ଓ ଔପନ୍ୟାସିକ । ତାଙ୍କ ସହିତ ମୋର ମଧ୍ୟ ସଂପର୍କ ରହିଛି । ଡ. କାର୍ତ୍ତିକେଶ୍ୱର ପାତ୍ର ଜଣେ ଔପନ୍ୟାସିକ ଓ ଉତ୍ତରବାଲେଶ୍ୱରର ଇତିହାସ, ସଂସ୍କୃତି ଓ ସାହିତ୍ୟର ଗବେଷକ । ତାଙ୍କର ମୋ ପ୍ରତି ଭଲ ଧାରଣା । ମୁଁ ଉତ୍ତରବାଲେଶ୍ୱରର ବହୁ ସ୍ଥାନକୁ ବିଭିନ୍ନ ସଭାସମିତିରେ ଯାଇଛି । ତାଙ୍କ ସହିତ ମଧ୍ୟ ମୋର ସାକ୍ଷାତ୍ ହୋଇଛି । ଖାରବେଳ ସ୍ୱାଇଁ ବାଲେଶ୍ୱରର ସାଂସଦ ହେଲେ । ଲୋକସଭାରେ ତାଙ୍କର ବିଦ୍‌ବତ୍ତାପୂର୍ଣ୍ଣ ଅଭିବ୍ୟକ୍ତି ଶୁଣି ମୁଁ ମୁଗ୍ଧ ହୋଇଛି । ସେ ମୂଲ୍ୟବୋଧଭିତ୍ତିକ ରାଜନୀତିରେ ବିଶ୍ୱାସୀ । ତେଣୁ ସେ ସେଥିରେ ତିଷ୍ଠିପାରିଲେ ନାହିଁ । ଫଳରେ ସେ ଏକ ନୂଆ ରାଜନୀତିକ ଦଳ ଗଠନ କରିଛନ୍ତି । ଥରେ ସେ ଭଦ୍ରକରେ ତାଙ୍କ ପିତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ସଭା କରିଥିଲେ ଓ ମୋତେ ନିଖିଳ ଉତ୍କଳ ବାଗ୍ମୀ ପୁରସ୍କାର ଦେଇଥିଲେ । ତାଙ୍କର ନିର୍ଭୀକତା, ସଚ୍ଚୋଟତା

ପାଇଁ ମୁଁ ତାଙ୍କୁ ବହୁତ ଶ୍ରଦ୍ଧା କରେ । ଅନାଦି ସାହୁ ଜଣେ ପୋଲିସ ଅଧିକାରୀ । ସେ ଆଇ.ଜି. ପଦରୁ ଅବସର ନେଇ ପ୍ରଥମେ କଂଗ୍ରେସ ରାଜନୀତିରେ ମିଶି ସାଂସଦ ହେଲେ ମାତ୍ର ବେଶି ଦିନ ସେ କଂଗ୍ରେସ ଦଳରେ ରହିପାରିଲେ ନାହିଁ । ତାଙ୍କର ସ୍ୱାଭିମାନ ବାଧି କଲା କଂଗ୍ରେସରୁ ଇସ୍ତଫା ଦେଇ ବି.ଜେ.ପି.ରେ ମିଶିବା ପାଇଁ । ଏହି ଦଳ ଟିକେଟରେ ସେ ଜିତି ସାଂସଦ ହେଲେ । ଦିଲ୍ଲୀ ରାଜନୀତିରେ ନିଜର ପ୍ରଜ୍ଞା ଓ ପ୍ରତିଭାର ପରିଚୟ ଦେଲେ । ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ଓ ଉପ-ପ୍ରଧାନମନ୍ତ୍ରୀ ଲାଲକୃଷ୍ଣ ଆଡ଼ଭାନିଙ୍କର ସେ ହେଲେ ଅତ୍ୟନ୍ତ ପ୍ରିୟପାତ୍ର ମାତ୍ର ଓଡ଼ିଶାର ତତ୍‌କାଳୀନ ବିଜେପି ଦଳର ନେତାମାନେ ତାଙ୍କୁ ସହିପାରିଲେ ନାହିଁ । ତେଣୁ ସେ ରାଜନୀତିରୁ ସନ୍ନ୍ୟାସ ନେଇଗଲେ । ଇତ୍ୟବସରରେ ସେ ରଚନା କଲେ ନିଜର ଆତ୍ମଚରିତ 'ଗୋଲା ଗାଁରୁ ଗୋଲ ଗମ୍ବୁଜ' । ଓଡ଼ିଆ ଆତ୍ମଚରିତ ଭିତରେ ଏହାର ଯେ ଅଛି ସ୍ୱତନ୍ତ୍ର ମର୍ଯ୍ୟାଦା; ଅସ୍ୱୀକାର କରିହୁଏ ନାହିଁ । ପଞ୍ଚାନନ କାନୁନ୍‌ଗୋ ଓ ତାଙ୍କ ବଡ଼ଭାଇ ତ୍ରିଲୋଚନ କାନୁନ୍‌ଗୋଙ୍କ ସହିତ ମଧ୍ୟ ମୋର ସଂପର୍କ ରହିଛି । ଉଭୟଙ୍କ ସ୍ୱାଧୀନ ଚିନ୍ତା ମୋତେ ମୁଗ୍ଧ କରେ । ଅଡ଼ଶପୁର କଲେଜ ତ୍ରିଲୋଚନବାବୁଙ୍କ ଅଙ୍ଗୀକାରବଦ୍ଧ କୀର୍ତ୍ତି ମୋତେ ଅଭିଭୂତ କରେ । ଦୋଳଗୋବିନ୍ଦ ପ୍ରଧାନ ନବମ ଶ୍ରେଣୀରୁ ପାଠ ଛାଡ଼ି ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କଲେ । କାରାଗାରରେ ଜାତୀୟ କବି ବୀରକିଶୋର ଦାସଙ୍କ ସାନ୍ନିଧରେ ଆସି ନିଜର ବ୍ୟକ୍ତିତ୍ୱ ବିକାଶ କଲେ । ବୀରବାବୁଙ୍କ କବିତା ବୋଲି ଲୋକଙ୍କୁ ଉଦ୍‌ବୁଦ୍ଧ କଲେ । ସ୍ୱାଧୀନତା ପରେ ୱାର୍ଡମେମ୍ବରରୁ ସରପଞ୍ଚ ହୋଇ ପରେ ବିଧାୟକ ଓ ମନ୍ତ୍ରୀ ହେଲେ । ସେ ଗାନ୍ଧିବାଦୀ । ସେ ଲେଖିଲେ ଅନେକ ଗ୍ରନ୍ଥ । ଗାନ୍ଧିଜୀଙ୍କର ଓଡ଼ିଶାକୁ ନଅଥର ଗସ୍ତକୁ ନେଇ ସେ ଏକ ପ୍ରାମାଣିକ ଗ୍ରନ୍ଥ ରଚନା କରିବା ସହିତ ଗାନ୍ଧି-ଭାଗବତ, ଚଣ୍ଡୀର ପଦ୍ୟରୂପ ଲେଖିଲେ । ସେ ମୋ ଘରକୁ ଅନେକଥର ଆସିଛନ୍ତି ଓ ଏବେ ମଧ୍ୟ ଆସନ୍ତି । ତାଙ୍କୁ ମୁଁ ବହୁତ ଶ୍ରଦ୍ଧା କରେ ।

ବହୁ ରାଜନେତାଙ୍କ ସହିତ ମୋର ସଂପର୍କ ଥିଲେ ହେଁ ମୁଁ କାହାରି ପାଖରେ ବଶମ୍ବଦ ନୁହେଁ । ଯେଉଁମାନଙ୍କ ବ୍ୟକ୍ତିତ୍ୱ ଭଲ ଲାଗେ ସେମାନଙ୍କୁ ମୁଁ ପ୍ରଶଂସା କରେ । ଖୁବ୍ କମ୍ ରାଜନେତା ମୋତେ ପ୍ରଭାବିତ କରିଛନ୍ତି । ମୁଁ ଲକ୍ଷ୍ୟ କରିଛି ଯେ ଯିଏ ରାଜନୀତିରେ ପ୍ରବେଶ କରି ବିଧାୟକ, ସାଂସଦ ବା ମନ୍ତ୍ରୀ ହୋଇଛନ୍ତି ସେମାନେ ସ୍ୱର୍ଗସୁଖ ଲାଭ କରିଛନ୍ତି । ନିର୍ବାଚିତ ହୋଇଗଲା ପରେ ନିର୍ବାଚନମଣ୍ଡଳୀକୁ ଭୁଲି ଯାଇଛନ୍ତି । ଭୋଟ ବେଳେ କେତେ କାକୁତି ମିନତି ହୁଅନ୍ତି, ହାତ ଯୋଡ଼ି କେତେ ନମସ୍କାର ହୁଅନ୍ତି; ନିର୍ବାଚିତ ହୋଇଗଲାପରେ କାଣିଆ କିଏ କପିଳା କିଏ । ଏହା ଛଡ଼ା ରାଜନେତାଏ ଅଳ୍ପ କେଇଟା ଦିନ ଭିତରେ ହୋଇଯାଆନ୍ତି କୋଟି କୋଟି ଟଙ୍କାର ଅଧିକାରୀ । କେତେ

କେତେ ବିରାଟ ପ୍ରାସାଦର ମଧ୍ୟ ହୁଅନ୍ତି ମାଲିକ । ରାଜନୀତିକୁ ଆଶ୍ରୟ କରି ସ୍ୱାଧୀନତା ପରବର୍ତ୍ତୀ କାଳରେ ବହୁ ରାଜନେତା ଯେ ଖୁବ୍ ବଡ଼ଲୋକ ହୋଇଯାଇଛନ୍ତି, ରାଜଧାନୀ ଓ ଅନ୍ୟାନ୍ୟ ନଗରମାନଙ୍କରେ ରାଜା ପରି ଜୀବନ ବିତଉଛନ୍ତି ତାହା ମୁଁ ଉପଲବ୍ଧି କରିଛି । ଆଉ ଗୋଟିଏ କଥା ମୁଁ ଲକ୍ଷ୍ୟ କଲି ରାଜନୀତିରେ କେହି କାହାର ମିତ୍ର ନୁହେଁ କି ଶତ୍ରୁ ମଧ୍ୟ ନୁହେଁ । ଆଜି ଯିଏ ମିତ୍ର ଥାଆନ୍ତି କାଲି ସିଏ ଶତ୍ରୁ ହୋଇଯାଆନ୍ତି । କାରଣ ରାଜନୀତିରେ କେବଳ କ୍ଷମତା ଲାଭ ମୁଖ୍ୟ କଥା । କ୍ଷମତାକୁ ଆସିଗଲେ ତେଣିକି ରାଜା ବନିଯାଆନ୍ତି । ଯିଏ ଯେଉଁ ଦଳର ହୋଇଥାନ୍ତୁ ନା କାହିଁକି କ୍ଷମତାକୁ ଆସିଗଲେ ସେହି ଗୋଟିଏ କଥା– ଅର୍ଥ ଓ ପ୍ରତିପତ୍ତି । କେତେଜଣ ସମାଜବାଦୀ, ସାମ୍ୟବାଦୀ ନେତାଙ୍କୁ ଦେଖିଛି, ସେମାନଙ୍କର ଘରେ ଗୋଟିଏ ରୂପ, ବାହାରେ ଆଉ ଗୋଟିଏ ରୂପ । ରାଜନୀତି ଦଳର କର୍ମୀମାନେ, ଯେଉଁ ଦଳର ହୋଇଥାନ୍ତୁ ପଛେ, ସଭିଏଁ ସମାନ । ସେମାନଙ୍କର ଦରକାର ଟଙ୍କା ଓ ବିଳାସ । ଏହି କର୍ମୀମାନେ ନୂଆ କରି ପ୍ରଥମ ନିର୍ବାଚନ ବେଳେ ଆବିର୍ଭୂତ ହେଲେ । ଡକ୍ଟର ମହତାବଙ୍କ ସମୟରେ ହିଁ ଏହି କର୍ମୀମାନଙ୍କର ହେଲା ନବଜନ୍ମ । କ୍ରମେ ଏମାନଙ୍କର ପ୍ରଭାବ ବଢ଼ିଲା । ଏମାନଙ୍କର ଉତ୍ପାତ ଜଣାଗଲା ଜାନକୀବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ । ଏବେ ନବୀନବାବୁଙ୍କ ସମୟରେ ମଧ୍ୟ କର୍ମୀମାନଙ୍କର ରେରେକାର ରବ । ଏ ଯେଉଁ କର୍ମୀ କେବଳ ଶାସକ ଦଳର ନୁହନ୍ତି; ସବୁ ଦଳର ମଧ୍ୟ । ଯେତେବେଳେ କୌଣସି ଦଳ କ୍ଷମତାକୁ ଆସିଯାଏ ସେତେବେଳେ ସେହି ଦଳର କର୍ମୀମାନଙ୍କର ପ୍ରଭାବ ବଢ଼ିଯାଏ । ଏମାନେ ବିଧାୟକ ସାଂସଦ ଓ ମନ୍ତ୍ରୀଙ୍କ ଚାରିପଟେ ରାଣୀ ମହୁମାଛିକୁ ଅନ୍ୟ ମହୁମାଛିମାନେ ଘେରି ରହିଲା ପରି ରହିଥାନ୍ତି । ନେତାମାନଙ୍କ ଅନୁକଂପାରୁ ଏମାନେ ମଧ୍ୟ ନାନା କମିଟି, ଯୋଜନାରେ ରହନ୍ତି । ଏମାନଙ୍କର ପ୍ରଭାବ ଥାନା ଫାଣ୍ଡିଠୁ ଆରମ୍ଭ କରି ସର୍ବତ୍ର ପରିବ୍ୟାପ୍ତ । ଏମାନେ ଯାହା ଅପକର୍ମ କଲେ ମଧ୍ୟ ଚାରିଖୁଣ ମାଫ୍ । ଏପରି ରାଜନେତାଙ୍କ ବାହୁଛାୟା ତଳେ ରହି କେତେକ ବ୍ୟକ୍ତି ନାନା ଅପକର୍ମ କରନ୍ତି । କେହି ପ୍ରତିବାଦ କରିପାରନ୍ତି ନାହିଁ । ଗୋଟିଏ କଥା ମୁଁ ଲକ୍ଷ୍ୟ କରେ ଯେ ଗଣତନ୍ତ୍ରରେ ନେତାମାନଙ୍କ ମର୍ଜିରେ ପୋଲିସ ଓ ପ୍ରଶାସନ ପରିଚାଳିତ । ସେମାନଙ୍କର ଯେପରି କୌଣସି ସ୍ୱାତନ୍ତ୍ର୍ୟ ନାହିଁ, ସ୍ୱତନ୍ତ୍ର ବିଚାର ମଧ୍ୟ ନାହିଁ । ପୋଲିସର ଯେମିତି ଗୋଟିଏ କାମ ହୋଇଯାଇଛି ନେତା ଓ ମନ୍ତ୍ରୀଙ୍କୁ ଜଗିବା । ମୋ ମନକୁ ବାରମ୍ବାର ପ୍ରଶ୍ନ ଆସେ ନିର୍ବାଚିତ ପ୍ରତିନିଧି, ସିଏ ମନ୍ତ୍ରୀ ହୁଅନ୍ତୁ ବା ମୁଖ୍ୟମନ୍ତ୍ରୀ ହୁଅନ୍ତୁ, ବିଧାୟକ ହୁଅନ୍ତୁ ବା ସାଂସଦ ହୁଅନ୍ତୁ, ପ୍ରଥମତଃ ସେମାନେ ଲୋକଙ୍କ ପାଇଁ । ଯଦି ସେମାନେ ସେବକ ତେବେ ଲୋକଙ୍କୁ ଏତେ ଭୟ କାହିଁକି ? ସଚ୍ଚା ଦେଶସେବୀ କ'ଣ ଲୋକଙ୍କୁ ଭୟ କରେ ନା ମରଣକୁ ଭୟ କରେ ? ତେବେ ଆଜିକାଲି ଏତେ ଭୟ କାହିଁକି ? ମୁଁ

ଦେଖିଛି ଜଣେ ବିଧାୟକଙ୍କୁ, ସିଏ ପ୍ରଭାତ ରଂଜନ ବିଶ୍ୱାଳ । ଆମ ଗାଁ ନିକଟବର୍ତ୍ତୀ ଗାଁରେ ତାଙ୍କର ଘର । ପିଲାଦିନରୁ ସେ ଲୋକପ୍ରେମୀ । ସମାଜସେବା ତାଙ୍କର ମୁଖ୍ୟ । କଲେଜ ଛାତ୍ର ୟୁନିୟନରେ ସେ ନେତୃତ୍ୱ ନେଇଛି । କଟକରେ ରହି ନିଜେ ବ୍ୟବସାୟ କରି ଲୋକମାନଙ୍କୁ ସାହାଯ୍ୟ କରିଛି । କେଉଁ ଗାଁରେ ନିଜସ୍ୱ ଅର୍ଥରେ ନଳକୂପ ବସାଇଛନ୍ତି, କେଉଁ ରୋଗୀକୁ ଡାକ୍ତରଖାନା ନେଇ ଚିକିତ୍ସା କରାଇଛନ୍ତି, କାହାର ଶବ ଦାହ କରାଇଛନ୍ତି । ସଂକୀର୍ଣ୍ଣତା ସ୍ପର୍ଶ କରି ନାହିଁ ତାଙ୍କୁ । ସେ ନିର୍ଦ୍ଦିଷ୍ଟ ଦଳରେ ଥିଲେ ମଧ ସମସ୍ତ ଲୋକଙ୍କୁ ସାହାଯ୍ୟ କରନ୍ତି । ତାଙ୍କୁ କ୍ଷମତା–ତୃଷ୍ଣା ଓ ଅର୍ଥ–ତୃଷ୍ଣା ଗ୍ରାସ କରିପାରି ନାହିଁ । ମୁଁ ତାଙ୍କୁ ଭଲ ପାଏ ଓ ସେ ମୋତେ ମଉସା ମଉସା କହି ମଥାନତ କରି ପ୍ରଣାମ ହୁଏ ।

ମୁଁ ଲକ୍ଷ୍ୟ କରୁଛି ଯେ ରାଜନୀତି ନାଁରେ ଯାବତୀୟ ଭେଦନୀତି ସୃଷ୍ଟି ହୋଇଯାଇଛି । ଲୋକଙ୍କୁ ଭୁଲାଇବାର ନାନା ଅପକୌଶଳ ଅବଲମ୍ବନ କରାଯାଉଛି । ଆମ ଗଣତନ୍ତ୍ର ଏପରି ହୋଇଛି ଯେ ଏଠି ରାଜନୀତିକ ଦଳ ଛତୁ ଫୁଟିଲା ପରି ଫୁଟି ଉଠୁଛି । ଆମେ ପୁଣି କାହାର କେତେବେଳେ ଗୋଡ଼ାଣିଆ ହୋଇଯାଉଛୁ କହିବା ମୁସ୍କିଲ । ସଦ୍ୟ ସ୍ୱାଧୀନତା ଲାଭ ପରେପରେ ଆମେ ଗୋଡ଼ାଣିଆ ହେଲୁ ରୁଷିଆର । ପରେପରେ କମ୍ୟୁନିଷ୍ଟ ଚୀନର । ଏବେ ଆମେ ଆମେରିକାର । ମନେହେଉଛି ଆମର ଯେମିତି କିଛି ଜ୍ଞାନ ଗରିମା ନାହିଁ, ସବୁ ବିଦେଶୀଙ୍କର ଅଛି । ହିନ୍ଦ୍ ଚୀନ ଭାଇ ଭାଇ ମୋହ ଭାଙ୍ଗିଗଲା ଅଚିରେ । କିନ୍ତୁ ସେଇଠୁ ଆମଦାନୀ ହେଲା ନାରକୀୟ ହତ୍ୟା–ରାଜନୀତି, ଯାହାକୁ ଆମେ କହୁ ନକ୍ସଲବାଦ । ୧୯୬୭ ମସିହାରୁ ଭାରତବର୍ଷ ଏହି ଦୁର୍ଦ୍ଦଶା ଭୋଗୁଛି । ଆମ ଓଡ଼ିଶା ମଧ ସେଥିରୁ ବାଦ୍ ଯାଇ ନାହିଁ । ଗୋଟାଏ ବିରାଟ ଦେଶରେ ଏତେ ସେନାସାମନ୍ତ, ଏତେ ପୋଲିସ ଥାଉଁ ଥାଉଁ ଏମାନେ ରକ୍ତବୀର୍ଯ୍ୟ ପରି ବଢୁଛନ୍ତି କିପରି ? ଇଏ ହେଉଛି ଆମ ରାଜନୀତିର ଦୁର୍ବଳତା । କେତେ ରାଜନେତା ବା ରାଜନେତ୍ରୀ ଅହଙ୍କାର ପ୍ରକାଶ କରନ୍ତି ଯେ ସେମାନଙ୍କର ଜନ୍ମ ରାଜନୀତିରେ, ମୃତ୍ୟୁ ମଧ ରାଜନୀତିରେ । ଥରେ ଜଣେ ରାଜନେତ୍ରୀ ଏଇ କଥା ମୋତେ କହିଲେ । ଆଉ ଥରେ ଜଣେ ରାଜନେତାଙ୍କୁ ଦେଖିଲି ଜଣେ ସ୍କୁଲବିଭାଗର ଜିଲ୍ଲା ଇନ୍‌ସପେକ୍ଟରଙ୍କୁ ଲୋକଙ୍କ ଉପସ୍ଥିତିରେ କଦର୍ଯ୍ୟ ଭାଷାରେ ଗାଳି ଦେବା କଥା । ମୁଁ ଯେତେବେଳେ ସେହି ନେତାଙ୍କୁ କହିଲି ଏପରି ବ୍ୟବହାର ଦେଖାନ୍ତୁ ନାହିଁ, ନୀରବ ହୋଇଯାଆନ୍ତୁ ସେ ମୋତେ କହିଲେ– 'ଆପଣ ରାଜନୀତି ଜାଣନ୍ତି ନାହିଁ, ଏଥିରେ ମୁଣ୍ଡ ଖେଳାନ୍ତୁ ନାହିଁ ।' ଏଇମିତି ଅନେକ କଥା ।

କେତେ କେତେ ବାଗରେ ରାଜନୀତି କାୟାବିସ୍ତାର କରିଯାଇଛି । କେତେବେଳେ ସଂରକ୍ଷଣ ନୀତି ଓ କେତେବେଳେ ଦଳିତ ନୀତି, କେତେବେଳେ ସଂଖ୍ୟାଲଘୁ ନୀତି ତ କେତେବେଳେ ମାଗଣାରେ ଚାଉଳ, ଛତା, ସାଇକେଲ ଘର ବଣ୍ଟା ନୀତି, କେତେବେଳେ

ଭାଷାକୁ ନେଇ ତ ଅନ୍ୟ କେତେବେଳେ ଧର୍ମକୁ ନେଇ ରାଜନୀତି ଚାଲିଛି । ଏସବୁ ସେଇ ଭୋଟ ପାଇବାର ଗୋଟିଏ ଗୋଟିଏ ଚମତ୍କାର କୌଶଳ । ଏହା ଯେ ମହାଜାତି ଭିତରେ ଫାଟ ସୃଷ୍ଟି କରିଦେଉଛି ଆମେ ତାହା ବୁଝୁନା । ଆଜିର ରାଜନୀତି ବିଦେଶୀ କଂପାନୀମାନଙ୍କୁ ଆଣି ବିପୁଳ ସଂପତ୍ତି ଦେଇ ଶିଳ୍ପ ପ୍ରତିଷ୍ଠା କରାଉଛନ୍ତି । ଏବେ ତ ଶିଳ୍ପମୟ ହୋଇଗଲାଣି ଓଡ଼ିଶା । କେତେ ପରିମାଣ ଭୂମି ବିଦେଶୀଙ୍କ ହାତକୁ ଆମେ ଟେକି ଦେଲୁଣି ତାହାର ହିସାବ ରଖିଛୁ କି ? ଚାଷଜମି ଗଲା, ଜଙ୍ଗଲ ଗଲା, ପାନବରଜ ଗଲା, ଲୋକଙ୍କ ଜୀବିକା ଗଲା ତଥାପି ଆମେ ବାହାବା ନେଉଛୁ । ଓଡ଼ିଶାର ଆର୍ଥିକ ପ୍ରଗତିର ପରିସଂଖ୍ୟାନ ଦେଉଛୁ । ଶିଳ୍ପାୟିତ ସଂସ୍କୃତି ଆମକୁ କେଉଁ ଆଡ଼କୁ ଟାଣି ନେଉଛି ଆମେ ବୁଝିପାରୁଛୁ କି ? କେତେ କାଳ ଖଣିଜ ପଦାର୍ଥ ରହିବ ? ପୃଥିବୀର ଅବସ୍ଥା କ'ଣ ହେବ ? ଏକଥା କ'ଣ ରାଜନେତାମାନେ ହେଜିପାରୁଛନ୍ତି କି ?

ଓଡ଼ିଶାର ରାଜନୀତି ପୁଣି ମାର୍ ମାର୍ ଭଣ୍ଡାରିଆକୁ ମାର୍ ନ୍ୟାୟରେ ଚାଲିଛି । ଶିକ୍ଷକମାନେ ହକ୍ ଦରମା ପାଇଁ ଆନ୍ଦୋଳନ କଲେ ସେମାନଙ୍କୁ ପୋଲିସ ଲଗାଇ ନିର୍ମମ ମାଡ଼ ଦିଆଯାଉଛି । ଏହା କେଉଁ ରାଜନୀତି ? କିଏ କହିଥିଲା ଏତେ କଲେଜ ସ୍କୁଲ ଖୋଲିବା ପାଇଁ ? ସବୁ ମୂଳରେ ତ ଜଣେ ଜଣେ ରାଜନେତା ଅଛନ୍ତି । ସବୁକୁ ତ ମଞ୍ଜୁରି ମିଳିଛି । ତେବେ ଶିକ୍ଷକମାନେ ହକ୍ ପାଉଣା ପାଇଁ ଦାବି କଲେ ଅସୁବିଧା କେଉଁଠି ? ଅଥଚ ଘରୋଇ ଭାବରେ କେତେ କେତେ ଇଂଜିନିୟରିଂ କଲେଜ, ବିଜ୍ଞାନ କଲେଜ, ଡାକ୍ତରି କଲେଜ ତିଆରି ହୋଇଯାଇଛି । କ'ଣ ଏହାର ଉଦ୍ଦେଶ୍ୟ ? ଭବିଷ୍ୟତରେ ସବୁ କ'ଣ ଘରୋଇକରଣ ହୋଇଯିବ ? ଏହିପରି ଅନେକ କଥା ମୋ ମନ ଭିତରକୁ ଆସେ ଓ ମୁଁ ଆନ୍ଦୋଳିତ ହୁଏ । ମୋ ଚଉସ୍ତରୀ ବର୍ଷ ଜୀବନ କାଳ ଭିତରେ ମୁଁ ଦେଖିଆସିଲି ଆମ ଦେଶର ତଥା ଆମ ରାଜ୍ୟର ରାଜନୀତିକୁ । ମୋର ମନେହେଉଛି ଏହି ଭୋଟ-ରାଜନୀତି ଯେମିତି କ୍ରମଶଃ ଆମକୁ ଘୋର ଅନ୍ଧକାର ଭିତରକୁ ନେଇଯାଉଛି । ସତରେ ଗଣତନ୍ତ୍ର କ'ଣ ଆମକୁ ରସାତଳକୁ ନେଇଯିବ କି ? ଆମ ଲୋକେ ଏ ପର୍ଯ୍ୟନ୍ତ ବୁଝିଲେ ନାହିଁ ଗଣତନ୍ତ୍ର କ'ଣ, ଭୋଟ କ'ଣ ? ଲୋକେ କେବଳ ବୁଝୁଛନ୍ତି କେଉଁ ସରକାର ସେମାନଙ୍କୁ କେତେ ଦେଲା, କ'ଣ ଦେଲା । ଏହି ଦେ' ନେ' ସଂପର୍କରେ ଚାଲିଛି ଗାଣତାନ୍ତ୍ରିକ ଶାସନର ବିଧି ବ୍ୟବସ୍ଥା । ଆମେ ଗାନ୍ଧିଜୀଙ୍କୁ ଭୁଲିଗଲୁଣି । ତାଙ୍କର ପରିକଳ୍ପିତ ସ୍ୱାଧୀନ ଭାରତର ଗାଣତାନ୍ତ୍ରିକ ସମ୍ବିଧାନକୁ ଆମେ ସଂପୂର୍ଣ୍ଣ ଭୁଲିଯାଇ ରୁଷିଆ, ଆମେରିକା, ଇଂଲଣ୍ଡର ସମ୍ବିଧାନ ଭିତ୍ତିରେ ସମ୍ବିଧାନ କଲୁ । ସମ୍ବିଧାନକୁ ମଧ୍ୟ ବାରମ୍ବାର ସଂଶୋଧନ କଲୁ ଦଳୀୟ ସ୍ୱାର୍ଥ ଦୃଷ୍ଟିରୁ । ଆଜି ସବୁ କଥାରେ ରାଜନୀତି । ରାଜନୀତି ଯେପରି ହୋଇଯାଇଛି ଜୀବନର ବେଦ । କ'ଣ ହେବ ଭବିଷ୍ୟତ ? କିଏ କହିବ ?

ବୁଦ୍ଧିଜୀବିଏ ନୀରବ । ନିଜ ନିଜର ସ୍ୱାର୍ଥ ବୃତ୍ତରେ ସେମାନେ ଆବଦ୍ଧ । ହଲିଲା ପାଣିରେ ଗୋଡ଼ ବୁଡ଼ାଇବାକୁ ସେମାନେ ନାରାଜ । ସେମାନେ ସୁଖଭୋଗୀ, ସୁଖାନ୍ୱେଷୀ । ଏପରି ଅବସ୍ଥାରେ ରାଜନୀତି ଯାହା ହେବାର କଥା ହେଉଛି । ଚାଲିଛି ହତ୍ୟା, ଗଣହତ୍ୟା, ଧର୍ଷଣ, ଅରାଜକତା । ଆଇନ ଅଛି; ମାତ୍ର ତାହାର ଡୋରି ରହିଛି ରାଜନେତାଙ୍କ ହାତରେ । ଏସବୁ ଭାବି ମୁଁ ଅନେକ ସମୟରେ ବିବ୍ରତ ହୁଏ, କ୍ଷୁବ୍‌ଧ ହୁଏ । ଏସବୁ ସତ୍ତ୍ୱେ ରାଜନୀତିରେ ଯେ ଭଲ ଲୋକ ନାହାନ୍ତି ନୁହେଁ; ଅଛନ୍ତି ମାତ୍ର ସେମାନଙ୍କ ସଂଖ୍ୟା ଖୁବ୍ କମ୍ । ସେମାନେ କିନ୍ତୁ କ୍ଷମତା ରାଜନୀତିରେ ଅବହେଳିତ ବା ଉପେକ୍ଷିତ । ମୋର ଧାରଣା ହୋଇଯାଇଛି ରାଜନୀତିର ଇଚ୍ଛାରେ ଏ ଦେଶଟା ଚାଲିଛି । ରାଜନୀତି ନାହିଁ ତ କିଛି ନାହିଁ । ସବୁ ହୋଇଯାଇଛି ରାଜନୀତିକରଣ ।

## ମୋ ପରିବାର ଓ ମୋ ବନ୍ଧୁବାନ୍ଧବ

ମୋ ପରିବାରର କେନ୍ଦ୍ରବିନ୍ଦୁ ମୋ ସ୍ତ୍ରୀ । ୧୯୬୦ ମସିହାରେ ବିବାହ ଦିନରୁ ସେ ଆମ ଘରର ଦାୟିତ୍ୱ ନିଜ ମୁଣ୍ଡ ଉପରକୁ ନେଇଯାଇଛି । ମୋ ଭାଇମାନଙ୍କୁ ଓ ସେମାନଙ୍କ ସ୍ତ୍ରୀ ଓ ପିଲାମାନଙ୍କୁ ସ୍ନେହ ଦେଇଛି । ମୋ ବୋଉର ସେବା କରିଛି । ତାକୁ ଦେଖି ମୋ ବୋଉ ଶାନ୍ତିରେ ଆଖି ବୁଜିଛି । ମୋ ଗାଁରେ ସେ ଦଶ ବର୍ଷ କଟେଇଲା ପରେ ସେ ମୋ ସହିତ ୧୯୭୦ ମସିହାରୁ ରହିଆସିଛି ଦୀର୍ଘକାଳ ଧରି । ତା'ର କୌଣସି ବିଷୟରେ ଲାଳସା ନ ଥାଏ । ସେ ଭାରି ଈଶ୍ୱର ବିଶ୍ୱାସିନୀ । ଆମ ଘରକୁ ଯେଉଁ ବନ୍ଧୁ ଓ ଅତିଥିମାନେ ଆସନ୍ତି ସମସ୍ତଙ୍କର ସେ ତତ୍ତ୍ୱ ନିଏ । ମୋ ଉପରକୁ କୌଣସି ଦାୟିତ୍ୱ ଦିଏ ନାହିଁ । ମୁଁ ମୋର ପଢ଼ାପଢ଼ି ଓ ଲେଖାଲେଖିରେ ବ୍ୟସ୍ତ ରହେ । ମୁଁ ଭାବେ ସାହିତ୍ୟ ମୋ ଜୀବନ । ସାହିତ୍ୟ ଜଗତରେ କ୍ଷୁଦ୍ରତାର ସ୍ଥାନ ନାହିଁ । ତାହା ଏକ ଉଦାର ମାନବିକ ଜଗତ । ସେଠି ବଡ଼ସାନ ଭେଦ ନାହିଁ । ତେଣୁ ମୁଁ ଅକ୍ଷରବ୍ରହ୍ମ ଭିତରେ ନିମଜ୍ଜିତ ରହେ ।

ମୋର ବଡ଼ଝିଅ ମଞ୍ଜୁଶ୍ରୀ । ସେ ମୋର ଝିଅ ନୁହେଁ; ମୋ ବଡ଼ପୁଅ ପରି । ଇଂରାଜୀ ସାହିତ୍ୟରେ ସେ ଏମ୍.ଏ. । ମୁଁ ତାହାର ବାହାଘର କରିଦେଲି ଯାଜପୁର ଜିଲ୍ଲା ଅନ୍ତର୍ଗତ ଧର୍ମଶାଳା ନିକଟବର୍ତ୍ତୀ କୋଟପୁର ଗ୍ରାମର ଲୋକନାଥ ସାମଲଙ୍କ ଏକମାତ୍ର ପୁତ୍ର ବିଜୟଙ୍କ ସହିତ । ବିଜୟ ମେଧାବୀ ଛାତ୍ର । ଶାନ୍ତ, ଶିଷ୍ଟ ଓ ଭଦ୍ର । ସେ ଇଂଜିନିୟରିଂ ପାସ୍ କରି ଅପରକୋଲାବରେ ଜଳସେଚନ ବିଭାଗର ଇଂଜିନିୟର ହେଲେ । ସେହି ସମୟରେ ତାଙ୍କ ସହିତ ମୋ ଝିଅର ବାହାଘର ହେଲା । ମୁଁ ତାଙ୍କୁ ଭଲ ପାଇଲି ମୋ ବଡ଼ପୁଅ ଭାବରେ । ସେ ମୋ ପାଖରେ କେବେ ଛିଡ଼ା ହୋଇ କଥା କହେ ନାହିଁ । ତାଙ୍କୁ

ମୁଁ ତତ୍‌କାଳୀନ ମନ୍ତ୍ରୀ ନଳିନୀକାନ୍ତ ମହାନ୍ତି ଓ ଜଳସେଚନ ବିଭାଗର ମନ୍ତ୍ରୀ ବିଜୟ ମହାପାତ୍ରଙ୍କୁ କହି ବଦଳି କରାଇ ଆଣିଥିଲି । ସେ ନଳିନୀବାବୁଙ୍କ ନିର୍ବାଚନମଣ୍ଡଳୀ ରାଜନଗରରେ ଇଂଜିନିୟର ଭାବରେ କାର୍ଯ୍ୟ କଲେ । ନଳିନୀବାବୁ ତାଙ୍କୁ ବହୁତ ଶ୍ରଦ୍ଧା କଲେ । ମୋ ଜ୍ୱାଇଁ ବୋଲି ମୁଁ କହୁ ନାହିଁ, ପ୍ରକୃତରେ ସେ ଅତ୍ୟନ୍ତ ସଚ୍ଚୋଟ, ସତ୍ୟନିଷ୍ଠ ଓ କର୍ମଦକ୍ଷ । ସେଠୁ ବଦଳି ହୋଇ ସେ ନିଆଳି ଗଲେ । ସେଠି ମଧ୍ୟ ମନ୍ତ୍ରୀ ପଞ୍ଚାନନବାବୁ ତାଙ୍କୁ ଶ୍ରଦ୍ଧା କଲେ । ସେ ମଧ୍ୟ ରୁର୍‌କିକୁ ଯାଇ ଏମ୍.ଟେକ୍. କଲେ । ଚାରୋଟି ସ୍ୱର୍ଣ୍ଣପଦକ ପାଇଲେ । ପରେ ସେ ଏରସମାରେ ଏସ୍.ଡି.ଓ. ହେଲେ । ବିଶିଷ୍ଟ ରାଜନେତା ଦାମବାବୁଙ୍କର ଶ୍ରଦ୍ଧାଭାଜନ ହେଲେ । ଏବେ ସେ ଢେଙ୍କାନାଳରେ ଅଛନ୍ତି । ଭାରି ସ୍ନେହୀ ମଣିଷଟିଏ । ଦୁଇଟି ପୁଅ ସିକୁନ (ସିଦ୍ଧାର୍ଥ ସତ୍ୟବ୍ରତ), ମିକୁନ (ସୁମନ ସତ୍ୟବ୍ରତ) । ବଡ଼ନାତି ବୁର୍ଲାରେ ଇଂଜିନିୟରିଂ ପଢୁଛି । ସାନନାତି ଏବର୍ଷ ଷ୍ଟୁଆର୍ଟ ସ୍କୁଲରୁ ମାଟ୍ରିକ ପାସ୍ କରିଛି ଖୁବ୍ ଭଲ ନମ୍ବର ରଖି ଡି.ଏ.ଭି.ରେ ଆଇ.ଏସ୍‌ସି. ପଢୁଛି । ଏହି ଦୁଇ ନାତି ମୋ ପ୍ରତି ଓ ମୋର ସ୍ତ୍ରୀ ପ୍ରତି ଭାରି ଶ୍ରଦ୍ଧାଶୀଳ । ତାଙ୍କ ଘରେ ରହିଛନ୍ତି କୋଡ଼ିଏ ବର୍ଷ ଧରି । ଜଣେ ବ୍ୟକ୍ତି ତାଙ୍କ ଅଫିସର ପିଅନ– ନାଁ କେଶବ ଚନ୍ଦ୍ର ବଳ । ସିଏ ଏତେ ଭଦ୍ର ଯେ ତାକୁ ମୋ ନାତିମାନେ ଖୁବ୍ ସମ୍ମାନ ଦିଅନ୍ତି, ମୋ ଜ୍ୱାଇଁ ଓ ଝିଅ ତାକୁ ଭଲ ପାଆନ୍ତି । ସିଏ ଯେମିତି ହୋଇଯାଇଛି ପରିବାରର ଜଣେ ସଦସ୍ୟ । ତା'ର ମଣିଷପଣିଆ ଅନ୍ୟ ସମସ୍ତଙ୍କର ଅନୁସରଣୀୟ । ସୁକିନ୍ଦା ପାଖରେ ଘର । ଜଳସେଚନ ବିଭାଗର ପିଅନ । ସିଏ ଯେମିତି ତାଙ୍କର ଘରେ ଜଣେ ସଦସ୍ୟ ପାଲଟି ଯାଇଛନ୍ତି । ଘରର ସବୁ କଥା ସେ ବୁଝନ୍ତି । ଘର ତିଆରି ମଧ୍ୟ ସେ କରିଛନ୍ତି । ଭାରି ସ୍ନେହୀ ମଣିଷ । ସିଏ ସମସ୍ତଙ୍କ ଉପରେ ତା'ର ମୁରବିତ୍ୱ ଜାହିର କରେ । ସମସ୍ତେ ତାକୁ ମାନନ୍ତି । ଆମେ ସମସ୍ତେ ତାଙ୍କ ଘରକୁ ଯାଇଛୁ । ତା'ର ମଣିଷପଣିଆକୁ ଉପଲବ୍ଧି କରିଛୁ । ଏବେ ସେ ଅବସର ନେଇସାରିଲେଣି । ଏଇଠି ଅଛନ୍ତି । ଘରକୁ ଯାଉଛନ୍ତି । ପୁଣି ଆସୁଛନ୍ତି । ମୋ ବଡ଼ଝିଅ ଇଂରାଜୀରେ ଏମ୍.ଏ. ପାସ୍ କରି ମଧ୍ୟ ଚାକିରି କଲା ନାହିଁ । ଶାଶୂ ଶ୍ୱଶୁର ବୁଢ଼ାବୁଢ଼ୀ । ସେମାନଙ୍କର ସେ ସେବା କଲା । ଏପରି ସେବା ମୁଁ କ୍ୱଚିତ୍ ଦେଖିଛି । ତାଙ୍କ ଘରେ ଥରେ ରାତିରେ ଚୋରି ହେଲା । ଲୋକେ କେହି ଆସିଲେ ନାହିଁ । ମୁଁ ଝିଅର ଫୋନ୍ ପାଇ ସେଇ ରାତିରେ ଗଲି । ସେଦିନ ରାତିରେ ପୋଲିସ ବିଭାଗର ଆଇ.ଜି. ଡକ୍ଟର ବନବିହାରୀ ପଣ୍ଡା ଯେପରି ସାହାଯ୍ୟ କରିଛନ୍ତି ତାହା ମୋତେ ଅଭିଭୂତ କରିଦେଇଛି । ଯାଜପୁର ଏସ୍.ପି. ସମେତ ବହୁ ପୋଲିସ ଅଧିକାରୀ ପହଞ୍ଚି ମୋ ଝିଅର ଚତୁରତାକୁ ପ୍ରଶଂସା କଲେ । ପୋଲିସ କୁକୁର ଗଲା ମାତ୍ର ଚୋର ଧରାପଡ଼ିଲା ନାହିଁ ।

ମୋ ମଝିଆଝିଅ ଜୟଶ୍ରୀ ସାମଲ । ସେ ଓଡ଼ିଆରେ ଏମ୍.ଏ. । ସେ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲା । ସେ ପଢୁଥିବା ସମୟରେ ଛତିଆବଟର ମହାପୁରୁଷ ତା' ସହିତ ତାଙ୍କର ଗୋଟିଏ ଅନୁଗତ ଯୁବକକୁ ବିବାହ କରାଇବାକୁ ସ୍ଥିର କଲେ । ସେତେବେଳେ ମୋ ବଡ଼ଝିଅର ବାହାଘର ସରିଥାଏ । ମୁଁ ଅସୁବିଧାରେ ଥାଏ । ମୋ ଝିଅ ବି ତାଙ୍କ କଥାରେ ରାଜି ହୋଇଗଲା । ମୁଁ ବାଧ୍ୟ ହୋଇ ତାହାର ବାହାଘର କରିଦେଲି । ଯାଜପୁର ଜିଲ୍ଲାର ବ୍ରହ୍ମପୁର ଗ୍ରାମର ଗୋପାଳଚନ୍ଦ୍ର ରାଉତଙ୍କ ସହିତ । ସେତେବେଳେ ତାଙ୍କର ବହୁ ଗାଡ଼ିଘୋଡ଼ା ଥିଲା । ମାତ୍ର ସେସବୁ ଚାଲିଗଲା । ଝିଅଟି ଅସହାୟା ହୋଇପଡ଼ିଲା । କଟକରେ ଭଡ଼ାଘରେ ରହିଲେ । ଦୁଇଟି ପୁଅ ଓ ଗୋଟିଏ ଝିଅ । ମୋ ସ୍ତ୍ରୀ ତାଙ୍କ ବସାକୁ ଯାଏ । କ'ଣ ସାମୟିକ ସାହାଯ୍ୟ କରେ । ସେ ଏବେ ପୋତାପୋଖରୀ ସରସ୍ୱତୀ ଶିଶୁ ଶିକ୍ଷା ମନ୍ଦିରରେ ଶିକ୍ଷୟିତ୍ରୀ ଭାବରେ କାର୍ଯ୍ୟ କରି କୌଣସିମତେ ତା'ର ପରିବାର ଚଳାଉଅଛି । ଯେଉଁ ମହାପୁରୁଷ ତାକୁ ପ୍ରଭାବିତ କରି ବାହା କରାଇ ଦେଇଥିଲେ ଓ ମୋତେ କହିଥିଲେ ଯେ ସେ ପ୍ରତିଶ୍ରୁତି ଦେଉଛନ୍ତି ସେମାନଙ୍କର କୌଣସି ଅସୁବିଧା ହେବ ନାହିଁ ଓ ହେଲେ ସେ ଦାୟୀ ରହିବେ- ସେ ଆଉ ଧରାଛୁଆଁ ଦେଲେ ନାହିଁ । ସେମାନେ କିନ୍ତୁ ତାଙ୍କ ପାଖକୁ ଯାଆନ୍ତି । ଏଣେ ବହୁ କଷ୍ଟରେ ଚଳନ୍ତି ।

ମୋର ସବା ସାନଝିଅ ଲିପି (ଇତିଶ୍ରୀ) । ସେ ଯେତେବେଳେ ଜନ୍ମ ନେଲା ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ସେତେବେଳେ କଟକର ଏସ୍.ପି. ଅନାଦି ସାହୁ ଡାକ୍ତର ସୁଜାତା ମହାନ୍ତିଙ୍କୁ ଫୋନ କରି କହିଲେ ମୋ ସ୍ତ୍ରୀର ଅପରେଶନ କରାଇଦେବାକୁ । ମୋର ତାଙ୍କ ସହିତ ନିବିଡ଼ ବନ୍ଧୁତା ଗଢ଼ି ଉଠିଥାଏ । ମୁଁ ତାଙ୍କ କଥା ନମାନି ଅଷ୍ଟମ ଗର୍ଭର ସନ୍ତାନର ଆଗମନ ପାଇଁ ଅପେକ୍ଷା କରିବାକୁ କହିଲି । ସେ କିନ୍ତୁ ନଛୋଡ଼ବନ୍ଧା । ସେ କହିଲେ ଆଉ ଅଷ୍ଟମ ଗର୍ଭର କୃଷ୍ଣ ଦରକାର ନାହିଁ । ଏଇ ଝିଅ ଶେଷ ଓ ତା'ର ନାମ ଇତିଶ୍ରୀ । ଏଇ ମୋର ସାନଝିଅ । କେବଳ ବାପା ମାଆଙ୍କର ନୁହେଁ ତା' ଭାଇ ଭାଉଜ ଭଉଣୀମାନଙ୍କର ଅତି ସ୍ନେହଧନ୍ୟା । ସେ ସମାଜ ବିଜ୍ଞାନରେ ଏମ୍.ଏ. ପଢ଼ି ବାଣୀବିହାରରୁ କୃତିତ୍ୱ ସହକାରେ ପାସ୍ କଲା । ସେହି ସମୟରେ ମୁଁ ତା'ର ବାହାଘର କରିଦେଲି । ଜଗତ୍‌ସିଂହପୁର ଜିଲ୍ଲା ଅନ୍ତର୍ଗତ ଘୋଡ଼ାଂଶ ଗ୍ରାମର ସ୍ୱର୍ଗତ ନିତ୍ୟାନନ୍ଦ ରାଉତଙ୍କର ବଡ଼ପୁଅ ନିକୁଞ୍ଜ (ପିଲୁ) ସହିତ ତାହାର ବାହାଘର ହେଲା । ସେ ଟାଟା କଂପାନୀରେ ଇଂଜିନିୟର । ତିନି ଭାଇ । ସାନ ଦୁଇଭାଇଙ୍କ ମଧ୍ୟରୁ ଜଣେ ସଲିଳ (ସିଲୁ), ଏବେ ସେ ଗ୍ରାମ୍ୟବ୍ୟାଙ୍କର କର୍ମଚାରୀ । ଅନ୍ୟ ଭାଇଟି ନିର୍ମଳ (ନିଲୁ) ସେ ଭୁବନେଶ୍ୱରରେ ଏୟାରଟେଲ ବିଭାଗରେ କର୍ମରତ । ତିନିଭାଇଙ୍କୁ ସେମାନଙ୍କର ମାଆ କଟକରେ ରହି ପାଠ ପଢ଼ାଇ ମଣିଷ କରିଛନ୍ତି । ଏହିପରି ଏକ ପରିବାରରେ ମୋ ସାନଝିଅକୁ ବାହା

ଦେଲି । ମୋ ଭାଇଁ ନିକୁଞ୍ଜ ଲଣ୍ଡନ ଓ ସ୍ୱିଡେନରୁ ଫେରି ଏବେ ଭୁବନେଶ୍ୱରରେ ଅବସ୍ଥାପିତ । ମୋ ସାନଭାଇଁ ଭାରି ଭଦ୍ର ଓ ନମ୍ର । ତିନି ଭାଇଙ୍କ ମଧ୍ୟରେ ନିବିଡ଼ ସଂପର୍କ । ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ସେମାନେ ମନକୁ ମନ ମିଳାଇ ଭଲରେ ରୁହନ୍ତୁ ।

ମୋ ବଡ଼ପୁଅ ଅମିତାଭ (ଟୁକୁନା) । ମୋ ବଡ଼ଝିଅ ତଳେ ସେ । ତା'ର ନାମକରଣ କରିଥିଲେ ମୋ ସାଙ୍ଗ ଅଧ୍ୟାପକ ଆନନ୍ଦ କୁମାର ପଟ୍ଟନାୟକ । ମୋ ବଡ଼ଝିଅର ନାଁ ମଧ୍ୟ ସେ ଦେଇଥିଲେ । ସେ ଡିଗ୍ରୀ ଇଂଜିନିୟରିଂ ପାସ୍ କରି ହରିୟାନାର ଗୋଟିଏ କଂପାନୀରେ ଥିଲା ମାତ୍ର ସେଠିକାର ଆଞ୍ଚଳିକ ମନୋଭାବରେ ଚାକିରି ଛାଡ଼ି ସ୍ୱାଧୀନ ଭାବରେ ବିଦ୍ୟୁତ୍ ସଂପର୍କିତ କଂପାନୀଟିଏ କରି ତା' ସାଙ୍ଗ ଦୁଇଜଣଙ୍କ ସହିତ କାର୍ଯ୍ୟ କରୁଛି । ସେ ମୋର ଅତ୍ୟନ୍ତ ସ୍ନେହଧନ୍ୟ । ବାପା ଓ ବୋଉର କ'ଣ ଟିକେ ହୋଇଗଲେ ସେ ବ୍ୟସ୍ତ ହୋଇପଡ଼େ ଓ ଔଷଧପତ୍ର ଦିଏ । ସେ ମଧ୍ୟ ଆମର ସେବା କରେ । ଭାରି ପରିଶ୍ରମୀ ପିଲା । ମୁଁ ଯେଉଁ ଘର ଚାଉଳିଆଗଞ୍ଜରେ କରିଛି ତାହାକୁ ସେ ହାଇସ୍କୁଲରେ ପଢ଼ିଲାବେଳେ ତା' ବୋଉ ସହିତ ମିଶି ତିଆରି କରିଥିଲା । ପରବର୍ତ୍ତୀ ସମୟରେ ମୁଁ ଗାଁର ଜମି ଓ ଘର ବିକ୍ରୟ କରିଦେଇ ଯେଉଁ ଟଙ୍କା ଆଣିଲି ଓ ମୋ ଦରମା ଟଙ୍କା ତାକୁ ଦେଲି । ସେ ସେହି ଟଙ୍କାରେ ଉପରମହଲା ଘରଟି ତିଆରି କରିଦେଲା ଓ ମୋ ପାଇଁ ସବା ଉପରେ ଗୋଟିଏ ଲମ୍ବା ଘର କରିଦେଲା, ଯେଉଁଠି ମୋ ଲାଇବ୍ରେରୀ ରହିଛି ଓ ମୁଁ ସେଇଠି ମୋ ସ୍ତ୍ରୀ ସହିତ ରହେ । ସେ ବିବାହ କରିଛି ଚାରବାଟିଆ ମିଲିଟାରୀ ଅଫିସର ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ସୁରେନ୍ଦ୍ରନାଥ ସାମଲଙ୍କ ସାନଝିଅ ସୁଶ୍ରୀ (ପିଙ୍କି)କୁ । ମୋ ବୋହୂଟି ଭଲ । ଘର କାମ କରେ । ମାତ୍ର ତା'ର ଭାରି ଉଚ୍ଚମନ । କ'ଣ କିଛି କରିବାକୁ ତା'ର ଭାରି ଇଚ୍ଛା । ତେଣୁ ସେ ସଙ୍ଗୀତ ଶିକ୍ଷା କରୁଛି । ବଡ଼ପୁଅର ଦୁଇ ଝିଅ । ବଡ଼ ନାତୁଣୀ ପ୍ରଜ୍ଞା ପାରମିତା । ଏବେ ସେ ସେଣ୍ଟ ଜୋସେଫ୍ ଗାର୍ଲସ ସ୍କୁଲରେ ଷଷ୍ଠ ଶ୍ରେଣୀରେ ପଢୁଛି । ସାନ ନାତୁଣୀ ଅନନ୍ୟା (ଶ୍ରୁତି) ମୋର ଭାରି ଗେହ୍ଲା । ପ୍ରତିଦିନ ସକାଳୁ ଗାଧୋଇସାରି ଦୁହେଁ ଆସି ମୋତେ ଓ ମୋ ସ୍ତ୍ରୀକୁ ପ୍ରଣାମ କରନ୍ତି । ଉଭୟ ଧର୍ମପ୍ରାଣା । ସନ୍ଧ୍ୟା ଓ ସକାଳେ ପ୍ରାର୍ଥନା କରନ୍ତି, ଗାୟତ୍ରୀ ମନ୍ତ୍ର ବୋଲନ୍ତି । ମୋ ବଡ଼ନାତୁଣୀ ତା' ପିଲା ଅବସ୍ଥାରେ ମୋତେ ଗପ କହିବାକୁ କହେ । ତା'ର ଆଗ୍ରହ ପୁରାଣ ଗଳ୍ପ ଶୁଣିବାକୁ । ମୁଁ ତାକୁ ମହାଭାରତ, ରାମାୟଣ, ଭାଗବତ ଆଦି ପୁରାଣରୁ ପ୍ରାୟ ସମସ୍ତ ଗଳ୍ପ କହେ । ସେ ସବୁ ମନେରଖେ । ଥରେ ତାଙ୍କ ସ୍କୁଲକୁ ଟିଭିବାଲା ଆସି ଛାତ୍ରୀମାନଙ୍କୁ ପୁରାଣର ବିଭିନ୍ନ ପ୍ରଶ୍ନ ପଚାରିଲେ । ସେ ସବୁ ପ୍ରଶ୍ନର ଉତ୍ତର ଦେଇ ପୁରସ୍କୃତ ହୋଇଥିଲା । ସେ ମଧ୍ୟ ଗୀତ ଶିଖେ । ତା' ମାଆ, ମୋ ବୋହୂ ତାକୁ ଗୀତ ଶିଖାଏ । ଗୀତ ମାଷ୍ଟ୍ରେ ମଧ୍ୟ ଆସି ତାକୁ ଶିଖାନ୍ତି । ସେ କଟକ ବେତାର କେନ୍ଦ୍ରର ଶିଶୁଶିଳ୍ପୀ ଭାବରେ ଗୀତ ବୋଲିଛି ।

ସାନନାତୁଣୀ ଗପ ଶୁଣେ । ସେ କିନ୍ତୁ ପଶୁପକ୍ଷୀ ଓ ଜୀବଜନ୍ତୁମାନଙ୍କ ଗପ ଶୁଣିବାକୁ ଭଲ ପାଏ । ମୋ ବୋହୂ ତା' ଦୁଇ ଝିଅଙ୍କୁ ପଢ଼ାଏ ଓ ଟିଉସନ ଶିକ୍ଷକ/ଶିକ୍ଷୟିତ୍ରୀଙ୍କ ପାଖକୁ ନେଇଯାଏ । ସାନନାତୁଣୀ ଡି.ଏ.ଭି. ସ୍କୁଲରେ ପଢୁଛି । ମୋ ବଡ଼ବୋହୂ ଭଦ୍ର; ମାତ୍ର ସେ ଅତ୍ୟଧିକ ଆସକ୍ତା ତାଙ୍କ ନିଜ ଘର ପ୍ରତି, ଭଉଣୀମାନଙ୍କ ପ୍ରତି । ତା'ର ଗୋଟାଏ ଦୁର୍ବଳତା ଯିଏ ତା'ର ଆପଣାର ମନେହୁଅନ୍ତି ତାଙ୍କ ସହିତ ମିଶିଯିବା । ଏଥିପାଇଁ ତାକୁ କେତେକ ଭୁଲ ବୁଝନ୍ତି । ମାତ୍ର ସେ ନିଜ ଆଦର୍ଶରେ ଅଟଳ । ମୋର ଦୃଢ଼ ବିଶ୍ୱାସ ସେ କେବେହେଲେ ଆମ ମର୍ଯ୍ୟାଦା କ୍ଷୁଣ୍ଣ କରିବ ନାହିଁ । ମଝିରେ ମଝିରେ ମୋ ପୁଅ ତା' ସ୍ତ୍ରୀ ଓ ଦୁଇଝିଅଙ୍କୁ ନେଇ ବାହାରକୁ ବୁଲିବାକୁ ଯାଏ ।

ମୋ ମଝିଆପୁଅ ଜ୍ୟୋତିରଂଜନ (ମିଟୁ) । ସେ ଆଇ.ଏସସି. ପରେ କଳା ବିଭାଗରେ ପଢ଼ିଲା । ତା'ର କିନ୍ତୁ ଇଚ୍ଛା ନ ଥିଲା । ମୁଁ ତାକୁ ବାଧ କରି ପଢ଼ାଇଲି । ବି.ଏ.ରେ ଓଡ଼ିଆ ଅନର୍ସ ପରୀକ୍ଷା ଦେଇ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଲା । ସେଠି ମଧ୍ୟ ସେ ଏମ୍.ଫିଲ. କଲା ଓ ପରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରଫେସର ବାଉରୀବନ୍ଧୁ କରଙ୍କ ଅଧୀନରେ ଓଡ଼ିଆ ଆତ୍ମଚରିତ ଉପରେ ଗବେଷଣା କରି ପିଏଚ.ଡି. ଉପାଧି ପାଇଲା । ଏଲ.ଏଲ.ବି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା । ବି.ସି.ଏ. ପରୀକ୍ଷାରେ ପାଶ୍ କଲା । ସେ ଓକିଲାତି କରିବାକୁ ଚାହିଁଲା ନାହିଁ । ନାଟକ ଲେଖେ ଓ ଅଭିନୟ କରେ । ସେ ମଧ୍ୟ କଟକ କଳାବିକାଶ କେନ୍ଦ୍ରରେ ସର୍ବଭାରତୀୟ ନାଟକ ପ୍ରତିଯୋଗିତାରେ ଅଂଶଗ୍ରହଣ କରି ତା'ର ନାଟକ 'ଆପଣା ହସ୍ତେ ଜିହ୍ୱା ଛେଦି' ଅଭିନୀତ କରାଇ ପୁରସ୍କୃତ ହୋଇଥିଲା । ମୁଁ ଓ ମୋ ସ୍ତ୍ରୀ ସେ ନାଟକ ଦେଖିବାକୁ ଯାଇଥିଲୁ । ବିଶିଷ୍ଟ ନାଟ୍ୟକାର ରମେଶ ପାଣିଗ୍ରାହୀ, ଡାକ୍ତର ସୁବୋଧ ପଟ୍ଟନାୟକ ଓ ଡକ୍ଟର ବିଜୟ ଶତପଥୀ ସେହି ନାଟକକୁ ଦେଖି ମୁଗ୍ଧ ହୋଇଥିଲେ । ମୋତେ ସେମାନେ କହିଥିଲେ– 'ଜ୍ୟୋତିର ନାଟ୍ୟ ପ୍ରତିଭା ଅଛି । ଭବିଷ୍ୟତରେ ସେ ଆହୁରି ଉନ୍ନତି କରିବ ।' ସେ ନାଟକକୁ ମୁଁ ଛପାଇ ଦେଇଥିଲି । ତାହାର ମୁଖବନ୍ଧ ଲେଖିଥିଲେ ଓଡ଼ିଆ ନାଟ୍ୟ ଜଗତର ପ୍ରସିଦ୍ଧ ନାଟ୍ୟକାର ମନୋରଂଜନ ଦାସ । ତା'ର ସବୁ ଯୋଗ୍ୟତା ଥାଇ ମଧ୍ୟ ଅଧ୍ୟାପକ ଇଣ୍ଟରଭ୍ୟୁରେ ତାକୁ ନିର୍ବାଚିତ କଲେ ନାହିଁ । କିଛି ବିଶେଷ ଯୋଗ୍ୟତା ନ ଥିବା ପିଲା ପାଇଲେ । ତା'ର ମନଦୁଃଖ ହେଲା । ସେ ପ୍ରଜାତନ୍ତ୍ରରେ ସବ୍-ଏଡ଼ିଟର୍ ଭାବରେ କାର୍ଯ୍ୟ କରି ଭର୍ତ୍ତୃହରିବାବୁ ଓ ତାଙ୍କ ପତ୍ନୀଙ୍କର ସ୍ନେହଭାଜନ ହେଲା । ପରେ ସେ 'ସମାଜ'ରେ ସବ୍ଏଡ଼ିଟର୍ ହେଲା । ତା'ର ଗୋଟିଏ ଧର୍ମ ସିଏ ଯେଉଁ କାର୍ଯ୍ୟ କରେ ତାହାକୁ ନିଷ୍ଠାପର ଭାବରେ କରେ । ସେ ମଧ୍ୟ କେତେ ଉଚ୍ଚକୋଟୀର ପର୍ଯ୍ୟାଲୋଚନାମୂଳକ ଫିଚର୍ ଲେଖିଛି । ତା'ର ବିବାହ ହୋଇଛି ନିଶ୍ଚିନ୍ତକୋଇଲି ନିକଟବର୍ତ୍ତୀ ମୁରଦାବାଦ ଗାଁ

ନିବାସୀ ଶରତଚନ୍ଦ୍ର ରାଉତଙ୍କର କନିଷ୍ଠା କନ୍ୟା ରଶ୍ମିତା (ଲୀନି) ସହିତ । ସେ ଓଡ଼ିଆରେ ପ୍ରଥମ ଶ୍ରେଣୀରେ ଏମ୍.ଏ. ପାସ୍ କରି ପିଏଚ୍.ଡି. କରିଛି । ଚୌଦ୍ୱାର କଲେଜରେ ଅଧ୍ୟାପିକା । ତା'ର ମଧ୍ୟ 'ସମୀକ୍ଷା ଜ୍ୟୋତି' ଶୀର୍ଷକ ଏକ ପୁସ୍ତକ ପ୍ରକାଶ ପାଇଛି । ପ୍ରଫେସର ଗଙ୍ଗାଧର ବଳ ସ୍ମୃତି ପରିଷଦ ଦ୍ୱାରା ସେ ପୁରସ୍କୃତ ହୋଇଛି । ମଝିଆପୁଅର ଦୁଇଟି ପୁଅ । ବଡ଼ନାତି ସତ୍ୟସ୍ୱରୂପ (ପୁପୁନ) ଡି.ଏ.ଭି. ସ୍କୁଲରେ ପଢୁଛି । ସାନଟି ବର୍ଷକର । ସବା ସାନପୁଅ ସ୍ମୃତିରଂଜନ (ଟିଟୁ) । ସେ ନିଜେ ମହାରାଷ୍ଟ୍ର ଯାଇ ସେଇଠି ଆଇ.ଟି. ଇଂଜିନିୟରିଂରେ ପଢ଼ି ଡିଗ୍ରୀ ପାଇଛି । ଟେକ୍ ମହେନ୍ଦ୍ରାରେ ସେ ଇଂଜିନିୟର ଥିଲା । ଏବେ ସେ ଇଂଜିନିୟର ଅଛି ଆଇ.ବି.ଏମ୍. କଂପାନୀରେ, ପୁନାରେ । ସେ ବିବାହ କରିଛି ନିଶ୍ଚିନ୍ତକୋଇଲି ନିକଟବର୍ତ୍ତୀ 'ରାମକୃଷ୍ଣପୁର' ଗାଁର ବାସିନ୍ଦା ବିଜୟ କୁମାର ବସ୍ତିଆଙ୍କ ଏକମାତ୍ର କନ୍ୟା ମୋନାଲିସା (ମାମୁନି)କୁ । ସେ ଏମ୍.ବି.ଏ. ପାସ୍ କରିଛି । ବିବାହ ପରେ ସେମାନେ ପୁନାରେ ଥିଲେ । ବାପା ଓ ବୋଉଙ୍କୁ ନେଇ ପନ୍ଦରଦିନ ରଖି ବମ୍ବେ ଓ ପୁନାର ବିଭିନ୍ନ ସ୍ଥାନ ଦେଖାଇଲେ । ଆମେ ମଧ୍ୟ ତା'ରି ଗାଡ଼ିରେ ଯାଇ ଶିରିଡ଼ିସାଇ ଓ ଶନିମନ୍ଦିର ଦେଖିଲୁ । ମୁଁ ଯେତେବେଳେ ସେହି ଅଞ୍ଚଳ ବୁଲୁଥିଲି ମୋତେ ମୁଗ୍ଧ କରିଥିଲା ସେଠିକାର କୃଷକମାନଙ୍କର ବିବିଧ ଚାଷ କରିବାର ନିଷ୍ଠାକୁ ଦେଖି । ପୁନା କେବଳ ନୁହେଁ; ସମଗ୍ର ମହାରାଷ୍ଟ୍ରରେ ମାତୃଭାଷା ପ୍ରୀତି ଓ ମହାରାଷ୍ଟ୍ରୀ ସାହିତ୍ୟର ଆଦର ମୋତେ ଚମକୃତ କରିଥିଲା । ସେମାନଙ୍କର ପରିଧାନ ସେମାନଙ୍କ ଜାତୀୟ ସ୍ୱାଭିମାନକୁ ସୂଚେଇ ଦିଏ । ଶିବାଜୀଙ୍କ ମୂର୍ତ୍ତି ବିଭିନ୍ନ ସ୍ଥାନରେ ଦେଖିଲି । ଅନୁଭବ କଲି ଛତ୍ରପତି ଶିବାଜୀଙ୍କ ପ୍ରତି ସେମାନଙ୍କର ମମତ୍ୱବୋଧକୁ । ଗଣେଶ ମନ୍ଦିର ଠାଏ ଠାଏ । ଆନ୍ନା ହଜାରେଙ୍କ ପ୍ରତି ଥିବା ଶ୍ରଦ୍ଧାଳୁ ଭାବ ମଧ୍ୟ ମୁଁ ଅନୁଭବ କଲି । ସେତେବେଳେ ମୋର ମନ ଭିତରେ ପ୍ରତିକ୍ରିୟା ସୃଷ୍ଟି ହେଉଥାଏ– ହାୟ ଓଡ଼ିଆ ! କୁଆଡ଼େ ଗଲା ତୋର ସ୍ୱାଭିମାନ ? କୁଆଡ଼େ ଗଲା ତୋର ଅତୀତ ଇତିହାସ ଓ ଐତିହ୍ୟ ! ଏବେ ତୁ କ'ଣ ? ତୋତେ କ'ଣ ତୋ ବେଶପୋଷାକ, ଖାଦ୍ୟପେୟ ଭାଷା ଇତ୍ୟାଦିରୁ ଜାଣିହେବ କି ? ମୋ ସାନଭାଇ ଯେତେବେଳେ ବାଙ୍ଗାଲୋରରେ ଥିଲେ ସେଠିକୁ ମୁଁ ଓ ମୋ ସ୍ତ୍ରୀ ଯାଇଥିଲୁ । ସେଠାରୁ ଯାଇ ଆମେ ଟିପୁ ସୁଲତାନ ପ୍ୟାଲେସ, ବୃନ୍ଦାବନ ଗାର୍ଡ଼େନ, କେତେ ମନ୍ଦିର, ସତ୍ୟସାଇ ଆଶ୍ରମ, ସତ୍ୟସାଇଙ୍କ ଦ୍ୱାରା ପ୍ରତିଷ୍ଠିତ ପୁଟପର୍ତ୍ତି ଓ ବାଙ୍ଗାଲୋର ମେଡ଼ିକାଲ ଏବଂ ବାଙ୍ଗାଲୋରର ଅନେକ ସ୍ଥାନ ଦେଖିଥିଲୁ । ସେଠି ମଧ୍ୟ ମୁଁ ଉପଲବ୍ଧି କଲି କର୍ଣ୍ଣାଟକୀ ସ୍ୱାଭିମାନ ।

ତିନିପୁଅ, ତିନିବୋହୂ, ତିନିଝିଅ, ତିନିଭାଇ ଓ ଦଶଜଣ ନାତି ନାତୁଣୀଙ୍କୁ ନେଇ ମୋର ଶାନ୍ତ ପରିବାରଟିଏ । ମୋ ସ୍ତ୍ରୀ ଏସବୁର ସଂଯୋଗ ସେତୁ । ଝିଅମାନଙ୍କ ଘରକୁ

ସେ ଯାଏ । ପୁନିଅପର୍ବରେ ଭାର ବେଭାର ଦିଏ । ନିଜର ବାପାଙ୍କ ଘରକୁ ଯାଏ । ସମସ୍ତଙ୍କୁ ସେ ଆପଣାର ମନେ କରେ । ମୋତେ ସିଏ ହିଁ ବାରମ୍ବାର ସଦ୍‌ଗୁରୁ ପରି ଉପଦେଶ ଦିଏ– କାହା ଉପରେ ରାଗ ନ କରିବାକୁ, କାହାକୁ କଡ଼ା ଭାଷାରେ ନ କହିବାକୁ । ମୁଁ ମାନେ ତା' କଥା । ଏଇ ହେଉଛି ମୋ ପରିବାର ଓ ତାହାର ଇତିବୃତ୍ତ । ମୋ ବାପା ଓ ବୋଉଙ୍କ ଶ୍ରାଦ୍ଧ ମୁଁ ଦିଏ । ମୋ ସ୍ତ୍ରୀ ତାହାର ସମସ୍ତ ବନ୍ଦୋବସ୍ତ କରେ । କାର୍ତ୍ତିକ ମାସରେ ମଉଳା ଶ୍ରାଦ୍ଧ ମୁଁ ଦିଏ । ପୂର୍ଣ୍ଣିମା ରାତ୍ରିରେ ବଡ଼ବଡୁଆଙ୍କୁ ମୁଁ ଓ ମୋ ପିଲାମାନେ ପିମ୍ପେଇ ଡାକୁ । ମୋ ସ୍ତ୍ରୀ ବୋଇତ ଆକାରର ମୁରୁଜ ପକାଇ ସେଥିରେ ଭୋଗରାଗ କରେ ଓ ଆମେ ଆମ ପୂର୍ବପୁରୁଷଙ୍କୁ ଆଲୋକରେ ଆସି ଅନ୍ଧାରରେ ଯିବାକୁ କହୁ । ମୋ ସ୍ତ୍ରୀ ମୋ ଘରର ଯେମିତି ମେରୁଖୁଣ୍ଟ । ତାଙ୍କୁ ଘେରି ସମସ୍ତେ ଘୁରୁଛନ୍ତି । ସେ ସମସ୍ତଙ୍କ ପ୍ରତି ତା'ର ସ୍ନେହ ବାଣ୍ଟିଦିଏ । ବୋହୂମାନଙ୍କୁ ଆମେ କେବେ ବୋହୂ ଭାବରେ ଦେଖୁନା, ସେମାନେ ଯେମିତି ଆମର ଝିଅ ପରି । ମୋ ସ୍ତ୍ରୀ ସବୁ କାମ ଉଠେଇନିଏ । ସକାଳୁ ରାତି ପର୍ଯ୍ୟନ୍ତ ଏପଟ ସେପଟ ହୋଇ ଯାବତୀୟ କାମ କରିଯାଏ । ବୋହୂମାନଙ୍କୁ ରୋଷେଇରେ ସାହାଯ୍ୟ କରେ । ଝିଅମାନଙ୍କ ଘରକୁ ଯାଇ ସେମାନଙ୍କ କଥା ବୁଝେ । ସବୁ ନାତିନାତୁଣୀ ଯେତେବେଳେ ଆମ ଘରେ ମିଳିଯାଆନ୍ତି ସେଇ କେତେ ଘଣ୍ଟା ଆମ ଘର ପୂରିଉଠେ । ଲକ୍ଷ୍ମୀଓଷା, ଦୁର୍ଗାଷ୍ଟମୀ, ସାବିତ୍ରୀ ବ୍ରତ ଇତ୍ୟାଦିକୁ ସେ ନିଷ୍ଠା ସହକାରେ ପାଳନ କରେ ଓ ବୋହୂମାନଙ୍କୁ ନିଷ୍ଠା ସହକାରେ ପାଳନ କରିବାକୁ ଉପଦେଶ ଦିଏ । ଏହି ହେଉଛି ମୋ ପରିବାର । ସେହି ଘର ହିଁ ଯଥାର୍ଥରେ ବୈକୁଣ୍ଠପୁର, ଯେଉଁଠି ନିରନ୍ତର ସ୍ନେହ ପ୍ରୀତି ଭରପୂର ହୋଇ ରହିଥାଏ ।

ଏବେ ମୁଁ ଲକ୍ଷ୍ୟ କରୁଛି ପୁଅ ଓ ବୋହୂମାନଙ୍କ ଭିତରେ ଆନ୍ତରିକତା କାହିଁକି କମି କମି ଯାଉଛି । ଭଗବାନ୍‌ଙ୍କ ପାଖରେ ପ୍ରାର୍ଥନା ସେମାନଙ୍କୁ ସୁଖରେ ରଖନ୍ତୁ । ମୋ ସ୍ୱାଭିମାନକୁ ଭାଙ୍ଗି ନ ଦିଅନ୍ତୁ । ସେମାନଙ୍କ ଭିତରେ ପରସ୍ପର ପ୍ରତି ସ୍ନେହ ଶ୍ରଦ୍ଧା ବୃଦ୍ଧି ପାଉ । ମୁଁ କେତେବେଳେ ଚିଡ଼ି ଉଠିଲେ ମୋ ସ୍ତ୍ରୀ ସଙ୍ଗେ ସଙ୍ଗେ ମୋତେ ନିରବ କରିଦିଏ । ବ୍ୟସ୍ତ କାହିଁକି ? କାନ୍ଧରେ ଯୁଆଳି ପଡ଼ିଲେ ବଳେ ବୁଝିବେ ନାହିଁ ? ଆମ ହାତଗୋଡ଼ ଚାଲିଛି । ଆଉ ବା କେତେ ଦିନ ? ଆମକୁ ଭଗବାନ୍ ସୁଖରେ ରଖିଛନ୍ତି । ଆମେ ତ କାହାର କେବେ ଅମଙ୍ଗଳ ପାଞ୍ଚି ନାହୁଁ । ଆମ ବୋହୂ ଭଲ, ପୁଅମାନେ ଭଲ । ନାତିନାତୁଣୀ ତ ଆମର ଗେହ୍ଲା । ଏଇ ମୋ ପରିବାର । କେତେ ବାଧାବିଘ୍ନ, ସୁବିଧା ଅସୁବିଧା ଦେଇ ଆମେ ଗତି କରିଆସିଛୁ । ଭଗବାନ୍ ଆମର ଭରସା । ତାଙ୍କୁ ପ୍ରାର୍ଥନା– ଆମର କେହି ସେବା ନ କରନ୍ତୁ, ଭଲରେ ଭଲରେ ଆମକୁ ନେଇଯାଆନ୍ତୁ ତାଙ୍କ ପାଖକୁ । ବାସ୍ ଏତିକି ।

# ମୋ ଜୀବନ ବୃତ୍ତରେ ବନ୍ଧୁ ଓ ହିତାକାଂକ୍ଷୀଙ୍କ ସଂପର୍କ

ମୋ ଜୀବନ ବୃତ୍ତରେ କେତେ କେତେ ବନ୍ଧୁ, କେତେ କେତେ ହିତାକାଂକ୍ଷୀ ଗୁରୁଜନଙ୍କର ଆବିର୍ଭାବ ଘଟିଛି । କାହା ସହିତ ଖୁବ୍ ଅଳ୍ପ ସମୟ ପାଇଁ ତ ଆଉ କାହାଙ୍କ ସହିତ ଦୀର୍ଘକାଳ ପାଇଁ ସଂପର୍କ । ପିଲାଦିନର ଗାଁ-ମାଟିର ସୁଦର୍ଶନ, କାଳିନ୍ଦୀ, ମହେଶ୍ୱର, ଦୀନବନ୍ଧୁ ଆଦିଙ୍କ ସହିତ ମୋ ସଂପର୍କ ଥିଲା ଅତ୍ୟନ୍ତ ନିବିଡ଼ । ଇନ୍ଦୁପୁର ହାଇସ୍କୁଲରେ ପଢ଼ିଲାବେଳେ ତ ବହୁ ସାଙ୍ଗଙ୍କ ସହିତ ସଂପର୍କ ଗଢ଼ି ଉଠିଥିଲା । ସେ ସଂପର୍କ ଥିଲା ସଂପୂର୍ଣ୍ଣ ନିଃସ୍ୱାର୍ଥପର ଦିବ୍ୟଭାବର ସଂପର୍କ । ଏହା ପରେ ମାଇନର ସ୍କୁଲରେ ଶିକ୍ଷକତା । ସେ ଗାଁ ଲୋକେ ମୋତେ ଭଲ ପାଇଲେ । ସାଂସଦ ବୈଷ୍ଣବ ଚରଣ ମଲ୍ଲିକ ମୋତେ ମୈତ୍ର ବୋଲି ଡାକିଲେ । ମୁଁ ତାଙ୍କ ଘରକୁ ଯାଇଛି । ସେ ମୋତେ ବହୁତ ଆଦର କରିଛନ୍ତି । ସ୍ୱାଧୀନତା ସଂଗ୍ରାମୀ ବୀରକିଶୋର ରାୟଙ୍କ ସାନ୍ନିଧ ମୋତେ ମୁଗ୍ଧ କରିଛି । ହାଇସ୍କୁଲରେ ପଢ଼ିଲାବେଳେ ମୁଁ ଉତ୍କଳର ଚାଷୀ ମୂଲିଆ ଗାନ୍ଧୀ ଗୋପବନ୍ଧୁ ଚୌଧୁରୀଙ୍କ ସ୍ନେହ ଓ ଆଶୀର୍ବାଦ ପାଇଥିଲି । ତାଙ୍କୁ ଦେଖି ମୁଁ ମଧ ଆଣ୍ଠୁ ନଡିଆଁ ଲୁଗା ପିନ୍ଧୁଥିଲି । ତାଙ୍କର ମାନବିକ ଆଦର୍ଶ ଓ ସରଳତା ମୋତେ ପ୍ରଭାବିତ କରିଥିଲା । ସେହି ସମୟରୁ ମୁଁ ସର୍ବୋଦୟ ନେତା ଶରତ ମହାରଣା, ମନମୋହନ ଚୌଧୁରୀଙ୍କ ସଂପର୍କରେ ଆସିଲି । ସେମାନଙ୍କୁ ତଥା ମା' ରମାଦେବୀଙ୍କୁ ଓ ତାଙ୍କର କନ୍ୟା ଅନ୍ନପୂର୍ଣ୍ଣା ମହାରଣାଙ୍କୁ ଦେଖି ମୁଁ ଭାବୁଥିଲି ସତେ କ'ଣ ଏପରି ଲୋକେ ଆଉ ଓଡ଼ିଶା ମାଟିରେ ଜନ୍ମ ନେବେ ନାହିଁ ?

ମୋର ଅଧ୍ୟାପକ ଜୀବନକାଳ ଭିତରେ କେତେ କେତେ ବିଜ୍ଞ ଲୋକଙ୍କ ସଂପର୍କରେ ଆସିଛି । ତାହା ଏକ ଲମ୍ବା ତାଲିକା । ତଥାପି କେତେଜଣଙ୍କ ବିଷୟରେ ସୂଚନା ଦେଉଛି ମାତ୍ର । ମୁଁ ଯେତେବେଳେ ଲେଖାଲେଖି କଲି; ବିଶେଷତଃ ଗଳ୍ପ, କବିତା, ଉପନ୍ୟାସ ଇତ୍ୟାଦି ସଂପର୍କରେ ଆଲୋଚନା ଲେଖିଲି ସେତେବେଳେ ଓଡ଼ିଆ ଉପନ୍ୟାସ ଓ ଗଳ୍ପ ସାହିତ୍ୟର ଅନନ୍ୟ ସ୍ରଷ୍ଟା ଗୋପୀନାଥ ମହାନ୍ତିଙ୍କ ସଂପର୍କରେ ଆସି ଅନୁଭବ କଲି ତାଙ୍କର ଶିଶୁସୁଲଭ ସରଳ ନିଷ୍କପଟ ହୃଦୟର ପରିଚୟ । ଥରେ ତାଙ୍କ ଭୁବନେଶ୍ୱରସ୍ଥ ବାସଭବନରେ ଅଖିଳମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ କୁମାର ଆଚାର୍ଯ୍ୟ ପ୍ରମୁଖ କେତେ ଲେଖକଙ୍କ ଏକ ମଧୁର ମିଳନ ହୋଇଥିଲା । ନୀଳମଣିବାବୁ ମୋତେ ଖୁବ୍ ସ୍ନେହ କରନ୍ତି । ସେ ମୋତେ ତାଙ୍କ ସାଙ୍ଗରେ ନେଇଗଲେ ଓ ମୋତେ ଅନ୍ୟମାନଙ୍କ ସହିତ ପରିଚୟ କରାଇଦେଲେ । ସେଦିନ ମୁଁ ଅନୁଭବ କଲି ଗୋପୀବାବୁଙ୍କର ସ୍ନେହ, ଶ୍ରଦ୍ଧା ଓ ହୃଦୟଖୋଲା ହସ । ମୁଁ ତାଙ୍କର ବିଭିନ୍ନ ଉପନ୍ୟାସ ଓ ଗଳ୍ପ ଉପରେ ଆଲୋଚନା

ଲେଖିଛି । ବାଣୀବିହାରରେ ମୁଁ ଯେତେବେଳେ ବିଭାଗୀୟ ମୁଖ୍ୟ ଥିଲି ତାଙ୍କୁ ଡାକିଥିଲି ଆମ ସେମିନାରରେ କିଛି କହିବା ପାଇଁ । ସେଦିନ ସେ ତାଙ୍କର ଜୀବନର ଅନୁଭବକୁ ଏପରି କହିଲେ ଯେ ତାହା ସମସ୍ତଙ୍କୁ ଅଭିଭୂତ କରିଦେଲା । ଅଖିଳବାବୁ ପ୍ରସିଦ୍ଧ କଥାକାର । ଅଳ୍ପ ଲେଖନ୍ତି ଅଥଚ ଶକ୍ତିଶାଳୀ କରି ଲେଖନ୍ତି । ମୁଁ ମଧ୍ୟ ସେତେବେଳେ 'ଅଖିଳ ଗଳ୍ପ-ମାନସ' ଶୀର୍ଷକ ଆଲୋଚନାଟିଏ ଲେଖିଥିଲି । ମହାପାତ୍ର ନୀଳମଣି ସାହୁ ଅତ୍ୟନ୍ତ ସ୍ନେହୀ ମଣିଷଟିଏ । ସେ ମୋତେ ପ୍ରେରଣା ଦେଇଥିଲେ ଗଳ୍ପ ଉପରେ ଲେଖାଲେଖି କରିବା ପାଇଁ । ତାଙ୍କ ଗଳ୍ପ ସଂପର୍କରେ ସେତେବେଳେ ମୁଁ ଦୁଇଟି ଲେଖା ଲେଖିଥିଲି । ଶାନ୍ତନୁବାବୁ ବିଜ୍ଞାନର ମଣିଷ । ଅଥଚ ସେ ଅଲୌକିକ ଜଗତ ସହିତ ଏତେ ପରିମାଣରେ ଆସକ୍ତ ଯେ ତାହା ମୋତେ ଚକିତ କରିଦିଏ । ବିଜ୍ଞାନ ସହିତ ଅଲୌକିକ ବା ରହସ୍ୟମୟ ଜଗତକୁ ମିଳାଇ ସେ ତାଙ୍କର ଗଳ୍ପରେ ଚମତ୍କାରିତା ସୃଷ୍ଟି କରନ୍ତି । ଥରେ ତାଙ୍କ ଘରେ ତାଙ୍କର ଏକ ଗଳ୍ପ ସଂପର୍କରେ ଆଲୋଚନା କଲାବେଳେ ତାଙ୍କର ଚକ୍ଷୁ ଲୋତକାପ୍ଳୁତ ହୋଇଗଲା । ତାଙ୍କ ପ୍ରତ୍ୟକ୍ଷ ଅନୁଭବର ସେ ଗଳ୍ପ । ତାଙ୍କୁ ମୁଁ ଗଭୀର ଭାବରେ ଭଲ ପାଏ । ତାଙ୍କର ପ୍ରଚଣ୍ଡ ସ୍ୱାଭିମାନ ମୋତେ ମୁଗ୍ଧ କରେ । ତାଙ୍କ ଜୀବନ ଏକ ସଂଘର୍ଷର ଜୀବନ । ବିଭିନ୍ନ ଜାଗାକୁ ତାଙ୍କୁ ବଦଳି କରାଯାଇଛି ଓ ସେ ଯେଉଁଠିକୁ ଯାଇଛନ୍ତି ସେଠି ସେ ସାଧାରଣ ଲୋକଙ୍କ ସହିତ ମିଶିଛନ୍ତି । ସେହି ଲୋକମାନଙ୍କର ଜୀବନଚର୍ଯ୍ୟା, ସରଳ ବିଶ୍ୱାସ ଓ ଅଲୌକିକ କ୍ରିୟାକୁ ସେ ତାଙ୍କ ଗଳ୍ପମାନଙ୍କରେ ପୁଞ୍ଜି କରି ନେଇଛନ୍ତି । ସମସ୍ତ ଉପନ୍ୟାସ ମଧ୍ୟ ତାଙ୍କ ନିଛକ ଅନୁଭବର କଳାତ୍ମକ ପରିପ୍ରକାଶ । ତାଙ୍କର ସମସ୍ତ ବହି ମୁଁ ପଢ଼ିଛି । ଥରେ କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ମୁଁ ଗୋଟିଏ ଚିଠି ପାଇଥାଏ ପୁରସ୍କାର ପାଇଁ ନାମ ଅନୁମୋଦନ କରି ପଠାଇବାକୁ । ସେତେବେଳେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ କୁଳସଚିବ ଥାଆନ୍ତି । ମୋର ଧାରଣା ଥାଏ ଯେ ସେ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ପାଇସାରିଛନ୍ତି । ତଥାପି ମୁଁ ସେ ବର୍ଷ ତାଙ୍କର 'ଚଳନ୍ତି ଠାକୁର' ଗଳ୍ପ ପୁସ୍ତକକୁ ଅନୁମୋଦନ କରି ପଠାଇଦେଲି । ପରେ ତାଙ୍କ ସହିତ ବାଣୀବିହାର ଛକରେ ଦେଖା ହୋଇଗଲା । କଥାବାର୍ତ୍ତା ଭିତରେ ମୁଁ ତାଙ୍କୁ ପଚାରିଲି– 'ଆପଣ କ'ଣ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ପାଇ ନାହାନ୍ତି ଏଯାଏ ?' ସେ ମୋ ପ୍ରଶ୍ନ ଶୁଣି ଟିକେ ଛିଡ଼ା ହୋଇଗଲେ ଓ କହିଲେ 'ନା' । ତା'ପରେ ସେ କହିଲେ ସେଠାରେ ଓଡ଼ିଶାରୁ ଯେଉଁମାନେ ଅଛନ୍ତି ଓ ବେଶ୍ କିଛି ବର୍ଷ ହେଲା ପ୍ରଭାବ ବିସ୍ତାର କରି ରହିଛନ୍ତି ସେମାନେ ମୋର ଘୋର ବିରୋଧୀ । ତେଣୁ ତାଙ୍କୁ ସେ ପୁରସ୍କାର ମିଳିବ ନାହିଁ । ମୁଁ କହିଲି ଏଇ ବର୍ଷ ପାଇବେ । ସେ ମୋ କଥାକୁ ପରିହାସ କଲେ । ପ୍ରକୃତରେ ସେ ସେହି ବର୍ଷ 'ଚଳନ୍ତି ଠାକୁର' ଗଳ୍ପ ପୁସ୍ତକ ପାଇଁ ପୁରସ୍କାର ପାଇଲେ । ଆଉ ଥରେ ଶ୍ରୀଯୁକ୍ତ ମହାପାତ୍ର

ନୀଳମଣି ସାହୁ ଓ ଶାନ୍ତନୁବାବୁଙ୍କ ସହିତ ମୁଁ ଯାଉଥାଏ ରତ୍ନଗିରିକୁ ଗୋଟିଏ ସଭାରେ ଯୋଗ ଦେବାପାଇଁ । ବାଟରେ ଅନେକ କଥାବାର୍ତ୍ତା ଚାଲିଥାଏ । ସେହି ସମୟରେ ମୁଁ ତାଙ୍କୁ କହିଲି– ଆପଣଙ୍କ 'ଶକୁନ୍ତଳା' ଉପନ୍ୟାସ ଏଥର ସାରଳା ପୁରସ୍କାର ପାଇବ । ସେ ହସି ଉଡ଼େଇ ଦେଲେ । ମୁଁ ଏହି ବହିଟିକୁ ଅନୁମୋଦନ କରି ପଠାଇଥାଏ । ମୋର ଦୃଢ଼ ବିଶ୍ୱାସ ଥାଏ ଯେ ଶକୁନ୍ତଳା ପରି ନବମାନବ ଚେତନାର ଏକ ତାତ୍ତ୍ୱିକ ଉପନ୍ୟାସକୁ କେହି ଅସ୍ୱୀକାର କରିପାରିବେ ନାହିଁ । ସେ ବର୍ଷ ସେ ସାରଳା ପୁରସ୍କାର ପାଇଲେ । ମୁଁ ମଧ୍ୟ 'ଶାନ୍ତନୁ ଗଳ୍ପ–ମାନସ' ଶୀର୍ଷକ ଆଲୋଚନାଟିଏ ପୂର୍ବରୁ ଲେଖିଥାଏ । ସେ ବାହାରକୁ ଯାହା ଦେଖାଯାଆନ୍ତି ପ୍ରକୃତରେ ସେ ଭିତରେ ନବନୀତ କୋମଳ ହୃଦୟର ମଣିଷଟିଏ । ତାଙ୍କର ସ୍ନେହ ମୁଁ ପାଇଛି । ସେହିପରି ସ୍ନେହ ମଧ୍ୟ ପାଇଛି ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କଠାରୁ । ସେ ଇଂରାଜୀ ସାହିତ୍ୟର ଅଭିଜ୍ଞ ଅଧ୍ୟାପକ ହେଲେ ମଧ୍ୟ ବେଦବେଦାନ୍ତ, ଗୀତା ଭାଗବତ ଆଦି ସଂସ୍କୃତ ବାଙ୍ମୟର ଜଣେ ପଣ୍ଡିତ ବ୍ୟକ୍ତି । ତାଙ୍କର ଗଳ୍ପ, ଉପନ୍ୟାସ, ରମ୍ୟରଚନା ସର୍ବତ୍ର ତାହାର ସ୍ପର୍ଶ ଅନୁଭବ କରିହୁଏ । ଡକ୍ଟର କୃଷ୍ଣପ୍ରସାଦ ମିଶ୍ରଙ୍କ ସହିତ ମୋର ଭଲ ସଂପର୍କ ଥାଏ । ଦାର୍ଶନିକସୁଲଭ ମଣିଷଟିଏ ସେ । ତାଙ୍କର ପ୍ରତ୍ୟେକ ଲେଖା ଭିତରେ ମାନବିକ ସମ୍ବେଦନା ସହିତ ଦର୍ଶନ ତତ୍ତ୍ୱର ଛାପ ଲକ୍ଷ୍ୟ କରିହୁଏ ।

କାହ୍ନୁଚରଣ ମହାନ୍ତିଙ୍କ ସହିତ ମୋର ସଂପର୍କ ଗଢ଼ିଉଠିଲା ତାଙ୍କର ପରିଣତ ବୟସରେ । ଏପରି ଏକ ଅମାୟିକ ସରଳ ହୃଦୟର ମଣିଷଙ୍କର ସାନ୍ନିଧ ପାଇ ମୁଁ ନିଜକୁ ଧନ୍ୟ ମନେକଲି । ବିନୋଦ ବିହାରୀ ପୁସ୍ତକ ବିପଣିକୁ ସେ ପ୍ରାୟ ଆସନ୍ତି ସନ୍ଧ୍ୟା ସମୟରେ । ସେଇଠି ମୋର ସେ ଦେଖା ହୁଅନ୍ତି । କହନ୍ତି ତାଙ୍କ ଜୀବନର କାହାଣୀ, ସାନଭାଇ ଗୋପୀବାବୁଙ୍କ କାହାଣୀ, ତାଙ୍କ ଅନ୍ୟ ଭାଇ ଓ ପରିବାରର କାହାଣୀ । ହାଇସ୍କୁଲରେ ପଢ଼ିବା ସମୟରୁ ହିଁ ତାଙ୍କର ବାଲିରାଜା, ହାଅନ୍ନ, ଶାସ୍ତି ପଢ଼ିଥାଏ । ବିଶେଷତଃ ଶାସ୍ତି (୧୯୪୬), ଝଂଜା (୧୯୪୯) ଓ ବଜ୍ରବାହୁ (୧୯୫୮) ଉପନ୍ୟାସ ଦୁଇଟିରେ ବର୍ଣ୍ଣିତ ସମାଜବାଦୀ ଆଭିମୁଖ୍ୟ ମୋତେ ପ୍ରଭାବିତ କରିଥାଏ । ଥରେ ବିଷୁବ ମିଳନ ଅବକାଶରେ ଉପନ୍ୟାସ ସଂପର୍କରେ ଆଲୋଚନା ଚାଲିଥିଲାବେଳେ ଜଣେ ବ୍ୟକ୍ତି କାହ୍ନୁବାବୁଙ୍କ ଉପନ୍ୟାସର କଟୁ ସମାଲୋଚନା କଲେ । ତାଙ୍କୁ ଉପନ୍ୟାସ ଲେଖି ଆସେ ନାହିଁ ବୋଲି କହିଲେ । ସେ ମଧ୍ୟ ବସି ଶୁଣୁଥାଆନ୍ତି । ତାଙ୍କ ସାନଭାଇ ଗୋପୀବାବୁ, ରାଜକିଶୋର ରାୟ ଓ ରାଜକିଶୋର ପଟ୍ଟନାୟକ, ଅନନ୍ତ ପଣ୍ଡା ପ୍ରମୁଖ ବସିଥାଆନ୍ତି । ମୁଁ ସଭାମଞ୍ଚକୁ ଉଠିଯାଇ ପ୍ରତିବାଦ କଲି । କାହ୍ନୁବାବୁଙ୍କ ଉପନ୍ୟାସର ମାନବିକ ଦୃଷ୍ଟିକୋଣ, ଗାନ୍ଧିବାଦୀ ଆଦର୍ଶ, ପଲ୍ଲୀ ଜୀବନର ଚିତ୍ର, ବିଧବାର ଆର୍ତ୍ତନାଦ ଇତ୍ୟାଦି ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ଓଡ଼ିଆ ଉପନ୍ୟାସରେ ସମାଜବାଦୀ ଆଦର୍ଶର ସେ ପ୍ରଥମ ପ୍ରବକ୍ତା ବୋଲି

କହିଲି । ଏହା ପରେ ସଭାର ପ୍ରସଙ୍ଗ ଅନ୍ୟ ମୋଡ଼ ନେଲା । ମୁଁ ମଧ୍ୟ ସେହି ବହି ଦୋକାନରେ ଭେଟିଛି ରାଧାମୋହନ ଗଡ଼ନାୟକଙ୍କୁ । ତାଙ୍କୁ ଲୋକେ ଦୁର୍ବାସା ବୋଲି କହନ୍ତି । ଶୁଣିଛି ତାଙ୍କୁ ଓ ମାନସିଂହଙ୍କୁ ନେଇ ଅନେକ ନାନା ଆଲୋଚନା କରୁଥାନ୍ତି । ଓଡ଼ିଆ ସାହିତ୍ୟର ଏହି ଦୁଇ ମହାରଥୀଙ୍କୁ ମୁଁ ଖୁବ୍ ପାଖରେ ଦେଖିଛି ଓ ଅନୁଭବ କରିଛି ସେମାନଙ୍କର ବିପୁଳ ହୃଦୟବତ୍ତାକୁ । ଗଡ଼ନାୟକ ପ୍ରଚଣ୍ଡ ସ୍ୱାଭିମାନୀ । ସେ ମୋତେ ଅନେକ ବଡ଼ ବଡ଼ କବିଙ୍କ ନେପଥ୍ୟ କଳାଦିଗ ସଂପର୍କରେ କହିଛନ୍ତି । ତାଙ୍କର ସ୍ନେହ ମୁଁ ପାଇଛି । ସେ ମଧ୍ୟ ମୋ ଘରକୁ ଆସି ମୋ ପିଲାମାନଙ୍କୁ ଆଶୀର୍ବାଦ କରିଛନ୍ତି । ବଡ଼ ପରଉପକାରୀ ମଣିଷଟିଏ ସେ । ଡକ୍ଟର ମାୟାଧର ମାନସିଂହଙ୍କ ସଂପର୍କରେ ମୁଁ ନାନା କଥା ଶୁଣିଥାଏ । ସେ ଇଂରାଜୀ ସାହିତ୍ୟରେ ପ୍ରଥମ ପିଏଚ.ଡି. ଲାଭ କରିଥିଲେ । ୧୯୨୩ ମସିହାରୁ ନିରବଚ୍ଛିନ୍ନ ଭାବରେ କାବ୍ୟକବିତା, କାବ୍ୟନାଟିକା, ପ୍ରବନ୍ଧ, ସମାଲୋଚନା, ଓଡ଼ିଆ ସାହିତ୍ୟର ଇତିହାସ (ଉଭୟ ଇଂରାଜୀ ଓ ଓଡ଼ିଆ ଭାଷା) ଇତ୍ୟାଦି ରଚନା କରିଥିଲେ ମୃତ୍ୟୁର ଅବ୍ୟବହିତ ପୂର୍ବ ପର୍ଯ୍ୟନ୍ତ । ତାଙ୍କୁ କିନ୍ତୁ ଓଡ଼ିଆ ଜାତି ଉପଯୁକ୍ତ ସମ୍ମାନ ଦେଇ ନାହିଁ । ଓଡ଼ିଆ ସାହିତ୍ୟ ଏକାଡେମୀ ମଧ୍ୟ ତାଙ୍କୁ ପୁରସ୍କୃତ କରିପାରି ନାହିଁ । ତଥାପି ମାନସିଂହ ହିଁ ମାନସିଂହ । ପ୍ରଚଣ୍ଡ ସ୍ୱାଭିମାନର ପ୍ରତୀକ । ବାରମ୍ବାର ସେ ସରକାରଙ୍କ ଦ୍ୱାରା ନିର୍ଯାତିତ ହୋଇଛନ୍ତି ମାତ୍ର ସେ କେଉଁଠି ନତମସ୍ତକ ହୋଇ ନାହାନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ ବହୁ ବର୍ଷ ପରେ ତାଙ୍କର ଜୟନ୍ତୀ ପାଳନ କରୁଛନ୍ତି– ଏହା ମୋତେ ଉପହାସ ପରି ମନେହୁଏ ।

ମାନସିଂହ ଥୋରିଆସାହି ଘରେ ଥିଲାବେଳେ ମୁଁ ଥରେ ତାଙ୍କୁ ଦେଖା କରିବାକୁ ଯାଇଥିଲି ବୋଧହୁଏ ୧୯୭୧ ବା ୧୯୭୨ ମସିହାରେ । ସେତେବେଳକୁ ସେ ଅସୁସ୍ଥ । ତଳ ଘରେ ସେ ଗୋଟିଏ ଧଳାରଙ୍ଗର ଅଧାପ୍ୟାଣ୍ଟ ଓ ଫତେଇଟିଏ ପିନ୍ଧି ଚେୟାର ଉପରେ ବସିଥାନ୍ତି । ମୁଁ ପହଞ୍ଚି ତାଙ୍କୁ ପ୍ରଣାମ କଲି । ସେ ମୋର ପରିଚୟ ପଚାରି ମୋତେ ପାଖରେ ବସାଇଲେ । ମୋ ମୁଣ୍ଡରେ ହାତ ରଖି ଆଶୀର୍ବାଦ କଲେ । ତତ୍‌ପରେ ଅତି ଦୁଃଖରେ କହିଲେ– ମୋ 'ସାଧବ ଝିଅ', 'ଜେମା', 'କମଳାୟନ' କ'ଣ କବିତା ପଦବାଚ୍ୟ ନୁହେଁ ? ମୁଁ ଉତ୍କଳମଣି ଗୋପବନ୍ଧୁ, ବାପୁଜୀ ଓ ସାଧାରଣ ମଣିଷମାନଙ୍କୁ ନେଇ ଜୀବନସାରା କେତେ କ'ଣ ଲେଖିଛି ସେସବୁ କ'ଣ କବିତା ନୁହେଁ ? ମୁଁ ଶୁଣିଲି ତାଙ୍କ ଅନ୍ତର୍ବେଦନାର ମର୍ମସ୍ପର୍ଶୀ କାହାଣୀ । ଏପରି ସାରସ୍ୱତ ପ୍ରତିଭାଙ୍କୁ ଓଡ଼ିଆ ଜାତି କ'ଣ ଦେଲା ? ତାଙ୍କ ଓଡ଼ିଆ ସାହିତ୍ୟର ଇତିହାସ ଯାହା ଇଂରାଜୀରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରକାଶ କରିଥିଲା ପ୍ରଥମେ, ତାହାକୁ ନେଇ ଯେଉଁ ଝଡ଼ ସୃଷ୍ଟି ହୋଇଥିଲା, ନିଆଁଖୁଣ୍ଟା ପତ୍ରିକାରେ ତାହାର ଯେଉଁ କଟୁ ସମାଲୋଚନା ପ୍ରକାଶ ପାଇଥିଲା ତାହା ମୁଁ

ପଢ଼ିଥିଲି । ତାଙ୍କର ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ରଚିତ ଓଡ଼ିଆ ସାହିତ୍ୟର ଇତିହାସକୁ ମୁଁ ବାରମ୍ବାର ପଢ଼ିଛି, ମୁଗ୍ଧ ହୋଇଛି । ତାଙ୍କର ସୂକ୍ଷ୍ମ ବିଚାରବୋଧକୁ କ'ଣ ଅସ୍ୱୀକାର କରିଦେଇହେବ କି ?

ମୁଁ ସ୍ନେହ ପାଇଛି ଅନନ୍ତ ପଣ୍ଡାଙ୍କଠାରୁ । ତାଙ୍କ ଗଳ୍ପ ଓ କବିତା ଉପରେ ମଧ ମୁଁ ଲେଖିଛି । ଶ୍ରଦ୍ଧା ପାଇଛି କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ସଦାଶିବ ମିଶ୍ର, ଦୁର୍ଗାମାଧବ ମିଶ୍ର, କାଳିନ୍ଦୀଚରଣ ପାଣିଗ୍ରାହୀ, ନାଟ୍ୟକାର ରାମଚନ୍ଦ୍ର ମିଶ୍ର, ଗୋପାଳ ଛୋଟରାୟ, ଭଞ୍ଜକିଶୋର ପଟ୍ଟନାୟକ, ପଦ୍ମଭୂଷଣ ରାଧାନାଥ ରଥ, ଉଦୟନାଥ ଷଡ଼ଙ୍ଗୀ, ନିତ୍ୟାନନ୍ଦ ମହାପାତ୍ର, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ସରଳା ଦେବୀ, ସଚ୍ଚିଦାନନ୍ଦ ରାଉତରାୟ, ମଧୁ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ବସନ୍ତ କୁମାର ଶତପଥୀ, ପ୍ରଫେସର କୃଷ୍ଣଚରଣ ସାହୁ, ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ, ମନମୋହନ ମିଶ୍ର– ଏହିପରି ଅନେକ ବିଦ୍ୱାନ୍ ଲେଖକଙ୍କଠାରୁ । ସମସ୍ତଙ୍କଠାରୁ ମୁଁ ପାଇଛି ସ୍ନେହ ଓ ପ୍ରେରଣା । ପ୍ରତ୍ୟେକଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରୀତି, ଓଡ଼ିଆ ଜାତିର ଐତିହ୍ୟ– ଇତିହାସ ଓ ସ୍ୱାଭିମାନବୋଧ ମୋତେ ଅନୁପ୍ରାଣିତ କରିଛି । ମଧୁ ମହାନ୍ତି ଥିଲେ ତରୁଣମାନଙ୍କୁ ଉତ୍ସାହ ଦେବାରେ ଅତି ମହାନ୍ ବ୍ୟକ୍ତି । ସେ ମଧ ଥିଲେ ସେତେବେଳେ ନୂଆ କରି ସୃଷ୍ଟି ହୋଇଥିବା ଅନାମ ଗୋଷ୍ଠୀ ପ୍ରତି ଅତ୍ୟନ୍ତ ଶ୍ରଦ୍ଧାଶୀଳ । ଥରେ ତାଙ୍କ ଘରେ ସେ ମୋତେ ଦୁଃଖରେ କହିଲେ– ସୁରେନ୍ଦ୍ର କ'ଣ ଜଣେ ଗାଳ୍ପିକ, ଔପନ୍ୟାସିକ, ସମାଲୋଚକ ନୁହେଁ ? ମୁଁ କାବା ହୋଇ ତାଙ୍କ ମୁହଁକୁ ଚାହିଁଲି । ତାଙ୍କ କ୍ଷୋଭକୁ ମୁଁ ହୃଦୟଙ୍ଗମ କଲି । ମୁଁ ତ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପ–ମାନସ ଉପରେ ଏକ ଦୀର୍ଘ ଲେଖା ୧୯୬୮ ମସିହାରେ ପ୍ରକାଶ କରିଥିଲି । ତାଙ୍କ ଉପନ୍ୟାସ ଉପରେ ଆଲୋଚନା କରିଥିଲି । ତାଙ୍କ 'ଅନ୍ଧ–ଦିଗନ୍ତ' ଉପନ୍ୟାସ ଉପରେ ଦୀର୍ଘ ଆଲୋଚନା ଲେଖିଥିଲି । ତାଙ୍କର ସମସ୍ତ ବହି ପ୍ରାୟ ମୁଁ ପଢ଼ିଥାଏ । ସେ ମୋର ପ୍ରିୟ ଲେଖକ । ମୁଁ ଉପଲବ୍ଧି କଲି ଯେ ସୁରେନ୍ଦ୍ରବାବୁଙ୍କୁ ଉପଯୁକ୍ତ ପୁରସ୍କାର ପ୍ରଦାନ କରାଗଲା ନାହିଁ ବୋଲି ମଧୁବାବୁଙ୍କର କ୍ଷୋଭ ଓ ତାହାହିଁ ଯଥାର୍ଥ । ଆଉ ଥରେ ମୁଁ ସୁରେନ୍ଦ୍ର ମହାନ୍ତିଙ୍କ କଟକ ବାସଭବନକୁ ଯାଇଥିଲି । ସେଦିନ ଦେଖିଲି ସୁରେନ୍ଦ୍ରବାବୁ ଅସୁସ୍ଥ । ତାଙ୍କ ହାତର ଆଙ୍ଗୁଳି ଟିକେ ବକ୍ର ହୋଇଯାଇଛି । ଦେହ ଥରୁଛି, ହାତ ଥରୁଛି । ତଥାପି ତାଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱ ଦୀପ୍ତିମାନ ହୋଇ ରହିଥାଏ । ସେ ମୋ ସହିତ ଅନେକ କଥା ହେଲେ । ତାଙ୍କର ବ୍ୟକ୍ତିତ୍ୱ ଓ ସାରସ୍ୱତ ପ୍ରତିଭା, ବିଶେଷତଃ ଜଗନ୍ନାଥ ପ୍ରୀତି, କୁଳବୃଦ୍ଧ ମଧୁସୂଦନ ଦାସଙ୍କ ପ୍ରତି ଗଭୀର ମମତ୍ୱବୋଧ ମୋତେ ମୁଗ୍ଧ କରେ । ଡକ୍ଟର ସଦାଶିବ ମିଶ୍ର ଓଡ଼ିଆ ଭାଷା ଓ ସାହିତ୍ୟର ବିରୋଧୀ ଥିଲେ ବୋଲି ମୁଁ ଶୁଣିଥାଏ । ଅଥଚ ତାଙ୍କର 'ଅର୍ଥ ଓ ଅର୍ଥାନ୍ତର',

'ମାତୃପୂଜା ମଣ୍ଡପ' ପୁସ୍ତକ ଦୁଇଟି ପଢ଼ି ମନେମନେ ଭାବୁଥାଏ ଇଏ କ'ଣ ପ୍ରକୃତରେ ଓଡ଼ିଆ ଭାଷାର ବିରୋଧୀ ? ଉତ୍କଳ ପାଠକ ସମାଜର ସଭାପତି ଭାବରେ ମୁଁ ତାଙ୍କୁ ଦେଖିଛି, ଓଡ଼ିଆ ଭାଷା ଓ ସାହିତ୍ୟକୁ ଭଲ ପାଉଥିବା ମଣିଷଟିକୁ ଉପଲବ୍ଧି କରିଛି । ଥରେ ତାଙ୍କ ବାସଭବନରେ ସ୍ୱେ ଯେପରି ମାନସିଂହଙ୍କ କବିତା ଆବୃତ୍ତି କରି ମୋତେ ଶୁଣାଇଲେ ମୁଁ ଚକିତ ହୋଇଗଲି । ତାଙ୍କ ପ୍ରବନ୍ଧ ଉପରେ ମୁଁ ଆଲୋଚନା ଲେଖିଛି । ସଚ୍ଚିଦାନନ୍ଦ ରାଉତରାୟଙ୍କ କଟକ ଘରକୁ ମୁଁ କେତେଥର ଯାଇଛି । ତାଙ୍କ ଦିଗନ୍ତ ପତ୍ରିକା ସହିତ ସଂପୃକ୍ତ ହୋଇଛି । ସେ ମଧ୍ୟ 'ଶିକାର' ଗଳ୍ପ ସଂପର୍କିତ ମୋ ଅଭିମତକୁ ପ୍ରଶଂସା କରିଛନ୍ତି । କିଶୋରୀ ଚରଣ ଦାସ ମୋତେ ବହୁତ ଶ୍ରଦ୍ଧା କରନ୍ତି । ତାଙ୍କ ଘରେ କେତେଥର ମୋ ସହିତ ଆଲୋଚନା କରିଛନ୍ତି । ମୁଁ ତାଙ୍କ ଗଳ୍ପ ଉପରେ ଆଲୋଚନାଟିଏ ଲେଖିଥିଲି ପ୍ରଥମେ ୧୯୭୧ ମସିହାରେ । ସେ ସେହି 'କିଶୋରୀ ଗଳ୍ପ-ମାନସ' ଲେଖାଟିକୁ ସାଇତି ରଖିଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥିଲାବେଳେ ସେ ଥରେ ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ଏକ ସଭାରେ ମୋର ପ୍ରଶଂସା କଲେ ଓ ସେହି ଲେଖାଟି ଉଦ୍ଧାର କଲେ । ମୁଁ ବିସ୍ମିତ ହେଲି । ପରେ ମୁଁ ତାଙ୍କର ପୂର୍ଣ୍ଣାଙ୍ଗ ଗଳ୍ପ ଉପରେ ଓ ଉପନ୍ୟାସ ଉପରେ ଆଲୋଚନା ଲେଖିଥିଲି । ବିଶିଷ୍ଟ ଆଇନଜୀବୀ ଓ ଏକଦା ପ୍ରଗତିବାଦୀ ଚେତନାର ଲେଖକ ଶ୍ରୀଯୁକ୍ତ ଗଙ୍ଗାଧର  ରଥ ନିଜ ନାମରେ ଗୋଟିଏ ଫାଉଣ୍ଡେସନ କଲେ । ପ୍ରତି ବର୍ଷ ବିଦ୍ୟାଭାରତୀ ପୁରସ୍କାର ପ୍ରଦାନ କଲେ । ଗୋଟିଏ ବର୍ଷ ସେ କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କୁ ପୁରସ୍କାର ଦେବା ଉପଲକ୍ଷେ ହଠାତ୍ ଆସି ମୋ ଘରେ ପହଞ୍ଚିଗଲେ । ମୋତେ ରାଜେନ୍ଦ୍ରବାବୁଙ୍କ କବିତା ସଂପର୍କରେ ପଚାରିଲେ । ସେପର୍ଯ୍ୟନ୍ତ ମୁଁ ଜାଣି ନ ଥାଏ କାହିଁକି ପଚାରୁଛନ୍ତି । ମୁଁ ତ ରାଜେନ୍ଦ୍ରବାବୁଙ୍କ କବିତାକୁ ଭଲ ପାଏ । ତାଙ୍କ କବିତାର ବିବିଧତା ମୋତେ ଆକର୍ଷଣ କରେ । ମୁଁ ତାଙ୍କ କବିତାର ବୈଶିଷ୍ଟ୍ୟ ସଂପର୍କରେ କେତୋଟି କଥା କହିଲି । ସେ ତା'ପରେ କହିଲେ ଏଥର ରାଜେନ୍ଦ୍ର କିଶୋର ପଣ୍ଡାଙ୍କୁ ବିଦ୍ୟାଭାରତୀ ପୁରସ୍କାର ଦେବାକୁ ସେ ସ୍ଥିର କରିଛନ୍ତି । ମୁଁ ଖୁସି ହେଲି । ମୋତେ ସେ ଅନୁରୋଧ କଲେ ସେହି ସଭାରେ ମୁଁ ରାଜେନ୍ଦ୍ରବାବୁଙ୍କ କବିତା ସଂପର୍କରେ କହିବା ପାଇଁ । ମୁଁ ମଧ୍ୟ ଯାଇଥିଲି । ତାଙ୍କ ପ୍ରତିଷ୍ଠିତ ଫାଉଣ୍ଡେସନ ଏବେ ମଧ୍ୟ ଅଛି ମାତ୍ର ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ବିଚାରବୋଧ ମଳିନ ପଡ଼ିଯାଇଥିଲା ପରି ଲକ୍ଷ୍ୟ କରୁଛି ।

ଏହିପରି ଅନେକ ବିଦ୍ୱାନ୍ ଲେଖକଙ୍କ ସହିତ ମୋର ସଂପର୍କ ରହିଥିଲା ଓ ଏବେ ମଧ୍ୟ କେତେକଙ୍କ ସହିତ ରହିଛି । ଡକ୍ଟର ବନବିହାରୀ ପଣ୍ଡା ପୋଲିସ୍ ବିଭାଗର ଡି.ଜି. ଭାବରେ କାର୍ଯ୍ୟ କରି ଅବସର ନେଇଛନ୍ତି । ସେ ପଲିମର୍ ବିଜ୍ଞାନରେ ଗବେଷଣା କରି ପିଏଚ.ଡି. ପାଇଛନ୍ତି । ସେ ଜଣେ ନାଟ୍ୟକାର, କବି ଓ ପ୍ରାବନ୍ଧିକ । ମୋ ସହିତ ତାଙ୍କର

ସାହିତ୍ୟିକ ସଂପର୍କ । ମୁଁ ତାଙ୍କ ଘରକୁ ଯାଏ ଓ ସେ ମଧ୍ୟ ମୋ ଘରକୁ, ପୁଅ ଝିଅଙ୍କ ବାହାଘରକୁ ଆସିଛନ୍ତି । ସେ ଜଣେ ସହାନୁଭୂତିଶୀଳ ହୃଦୟର ମଣିଷ । ମୁଁ ତାଙ୍କ କବିତା ଉପରେ ସମାଲୋଚନା ଲେଖିଛି । ତାଙ୍କୁ କାହାରି ସଂପର୍କରେ ଅନୁରୋଧ କଲେ ଏଡ଼ାଇ ଦିଅନ୍ତି ନାହିଁ । ସାହାଯ୍ୟ କରନ୍ତି । କେତେଜଣ ଗରିବ ପିଲାଙ୍କୁ ମୋ ଅନୁରୋଧକ୍ରମେ ସେ ପୋଲିସ ବିଭାଗରେ ରଖି ଦେଇଥିଲେ । ତାଙ୍କ ସହିତ ମୋର ସଂପର୍କ ଏବେ ମଧ୍ୟ ନିବିଡ଼ । ଅନାଦି ସାହୁ ଯେତେବେଳେ ଅଖଣ୍ଡ କଟକ ଜିଲ୍ଲାର ଏସ୍.ପି. ଥିଲେ ସେହି ଦିନରୁ ତାଙ୍କ ସହିତ ମୋର ସଂପର୍କ । ଏହି ସଂପର୍କ କେବଳ ସାହିତ୍ୟିକ ସଂପର୍କ । ସେ ଯେତେବେଳେ ପ୍ରଥମେ ଗଳ୍ପ ଲେଖୁଥିଲେ ସେତେବେଳେ ସେ ମୋ ଘରକୁ ଆସିଛନ୍ତି ଅତିରିକ୍ତ ଏସ୍.ପି. ସୁରେନ୍ଦ୍ର ସ୍ୱାଇଁଙ୍କ ସହିତ । ସେଦିନ ମୋ ଘରେ ମୁଁ ଅନୁଭବ କଲି ପୋଲିସ ପୋଷାକ ଅନ୍ତରାଳରେ ଥିବା ସେମାନଙ୍କର ମାନବିକ ବ୍ୟକ୍ତିତ୍ୱକୁ । ମୁଁ ତାଙ୍କୁ ଉତ୍ସାହ ଦେଲି ଓ ଷୋଳଟି ଗଳ୍ପକୁ ନେଇ ମୁଁ ପ୍ରକାଶ କରାଇଲି ତାଙ୍କର ପ୍ରଥମ ଗଳ୍ପ ପୁସ୍ତକ 'ପାଣ୍ଡୁର ବଳୟ' । ଓଡ଼ିଆ ଗଳ୍ପ ସାହିତ୍ୟରେ ଏହା ଥିଲା ସଂପୂର୍ଣ୍ଣ ନୂତନ ଥିମ୍‌କୁ ନେଇ । ଏହା ପରେପରେ ସେ ରେଭେନ୍ସା କଲେଜରୁ ନାନା ପୁସ୍ତକ ନେଇ ଅଧ୍ୟୟନ କଲେ । ବେଦବେଦାନ୍ତ ଗୀତା ଭାଗବତ ବୌଦ୍ଧଶାସ୍ତ୍ର, ଜୈନଶାସ୍ତ୍ର, ତନ୍ତ୍ରଶାସ୍ତ୍ର, ଶିଳ୍ପଶାସ୍ତ୍ର ଇତ୍ୟାଦି ଅଧ୍ୟୟନ କଲେ । ନିଜେ ଅଙ୍ଗେ ନିଭାଇଥିବା ଘଟଣା ଓ ନିଜର ଅନୁଭବ ଅଭିଜ୍ଞତାକୁ ନେଇ ସେ ରଚନା କଲେ ନକ୍ସାଲବାଦୀ ଉପନ୍ୟାସ 'ମୁଣ୍ଡମେଖଳା' । ହିନ୍ଦୁ ମୁସଲମାନ ସଂଘର୍ଷକୁ ନେଇ, 'ଶୋଣିତ ଫଲ୍‌ଗୁ' ସହରର ଅସାମାଜିକ ଚରିତ୍ରକୁ ନେଇ 'ଜଙ୍ଗଲି ସହର', ରାଜନୀତି-ପ୍ରଶାସନ ଓ ପୋଲିସକୁ ନେଇ 'କ୍ଷଣଭଙ୍ଗୁର' ଇତ୍ୟାଦି ନାନା ଉପନ୍ୟାସ । ପୌରାଣିକ ପ୍ରସଙ୍ଗ ଉପରେ ଆଧାରିତ ତାଙ୍କର 'ମୟ', 'ଜରାସନ୍ଧ' ଓ 'ବରୁଣ' ସଂପୂର୍ଣ୍ଣ ଭିନ୍ନ ସ୍ୱାଦର ଉପନ୍ୟାସ । ଇତିହାସର ଭିନ୍ନ ଦିଗନ୍ତକୁ ନେଇ ସେ ରଚନା କଲେ 'ରାକାରାୟ', 'ଛିନ୍ନନାଗ' ଓ 'ରାଣୀକର୍ପୂରଶ୍ରୀ' ଉପନ୍ୟାସ । ମୁଁ ତାଙ୍କର ସମସ୍ତ ଲେଖା ଉପରେ ଆଲୋଚନା ଲେଖିଛି । ତାଙ୍କ ସହିତ ମୋର ବନ୍ଧୁତା ନିବିଡ଼ । ଜଣେ ସ୍ପଷ୍ଟବାଦୀ ଓ ସମ୍ବେଦନଶୀଳ ବ୍ୟକ୍ତିତ୍ୱ । ସେ ମଧ୍ୟ ମୋ ଅନୁରୋଧ ରକ୍ଷା କରି କେତେ ଗରିବ ଓ ଅସହାୟ ଶିକ୍ଷିତ ଯୁବକଙ୍କୁ ପୋଲିସ ଚାକିରିରେ ରଖି ଦେଇଥିଲେ । ସୁରେନ୍ଦ୍ରବାବୁ ସତ୍ୟନିଷ୍ଠ ଓ ସଚ୍ଚୋଟ ବ୍ୟକ୍ତି । ଯିଏ ହେଲେ ମଧ୍ୟ ଦୋଷୀକୁ ଛାଡ଼ନ୍ତି ନାହିଁ । ଏସବୁ ସତ୍ତ୍ୱେ ସେ ନିଷ୍ପତ୍ତି ନେବାରେ ଅନେକ ସମୟରେ ଯାହା ବୁଝିଥାନ୍ତି ସେହି ଅନୁସାରେ କାର୍ଯ୍ୟ କରନ୍ତି । ସେ କିନ୍ତୁ ଦୁଃଖୀ ଅସହାୟ ନରନାରୀଙ୍କ ପ୍ରତି ଅତ୍ୟନ୍ତ ସହାନୁଭୂତିଶୀଳ । ଅନାଦିବାବୁ ଚାକିରି ଛାଡ଼ି ରାଜନୀତି କଲେ, ସାଂସଦ ହେଲେ । ଏବେ ସେ ସବୁଥିରୁ ସନ୍ନ୍ୟାସ ନେଇଛନ୍ତି । ପୋଲିସ ବିଭାଗର ଶରତଚନ୍ଦ୍ର ମିଶ୍ର ଡି.ଜି.

ଥିଲାବେଳେ ତାଙ୍କ ସହିତ ମୋର ସଂପର୍କ ବଢ଼ିଉଠିଲା । ସେ ଜଣେ ବିଦ୍ୱାନ୍ ବ୍ୟକ୍ତି । ପୃଥିବୀର ବିଭିନ୍ନ ଦେଶରେ ସେ ଭାରତ ସରକାରଙ୍କ ପକ୍ଷରୁ ନିଯୁକ୍ତି ଲାଭ କରି ନିଜର ଦାୟିତ୍ୱ ଠିକଣା ଭାବରେ ତୁଲାଇବା ସହିତ ସେସବୁ ଦେଶର ରାଜନୀତିକ, ସାଂସ୍କୃତିକ ପରିସ୍ଥିତିକୁ ଗଭୀର ଭାବରେ ଅନୁଶୀଳନ କରିଥିଲେ ଓ ସେହି ଅଭିଜ୍ଞତାକୁ ବିଭିନ୍ନ ପ୍ରବନ୍ଧରେ ପ୍ରକାଶ କରିଥିଲେ । ସେ ମୋତେ ସେସବୁ ପ୍ରବନ୍ଧକୁ ଦେଇଥିଲେ ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ । ମୁଁ ମଧ୍ୟ ତାଙ୍କର ଦୁଇଖଣ୍ଡ ପୁସ୍ତକ ପ୍ରକାଶ କରି ଦେଇଥିଲି । ଏହା ପରେ ସେ ଗଳ୍ପ ପୁସ୍ତକ ପ୍ରକାଶ କଲେ, ଇଂରାଜୀରେ ଉପନ୍ୟାସଟିଏ ଲେଖିଲେ, ଭ୍ରମଣ କାହାଣୀ ଲେଖିଲେ । ମୁଁ ଅନୁଭବ କରିଥିଲି ସେ ଜଣେ ବିଚାରବନ୍ତ ମଣିଷ । ତାଙ୍କ ସାନଭାଇ ବିପିନ ବିହାରୀ ମିଶ୍ର ଜଣେ ସ୍ୱାଭିମାନୀ ଜ୍ଞାନୀ ବ୍ୟକ୍ତି । ସେ ସାହିତ୍ୟ ପ୍ରତି ଗଭୀର ଅନୁରାଗୀ । ତାଙ୍କ ସହିତ ମୋର ସଂପର୍କ ସାହିତ୍ୟକୁ ନେଇ । ସେ ମୋ ଘରକୁ ଆସିଛନ୍ତି । ମୋର ସାନପୁଅର ଅଳ୍ପ ବୟସରେ ମୃତ୍ୟୁ ସମ୍ବାଦ ପାଇ ସେ ମୋ ଘରକୁ ସଙ୍ଗେସଙ୍ଗେ ଆସି ସମ୍ବେଦନା ପ୍ରକାଶ କଲେ । ମୋ ଲାଇବ୍ରେରୀ ଦେଖି ଭାରି ଖୁସି ହୋଇଥିଲେ । ତାଙ୍କର ପ୍ରଥମ ଉପନ୍ୟାସ 'ସହରର ଉପକଣ୍ଠେ' ମୋତେ ମୁଗ୍ଧ କରିଥିଲା । ସେ ଅନେକ ଗଳ୍ପ ଲେଖିଛନ୍ତି, ପିଲାମାନଙ୍କ ପାଇଁ ଧାରାବାହିକ ଭାବରେ ଅନେକ ପଶୁପକ୍ଷୀ ସମ୍ବନ୍ଧୀୟ ରଚନା ଲେଖିଛନ୍ତି । ଜଣେ ସାରସ୍ୱତ ସାଧକ ଭାବରେ ସେ ବେଶ୍ ଶ୍ରଦ୍ଧାଶୀଳ ସ୍ରଷ୍ଟା । ସୂର୍ଯ୍ୟମଣି ତ୍ରିପାଠୀ ମୋର ବହୁ ଦିନର ବନ୍ଧୁ । ସେ ନାଟକ ଲେଖିଛନ୍ତି, ଗଳ୍ପ ଲେଖିଛନ୍ତି, କବିତା ଲେଖିଛନ୍ତି । ବିଶ୍ୱଭାରତୀରେ ମୁଁ ଥିଲାବେଳେ ସେ ଯାଇଛନ୍ତି ସେଠାକୁ ଓ ଓଡ଼ିଆ ବିଭାଗରେ ସୁଚିନ୍ତିତ ଭାଷଣ ଦେଇଛନ୍ତି । ମୋ ଅନୁରୋଧକ୍ରମେ ସେ ମଧ୍ୟ ଦଶହଜାର ଟଙ୍କା ବିଶ୍ୱଭାରତୀ ଦୀପିକା ପ୍ରକାଶନ ପାଇଁ ଦେଇଛନ୍ତି । ଅନାଦିବାବୁଙ୍କୁ ମଧ୍ୟ ସେତେବେଳେ ମୁଁ ଡାକିଥିଲି ଗୋଟିଏ ଗଳ୍ପ ସେମିନାରକୁ । ତାଙ୍କର ବକ୍ତବ୍ୟ ସମସ୍ତଙ୍କୁ ଚମତ୍କୃତ କରିଥିଲା । ପୋଲିସ ବିଭାଗର ଉଚ୍ଚଅଧିକାରୀ ରାଜକିଶୋର ଦାସଙ୍କ କବିତ୍ୱ ମୋତେ ଆନନ୍ଦ ଦିଏ । ସେ ଜଣେ ବନ୍ଧୁବତ୍ସଳ ବ୍ୟକ୍ତି ।

ମନମୋହନ ମିଶ୍ର ମୋ ଘର ପାଖରେ ଘର କରିଥିଲେ । ସେଠାରେ ସେ ରହୁଥିଲେ । ଅନେକ ସମୟରେ ସେ ମୋ ଘରକୁ ଆସନ୍ତି ଓ ମୁଁ ମଧ୍ୟ ତାଙ୍କ ଘରକୁ ଯାଏ । ସବୁବେଳେ ସେ ସ୍ମିତମୁଖ । ତାଙ୍କ ଭିତରେ କ'ଣ ଦୁଃଖ ଥାଏ ତାହା ବାହାରକୁ ଜଣାଯାଏ ନାହିଁ । ତାଙ୍କ ସହିତ ମୁଁ ଅନେକ ସଭାସମିତିକୁ ଯାଇଛି । ସିଏ ତ କମ୍ୟୁନିଷ୍ଟ ଆଦର୍ଶର ମଣିଷ । ଅଥଚ ତାଙ୍କ ଭିତରେ ଆଦିବାସୀ ଓ ଦୁର୍ଗତ ମଣିଷମାନଙ୍କ ପ୍ରତି ଥିଲା ଗଭୀର ଶ୍ରଦ୍ଧା । ସେ ତ ସହଜରେ ବିପ୍ଳବୀ । ତାଙ୍କ ନାଁରେ କେତେ ମକଦ୍ଦମା । ଏହା ଭିତରେ ସେ ପଢ଼ନ୍ତି ଓ ଲେଖନ୍ତି । ମୁଁ ତାଙ୍କ ଲାଇବ୍ରେରୀରୁ ମାର୍କସ୍‌ବାଦୀ ଦର୍ଶନର

କେତେ ବହି ଆଣି ପଢ଼ିଛି । ଥରେ ମୁଁ ଚାଉଳିଆଗଞ୍ଜର ରାଧାକୃଷ୍ଣ ମନ୍ଦିରରେ ଏକ ଧର୍ମସଭାକୁ ଡାକିଲି । ସେ ମଧ୍ୟ ଆସି ଭାଷଣ ଦେଲେ । ମୋ ଅନୁରୋଧକ୍ରମେ ଚାଉଳିଆଗଞ୍ଜର ବିଶିଷ୍ଟ ବ୍ୟକ୍ତି ଲୋକନାଥ ପାତ୍ରଙ୍କ ପୁତ୍ର ବିଜୟର ବାହାଘର ଉପଲକ୍ଷେ ବରଯାତ୍ରୀରେ ବାଲେଶ୍ୱର ଯାଇଥିଲେ । ଏପରି ଜଣେ ବ୍ୟକ୍ତିଙ୍କର ଦୁଃଖକୁ ମୁଁ ଅନୁଭବ କରିଥିଲି ତାଙ୍କ ଘରେ । ସେଦିନ ତାଙ୍କ ପତ୍ନୀ କୌଣସି କାରଣରୁ ଅଗ୍ନିଶର୍ମା ହୋଇ ଘରେ ପ୍ରଳୟ କାଣ୍ଡ କରୁଥାନ୍ତି । ମନମୋହନବାବୁ ସେଇମିତି ହସି ହସି ତାଙ୍କୁ ଧରିବାକୁ ଗଲାବେଳେ ସେ କ୍ରୁଦ୍ଧ ହୋଇ ଗୋଟିଏ କାଠ ଫାଳିଆରେ ତାଙ୍କ ହାତରେ ପିଟିଦେଲେ । ମୁଁ ସେହି ସମୟରେ ପହଞ୍ଚି ଏ ଘଟଣା ଦେଖି ମର୍ମାହତ ହେଲି ମାତ୍ର ମନମୋହନବାବୁ ଯେପରି କିଛି ହୋଇ ନାହିଁ ସେହିପରି ହସ ହସ ହୋଇ ମୋ ସହିତ କଥାବାର୍ତ୍ତା କଲେ । ସେ ଜଣେ ଜ୍ଞାନୀ ବ୍ୟକ୍ତି । ଅନେକ ଗ୍ରନ୍ଥ ସେ ଲେଖିଛନ୍ତି । ଏପରି ଜଣେ ତ୍ୟାଗୀ ବିପ୍ଳବୀ ସମାଜବାଦୀ ବ୍ୟକ୍ତି ଓ ସାରସ୍ୱତ ସାଧକଙ୍କ ସହିତ ମୋର ସଂପର୍କ ବାସ୍ତବିକ୍ ମୋତେ ବହୁ ଭାବରେ ଅନୁପ୍ରାଣିତ କରିଛି ଓ ମୋ ଲେଖାରେ ମଧ୍ୟ ତାହା ପ୍ରତିଫଳିତ ହୋଇଛି ।

ବିଶ୍ୱନାଥ ସ୍ୱାଇଁଙ୍କ ସହିତ ମୋର ପ୍ରଥମ ପରିଚୟ ଘଟିଥିଲା ଯେତେବେଳେ ମୁଁ ଫକୀରମୋହନ କଲେଜରେ ଥିଲି । ସେ ପୋଲିସ ବିଭାଗରେ ଇଂଜିନିୟର ଥିଲେ । ତାଙ୍କ ଘର ବୟାଳିଶମୌଜାର କୁଳସରିଚୁଆଁ ଗ୍ରାମରେ । ମୋ ସହିତ ତାଙ୍କର ବନ୍ଧୁତା ବଢ଼ିଗଲା । ତାଙ୍କ ଦୁଇଭାଇ ପ୍ରେମାନନ୍ଦ ଓ ହୃଦାନନ୍ଦ ମୋର ଛାତ୍ର । ବିଶ୍ୱନାଥବାବୁ କଟକ ଆସିଲେ । ବାଦାମବାଡ଼ିରେ ଜାଗା କିଣି ଘର କଲେ । ପ୍ରେମାନନ୍ଦ ପୋଲିସ ଚାକିରି କଲା । ନିଜର ଦକ୍ଷତା ଦେଖାଇଲା । ସେ ଡି.ଏସ୍.ପି. ହୋଇ ଅବସର ନେଲା । ଏବେ ସେ ହାଇକୋର୍ଟରେ ଓକିଲାତି କରୁଛି । ହୃଦାନନ୍ଦ ସ୍ୱତନ୍ତ୍ର ହୋଇ ବହୁ ବସ୍‌ର ମାଲିକ ହେଲା । ବିଶ୍ୱନାଥବାବୁଙ୍କ ସହିତ ମୋର ସଂପର୍କ ଏବେ ମଧ୍ୟ ଅତୁଟ ରହିଛି । ମୋତେ ଅରୁଣୋଦୟ ନଗର ସାଂସ୍କୃତିକ ପରିଷଦ ତରଫରୁ ଭବ୍ୟ ସମ୍ବର୍ଦ୍ଧନା ଦେଇଛନ୍ତି । 'ଅରୁଣୋଦୟ' ପତ୍ରିକାରେ ପ୍ରତି ବର୍ଷ ମୋର ଲେଖା ବାହାରେ । ବିଶ୍ୱନାଥ ବାବୁ ମଧ୍ୟ ଗଳ୍ପ ଓ କବିତା ଲେଖନ୍ତି । ତାଙ୍କ କବିତା ବହିର ମୁଁ ମୁଖବନ୍ଧ ଲେଖିଛି । ତାଙ୍କ ସହିତ ମୋର ପାରିବାରିକ ସଂପର୍କ । ଜଗତପୁରଠାରେ ଜଗନ୍ନାଥ ଇଂଜିନିୟରିଂ କଲେଜର ସେ ଅନ୍ୟତମ ସ୍ରଷ୍ଟା । ସବୁ କରି ମଧ୍ୟ ସେ ଏବେ କେଉଁଥିରେ ନାହାନ୍ତି । ତାଙ୍କର ବନ୍ଧୁତା ମୋତେ ମୁଗ୍ଧ କରେ । ମୋର ପ୍ରିୟ ବନ୍ଧୁ ଶୈଳଜ ରବିଙ୍କ ସହିତ ମୋର ସଂପର୍କ ପ୍ରାୟ ଚାଳିଶ ବର୍ଷର । ସେ ସ୍ୱାଧୀନଚେତ୍ତା । ଭାରି ସ୍ନେହୀ ମଣିଷଟିଏ । ଅହଙ୍କାର ନାହିଁ । ଭାରି ବନ୍ଧୁବତ୍ସଳ । ତାଙ୍କ ଚିନ୍ତାଶୀଳ ପ୍ରବନ୍ଧ ଓ କବିତା ମୋତେ ମୁଗ୍ଧ କରେ । କେତେ ସଭାସମିତିକୁ ଆମେ ସାଙ୍ଗ ହୋଇ ଯାଇଛୁ । ସେ ଓଡ଼ିଆ ସାହିତ୍ୟ ଏକାଡେମୀର

ପୁରସ୍କାରକୁ ପ୍ରତ୍ୟାଖ୍ୟାନ କରି ନିଜର ସ୍ୱାଭିମାନର ପରିଚୟ ଦେଇଛନ୍ତି । କବି ଜୟନ୍ତ ମହାପାତ୍ର ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବ୍ୟକ୍ତି । ଫକୀରମୋହନ କଲେଜରେ ମୁଁ ଥିଲାବେଳେ ସେ ମଧ୍ୟ ପଦାର୍ଥ ବିଜ୍ଞାନର ଅଧ୍ୟାପକ ଥିଲେ । ସେତେବେଳେ ସେ ଟାଇପ୍ ରାଇଟର୍ ମେସିନ ପାଖରେ ବସି ନିଜର ଇଂରାଜୀ କବିତାକୁ ଟାଇପ୍ କରି ବିଦେଶର ପତ୍ରପତ୍ରିକାକୁ ପଠାଉଥିଲେ । ପରେ ସେ କଟକ ଆସିଲେ । ଇଂରାଜୀ ଓ ଓଡ଼ିଆରେ ଅନେକ କବିତା ଲେଖିଲେ । ଆତ୍ମଜୀବନୀ ଲେଖିଲେ । ତାଙ୍କର ସ୍ନେହ ମୁଁ ଉପଲବ୍ଧି କରିଛି । ତାଙ୍କ ଉପରେ ମୁଁ ଲେଖିଛି ପ୍ରବନ୍ଧ ।

ଆଧୁନିକ ଓଡ଼ିଆ କବିତାର ଦୁଇ ପ୍ରଥିତଯଶା କବି ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର । ସେମାନଙ୍କର ପଦପଦବୀ ମୋ ପାଖରେ ବଡ଼ ନୁହେଁ; ବଡ଼ ସେମାନଙ୍କର କବିତା ଓ ପ୍ରବନ୍ଧ । ଉଭୟଙ୍କ କବିତା ମୁଁ ପଢ଼ିଛି । ତନ୍ମୟ ହୋଇଛି । ଲେଖିଛି ମଧ୍ୟ ଆଲୋଚନା । ରମାକାନ୍ତବାବୁଙ୍କ ସହିତ ମୁଁ କେତୋଟି ସଭାକୁ ଯାଇଛି । ଅନୁଭବ କରିଛି ତାଙ୍କର ସହାନୁଭୂତିଶୀଳ ବ୍ୟକ୍ତିତ୍ୱକୁ । ମୁଁ ଅନୁଭବିଛି ତାଙ୍କର କବି ବ୍ୟକ୍ତିତ୍ୱକୁ ସୋରୋ ରାଧାନାଥ ଜୟନ୍ତୀରେ ଓ ଦାମନଯୋଡ଼ି ସାହିତ୍ୟ ପରିଷଦରେ । ସେଦିନ ରାତ୍ରିରେ ଆମେ ଦାମନଯୋଡ଼ି ଗେଷ୍ଟହାଉସରେ ଥାଉ । ମୋ ସହିତ ମୋ ସ୍ତ୍ରୀ ମଧ୍ୟ ଯାଇଥାଏ । ଆମେ ଗୋଟିଏ ରୁମ୍‌ରେ ଥାଉ । ସେଦିନ ମୋ ଦେହ ଅସୁସ୍ଥ ହେଲା । ସେ ଏକଥା ଶୁଣି ମୋ ରୁମ୍‌କୁ ଆସିଲେ । ମୋତେ ହୋମିଓପାଥି ଔଷଧ ଦେଲେ । ସେଦିନ ଅନେକ ସମୟ ସେ ଗପିଲେ । ମୁଁ ଅନୁଭବ କଲି ତାଙ୍କ କବି ବ୍ୟକ୍ତିତ୍ୱର ଅନ୍ତରାଳରେ ଥିବା ସହାନୁଭୂତିଶୀଳ ମଣିଷପଣିଆକୁ । ସୀତାକାନ୍ତବାବୁଙ୍କ ସହିତ ମୋର ସଂପର୍କ ଏତେ ନିକଟବର୍ତ୍ତୀ ନ ହେଲେ ମଧ୍ୟ ତାଙ୍କ ସହିତ କେତୋଟି ସଭାରେ ମୁଁ ଯୋଗ ଦେଇଛି । ଏହିପରି ମୁଁ ଆହୁରି ଅନେକଙ୍କ ସଂପର୍କରେ ଆସିଛି । ମୁରାରିମୋହନ ଜେନା ମୋତେ ସାନଭାଇ ପରି ସ୍ନେହ କରୁଥିଲେ । ତାଙ୍କ ଭିତରେ ମୁଁ ଅନୁଭବ କରିଥିଲି ପ୍ରଚଣ୍ଡ ଜାତୀୟ ସ୍ୱାଭିମାନବୋଧ । ପରମାନନ୍ଦ ଅଧିକାରୀ, ବ୍ରଜମୋହନ ମହାନ୍ତି, ବିଚିତ୍ରାନନ୍ଦ କର, ନଦିଆ ବିହାରୀ ମହାନ୍ତି, କୃଷ୍ଣଚନ୍ଦ୍ର ମହାନ୍ତି ପ୍ରମୁଖ ବହୁ ବ୍ୟକ୍ତିଙ୍କ ସହିତ ମୋର ସଂପର୍କ ଥିଲା । ସେମାନଙ୍କର ଶ୍ରଦ୍ଧା ମୋ ଭିତରେ ଏବେ ମଧ୍ୟ ଜୀବନ୍ତ । ଆହୁରି ଅନେକ ବ୍ୟକ୍ତିଙ୍କ ସହିତ ମୋର ବନ୍ଧୁତା ରହିଛି । ଅବସରପ୍ରାପ୍ତ ଜିଲ୍ଲାପାଳ ପଦ୍ମନାଭ ସାମଲଙ୍କ ଲୋକାଭିମୁଖୀ ସମ୍ବେଦନଶୀଳ ବ୍ୟକ୍ତିତ୍ୱ ମୋତେ ମୁଗ୍ଧ କରେ । ତାଙ୍କ ସହିତ ମୋର ସଂପର୍କ ସ୍ଥାପିତ ହୁଏ ମୋର ପ୍ରାକ୍ତନ ଛାତ୍ର ଅବସରପ୍ରାପ୍ତ ମାଜିଷ୍ଟ୍ରେଟ ଶଶିଭୂଷଣ ଦାସଙ୍କ ମାଧ୍ୟମରେ । ଶଶିବାବୁ ଧର୍ମପ୍ରାଣ । ଅବସର ପରେ ସେ କବିତା ଲେଖୁଛନ୍ତି । ଭଗବତ ଗୀତାର ସେ ପଦ୍ୟାନୁବାଦ କରିଛନ୍ତି । ଭାଗବତର ବିଭିନ୍ନ ପ୍ରସଙ୍ଗ ଓ ଚରିତ୍ରକୁ ନେଇ

ସେ ଛନ୍ଦୋବଦ୍ଧ କବିତା ଲେଖିଛନ୍ତି । ସାମାଜିକ ଓ ରାଜନୀତିକ ସମସ୍ୟାକୁ ନେଇ ମଧ୍ୟ ସେ ଲେଖିଛନ୍ତି କବିତା । ଭଗବତ ଗୀତାର ପଦ୍ୟାନୁବାଦ ଓ ଭାଗବତ ଗୀତିକଲ୍ଲୋଳ ବହି ଦୁଇଟିର ଉନ୍ମୋଚନ ଉତ୍ସବ ପାଇଁ ଶଶିବାବୁ ମୋତେ ନେଇଗଲେ ପଦ୍ମନାଭବାବୁଙ୍କ ଘରକୁ । ସେହି ବହି ଦୁଇଟିର ମୁଖବନ୍ଧ ମୁଁ ଲେଖିଥାଏ । ସେଦିନ ପଦ୍ମନାଭବାବୁ ଏତେ ଖୁସି ହୋଇଗଲେ ଯେ ମୋତେ ଭାଇନା ଡାକିବା ଆରମ୍ଭ କରିଦେଲେ । ସେ ସଙ୍ଗେ ସଙ୍ଗେ ଗଜପତିଙ୍କୁ ଫୋନ କଲେ ପୁସ୍ତକ ଦୁଇଟିର ଉନ୍ମୋଚନ ଉତ୍ସବରେ ମୁଖ୍ୟଅତିଥି ହେବାକୁ । ଗଜପତିଙ୍କ ସମ୍ମତିକ୍ରମେ ଆମେ ତିନିଜଣ ତାଙ୍କର ଭୁବନେଶ୍ୱର ବାସଭବନକୁ ଗଲୁ । ସେଦିନ ମୁଁ ଗଜପତି ଦିବ୍ୟସିଂହଦେବଙ୍କୁ ଦେଖିଲି ଯେ ସେ କେତେ ଉଦାର, ଧର୍ମପ୍ରାଣ ଓ ବିଦ୍ୱାନ୍ । ତାଙ୍କ ପାଠାଗାର ଦେଖି ଅଭିଭୂତ ହେଲି । ଜଗନ୍ନାଥ ଚେତନାର ସେ ଜୀବନ୍ତ ପ୍ରତିଭୂ । ତାଙ୍କ ଉପଦେଶକ୍ରମେ ଆମେ ପୁରୀରୁ ଜଗନ୍ନାଥ ମୂର୍ତ୍ତି ଆଣିଲୁ ଓ ସଭାରେ ଜଗନ୍ନାଥ ହେଲେ ସଭାପତି । ଗଜପତି ହେଲେ ମୁଖ୍ୟ ଅତିଥି । ସ୍ୱାମୀ ଶିବ ଚିଦାନନ୍ଦ ସରସ୍ୱତୀ ଓ ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀ ସମ୍ମାନିତ ଅତିଥି, ମୁଁ ଏବଂ ପଦ୍ମନାଭବାବୁ ହେଲୁ ବକ୍ତା । ତାହା ଥିଲା ଆଧ୍ୟାତ୍ମିକ ପରିବେଶରେ ଏକ ଭିନ୍ନ ସ୍ୱାଦର ସଭା । ସେହି ଦିନରୁ ପଦ୍ମନାଭବାବୁଙ୍କ ସହିତ ମୋର ସଂପର୍କ ଘନିଷ୍ଠ ହୋଇଗଲା । ସେ ବାୟାବାବାଙ୍କ ଭକ୍ତ । କାରଣ ବାବା ତାଙ୍କୁ ପାଠ ପଢ଼ାଇ ମଣିଷ କରିଥିଲେ । ବାୟାବାବାଙ୍କ କଥା କହିଲେ ସେ କାନ୍ଦିପକାନ୍ତି । ଭୁବନେଶ୍ୱରର ବାୟାବାବା ମଠ, କେନ୍ଦ୍ରାପଡ଼ା ବାୟାମଠ ଓ ମାଳମଠକୁ ସେ ମୋତେ ଡାକିଛନ୍ତି ବକ୍ତୃତା ଦେବାକୁ । ସେ ଓଡ଼ିଶାର ବାୟାମଠମାନଙ୍କର ସଭାପତି ଅଛନ୍ତି । କେନ୍ଦ୍ରାପଡ଼ା ବାୟାମଠର ପାଚେରି ପାଇଁ ସେ ମୋତେ ବିଧାୟିକା ଡକ୍ଟର ସିପ୍ରା ମଲ୍ଲିକଙ୍କୁ କହିବା ପାଇଁ କହିଲେ । ମୁଁ ମଧ୍ୟ ସିପ୍ରାଦେବୀଙ୍କୁ କହିଲି ଓ ତାଙ୍କ ଅନୁଦାନରେ ପ୍ରାଚୀର ନିର୍ମିତ ହୋଇଛି । ପଦ୍ମନାଭ ବାବୁ ତାଙ୍କ ଗ୍ରାମ ଯଶୀପୁରଠାରେ ଏକ ଶିବମନ୍ଦିର ଓ ଏକ ପାଠାଗାର ଭବନ ନିର୍ମାଣ କରାଇଅଛନ୍ତି । ସେଠାକୁ ମଧ୍ୟ ସେ ମୋତେ ଡାକିଛନ୍ତି ଭାଷଣ ଦେବାକୁ । ସେ କଟକ ରାମକୃଷ୍ଣ କୁଟୀରର ମଧ୍ୟ ସଭାପତି । ବିଷ୍ଣୁଚରଣ ଜେନା ତାହାର ସଂପାଦକ । ବିଷ୍ଣୁବାବୁ ମାଧ୍ୟମିକ ଶିକ୍ଷା ପରିଷଦ ହାଇସ୍କୁଲରୁ ପ୍ରଧାନ ଶିକ୍ଷକ ଭାବରେ ଅବସର ଗ୍ରହଣ କରିଛନ୍ତି । ସେ ଜଣେ ହୃଦୟବାନ୍ ବ୍ୟକ୍ତି ଓ ଶିକ୍ଷାବିତ୍ । ସାହିତ୍ୟ ଓ ସଂସ୍କୃତି ପ୍ରତି ତାଙ୍କର ଅଛି ଗଭୀର ଅନୁରାଗ । ପ୍ରଫେସର ମାଧବଚନ୍ଦ୍ର ଶତପଥୀ ଧୀରସ୍ଥିର ନିରହଂକାର ମଣିଷ ପରି ବିଦ୍ୱାନ୍ ମଣିଷଟିଏ । ଯେତେବେଳେ ତାଙ୍କ କନ୍ୟାର ପିଏଚ.ଡି. ସନ୍ଦର୍ଭ ପ୍ରସ୍ତୁତି ପାଇଁ ତାଙ୍କର ମାର୍ଗଦର୍ଶକ ବଡ଼ ଅସୁବିଧାରେ ପକାଉଥିଲେ । ସେହି ସମୟରେ ସେ ମୋ ପାଖକୁ ଆସିଥିଲେ ଓ ସେହି ଦିନରୁ ତାଙ୍କ ସହିତ ମୋର ଘନିଷ୍ଠତା ପ୍ରତିଷ୍ଠିତ ହେଲା । ସେ ଶିକ୍ଷା ବିଭାଗର ପ୍ରଫେସର

ଥିଲେ, ଅବସର ପରେ କେତେ କଲେଜର ଅଧ୍ୟକ୍ଷ ହେଲେ ମାତ୍ର ସେ କେବେବି ଲେଖାଲେଖିରୁ ବିରତ ହୋଇ ନ ଥିଲେ ଓ ଏବେ ମଧ୍ୟ ଲେଖାଲେଖି କରୁଛନ୍ତି । ହାସ୍ୟ ଓ ବ୍ୟଙ୍ଗ ଗଳ୍ପ ରଚନା କରିବାରେ ସେ ଦକ୍ଷ । ମୁଁ ଦେଖିଛି କେତେଜଣ ଉଦାର ହୃଦୟ ଡାକ୍ତରଙ୍କୁ । ସେମାନଙ୍କର ସଂସ୍କୃତିପ୍ରାଣତା, ରୋଗୀଙ୍କ ପ୍ରତି ଦରଦ ଦେଖାଇ ସେମାନଙ୍କୁ ଆରୋଗ୍ୟ କରାଇବାର ନିଷ୍ଠା, ଦାନଶୀଳତା ଓ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ମୋତେ ମୁଗ୍ଧ କରେ । ପ୍ରଫେସର ଡାକ୍ତର ସନାତନ ରଥ, ପ୍ରଫେସର ଡାକ୍ତର କବିପ୍ରସାଦ ମିଶ୍ର, ପ୍ରଫେସର ଡାକ୍ତର କୈଳାସ ଚନ୍ଦ୍ର ବିଶ୍ୱାଳ, ପ୍ରଫେସର ଡାକ୍ତର କୃପାସିନ୍ଧୁ ପଣ୍ଡା, ପ୍ରଫେସର ଡାକ୍ତର ନିମାଇଁ ଚରଣ ପଣ୍ଡା, ଡାକ୍ତର ଶୁକଦେବ ନାୟକ ପ୍ରମୁଖଙ୍କ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାରରେ ମୁଁ ଅଭିଭୂତ ହୋଇଛି । ମୁଁ ଲକ୍ଷ୍ୟ କରିଛି ଆଜିକାଲି ଏପରି ଡାକ୍ତରଙ୍କ ସଂଖ୍ୟା ଯେପରି ହ୍ରାସ ପାଇଯାଉଅଛି । ସମକାଳୀନ ସମାଜର ରାଜନେତା ଓ ରାଜନୀତି, ସାହିତ୍ୟିକ ଓ ସାହିତ୍ୟ, ଧର୍ମ ଓ ସଂସ୍କୃତି ଇତ୍ୟାଦିକୁ ନେଇ ସେ ଚମତ୍କାର ଗଳ୍ପ ରଚନା କରନ୍ତି । ତାଙ୍କର ପ୍ରିୟ ବନ୍ଧୁ ଓ ମୋର ବଡ଼ଭାଇସଦୃଶ ଅଧ୍ୟାପକ ନବକୁମାର ପୃଷ୍ଟିଙ୍କ ସହିତ ତାଙ୍କର ଆତ୍ମୀୟତା । ଉଭୟ ସନ୍ଧ୍ୟା ସମୟରେ ବୁଲନ୍ତି । ମୁଁ ତାଙ୍କ ଘରକୁ ଯାଏ । ତାଙ୍କର ମୋ ପ୍ରତି ଥିବା ସ୍ନେହକୁ ଅନୁଭବ କରେ । ଏହି ଦୁଇଜଣଙ୍କ ସଂପର୍କରେ ଆସି ମୁଁ ଅନୁଭବ କରେ ଆଜି ଏପରି ଲୋକ ଆଉ କାହାନ୍ତି ? ସାହିତ୍ୟ ସଂପର୍କରେ ଚର୍ଚ୍ଚା ବେଳେ ସେ ଯେପରି ତାଙ୍କ ଦୃଷ୍ଟିକୋଣ ସଂପର୍କରେ କହନ୍ତି ମୁଁ ତନ୍ମୟ ହୁଏ । ଏବେ ବୟସର ଭାରରେ ନଇଁଗଲେଣି, ତଥାପି ସେ ମନ ଓ ହୃଦୟରେ ତରୁଣ ପରି ମୋର ମନେହୁଏ ।

ମୋର କେତେ ପ୍ରାକ୍ତନ ଛାତ୍ରଙ୍କ ସହିତ ମଧ୍ୟ ମୋର ଆନ୍ତରିକ ସମ୍ବନ୍ଧ ରହିଛି । ଡକ୍ଟର ଅଜୟ ମିଶ୍ର, ଡକ୍ଟର ଖଗେନ୍ଦ୍ରନାଥ ମଲ୍ଲିକ, ଡକ୍ଟର ଗୌରାଙ୍ଗ ଚରଣ ଦାଶ, ଡକ୍ଟର ବାବାଜୀ ପଟ୍ଟନାୟକ, ଡକ୍ଟର କୈଳାସଚନ୍ଦ୍ର ଟୀକାୟତ ରାୟ, ଡକ୍ଟର ବିପିନ ନାୟକ, ଡକ୍ଟର ହୃଷୀକେଶ ମଲ୍ଲିକ, ଡକ୍ଟର ଗିରୀଶଚନ୍ଦ୍ର ସାହୁ, ଡକ୍ଟର ଶତ୍ରୁଘ୍ନ ପାଣ୍ଡବ, ଡକ୍ଟର ଅପର୍ଣ୍ଣା ମହାନ୍ତି, ଡକ୍ଟର ଭୁବନାନନ୍ଦ ସାହୁ, ଡକ୍ଟର ଜୟରାମ ସ୍ୱାଇଁ, ଡକ୍ଟର ନିରଞ୍ଜନ ସାହୁ ପ୍ରମୁଖଙ୍କ ସହିତ ମୋର ସଂପର୍କ ରହିଛି । ବିଶେଷତଃ ମୋର ବନ୍ଧୁ ଡାକ୍ତର ସୁବୋଧ ପଟ୍ଟନାୟକ ଓ କବି ଅମରେଶ ପଟ୍ଟନାୟକଙ୍କୁ ମୁଁ ଅତ୍ୟନ୍ତ ଶ୍ରଦ୍ଧା କରେ । ସୁବୋଧବାବୁ ବ୍ରହ୍ମପୁରରେ ଡାକ୍ତରି ପଢୁଥିଲାବେଳେ 'ଉବାଚ' ବୋଲି ଗୋଟିଏ ପତ୍ରିକା ପ୍ରକାଶ କରୁଥିଲେ ଓ 'ଅବୁଝା' ଗୋଷ୍ଠୀ ଗଠନ କରିଥିଲେ । ସେ ଜଣେ ନାଟ୍ୟକାର । ସେ ନିରଭିମାନ ଓ ନିରହଙ୍କାର । ତାଙ୍କୁ ମୁଁ ଗଭୀର ଶ୍ରଦ୍ଧା କରେ । ମୋର ପ୍ରିୟ ବନ୍ଧୁ ନାଟ୍ୟକାର ରମେଶଚନ୍ଦ୍ର ପାଣିଗ୍ରାହୀଙ୍କର ନାଟକ ତ ମୋତେ ପ୍ରଭାବିତ କରେ, ଅଧିକନ୍ତୁ

ତାଙ୍କର ସ୍ୱାଭିମାନ ମୋତେ ମୁଗ୍ଧ କରେ । କବି ଅମରେଶ ମୋର ସାନଭାଇ ପରି । ବନ୍ଧୁ ନାଟ୍ୟକାର କାର୍ତ୍ତିକ ଚନ୍ଦ୍ର ରଥଙ୍କ ଶାରୀରିକ ଅସୁସ୍ଥତା ଭିତରେ ନାଟକ ରଚନା, ସର୍ବଭାରତୀୟ ନାଟ୍ୟ ଉତ୍ସବ ଓ ମଞ୍ଚ ସଂପୃକ୍ତି ମୋତେ ବିସ୍ମିତ କରେ । ବୀଣାପାଣି ମହାନ୍ତିଙ୍କୁ ମୁଁ ସମ୍ମାନ ଦିଏ ମୋର ଅପା ପରି । ସେ ମୋତେ ଭାରି ସ୍ନେହ କରୁଥିଲେ । ତାଙ୍କ ଗଳ୍ପ ସାହିତ୍ୟ ଉପରେ ମୁଁ ଆଲୋଚନା ଲେଖିଛି । ଏବେ କାହିଁକି ତାଙ୍କର ସ୍ନେହ ମୋ ଉପରୁ ତୁଟିଗଲା ପରି ମନେକରୁଛି । 'ମହାନଦୀ' ପତ୍ରିକାର ସଂପାଦକ ଇଂଜିନିୟର ଗୋବିନ୍ଦ ଚନ୍ଦ୍ର ସାହୁ ମୋତେ ଭଲ ପାଆନ୍ତି । ମହାନଦୀ ସାରସ୍ୱତ ସଂସ୍ଥାନ ମୋତେ ସମ୍ମାନିତ କରିଛି । ତାଙ୍କ ପ୍ରେରଣା ଯୋଗୁଁ ମୁଁ 'ସହକାର' ପତ୍ରିକାର ମୁଖ୍ୟ ସଂପାଦକ ଦାୟିତ୍ୱ ନେଇଛି । ରେଭେନ୍ସା କଲେଜର ପ୍ରାକ୍ତନ ଅଧ୍ୟକ୍ଷା ଡକ୍ଟର ପ୍ରିୟତମା ଦେଓ ମଧ୍ୟ ଏହି ସଂପାଦନାମଣ୍ଡଳୀରେ ଅଛନ୍ତି । ସେ ଅତ୍ୟନ୍ତ ସ୍ନେହୀ ମଣିଷ । ଓଡ଼ିଆ ଗଳ୍ପ ସାହିତ୍ୟର ଅନ୍ୟତମ ମୂର୍ଦ୍ଧନ୍ୟ ପୁରୁଷ ଅଚ୍ୟୁତାନନ୍ଦ ପତିଙ୍କର ମୋ ସହିତ ସଂପର୍କ ନିବିଡ଼ । ଯାଜପୁର ଜିଲ୍ଲାର କୌଣସି ସଭାକୁ ଗଲେ ସେ ଆସନ୍ତି ମୋତେ ଦେଖିବାକୁ । ତାଙ୍କ ଘରକୁ ମଧ୍ୟ ମୁଁ ଯାଇଛି । ଦିନେ ରାତି ଏଗାରଟା ବେଳେ ସେ ଯେପରି ନିଜେ ଚାହା କରି ଦେଲେ ତାହା ମୋତେ ଅଭିଭୂତ କରିଦେଲା । ତାଙ୍କ ଗଳ୍ପ ଉପରେ ମୁଁ ସମାଲୋଚନା ଲେଖିଛି । ମୋର ପ୍ରିୟ ବନ୍ଧୁ ରତ୍ନାକର ଚଇନି । ଅନେକ ସୁଖଦୁଃଖର ମୁଁ ସାଥୀ । ସେ ଜଣେ ବିଶିଷ୍ଟ ନାଟ୍ୟକାର ଓ ଗାଳ୍ପିକ । ଏବେ ସେ ମୋ'ଠାରୁ ଦୂରେଇ ଯାଇଥିବା ଲକ୍ଷ୍ୟ କରେ । ଶ୍ରଦ୍ଧେୟ ବିଜୟାନନ୍ଦ ସିଂହ ମୋର ସ୍ନେହଧନ୍ୟ । ତାଙ୍କ ପ୍ରତି ମୋର ରହିଛି ନିରବଚ୍ଛିନ୍ନ ପ୍ରେରଣା, ଉତ୍ସାହ । ସେ ଅନେକ କିଛି କାର୍ଯ୍ୟ କରୁଛନ୍ତି । ତେବେ ତାଙ୍କୁ ମୁଁ ବାରମ୍ବାର ଗୋଟିଏ କଥା କହେ, କେବଳ ତାଙ୍କୁ ନୁହେଁ ଅନ୍ୟମାନଙ୍କୁ ମଧ୍ୟ, ନିଜକୁ ହରେଇ ଦେଇ ଆଉ ଯେତେ ଯାହା କିଛି କଲେ ବା ହେଲେ ମଧ୍ୟ ତାହାର ମୂଲ୍ୟ ନ ଥାଏ । ଅସଲ ମୂଲ୍ୟ ଥାଏ ମଣିଷପଣିଆରେ, ନୀରବ ସାଧନାରେ ।

'ସମ୍ବାଦ'ର ସଂପାଦକ ସୌମ୍ୟରଂଜନ ପଟ୍ଟନାୟକ ଜଣେ ଓଡ଼ିଶା ପ୍ରାଣ, ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରାଣ, ସଂସ୍କୃତି ପ୍ରାଣ ବ୍ୟକ୍ତି । ପ୍ରଚଣ୍ଡ ଜାତୀୟ ସ୍ୱାଭିମାନରୁ 'ସମ୍ବାଦ' ଓ 'ଇଷ୍ଟର୍ଣ୍ଣ ମିଡ଼ିଆ'ର ଜନ୍ମ । ତାଙ୍କ ବୌଦ୍ଧିକ ବକ୍ତବ୍ୟ ସାହିତ୍ୟିକମାନଙ୍କୁ ଉତ୍ସାହ ଦିଏ । ସମ୍ବାଦର ନୂତନ ପ୍ରତିଷ୍ଠା ସମୟରେ ଥରେ ମୁଁ ତାଙ୍କ ପାଖକୁ ଯାଇଥିଲି ପ୍ରାୟ ମଧ୍ୟାହ୍ନ ସମୟରେ । ଘରୁ ଟିଫିନ କ୍ୟାରିୟର୍‌ରେ ଖାଦ୍ୟ ଆସିଥିଲା ତାଙ୍କ ପାଇଁ । ସେ ମୋତେ ବାଧ୍ୟ କଲେ ତାଙ୍କ ସହିତ ଭୋଜନ କରିବା ପାଇଁ । ସେଦିନ ତାଙ୍କ ବ୍ୟବହାର ମୋତେ ଏତେ ଆନନ୍ଦ ଦେଲା ଯେ ସେ କଥା ମୁଁ ଅନେକ ବନ୍ଧୁଙ୍କୁ କହିଛି । ତାଙ୍କୁ ମୁଁ ବାଣୀବିହାରରେ ଥିଲାବେଳେ ସର୍ବପ୍ରଥମେ ଓଡ଼ିଆ ବିଭାଗର ସଭାକୁ ଡାକିଛି । ତାଙ୍କ ଭାଷଣରେ

ଅଧ୍ୟାପକମାନେ ମୁଗ୍ଧ ହେଲେ । ପରେ ତାଙ୍କ ସହିତ କେତେ ସଭାକୁ ମୁଁ ଯାଇଛି । ସେ ରାଜନୀତି ଭିତରେ ପ୍ରବେଶ କରିଛନ୍ତି, ସାଂସଦ ହୋଇଛନ୍ତି, ପୁଣି 'ସମ୍ବାଦ'କୁ ଫେରିଛନ୍ତି । ସାରା ଓଡ଼ିଶାରେ ରକ୍ତଦାନ ଶିବିର କରାଇ ସେ ଯେପରି ଲୋକଙ୍କୁ ସାହାଯ୍ୟ କରୁଛନ୍ତି, ଦୁର୍ନୀତି ବିରୋଧରେ ସେ ସେପରି 'ସମ୍ବାଦ' ମାଧ୍ୟମରେ ସ୍ୱର ଉତ୍ତୋଳନ କରୁଛନ୍ତି, ଓଡ଼ିଶା ସାହିତ୍ୟର ବିକାଶ ପାଇଁ ଇଷ୍ଟର୍ଣ୍ଣ ମିଡ଼ିଆ ଓ ସମ୍ବାଦ ମାଧ୍ୟମରେ ଯେପରି ଉଦ୍ୟମ କରୁଛନ୍ତି ତାହା ନିଶ୍ଚୟ ପ୍ରଶଂସାଯୋଗ୍ୟ । ତାଙ୍କ ସହିତ ଯେଉଁଠି ଯେଉଁ ପରିବେଶରେ ଦେଖା ହେଲେ ସେ ଯେପରି ଉଲ୍ଲସିତ ହୋଇଉଠନ୍ତି ତାହା ମୋତେ ପ୍ରଭାବିତ କରେ । ଏହିପରି 'ସମାଜ'ର ମନୋରମା ମହାପାତ୍ର ଓ ଡକ୍ଟର ସତ୍ୟ ରାୟଙ୍କୁ ମଧ୍ୟ ମୁଁ ଖୁବ୍ ଭଲ ପାଏ । ଭଲ ପାଏ ମଧ୍ୟ କିଛି ପ୍ରକାଶକବନ୍ଧୁଙ୍କୁ । ଫ୍ରେଣ୍ଡସ୍ ପବ୍ଲିଶର୍ସର ସ୍ୱତ୍ୱାଧିକାରୀ ସହଦେବ ପ୍ରଧାନ ମୋତେ ସାନଭାଇ ପରି ଶ୍ରଦ୍ଧା କରନ୍ତି । ସେ ମଧ୍ୟ ଓଡ଼ିଶା ବହି ପ୍ରକାଶନରେ ବୈପ୍ଳବିକ ଭୂମିକା ନେଇଥିଲେ । ମୋର ସେ ଅନେକ ପୁସ୍ତକ ପ୍ରକାଶ କରିଛନ୍ତି । ଏବେ ସେ ରୋଗାକୀର୍ଣ୍ଣ । ତାଙ୍କର ପୁତ୍ର ହିମାଂଶୁ ଓ ସୁଧାଂଶୁ ଲେଖକମାନଙ୍କ ସହିତ ସୁସଂପର୍କ ରଖି ପ୍ରକାଶନ ସଂସ୍ଥାକୁ ଚଳାଉଅଛନ୍ତି । ଗ୍ରନ୍ଥମନ୍ଦିରର ଅଭିରାମ ମହାପାତ୍ର, ବିଦ୍ୟାପୁରୀର ପୀତାମ୍ବର ମିଶ୍ର, ଓଡ଼ିଶା ବୁକ୍ ଷ୍ଟୋରର ଗୋବିନ୍ଦଚନ୍ଦ୍ର ପାତ୍ର ପ୍ରମୁଖଙ୍କ ସହିତ ମୋର ସଂପର୍କ । ସେମାନଙ୍କର ସାହିତ୍ୟପ୍ରାଣତା ବାସ୍ତବିକ୍ ପ୍ରଶଂସନୀୟ । ଭୁବନେଶ୍ୱରର 'ଗାୟତ୍ରୀ' ପ୍ରକାଶନର ସ୍ୱତ୍ୱାଧିକାରୀ ଡକ୍ଟର ଚିନ୍ତାମଣି ବଳିୟାରସିଂହ ମୋର ଘନିଷ୍ଠ ବନ୍ଧୁ । ସେ ମୋର କେତେକ ପୁସ୍ତକ ପ୍ରକାଶ କରିଅଛନ୍ତି । ଡକ୍ଟର ପ୍ରମୋଦ ସର ଜଣେ କବି ଓ ସମୀକ୍ଷକ । ସେ ବର୍ତ୍ତମାନ ଏନ୍.ବି.ଟି.ରେ ପଦସ୍ଥ ଅଧିକାରୀ । ତାଙ୍କର ନମ୍ରତା ଓ ବିଚାରଶୀଳତା ପ୍ରତି ମୁଁ ଅନ୍ତରର ଶ୍ରଦ୍ଧା ପ୍ରକାଶ କରେ । ନାଟ୍ୟକାର ଓ ଗାଳ୍ପିକ ଗୁଣନିଧି ଜେନା, କବି ଜୟକୃଷ୍ଣ ସାମଲ, କବି ନାଟ୍ୟକାର ଗାଳ୍ପିକ 'ଶତଦ୍ରୁ'ର ସଂପାଦକ ଡକ୍ଟର ଉପେନ୍ଦ୍ର ନାୟକଙ୍କ ସହିତ ମଧ୍ୟ ମୋର ବନ୍ଧୁତା ରହିଛି । ବାଲେଶ୍ୱରରୁ ପ୍ରକାଶିତ 'ଅକ୍ଷାଂଶ'ର ସଂପାଦକ ଶ୍ରଦ୍ଧେୟ ଡକ୍ଟର ହରିଶ୍ଚନ୍ଦ୍ର ବେହେରା ଓ 'ପରିଚୟ' ପତ୍ରିକାର ସଂପାଦିକା ଅରୁଣା ରାୟଙ୍କର ମୋ ପ୍ରତି ରହିଛି ଅନାବିଳ ମମତ୍ୱବୋଧ । ସେହି ପତ୍ରିକା ଦ୍ୱୟରେ ମଧ୍ୟ ମୋର ଲେଖା ପ୍ରକାଶ ପାଇଥାଏ । ଅନ୍ନଦା ରାୟଙ୍କ ସହିତ ମୋର ଆନ୍ତରିକ ବନ୍ଧୁତା– ଶୁଦ୍ଧ ଓ ପବିତ୍ର । ତାଙ୍କର ସାହିତ୍ୟିକ ଜୀବନ ସହିତ ମୁଁ ଜଡ଼ିତ । ସେ ମୋତେ ଗଭୀର ଶ୍ରଦ୍ଧା କରନ୍ତି । ଭାରି ସ୍ୱାଭିମାନୀ ଓ ମାନବପ୍ରାଣ ।

ମୋର ଅଧ୍ୟାପକ ବନ୍ଧୁମାନଙ୍କ ମଧ୍ୟରେ ପ୍ରଫେସର ଡକ୍ଟର ବାଉରିବନ୍ଧୁ କର ମୋର ସାନଭାଇ ପରି । ତାଙ୍କର ସ୍ୱାଭିମାନକୁ ମୁଁ ପ୍ରଶଂସା କରେ । ପ୍ରଫେସର ଡକ୍ଟର ବିଜୟ କୁମାର ଶତପଥୀ ଜଣେ ପ୍ରସିଦ୍ଧ ନାଟ୍ୟକାର ଓ ସମାଲୋଚକ । ସେ ମୋ ପ୍ରତି

ଶ୍ରଦ୍ଧାଶୀଳ । ପ୍ରଫେସର ଡକ୍ଟର ରାଧାନାଥ ରଥଙ୍କର ମୋ ପ୍ରତି ସ୍ନେହ ମୋତେ ଅଭିଭୂତ କରେ । ପ୍ରଫେସର ଶରତ ଚନ୍ଦ୍ର ପ୍ରଧାନ ଜଣେ ନୂତନ ଶୈଳୀର କବି । ରେଭେନ୍ସା କଲେଜରେ ତାଙ୍କର ମୁଁ ସହକର୍ମୀ ଥିଲି । ସେ ମୋତେ ସାନଭାଇ ପରି ସ୍ନେହ କରନ୍ତି । ପ୍ରଫେସର ଦାଶରଥି ଦାସଙ୍କୁ ମୁଁ ବଡ଼ଭାଇ ପରି ମନେକରେ । ସେ ଅତ୍ୟନ୍ତ ଧୀର ଓ ନମ୍ର । ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରଜ୍ଞାଦୀପ୍ତ ସମାଲୋଚନା ମୋତେ ମୁଗ୍ଧ କରେ । ଡକ୍ଟର ପ୍ରସନ୍ନ କୁମାର ମିଶ୍ର ଜଣେ କବି, ନାଟ୍ୟକାର, ଗାଳ୍ପିକ ଓ ଔପନ୍ୟାସିକ । ତାଙ୍କ 'ଅସୁର' ଉପନ୍ୟାସ ମୋତେ ଗଭୀର ଭାବରେ ପ୍ରଭାବିତ କରେ । ତାଙ୍କର ମୋ ପ୍ରତି ଥିବା ସ୍ନେହ ଓ ଶ୍ରଦ୍ଧା ଅତୁଟ ରହିଛି । ଡକ୍ଟର ବୈରାଗୀ ଚରଣ ଜେନା ମୋର ବଡ଼ଭାଇ ପରି । ସେ ଓ ତାଙ୍କ ସ୍ତ୍ରୀ ମୋତେ ବହୁତ ସ୍ନେହ କରନ୍ତି । ତାଙ୍କରି ପ୍ରେରଣାରେ ହିଁ ମୁଁ ବିଶ୍ୱଭାରତୀକୁ ପ୍ରଫେସର ହୋଇ ଯାଇଥିଲି । ମୋର ଜୀବନକାଳ ଭିତରେ ଅନେକ ବନ୍ଧୁ ଅଛନ୍ତି । ମୁଁ କେତେ ଲୋକଙ୍କୁ କେତେ ଭାବରେ ସାହାଯ୍ୟ କରିଛି । ନିଜ କାମ ପଛକୁ ପକାଇ ମୁଁ ଅନ୍ୟମାନଙ୍କ କାମ କରେ । କାହାକୁ ସାହାଯ୍ୟ କରିପାରିଲେ ମୁଁ ନିଜକୁ ଧନ୍ୟ ମନେକରେ । ସେଦିନ ଖାଇ ନ ଥିଲେ ମଧ୍ୟ ମୁଁ ଖାଇ ନାହିଁ ବୋଲି ଜାଣିପାରେ ନାହିଁ । ଅଥଚ ମୁଁ ମୋ ଜୀବନ କାଳ ଭିତରେ କେତେ ବନ୍ଧୁଙ୍କୁ ଦେଖିଛି, ଯେଉଁମାନେ ଉପରେ ହସି ମଧୁବୋଳା କଥା କହନ୍ତି, କେତେ ପ୍ରଶଂସା କରନ୍ତି, ଭିତରେ ଚେର କାଟନ୍ତି, ଖାଲରେ ପକାଇବାକୁ ଚେଷ୍ଟା କରନ୍ତି । ସେମାନଙ୍କୁ ମୁଁ ଜାଣେ, କିଛି କହେ ନାହିଁ । ମୁଁ କେବଳ ମନେମନେ ଭଗବାନ୍‌ଙ୍କୁ ପ୍ରାର୍ଥନା କରେ ସେମାନଙ୍କୁ ସଦ୍‌ଜ୍ଞାନ ଦେବା ପାଇଁ । ଏହିପରି ଭାବରେ ଚାଲିଛି ମୁଁ । କେତେବେଳେ ବାଟ ହୁଡ଼ିଛି, ପୁଣି ଫେରିଛି । କେତେ କେତେ ବନ୍ଧୁ ସାଙ୍ଗସାଥୀଙ୍କ ସଂପର୍କରେ ଆସିଛି, କେତେକେତେ ଛାତ୍ରଛାତ୍ରୀ ମୋ ପାଖରେ ପଢ଼ି ପିଏଚ.ଡି. ଓ ଡି.ଲିଟ. କରି କେତେ କେତେ ସ୍ଥାନରେ ଅଛନ୍ତି, ସମସ୍ତେ ମୋ ହୃଦୟ ବୃନ୍ତରେ ରେଖାପାତ କରିଛନ୍ତି । କିଏ ହୁଏତ ଦୁଃଖ ଦେଇଛି । ତଥାପି ତାଙ୍କ ପ୍ରତି ମୋର ଶ୍ରଦ୍ଧା ଅତୁଟ ରହିଛି । ମୋର ଛାତ୍ର ପ୍ରଫେସର ଡକ୍ଟର ନାରାୟଣ ସାହୁ ଓ ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ ବିଶେଷ ସ୍ନେହ ଧନ୍ୟ । ନାରାୟଣ ଜଣେ ବିଶିଷ୍ଟ ନାଟ୍ୟକାର ଓ କୃଷ୍ଣଚନ୍ଦ୍ର ଜଣେ ଗବେଷକ ଓ ସମାଲୋଚକ । ଡକ୍ଟର ପ୍ରସନ୍ନ କୁମାର ସ୍ୱାଇଁ ମଧ୍ୟ ମୋର ଶ୍ରଦ୍ଧାର ପାତ୍ର । ଜର୍ମାନରେ ଅବସ୍ଥାନ କରୁଥିବା ଇଂଜିନିୟର ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ ମୋତେ ବଡ଼ଭାଇ ଓ ମୋ ସ୍ତ୍ରୀକୁ ଭାଉଜ ଡାକନ୍ତି । ତାଙ୍କର ଓଡ଼ିଆ ଭାଷା, ସଂସ୍କୃତି ଓ ସାହିତ୍ୟ ପ୍ରୀତି ମୋତେ ଚମକୃତ କରେ । ତାଙ୍କ ଯୋଗୁଁ ତାଙ୍କ ଭାଇମାନେ ରବିବାବୁ ଓ ହେମନ୍ତବାବୁ ମୋତେ ଭଲ ପାଆନ୍ତି । ଆଜି ମୋର ଅତିକ୍ରାନ୍ତ ବୟସରେ କେତେ କଥା ମନେପଡୁଛି । କେତେ ମଧ୍ୟ ସ୍ମୃତିପଟରୁ ଲୋପ ପାଇଗଲାଣି ।

ସମସ୍ତଙ୍କ ପ୍ରତି ଶ୍ରଦ୍ଧା ଅର୍ପଣ କରୁଛି । ଆଶା କରୁଛି ବନ୍ଧୁତା ଉଜ୍ଜ୍ୱଳ ହେଉ– ଛଦ୍ମତା ଲୋପ ପାଉ ।

## ଉତ୍କଳମଣି ଗୋପବନ୍ଧୁ ଶିଶୁ ଶିକ୍ଷାମନ୍ଦିର ସହିତ ମୋର ସଂପର୍କ

ଓଡ଼ିଶାରେ ପ୍ରାଥମିକ ଶିକ୍ଷାଠାରୁ ମାଧମିକ ଶିକ୍ଷା ପର୍ଯ୍ୟନ୍ତ ଯେଉଁ ଅବକ୍ଷୟ ଦେଖା ଦେଇଛି ତାହାକୁ ଲକ୍ଷ୍ୟ କରି କେତେଜଣ ଶିକ୍ଷା ଓ ସଂସ୍କୃତିପ୍ରେମୀ ଯୁବକ ଉତ୍କଳମଣିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଏକ ସ୍ୱତନ୍ତ୍ର ଧରଣର ଶିକ୍ଷାମନ୍ଦିର ତିଆରି କରିବାକୁ ଆଗେଇ ଆସିଲେ । ଏଡ଼ଭୋକେଟ ମଧୁସୂଦନ ପାତ୍ର ଓ ନାଟ୍ୟକାର ଅଧ୍ୟାପକ ପ୍ରସନ୍ନ କୁମାର ସ୍ୱାଇଁ ଏବଂ ସେମାନଙ୍କର ଆଉ କେତେଜଣ ସମଧର୍ମା ଯୁବକ ମୋ ଚାଉଳିଆଗଞ୍ଜ ବାସଭବନକୁ ଆସି ସେମାନଙ୍କ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଂପର୍କରେ କହିଲେ । ମୋତେ ସେମାନେ ମୁଖ୍ୟ ଉପଦେଷ୍ଟା କଲେ । ଗଢ଼ିଉଠିଲା ଚାଉଳିଆଗଞ୍ଜରେ ଉତ୍କଳମଣି ଗୋପବନ୍ଧୁ ଶିଶୁ ଶିକ୍ଷାମନ୍ଦିର । ସେଇ ବିଦ୍ୟାଳୟରେ ଏବେ ଚାରିଶହରୁ ଉର୍ଦ୍ଧ୍ୱ ପିଲା ଅଧ୍ୟୟନ କରୁଛନ୍ତି । ଏହି ଅନୁଷ୍ଠାନ ଗୁରୁତ୍ୱ ଦେଉଛି ଉତ୍କଳମଣିଙ୍କ ଶିକ୍ଷା ଆଦର୍ଶ ଉପରେ । ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶକୁ ଏହି ଶିକ୍ଷାମନ୍ଦିର ଅନୁସରଣ କରୁଛି । ସଂପ୍ରତି ସାରା ଓଡ଼ିଶାରେ ବିଭିନ୍ନ ଜିଲ୍ଲା ଓ ବିଭିନ୍ନ ସ୍ଥାନରେ ୪୮ଟି ଶିକ୍ଷାନୁଷ୍ଠାନ ଗଢ଼ିଉଠିଛି ଓ ସବୁ ଅନୁଷ୍ଠାନ କେନ୍ଦ୍ର ଅନୁଷ୍ଠାନ ସହିତ ଅନୁବନ୍ଧିତ । ଛାତ୍ରଛାତ୍ରୀଙ୍କୁ ମଣିଷ ପରି ମଣିଷ ହେବା ପାଇଁ ଆମ ଭାରତୀୟ ସଂସ୍କୃତି ଆଧାରରେ ଶିକ୍ଷା ଦିଆଯାଇଛି । ମୁଁ ଏ ସମସ୍ତ ବିଦ୍ୟାଳୟକୁ ବିଭିନ୍ନ କାର୍ଯ୍ୟକ୍ରମରେ ଯାଏ ଓ ଉପସ୍ଥିତ ଜନସାଧାରଣ ଏବଂ ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦିଏ । ଶିକ୍ଷା ଏକ ପବିତ୍ର ସଂକଳ୍ପ, ଏକ ପବିତ୍ର ତପସ୍ୟା । କୋମଳମତି ଶିଶୁମାନଙ୍କର ମନ ଓ ହୃଦୟକୁ ଏହା ପ୍ରସାରିତ କରିଥାଏ । 'ସା ବିଦ୍ୟା ଯା ବିମୁକ୍ତୟେ'– ତାହାହିଁ ବିଦ୍ୟା ଯାହା ମଣିଷକୁ ଯାବତୀୟ କ୍ଷୁଦ୍ରତା ଓ ସଂକୀର୍ଣ୍ଣତାରୁ ମୁକ୍ତି ଦିଏ, ଅନ୍ଧକାର ଭିତରୁ ଆଲୋକକୁ ନିଏ, ଶିଶୁମାନଙ୍କୁ ପୂର୍ଣ୍ଣ ମଣିଷ କରିବା ଦିଗରେ ଆଗେଇ ନିଏ । ମାତ୍ର ଶିକ୍ଷାର ଏହି ଆଦର୍ଶକୁ ଉପେକ୍ଷା କରାଯାଇ ଛାତ୍ରଛାତ୍ରୀମାନଙ୍କୁ ଉପଭୋଗୀ କରିଦିଆ ଯାଉଛି । ଚାକିରି ଖଣ୍ଡେ ନ ପାଇଲେ ହାୟ ହାୟ ହେଉଛନ୍ତି । ଏହି କାରଣରୁ ଉତ୍କଳମଣି ଶିଶୁ ଶିକ୍ଷାମନ୍ଦିର ଶିକ୍ଷା କ୍ଷେତ୍ରରେ ବୈପ୍ଳବିକ ଭୂମିକା ନେଉଛନ୍ତି । ନାମକୁମାତ୍ର ବେତନରେ ଏଠାରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ଅଛନ୍ତି ମାତ୍ର ପ୍ରତ୍ୟେକ ଅଙ୍ଗୀକାରବଦ୍ଧ ଗୋପବନ୍ଧୁଙ୍କ ଆଦର୍ଶକୁ ଆଗେଇନେବା ପାଇଁ । ଏହିପରି ଏକ ଶିକ୍ଷାନୁଷ୍ଠାନକୁ ଭଲ ପାଏ ଓ ମୋର ଉପଦେଶ ନେଇ ଅନୁଷ୍ଠାନର କର୍ମୀମାନେ ଯେପରି

ନିଷ୍ଠାର ସହିତ କାର୍ଯ୍ୟ କରୁଛନ୍ତି ସେଥିରେ ମୁଁ ମୁଗ୍ଧ ହୁଏ । ସରସ୍ୱତୀ ଶିଶୁ ଶିକ୍ଷାମନ୍ଦିର ସହିତ ତାଳ ଦେଇ ଏହା ଗତି କରୁଛି । ବିଶେଷତଃ ଦରିଦ୍ର ପିଲାମାନେ ଏହି ଅନୁଷ୍ଠାନରେ ଅଧ୍ୟୟନ କରି କୃତିତ୍ୱ ଅର୍ଜନ କରୁଥିବାରୁ ମୁଁ ଗଭୀର ଆନନ୍ଦ ପ୍ରକାଶ କରେ । ମୋର ମନେହୁଏ ଏହା ଏକ ଜାତୀୟ ସଂକଳ୍ପର ଅନୁଷ୍ଠାନ । ଏହି ଅନୁଷ୍ଠାନର ଉନ୍ନତି ପାଇଁ ମୋର ଭୂମିକା ଗୁଣ୍ଡୁଚିମୂଷା ପରି ହେଲେ ମଧ୍ୟ ଏହା ସହିତ ମୋର ଆତ୍ମା ଓ ହୃଦୟର ମିଳନ ହୋଇଯାଇଛି ।

## ମୋର ସାରସ୍ୱତ ଜୀବନ

ମୋ ବାପାଙ୍କ ମୃତ୍ୟୁ (୧୯୫୨) ପରଠାରୁ ମୁଁ ଏଗାର/ବାର ବର୍ଷର ପିଲାଟିଏ ସଂପୂର୍ଣ୍ଣ ଅସହାୟ ହୋଇପଡ଼ିଲି । ଏଣେ ଇନ୍ଦୁପୁର ହାଇସ୍କୁଲକୁ ଚାଲି ଚାଲି ଯାଇ ପାଠ ପଢ଼ିବି, ଅପରପକ୍ଷରେ ବିଲରେ ଚାଷବାସ କରିବି, ଗାଈ ରଖିବି ଇତ୍ୟାଦି ଯାବତୀୟ କାର୍ଯ୍ୟ କରିବି । ମୋ ଭିତରେ ଗାଁର ଟାଉଟର ମାମଲତକାର, ଯେଉଁମାନେ ଏଘର ମାଉସୀ ସେଘର ପିଉସୀ ହୋଇ ଗାଁରେ ନାନା ମାଲିମକଦ୍ଦମା ଲଗାଇ ଦିଅନ୍ତି, କେତେ ଝିଅବୋହୂଙ୍କୁ ନିଜର ସ୍ୱାର୍ଥ ସାଧନ ପାଇଁ ଦାଣ୍ଡରେ ବସାଇ ଦିଅନ୍ତି, ସେମାନଙ୍କ ଚରିତ୍ର ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରୁଥାଏ ମୋ ଭିତରେ । ବିଶେଷତଃ ଆମ ଗାଁ କାହିଁକି ଆଖପାଖ ଗାଁରେ ଥିବା ଛୁଆଁଅଛୁଆଁ ଭେଦଟା ମଧ୍ୟ ମୋତେ ବିବ୍ରତ କରୁଥାଏ । ଅନ୍ୟପକ୍ଷରେ ନୂଆ କରି ଉଭବ ହୋଇଥିବା ରାଜନୀତିକ କର୍ମୀମାନଙ୍କର କାରସାଦି ମୋତେ ଭଲ ଲାଗୁ ନ ଥାଏ । ଯେତେବେଳେ ମୁଁ ଅଷ୍ଟମ ଶ୍ରେଣୀରେ ଇନ୍ଦୁପୁର ହାଇସ୍କୁଲରେ ପଢ଼ିଲି ସେତେବେଳେ କେତେଜଣ ଆଦର୍ଶ ଶିକ୍ଷକଙ୍କ ପ୍ରଭାବ ମୋ ଉପରେ ପଡ଼ିଲା । ମୁଁ ଲେଖିଲି କବିତା ମୋ ହୃଦୟର ପ୍ରତିକ୍ରିୟାକୁ ନେଇ । ମାଟ୍ରିକ ପାସ୍ କରି ମାଇନର ସ୍କୁଲରେ ଶିକ୍ଷକତା କଲାବେଳେ ମଧ୍ୟ କାବ୍ୟକବିତା ଲେଖିଲି । ଏହା ପରେ ମୁଁ କଟକ ଆସି ଟେଲିଫୋନ ଅପରେଟର୍ ହେଲି ଓ ବି.ଏ. (ଅନର୍ସ) ଓ ଏମ୍.ଏ. ପଢ଼ିଲି । ସେହି ସମୟରେ ନାରୀସେବା ସଦନରେ ଅନୁଷ୍ଠିତ ଭଞ୍ଜ ଜୟନ୍ତୀକୁ ଗଲି ଶୁଣିବା ପାଇଁ । ରାମଚନ୍ଦ୍ର ଭବନରେ ଅନୁଷ୍ଠିତ ବିଭିନ୍ନ ସାହିତ୍ୟ ସଭାକୁ ଗଲି । ମୋ ଭିତରେ କ'ଣ କିଛି ଲେଖିବା ପାଇଁ ଆଗ୍ରହଟିଏ କଅଁଳି ଉଠିଲା । ସେହି ସମୟରେ ନୂଆ କରି ଯୁବଲେଖକ ସମ୍ମିଳନୀ ଆରମ୍ଭ ହୋଇଥାଏ । ନୂଆ ଲେଖକ/ଲେଖିକାଙ୍କୁ ଏହି ଅନୁଷ୍ଠାନ ପ୍ରୋତ୍ସାହନ ଦେଉଥାଏ । ମୋ ଭିତରେ ସାହିତ୍ୟିକ ସର୍ଜନଶୀଳତାର ଉନ୍ମେଷ ଘଟିଲା । ମୁଁ ଲେଖିଲି ପ୍ରବନ୍ଧ, ରମ୍ୟରଚନା, ସମାଲୋଚନା, ଗଳ୍ପ ଆଦି ଅନେକ କିଛି । ମୋର ଆତ୍ମବିଶ୍ୱାସ ବଢ଼ିବାକୁ ଲାଗିଲା ଓ

ଧାରାବାହିକ ଭାବରେ ସମାଲୋଚନା ଲେଖିଲି । ମଝିରେ ମଝିରେ କବିତା, ଗଳ୍ପ, ରମ୍ୟରଚନା ଆଦି ଲେଖିଲି । ମୋ ବନ୍ଧୁମାନଙ୍କଠାରୁ ଉତ୍ସାହ ପାଇଲି ।

ସମାଲୋଚନା ଓ ରମ୍ୟରଚନା ଲେଖିଲାବେଳେ ମୁଁ ଅନେକ ଗ୍ରନ୍ଥ ପଢ଼ିଲି । ଇଂରାଜୀ ସାହିତ୍ୟର ବିଶିଷ୍ଟ କବି, ସମାଲୋଚକ ଓ ଗାଳ୍ପିକଙ୍କ ଗ୍ରନ୍ଥ ପଢ଼ିବା ସହିତ ହିନ୍ଦୀ ବଙ୍ଗଳା ଭାଷାରେ ରଚିତ ବିଭିନ୍ନ ଗ୍ରନ୍ଥ ପଢ଼ିଲି । ବିଶେଷତଃ ମୋ ଭିତରେ ପ୍ରବଳ ଉତ୍କଣ୍ଠା ସୃଷ୍ଟି ହେଲା ଭାରତୀୟ ସଂସ୍କୃତିର ଅମୂଲ୍ୟ ସାରସ୍ୱତ ଅର୍ଘ୍ୟଗୁଡ଼ିକୁ ପଢ଼ିବା ପାଇଁ । ବେଦବେଦାନ୍ତ ଭାଗବତ, ରାମାୟଣ, ମହାଭାରତ ସହିତ ବୌଦ୍ଧଗ୍ରନ୍ଥ, ଶଙ୍କରାଚାର୍ଯ୍ୟଙ୍କ ବିଭିନ୍ନ ରଚନା ପଢ଼ିଲି । ମାର୍କସ୍ ଦର୍ଶନ ସଂପର୍କିତ କେତେ ରଚନା ପଢ଼ିଲି ଓ ପ୍ରାଚୀନ ଓଡ଼ିଆ ସାହିତ୍ୟର ଗ୍ରନ୍ଥରାଜି ପଢ଼ିଲି । ମୋ ଲେଖା ଭିତରେ ଏସବୁ ପ୍ରତିଫଳିତ ହେଲା । ଥରେ 'ସାହିତ୍ୟ' ଶୀର୍ଷକ ପ୍ରବନ୍ଧଟିଏ ଲେଖି ମୁଁ ଝଙ୍କାରରେ ପ୍ରକାଶ କରିଥାଏ । ମୋର ଅନୁଜପ୍ରତିମ ଅମରେଶ ପଟ୍ଟନାୟକ ତାହାକୁ ପଢ଼ି ମୋତେ ଖୁବ୍ ପ୍ରଶଂସା କଲେ । ସେଥିରେ ସେ କୁଆଡ଼େ ଅସ୍ତିତ୍ୱବାଦୀ ଚେତନା ସହିତ ମାର୍କସୀୟ ଚେତନାକୁ ଅନୁଭବ କଲେ ବୋଲି ମୋତେ କହିଲେ ।

ମୁଁ ଲେଖେ । କାହାରି ନିନ୍ଦା ପ୍ରଶଂସାକୁ କାନ ନ ଦେଇ ମୁଁ ମୋର ଯାହା ଭଲ ପାଏ ତାହା ଲେଖେ । ମୁଁ ପ୍ରଥମେ ପ୍ରଥମେ ମାର୍କସ୍‌ବାଦୀ ଚିନ୍ତାରେ ଅନୁପ୍ରାଣିତ ହୋଇ ଲେଖୁଥାଏ । ଅଥଚ ମୁଁ ମୂଳତଃ ଥିଲି ମଣିଷଙ୍କୁ ଭଲ ପାଉଥିବା ମଣିଷଟିଏ । ତେଣୁ ମାନବବାଦକୁ ମୁଁ ଗୁରୁତ୍ୱ ଦିଏ । ଗାନ୍ଧିଜୀଙ୍କ ରଚନାବଳୀ ଓ ତାଙ୍କ ସଂପାଦିତ ପତ୍ରପତ୍ରିକା ପଢ଼ିଲି । ତାଙ୍କ ସଂପର୍କରେ ରଚିତ ନାନା ପୁସ୍ତକ ପଢ଼ିଲି । ଧର୍ମ ସଂପର୍କିତ ନାନା ଗ୍ରନ୍ଥ ମଧ ପଢ଼ିଲି । ଏହାକୁ ମୁଁ କବିତା, ଗଳ୍ପ, ଉପନ୍ୟାସ ଇତ୍ୟାଦିର ଆଲୋଚନା କଲାବେଳେ ପ୍ରୟୋଗ କଲି । ମୁଁ ମନେକଲି କାହାର ନିନ୍ଦା କରିବା ଅପେକ୍ଷା ତାଙ୍କ ଲେଖାରେ କ'ଣ ମୂଲ୍ୟବୋଧ ଅଛି ତାହାକୁ ଦର୍ଶାଇବା ଉଚିତ ଓ ସେହି ଆଦର୍ଶରେ ମୁଁ ଲେଖିଲି । 'ବାଦ' (Ism)କୁ ନେଇ ବିବାଦରେ ପଡ଼ିବା ଅନୁଚିତ ମନେକରି 'ବାଦ' (Ism)ର ମୋହର ମାରି ସାହିତ୍ୟକୁ ଭାଗ ଭାଗ କରି ଚିହ୍ନାଇବା ଆଦୌ ଉଚିତ ନୁହେଁ ବୋଲି ଭାବିଲି । ମୁଁ ଚିନ୍ତାକଲି ସାହିତ୍ୟରେ ଚିରକାଳର ସତ୍ୟ ମାଟି, ମଣିଷ, ସଂସ୍କୃତି ଓ ପ୍ରକୃତି । ତା' ଭିତରେ ସମ୍ବେଦନା ଓ ସହାନୁଭୂତିହିଁ ମୁଖ୍ୟ । ଏହା ଯେଉଁ ସାହିତ୍ୟରେ ନାହିଁ ତାହାର ମୂଲ୍ୟ କ'ଣ ? ପିଲାଦିନରୁ ମୋ ଭିତରେ ଦରିଦ୍ରମାନଙ୍କ ପ୍ରତି ଯେଉଁ ସହାନୁଭୂତି ପ୍ରକାଶ ପାଇଆସିଥିଲା ତାହାକୁ ନେଇ ମୁଁ ଲେଖେ । ମୁଁ ଭାବେ ସେମାନଙ୍କ ଦୁଃଖକୁ ଯଦି ମୋ ଦୁଃଖ ମନେ କରିପାରିଲି ତେବେ ତାହାହିଁ ମୋର ସାର୍ଥକତା । ହୁଏତ ମୁଁ କାହାର ଦୁଃଖ ଦୂର କରିପାରିବି ନାହିଁ, ତଥାପି ଟିକିଏ ସହାନୁଭୂତି ଦେଖାଇବାରେ କ୍ଷତି କ'ଣ ? ମୁଁ

ଯେତେବେଳେ ମୋ ସ୍ତ୍ରୀ ସହିତ ଟ୍ରେନ୍‌ରେ କେଉଁଠିକୁ ଯାଉଥାଏ ଦେଖେ; ଦୀନଦୁଃଖୀ ଦୁର୍ଗତମାନଙ୍କୁ କିଛି କିଛି ସେ ଦେଉଥାଏ । ମୁଁ ଯେତେବେଳେ ତାଙ୍କୁ ପଚାରେ ସେ କହନ୍ତି ମୁଁ କ'ଣ ସେମାନଙ୍କ ଦୁଃଖ ମୁଣ୍ଡକୁ ନେଇପାରିବି ? ଟଙ୍କାଏ ଦୁଇଟଙ୍କା କି ପାଞ୍ଚଟଙ୍କା ଦେଇଦେଲେ କ'ଣ ତାଙ୍କର ଦୁଃଖ ଚାଲିଯିବ ? ଘରେ ଥିଲାବେଳେ ମୋ ଜାମାପ୍ୟାଣ୍ଟ, ଲୁଗା ବାହାର କରି ମୋତେ ଦେଖାଏ ଓ ପଚାରେ ସେସବୁକୁ ମୁଁ କ'ଣ ବ୍ୟବହାର କରୁଛି ବା ନାହିଁ ? ଯଦି ମୁଁ ମନା କରିଦିଏ ସେ ତାକୁ ସାଇତିରଖେ ଓ ତା' ସାଙ୍ଗରେ ତା'ର ଅଦରକାରୀ ଶାଢ଼ୀ ମଧ ରଖେ । ଦୁର୍ଗତମାନେ ଘର ପାଖକୁ ଆସିଲେ ସେମାନଙ୍କୁ ଭିତରକୁ ଡାକି ଆଣେ, ବେଳେବେଳେ ଖାଇବାକୁ ମଧ ଦିଏ ଓ ସେମାନଙ୍କୁ ଲୁଗାପଟା ଦିଏ । ଥରେ ସେ ଗୋଟିଏ ଠକ ଚାଉଳବାଲା ହାବୁଡ଼ରେ ପଡ଼ିଯାଇଥିଲା । ଚାଉଳବସ୍ତା ଭିତରେ ଅଖା କାଗଜକନା ପୂରାଇ ଚାଉଳ ଦେଇଗଲା । ପରେ ତା'ର ସନ୍ଦେହ ହେବାରୁ ଚାଉଳବସ୍ତା ଓଜାଡ଼ି ଏ କାଣ୍ଡ ଦେଖିଲା । କୋଡ଼ିଏ କିଲୋ ଚାଉଳ କମ୍ । ସେ ମୋତେ ଏକଥା ନ କହି ମୋ ମଝିଆପୁଅକୁ କହିଲା । ମଝିଆପୁଅ ଜ୍ୟୋତି ସେତେବେଳେ ଏମ୍.ଏ. ପଢୁଥାଏ । ଏ ଘଟଣାକୁ ନେଇ ସେ ଗୋଟିଏ ନାଟକ ଲେଖିଲା 'ଆପଣା ହସ୍ତେ ଜିହ୍ୱା ଛେଦି' । ଏ ନାଟକରେ ଆମେ ବାପା, ବୋଉ ଓ ଚାଉଳବାଲା ଚରିତ୍ର । ବେଶ୍ ଭଲ ନାଟକଟିଏ । କଳାବିକାଶ କେନ୍ଦ୍ରରେ ଅଭିନୀତ ହୋଇ ପ୍ରଶଂସିତ ହୋଇଥିଲା । ମୋ ସ୍ତ୍ରୀର ଏତେ ବିଶ୍ୱାସ ଯେ ସେ ମନେମନେ ରହିଲା ଓ ଭାବିଲା ସିଏତ କାହାକୁ ଦିନେ ଠକି ନାହିଁ, ଏବେ ସେ ଠକି ହେବ କାହିଁକି ? ସେ ତ ଧର୍ମବିଶ୍ୱାସୀ । ମନେମନେ ଠାକୁରଙ୍କୁ ଡାକୁଥାଏ । କିଛି ଦିନ ପରେ ସେହି ଚାଉଳବାଲା ଆସିଲା । ମୋ ସ୍ତ୍ରୀ ତାଙ୍କୁ ଘରକୁ ଡାକି ନେଲା । ତାକୁ ଯେତେବେଳେ ସେ ଠକିଦେଇ କୋଡ଼ିଏ କିଲୋ ଚାଉଳ କମେଇ ଭିତରେ ଅଖାକନା ଇତ୍ୟାଦି ପୂରେଇ ଦେଇଛି ବୋଲି କହିଲା ସିଏ ବ୍ୟସ୍ତ ହୋଇପଡ଼ିଲା । ମୁଁ ଯାଇଁ ତାକୁ ପୋଲିସକୁ ଦେବାକୁ କହିବାରୁ ମୋ ସ୍ତ୍ରୀ ମୋତେ ଏଥିରେ ମୁଣ୍ଡ ଖେଳାଇବାକୁ ମନା କଲା । ମୁଁ ବାରଣ୍ଡାରେ ବସି ଲେଖିଲି । ସେ ଲୋକ ସବୁ ମାନିଗଲା ଓ ମୋ ସ୍ତ୍ରୀ ଗୋଡ଼ତଳେ ପଡ଼ି ଆଉ ଏ ଘୁଅଖିଆ କାମ କରିବ ନାହିଁ ବୋଲି କାନ୍ଦି କାନ୍ଦି କହିଲା । ସେ ତାକୁ ବସାଇ କହିଲେ ଯେ ସେ ଏପରି ଦଣ୍ଡ ଦେବ, ତାହା ଜୀବନରେ ସେ ଭୁଲିବ ନାହିଁ । ମୁଁ ସବୁ ଶୁଣୁଥାଏ ପିଣ୍ଡାରେ ବସି । ସେ ତାକୁ ଜଳଖିଆ ଖାଇବାକୁ ଦେଲା । ଟା' ଦେଲା । ପୁରୁଣା ଲୁଗା ଖଣ୍ଡେ ଦେଲା ଓ କହିଲା ଏହି ହେଉଚି ତମର ଦଣ୍ଡ । ଆଉ କେବେ ଏ ଘରକୁ ଚାଉଳ ବିକିବାକୁ ଆସିବ ନାହିଁ । ତୁମ ମୁହଁ ଆଉ ମୁଁ ଦେଖିବି ନାହିଁ । ମୁଁ ଭାବିଲି ଧନ୍ୟ ଏ ନାରୀ, ଧନ୍ୟ ତୁମର ବିଚାର ! ମୋ ପୁଅ ଏ ସମସ୍ତ କଥାକୁ ନେଇ ପରୀକ୍ଷାମୂଳକ ନାଟକଟିଏ ଲେଖିଲା । ମୋର ଲେଖକ ଜୀବନର ପ୍ରେରଣା ମୋ ବାପା,

ମୋ ବୋଉ ଓ ମୋର ପତ୍ନୀ । ଆହୁରି ଅନେକ ନରନାରୀ ଜଣାଅଜଣା ମୋର ମଧ୍ୟ ପ୍ରେରଣା । ପ୍ରେରଣା ମଧ୍ୟ ମୋର ସଂସ୍କୃତି, ମୁଁ ପ୍ରତିନିୟତ ଦେଖୁଥିବା ଓ ଅଙ୍ଗେ ନିଭାଉଥିବା ସମାଜର ନାନା ଘଟଣା, ନାନା ଚରିତ୍ର । ମୁଁ ଅନୁଭବ କରେ ଯେକୌଣସି ଲେଖା ଲେଖିବାକୁ ହେଲେ ଅସଲ କଥା ପ୍ରେରଣା । ତାହା ଅନ୍ତଃସତ୍ତାକୁ ଅଭିଭୂତ କରି ଲେଖକକୁ ଅନୁପ୍ରେରିତ କରେ ଲେଖିବାକୁ । ଜଣେ ଜଣେ ଚରିତ୍ର, ସିଏ ମିତ୍ର ହୁଅନ୍ତୁ ବା ମିତ୍ର-ଶତ୍ରୁ ହୁଅନ୍ତୁ, ସିଏ ଧର୍ମପୁରୁଷ ହୁଅନ୍ତୁ ବା ଧର୍ମ ନାମରେ ଯାବତୀୟ ନାରକୀୟ କାର୍ଯ୍ୟ କରନ୍ତୁ, ସିଏ ପ୍ରେମଶୀଳା ହୁଅନ୍ତୁ ବା ପ୍ରେମ ନାମରେ ଅପ୍ରେମର କାରଣ ହୁଅନ୍ତୁ ସମସ୍ତେ ମୋ ଭିତରେ ତଲ୍ଲୀନ ହୋଇ ମୋତେ ପ୍ରେରଣା ଦିଅନ୍ତି ଲେଖିବାକୁ । ଏହି ପ୍ରେରଣା ଯେତେବେଳେ ଆସେ ସେତେବେଳେ ଲେଖକକୁ କାଳିସୀ ଲାଗେ । କାଳିସୀ ଲାଗିବା ଲେଖକ ଆମ ସାହିତ୍ୟରେ କେତେ ଅଛନ୍ତି । ଗୋପୀନାଥ ମହାନ୍ତି, ଅନନ୍ତ ପଟ୍ଟନାୟକ, ଶାନ୍ତନୁ କୁମାର ଆଚାର୍ଯ୍ୟ, ମହାପାତ୍ର ନୀଳମଣି ସାହୁ, ଚନ୍ଦ୍ରଶେଖର ରଥ, ରମାକାନ୍ତ ରଥ ଏମିତି କେତେ । ସେମାନେ ଆମର ନମସ୍ୟ । ମୋ ଭିତରେ ଯେତେବେଳେ ଏହି କାଳିସୀ ଅବତରଣ କରେ ସେହି ମୁହୂର୍ତ୍ତରେ ମୁଁ ରାସ୍ତା ଉପରେ କେଉଁ ବେଞ୍ଚରେ କି କେଉଁ ଲୋକ ଗହଳି ଭିତରେ ସେ ଥିଲେ ବି କ'ଣ କିଛି ଲେଖିଦିଏ । ମୁଁ ନିଜେ ତନ୍ମୟ ହୁଏ । ତେବେ ସମାଲୋଚନା ଲେଖିଲାବେଳେ ଏହି କାଳିସୀ ତନ୍ମୟତା ଆସେ ନାହିଁ । କୌଣସି ବିଷୟରେ ଲେଖିଲାବେଳେ ବା ନିର୍ଦ୍ଦିଷ୍ଟ ଲେଖକଙ୍କ କୃତି ବିଷୟରେ ଲେଖିଲାବେଳେ ସେହି ଲେଖକ ବା ନିର୍ଦ୍ଦିଷ୍ଟ ବିଷୟକୁ ବାରମ୍ବାର ପଢ଼େ । ସେହି ବିଷୟ ବା ଲେଖା ଭିତରେ ମୁଁ ନିଜକୁ ମିଶାଇଦିଏ । ତା'ପରେ ଲେଖେ ନାନା ଯୁକ୍ତି ପ୍ରତିଯୁକ୍ତି ଓ ମୋର ଅବବୋଧକୁ ନେଇ ।

ମୋ ଲେଖା ପାଇଁ ମୁଁ ଅହଙ୍କାର ପ୍ରକାଶ କରେ ନାହିଁ । କେହି ଯଦି ପଢ଼ି ମୋତେ ପ୍ରଶଂସା କଲା ବା ଚିଠି ଖଣ୍ଡେ ଦେଲା ମୁଁ ଖୁସି ହୋଇଯାଏ । ସ୍ୱର୍ଗତ କୃଷ୍ଣଚନ୍ଦ୍ର ତ୍ରିପାଠୀ ମୋର ଅନେକ ଲେଖା ପଢ଼ି ମୋତେ ପ୍ରଶଂସା କରି ଚିଠି ଦେଇଛନ୍ତି । ଏପରିକି ମୁଁ ବାଣୀବିହାରରେ ଥିଲାବେଳେ ସେ ମୋ ପାଖକୁ ଆସି ମୋତେ ଆଶୀର୍ବାଦ ଦେଇଛନ୍ତି । ଉଦୟପୁର ପାଠାଗାରର ଦାସିଆ ଅଜା (ଦାଶରଥି ପଟ୍ଟନାୟକ) ମୋ ଲେଖାଟିଏ ପଢ଼ି ଚିଠି ଦେଇଛନ୍ତି, ମନିଅର୍ଡର କରି ଦଶ ପଇସା ପଠାଇଛନ୍ତି ଅନେକଥର । ସେ ମଧ୍ୟ ମୋ ଘରକୁ ଆସିଛନ୍ତି । ଶଙ୍ଖାଳି ସୁନ୍ଦର ରାୟ ସମାଜରେ ବାହାରିଥିବା ଲେଖା ପଢ଼ି ଦୀର୍ଘ ଚିଠି ଲେଖିଛନ୍ତି । ଏମିତି କେତେ । କେହି ଫୋନ୍‌ରେ କହେ ତ କେହି ଚିଠି ଦିଏ । ସମସ୍ତଙ୍କ ପ୍ରତି ମୁଁ କୃତଜ୍ଞ । ମୋର ପ୍ରିୟ ବନ୍ଧୁ, ଓଡ଼ିଆ ସାହିତ୍ୟର ବିଶିଷ୍ଟ ଔପନ୍ୟାସିକ, ଗାଳ୍ପିକ ଓ ପ୍ରାବନ୍ଧିକ ଅଧ୍ୟାପକ ବିଶ୍ୱରଂଜନଙ୍କ ପ୍ରେରଣା ମୋତେ ଉଦ୍‌ବୁଦ୍ଧ କରିଛି ଲେଖିବାପାଇଁ । ମୁଁ ଲେଖିଛି ଅନେକ । ବହୁଦିନ ପୂର୍ବେ ଡକ୍ଟର ଚିନ୍ତାମଣି ବଳିୟାର ସିଂହ

ମୋ ଘରକୁ ଆସି ଏଣେତେଣେ ଗଦା ହୋଇଥିବା ମୋ ଲେଖା ଭିତରୁ କେତେକ ଗଳ୍ପ ସଂଗ୍ରହ କରି ନେଇଗଲେ । ତାହାହିଁ ହେଲା ମୋର ପ୍ରଥମ ଗଳ୍ପ ସଂକଳନ 'ଶେଷ ଶୃଙ୍ଗାର' । ଗିରିଜା କୁମାର ବଳିୟାରସିଂହ ମୋର ରେଭେନ୍ସା କଲେଜର ଛାତ୍ର । ସେ ଅତ୍ୟନ୍ତ ମେଧାବୀ ଓ କବିପ୍ରାଣ । ଥରେ ସେ ମୋ ସହିତ ରିକ୍ସାରେ ବସି ଯାଉଥିଲାବେଳେ ବାଟରେ ମୁଁ ତାଙ୍କୁ କବିତାଟିଏ ପଢ଼ି ଶୁଣାଇଲି । ସେ ଖୁସି ହୋଇ ମୋତେ କବିତା ଲେଖିବାକୁ କହିଲେ । ପୂର୍ବରୁ ତ ମୁଁ କବିତା ଲେଖୁଥିଲି, ତାଙ୍କ ପ୍ରେରଣାରେ ମୁଁ କବିତା ଲେଖିଲି । ପାଞ୍ଚଟି କବିତା ସଂକଳନ ବାହାରିଲା । ଏବେ ମଧ୍ୟ ବହୁ କବିତା ଇତସ୍ତତଃ ପଡ଼ିଛି । ଗିରିଜା ସ୍ୱାଭିମାନୀ । ଏମ୍.ଏ. ପରୀକ୍ଷାରେ ତାଙ୍କୁ ଜଣେ ସେକାଳର ଅଧ୍ୟାପକ ଖୁବ୍ କମ୍ ନମ୍ବର ଦେଇ ଦେବାରୁ ସେ ପ୍ରଥମ ଶ୍ରେଣୀ ପାଇଲେ ନାହିଁ । ତେଣୁ ସେ ଅଧ୍ୟାପକ ହେବାକୁ ଇଚ୍ଛା କଲେ ନାହିଁ । ସ୍ୱାଧୀନ ଭାବରେ କ'ଣ କିଛି କରିବାକୁ ସଂକଳ୍ପ ନେଲେ । ସାମ୍ବାଦିକତା ବୃତ୍ତି ଛାଡ଼ି ସେ ନିଜେ କଲ୍ୟାଣୀନଗରରେ 'କାହାଣୀ' ପ୍ରକାଶନ ଆରମ୍ଭ କଲେ । ଅନେକ ବହି ଛାପିଲେ । ମୋର ମଧ୍ୟ 'ସଂଜୟ ଉବାଚ' ଓ 'ଗୋପଦାଣ୍ଡ ଓ ଅନ୍ୟାନ୍ୟ ପ୍ରବନ୍ଧ' ଛାପିଲେ । ମୋ ପୁଅର 'ଓଡ଼ିଆ ଆତ୍ମଚରିତ ଏକ ଅଧ୍ୟୟନ' ପୁସ୍ତକ ମଧ୍ୟ ଛାପିଲେ । ତାଙ୍କର ଅନେକ କବିତା ବହି ପ୍ରକାଶିତ । କବିତାରେ ସେ ଛନ୍ଦର ଗୁରୁତ୍ୱ ଦିଅନ୍ତି । ଶବ୍ଦ ସଂଯୋଜନାରେ ସେ ଦିବ୍ୟ ପ୍ରେରଣାର ଅଧିକାରୀ । ଉଚ୍ଚକୋଟୀର ମାନବୀୟ ଓ ସାଂସ୍କୃତିକ ଚେତନାର ସେ କବି । ତାଙ୍କ ପାଖରେ ବସିଲେ ସେ ସାହିତ୍ୟ କଥାହିଁ କହନ୍ତି । ଏବେ ସେ ପ୍ରତିଷ୍ଠିତ ପ୍ରକାଶକ । ତାଙ୍କ ପ୍ରେରଣା ମଧ୍ୟ ମୋତେ ଅନୁପ୍ରାଣିତ କରିଛି । ଏଇପରି ବହୁ ଲେଖକଙ୍କ ପ୍ରେରଣା ମୋତେ କ'ଣ କିଛି ଲେଖିବାକୁ ଉଦ୍‌ବୁଦ୍ଧ କରିଛି । ଡକ୍ଟର ଉପେନ୍ଦ୍ର ନାୟକ, ଗାଳ୍ପିକ ଉତ୍ତମ ନାୟକ, ଅଧ୍ୟାପକ ବିଶ୍ୱରଂଜନ, ଡକ୍ଟର ଗୋବିନ୍ଦ ଚାନ୍ଦ ଏମିତି ଅନେକ ଲୋକ ମୋତେ ପ୍ରେରଣା ଦେଇଛନ୍ତି ଲେଖିବା ପାଇଁ ।

ଏପର୍ଯ୍ୟନ୍ତ ମୋର ୯୦ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି । ସମାଲୋଚନା ଅନେକ । ସବୁ ତାଲିକା ଦେଉ ନାହିଁ । କେତୋଟି ମାତ୍ର ସୂଚନା । ୧୯୬୮ ମସିହାରୁ ମୁଁ ଆମ ଗଳ୍ପ, ଉପନ୍ୟାସ ଓ କବିତାରେ କ'ଣ ଅଛି ସେ ବିଷୟରେ ଲେଖିବା ସହିତ ବିଭିନ୍ନ ଗଳ୍ପକାର, ଔପନ୍ୟାସିକ ଓ କବିଙ୍କ କୃତି ବିଷୟରେ ଆଲୋଚନା ଲେଖିଲି । ଧାରାବାହିକ ଭାବରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଲା । ପରେ ବହି କଲି– 'ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି' । ଏହାର ଦୁଇଟି ସଂସ୍କରଣ ପରେ ଅନ୍ୟ କେତୋଟି ଲେଖାକୁ ମିଶାଇ ପ୍ରକାଶ କଲି 'ଓଡ଼ିଆ ଗଳ୍ପ : ଉନ୍ମେଷ ଓ ଉତ୍ତରଣ' । ସେହି ସମୟରେ ମଧ୍ୟ 'କ୍ଷୁଦ୍ରଗଳ୍ପ : ସ୍ରଷ୍ଟା ମାନସ' ଶୀର୍ଷକ ବହି ପ୍ରକାଶ କଲି । ଏହା ପରେ ମୁଁ ଓଡ଼ିଆ ଗଳ୍ପ ଉପରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି.ଲିଟ. ଉପାଧି ପାଇଲି । ମୋର ଏ ସଂପର୍କିତ ଲେଖାକୁ

ମୁଁ 'ଓଡ଼ିଆ ଗଳ୍ପର ଇତିହାସ' ନାମ ଦେଇ ଛପାଇଲି । ଏହି ବହିର ଆଉ ତିନୋଟି ଭାଗ ହେବ । ପାଣ୍ଡୁଲିପି ପ୍ରସ୍ତୁତ ହେଉଛି । କବିତା ସଂପର୍କରେ ବହୁ ଲେଖା ପତ୍ରପତ୍ରିକାରେ ପ୍ରକାଶିତ । ସେସବୁକୁ ଏପର୍ଯ୍ୟନ୍ତ ବହି କରି ନାହିଁ । ମୋର ବନ୍ଧୁ ଚିନ୍ତାମଣି ବଳିୟାରସିଂହଙ୍କ ପ୍ରେରଣାରେ ମୁଁ ଲେଖିଲି 'ଓଡ଼ିଆ କାବ୍ୟ କବିତାର ଧରା ଓ ଧାରା' ଶୀର୍ଷକ ପୁସ୍ତକ । ଏହାର ଅନ୍ୟ ଖଣ୍ଡଗୁଡ଼ିକ ପ୍ରକାଶ ଅପେକ୍ଷାରେ । ଫ୍ରେଣ୍ଡସ୍ ପବ୍ଲିଶର୍ସ ଶ୍ରୀ ସହଦେବ ପ୍ରଧାନଙ୍କ ସସ୍ନେହ ପ୍ରେରଣାରେ ଲେଖିଲି 'ଓଡ଼ିଆ ସାହିତ୍ୟର ଇତିହାସ' । ପ୍ରଥମ ଖଣ୍ଡ ପ୍ରକାଶ ପାଇଛି । ବ୍ୟସ୍ତତା ଭିତରେ ତାହା ପୂରଣ କରିପାରି ନାହିଁ । ସେ ମଧ୍ୟ ମୋର 'ସମୀକ୍ଷାଲୋକ', 'ଗଣକବି ସାହିତ୍ୟ-ସମୀକ୍ଷା', 'ସମାଲୋଚନା : ସ୍ୱର ଓ ସ୍ୱାକ୍ଷର', 'ସାହିତ୍ୟ-ସମ୍ବାଦ' ଆଦି ସହିତ ଅନ୍ୟାନ୍ୟ କେତେକ ସମାଲୋଚନା ପୁସ୍ତକ ଛାପିଛନ୍ତି । ଏହା ସହିତ ସେ ଛାପିଛନ୍ତି ମୋ ମୁଖବନ୍ଧ ସହିତ 'ନନ୍ଦକିଶୋର ଗ୍ରନ୍ଥାବଳୀ', ଜଗନ୍ମୋହନ ଲାଲଙ୍କ ବାବାଜୀ ନାଟକ, ଲାବଣ୍ୟବତୀ ଓ ଉପେନ୍ଦ୍ର ଭଞ୍ଜ । ମୋ ସଂପାଦିତ ବ୍ରହ୍ମାଣ୍ଡ ଭୂଗୋଳ, ପ୍ରେମଭକ୍ତି ବ୍ରହ୍ମଗୀତା, ଲାବଣ୍ୟବତୀ, ପ୍ରେମ ଚିନ୍ତାମଣି ଆଦି ଅନେକ ପୁସ୍ତକ ପ୍ରକାଶ କରିବା ସହିତ 'ଭକ୍ତଚରିତ ଭକ୍ତକଥା' ଗ୍ରନ୍ଥ ମଧ୍ୟ ଛାପିଛନ୍ତି । ଅଧିକନ୍ତୁ ସେ ମୋର କବିତା ପୁସ୍ତକ 'ଅନ୍ୟ ଏକ ପୃଥିବୀ', ରମ୍ୟରଚନା 'ଇଚ୍ଛନ୍ତି ଦାମ୍ଭିକେ', ଗଳ୍ପ ପୁସ୍ତକ 'ଏକା ଏକା ନକ୍ଷତ୍ର' ମଧ୍ୟ ଛାପିଛନ୍ତି । 'ଓଡ଼ିଆ ସାହିତ୍ୟର ଗଠନକଳା' ପୁସ୍ତକ ମଧ୍ୟ ସେ ଛାପିଛନ୍ତି । ମୋର ପ୍ରଥମ ସମାଲୋଚନା ପୁସ୍ତକ 'କଳା ସଂସ୍କୃତି ଓ ସାହିତ୍ୟ' ଜଗନ୍ନାଥ ରଥ ୧୯୭୨ ମସିହାରେ ପ୍ରକାଶ କରିଥିଲେ ।

ବୁକ୍ସ ଏଣ୍ଡ୍ ବୁକ୍ସର ସ୍ୱତ୍ୱାଧିକାରୀ ସ୍ୱର୍ଗତ କୃଷ୍ଣଚନ୍ଦ୍ର ବେହେରା ମୋର ବନ୍ଧୁ । ସେ ମୋର ବିଶ୍ୱବିଦ୍ୟାଳୟ ପ୍ରବନ୍ଧମାଳା ପ୍ରଥମେ ଛାପିଥିଲେ ୧୯୭୨ ମସିହାରେ । ତାହା ପରେ ବାରଟି ସଂସ୍କରଣ ହେଲା । ମୁଁ ଆଉ ସେଥିରେ ଧ୍ୟାନ ଦେଲି ନାହିଁ । ମୋର ପ୍ରଥମ କବିତା ବହି 'ସମୟର ଲିପି' (୧୯୭୧) ସେ ଛାପିବା ସହିତ 'ବାହୁଡ଼ା ଦାସ ରଚନାବଳୀ', 'ଦୃଷ୍ଟି ଓ ଦିଗନ୍ତ', 'ସମାଲୋଚନା : ପାଞ୍ଚଜନ୍ୟ', 'କ୍ଷୁଦ୍ରଗଳ୍ପ : ସ୍ରଷ୍ଟା ମାନସ', 'ଓଡ଼ିଆ ଗଳ୍ପର ଇତିହାସ', 'ଅଳଙ୍କାର ଓ ଅଳଙ୍କାର', 'ଅଳଙ୍କାର ଓ ସାହିତ୍ୟ ସମାଲୋଚନା' ଆଦି ପୁସ୍ତକ ଛାପିଥିଲେ । 'ଓଡ଼ିଆ ଯାତ୍ରା ଓ ଲୋକନାଟ୍ୟ ପରିକ୍ରମା' (ସଂକଳନ) ମଧ୍ୟ ସେ ପ୍ରକାଶ କରିଥିଲେ । 'କହିବାକୁ ଲାଜ' ରମ୍ୟରଚନା ମଧ୍ୟ ତାଙ୍କ ଦ୍ୱାରା ପ୍ରକାଶିତ । 'ଓଡ଼ିଆ ପ୍ରାଚୀନ ସାହିତ୍ୟ' ପୁସ୍ତକକୁ ମଧ୍ୟ ସେ ପ୍ରକାଶ କରିଥିଲେ । ସାଥୀ ମହଲ ପ୍ରକାଶ କରିଥିଲେ 'ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି' । ଓଡ଼ିଶା ବୁକ୍ସଷ୍ଟୋର ଆନୁକୂଲ୍ୟରେ ମୋର ପ୍ରକାଶ ପାଇଛି ସମାଲୋଚନା: ମଧୁପର୍କ, ନାରୀର ମୁହଁ, ଆଜ ଦେଖିଲିରେ, 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା' (ସଂକଳନ) ଆଦି କେତୋଟି

ଗ୍ରନ୍ଥ । ଭୁବନେଶ୍ୱରର ଗାୟତ୍ରୀ ପବ୍ଲିକେଶନ୍ସ ଦ୍ୱାରା 'ଶେଷ ଶୃଙ୍ଗାର' (ଗଳ୍ପ), 'ଆଲୋକିତ ଅନ୍ଧକାର' (କବିତା), 'ଓଡ଼ିଆ କାବ୍ୟକବିତାର ଧରା ଓ ଧାରା', 'ଗଣକବି', 'ସନ୍ଥକବି ବଳରାମ ଦାସ', 'ବୈଷ୍ଣବାୟନ' ଇତ୍ୟାଦି ପ୍ରକାଶିତ । 'କାହାଣୀ' ପ୍ରକାଶନ ମୋର 'ସଂଜୟ ଉବାଚ', 'ଗୋପଦାଣ୍ଡ ଓ ଅନ୍ୟାନ୍ୟ ପ୍ରବନ୍ଧ', ଆର୍ଯ୍ୟ ପ୍ରକାଶନ ମୋର 'ରଙ୍ଗସଭା', 'ଏକାକୀ ଈଶ୍ୱର', 'ଭିନ୍ନ ଇଲାକା ଭିନ୍ନ ଦୃଷ୍ଟି' (ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ) ଇତ୍ୟାଦି ପ୍ରକାଶ କରିଥିଲାବେଳେ ସତ୍ୟବ୍ରତ ପ୍ରକାଶନୀ ମୋର କବିତା ପୁସ୍ତକ 'ପୁନଶ୍ଚ ମଣିଷ' ଛାପିଛନ୍ତି । ଏନ୍.ବି.ଟି. 'ଗୋଦାବରୀଶ ମହାପାତ୍ରଙ୍କ ଶ୍ରେଷ୍ଠ ଗଳ୍ପ', 'ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଶ୍ରେଷ୍ଠ ଗଳ୍ପ', କେନ୍ଦ୍ର ସାହିତ୍ୟ ଏକାଡେମୀ 'ଡକ୍ଟର ହରେକୃଷ୍ଣ ମହତାବ', 'ବ୍ରହ୍ମାନନ୍ଦ ପଣ୍ଡା' ଶୀର୍ଷକ ଦୁଇଟି ମନୋଗ୍ରାଫକୁ ପ୍ରକାଶ କରିଅଛନ୍ତି । ଗଣକବି ଗୋପାଳ ଦାଶ ସ୍ମୃତି ସଂସଦ ଛାପିଛନ୍ତି 'ଗଣକବି ଗୋପାଳ ଦାଶ ଗ୍ରନ୍ଥାବଳୀ' ଦୁଇଟି ଭାଗରେ । ମହାପୁରୁଷ ହାଡ଼ିଦାସ ଗ୍ରନ୍ଥାବଳୀ ମଧ ମୋର ପ୍ରକାଶ ପାଇଛି । ଏହା ବ୍ୟତୀତ ପ୍ରାୟ ଦଶଖଣ୍ଡ ଶିଶୁ ଓ କିଶୋର ସାହିତ୍ୟ, ଅନେକ ସଂପାଦିତ ଗ୍ରନ୍ଥ ରହିଛି । ୨୦୧୩ ମସିହାରେ ଦୁଇଟି କବିତା ପୁସ୍ତକ ଯଥା– 'ବିକଳ୍ପ ସତ୍ତା' ଓ 'ବିବର୍ତ୍ତିତ ପୃଥ୍ୱୀ' ଏବଂ ଦୁଇଟି ରମ୍ୟରଚନା ପୁସ୍ତକ ଯଥା– 'ମାରୀଚ ମାୟା ଓ ଅନ୍ୟାନ୍ୟ ପ୍ରବନ୍ଧ' ଓ 'ବିଦୁର ବାଣୀ ଓ ଅନ୍ୟାନ୍ୟ ପ୍ରବନ୍ଧ' ପ୍ରକାଶିତ ।

ଏହାହିଁ ମୋର ସାହିତ୍ୟିକ ପରିଚୟ । ଏବେ ମଧ ମୋ ପାଖରେ ପତ୍ରପତ୍ରିକାରେ ପ୍ରକାଶିତ ଲେଖା ଓ ପାଣ୍ଡୁଲିପି ଗଚ୍ଛିତ ରହିଛି । ମୋର କେତେକ ଅପୂର୍ଣ୍ଣ ପୁସ୍ତକ ରହିଛି । ଅନେକ ରମ୍ୟରଚନା, କବିତା, ଗଳ୍ପ, ଅନୁଚିନ୍ତା ରହିଛି । ଈଶ୍ୱରଙ୍କର ଇଚ୍ଛା ଥିଲେ ପ୍ରକାଶ କରିବି । ମୋର ସାରସ୍ୱତ କୃତି ପାଇଁ ମୁଁ ବହୁ ସ୍ଥାନରେ ସମ୍ମାନିତ ଓ ପୁରସ୍କୃତ ହୋଇଛି । ତାହାର ଲମ୍ବା ତାଲିକା ନ ଦେଇ କେତୋଟି ମାତ୍ର ଉଲ୍ଲେଖ କରୁଛି ।

୧) ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର – ୨୦୦୧
୨) ବିଷୁବ ମିଳନ ଝଙ୍କାର ପୁରସ୍କାର – ୧୯୯୦
୩) ଉତ୍କଳ ସାହିତ୍ୟ ସମାଜ ସମାଲୋଚନା ପୁରସ୍କାର – ୧୯୯୮
୪) ଗବେଷଣା ପରିଷଦ କ୍ଷେତ୍ରବାସୀ ବିଦ୍ୟା ପୁରସ୍କାର – ୧୯୯୯
୫) ନିଖିଳ ଉତ୍କଳ ବାଗ୍ମୀ ପୁରସ୍କାର (ଭଦ୍ରକ) – ୨୦୦୪
୬) ଗୋକର୍ଣ୍ଣିକା ସାହିତ୍ୟ ପୁରସ୍କାର – ୧୯୮୭
୭) କବିଶେଖର ଚିନ୍ତାମଣି ମହାନ୍ତି ପୁରସ୍କାର – ୨୦୦୬
୮) ଦୀନକୃଷ୍ଣ ସାହିତ୍ୟ ପୁରସ୍କାର – ୨୦୦୬
୯) ଦୀନବନ୍ଧୁ ସାହୁ ସ୍ମୃତି ପୁରସ୍କାର, କେନ୍ଦ୍ରାପଡ଼ା ସ୍ୱୟଂଶାସିତ କଲେଜ – ୨୦୧୧
୧୦) ଓଡ଼ିଶା ଭାସ୍କର ସାରସ୍ୱତ ସମ୍ମାନ ଓ ପୁରସ୍କାର – ୨୦୧୧

ସମ୍ମାନ ଓ ଉପାଧି ପ୍ରଦାନ

୧) କେନ୍ଦ୍ରାପଡ଼ା ରତ୍ନ (ଧନୁର୍ଜୟ ଚାରିଟେବୁଲ୍ ଟ୍ରଷ୍ଟ, କେନ୍ଦ୍ରାପଡ଼ା) - ୨୦୧୦
୨) ସାହିତ୍ୟ ସ୍ୱୟଂଭୂ (ଅଭିମନ୍ୟୁ ସାହିତ୍ୟ ସଂସଦ, ବାଲିଆ) - ୧୯୯୬
୩) ଏକାମ୍ର ସମ୍ମାନ - ୨୦୧୦
୪) ଉଦୟଭାନୁ ଜ୍ୟୋତି ସମ୍ମାନ - ୨୦୦୯
୫) ଅଭିମନ୍ୟୁ ସ୍ମୃତି ସଂସଦ, ଭୁବନେଶ୍ୱର - ୧୯୭୬
୬) 'ଶ୍ରାବଣୀ' ସମ୍ମାନ-ଶ୍ରାବଣୀ ସାହିତ୍ୟ ସଂସଦ, କେନ୍ଦ୍ରାପଡ଼ା - ୧୯୭୩
୭) କବିବର ରାଧାନାଥ ରାୟ ସମ୍ମାନ (ସୋରୋ) - ୨୦୦୪
୮) ଚଲାପଥ ସାହିତ୍ୟ ସମ୍ମାନ, ଦାନଗଦି - ୧୯୮୦
୯) ବାର୍ତ୍ତା ପ୍ରତିଷ୍ଠାନ ସାହିତ୍ୟ ସମ୍ମାନ, ବାଲେଶ୍ୱର - ୧୯୮୬
୧୦) ଶାମ୍ବୁକା ସାହିତ୍ୟ ସମ୍ମାନ, କଟକ - ୧୯୮୫
୧୧) ନୀଳଶୈଳ ସମ୍ମାନ - ୧୯୮୭
୧୨) ଗଣକବି ବୈଷ୍ଣବ ପାଣି ସମ୍ମାନ, ମାହାଙ୍ଗା - ୧୯୮୫
୧୩) ଆଦିନାଟ୍ୟକାର ଜଗନ୍ମୋହନ ଲାଲ ସମ୍ମାନ, ମାହାଙ୍ଗା - ୧୯୮୮
୧୪) ସୁନାଫରୁଆ ସମ୍ମାନ, ଚଣ୍ଡିଖୋଲ - ୧୯୯୪
୧୫) ସରଳାଦେବୀ ଉପାୟନ, ରାଷ୍ଟ୍ରୀୟ ମହିଳା ସଂସ୍ଥାନ, ଓଡ଼ିଶା ଶାଖା, ଭୁବନେଶ୍ୱର-୧୯୯୫
୧୬) ଓଡ଼ିଆ ସାହିତ୍ୟ ସମାଜ ସମ୍ମାନ, ଡି.ଏ.ଭି. କଲେଜ, ନିରାକାରପୁର - ୧୯୯୬
୧୭) ସହକାର ସାହିତ୍ୟ ସମ୍ମାନ - ୧୯୯୯
୧୮) ଅରୁଣୋଦୟ ନଗର ନାଗରିକ ପରିଷଦ ସମ୍ମାନ - ୨୦୦୦
୧୯) ଯୁଗାନ୍ତର ସାହିତ୍ୟ ସମ୍ମାନ - ୨୦୦୧
୨୦) ବାୟା ଅବଧୂତ ମହାବିଦ୍ୟାଳୟ, ତିର୍ତ୍ତୋଲ ସାରଳା ସମ୍ମାନ - ୧୯୯୫
୨୧) ଏକାମ୍ର ସମ୍ମାନ, କେଦାରନାଥ ଗବେଷଣା ପରିଷଦ, ଭୁବନେଶ୍ୱର-୨୦୧୦
୨୨) ଆକାଶବାଣୀ, କଟକ ହୀରକ ଜୟନ୍ତୀ ସମ୍ମାନ - ୨୦୦୭
୨୩) ପତିତପାବନ ସାହିତ୍ୟ ସଂସଦ, କଣ୍ଢେଇ, ଦେବଗଡ଼ - ୨୦୦୯
୨୪) ଆର୍ତ୍ତବଲ୍ଲଭ ସ୍ମୃତି ସମ୍ମାନ, କଟକ - ୨୦୧୧
୨୫) ଉତ୍କଳ ସାହିତ୍ୟ କଳା ପରିଷଦ, ସମ୍ମାନ - ୨୦୦୪

୨୬) ମାନସିଂହ ସମ୍ମାନ, ସାରଳା ସାହିତ୍ୟ ସଂସଦ, କଟକ – ୨୦୧୨
୨୭) ଶିକ୍ଷକ ଗୌରବ ସମ୍ମାନ, ପୁରାତନ ଛାତ୍ର ସଂସଦ, ଫକୀରମୋହନ କଲେଜ, ବାଲେଶ୍ୱର – ୨୦୧୨
୨୮) ଜନସୁଧା ସାରସ୍ୱତ ସମ୍ବର୍ଦ୍ଧନା, କଟକ – ୨୦୧୨
୨୯) ସାହିତ୍ୟ ରତ୍ନ ସମ୍ମାନ, ରଜତ ଜୟନ୍ତୀ ସମାରୋହ, ସ୍ୱାଗତିକା, କଟକ–୨୦୧୨
୩୦) ପ୍ରଜ୍ଞାଭାରତୀ ସମ୍ମାନ, ଅଚ୍ୟୁତ ମହୋତ୍ସବ, କଟକ – ୨୦୧୧
୩୧) ଅଚ୍ୟୁତ ସମ୍ମାନ, କଟକ – ୨୦୦୯
୩୨) ଗୋଦାବରୀଶ ସାହିତ୍ୟ ସଂସଦ, ଭୁବନେଶ୍ୱର, ଗୋଦାବରୀଶ ସାହିତ୍ୟ ସମ୍ମାନ–୨୦୦୪
୩୩) ମାଣିକେଶ୍ୱରୀ ବକ୍ତୃତାମାଳା ସମ୍ମାନ, ଭବାନୀପାଟଣା ସ୍ୱୟଂଶାସିତ କଲେଜ–୨୦୧୧
୩୪) ଉତ୍କଳ ପାଠକ ସଂସଦ ସମ୍ମାନ, କଟକ – ୨୦୧୨
୩୫) ଶ୍ରୀଜଗନ୍ନାଥ ସେବା ସଂସ୍ଥା ସମ୍ମାନ, ସୁନାବେଡ଼ା – ୨୦୧୩
୩୬) ଛାତ୍ରଗୌରବ, ଇନ୍ଦୁପୁର ହାଇସ୍କୁଲ ପୁରାତନ ଛାତ୍ର ସଂସଦ – ୨୦୧୨
୩୭) ସମାଜସେବୀ ଲକ୍ଷ୍ମୀଧର ନାୟକ ସ୍ମୃତି ସମ୍ମାନ, ମାଲଦା, ଭଣ୍ଡାରିପୋଖରୀ, ଭଦ୍ରକ – ୨୦୧୩
୩୮) ପୁନର୍ନବା ସାହିତ୍ୟ ସଂସଦ, ରଜତ ସମ୍ବର୍ଦ୍ଧନା – ୨୦୦୭
୩୯) କେନ୍ଦ୍ରାପଡ଼ା ସାହିତ୍ୟ ସଂସଦ, ପ୍ରତିଭା ସମ୍ମାନ – ୨୦୦୭
୪୦) ସାରସ୍ୱତ ସଂସ୍ଥାନ ସମ୍ମାନ, ମହାନଦୀ ବିହାର – ୨୦୦୬
୪୧) 'ସହଯୋଗୀ' ସାହିତ୍ୟ ସମ୍ମାନ – ୨୦୦୭
୪୨) ବିଶ୍ୱଭାରତୀ ଓଡ଼ିଆ ବିଭାଗ ହୀରକ ଜୟନ୍ତୀ ସମ୍ମାନ – ୨୦୦୭
୪୩) ଯୁଗାନ୍ତର ସମ୍ମାନ – ୨୦୦୧
୪୪) ଦୀନକୃଷ୍ଣ ସମ୍ମାନ, ଦୀନକୃଷ୍ଣ ମହାବିଦ୍ୟାଳୟ, ଜଳେଶ୍ୱର – ୨୦୦୬
୪୫) କଳିଙ୍ଗ ବାଲିଯାତ୍ରା ମହୋତ୍ସବ ବୋଇତ ବନ୍ଦାଣ ସମ୍ମାନ – ୨୦୧୦
୪୬) ଗୀତା ରସାମୃତ ସିନ୍ଧୁ ସମ୍ମାନ – ୨୦୧୦
୪୭) ଶତଦ୍ରୁ ପ୍ରବନ୍ଧ ସମ୍ମାନ – ୨୦୧୧
୪୮) ରାଜୀବ ଗାନ୍ଧୀ ସଦ୍‌ଭାବନା ସମ୍ମାନ – ୨୦୦୮
୪୯) ଜଗନ୍ନାଥ ପୂଜ୍ୟପୂଜା ସାଂସ୍କୃତିକ ପରିଷଦ, ଚାରିଗାଁ – ୨୦୧୦

୫୦) ଅରୁଣ ସାହିତ୍ୟ ସମ୍ମାନ, ଅରୁଣୋଦୟ ନଗର ନାଗରିକ ପରିଷଦ, କଟକ-୨୦୦୧

୫୧) ପ୍ରଥମ ସାଂସଦ ନିରଂଜନ ଜେନା ସ୍ମୃତି ସମ୍ମାନ - ୨୦୧୨

୫୨) ଗୋପୀନାଥ ମହାନ୍ତି ସାହିତ୍ୟ ସମ୍ମାନ, ସୂଚନା ଭବନ, ଭୁବନେଶ୍ୱର - ୨୦୧୩

୫୩) କାନ୍ତକବି ଲକ୍ଷ୍ମୀକାନ୍ତ ସମ୍ମାନ, ଭଦ୍ରକ - ୨୦୧୩

ଏପରି ଅନେକ ସମ୍ମାନ ମୁଁ ପାଇଛି । ଏସବୁ ଆଦୌ ବଡ଼ କଥା ନୁହେଁ । ଯେତେବେଳେ ମୁଁ ଯେଉଁଠିକି ଯାଇଛି ସେଠି ମୁଁ ପାଇଛି ଆନ୍ତରିକ ଶ୍ରଦ୍ଧା ଓ ସମ୍ମାନ । ସାରା ଓଡ଼ିଶାର ଏପରି ଜିଲ୍ଲା ବା ବିଶିଷ୍ଟ ସ୍ଥାନ ନାହିଁ, ଯେଉଁଠିକୁ ମୁଁ ବକ୍ତୃତା ଦେବାକୁ ନ ଯାଇଛି । ଏ ବୟସରେ ମଧ୍ୟ ବନ୍ଧୁମାନଙ୍କ ଶ୍ରଦ୍ଧାକୁ ଏଡ଼ାଇ ନ ପାରି ଯାଉଛି । ସାହିତ୍ୟ, ଧର୍ମ, ସଂସ୍କୃତି, ଶିକ୍ଷା, ସମାଜସେବା ଆଦି ବିଭିନ୍ନ ବିଷୟରେ ଅନୁଷ୍ଠିତ ସଭାକୁ ମୁଁ ଅତୀତରେ ଯାଇଛି, ଏବେ ମଧ୍ୟ ଯାଉଛି । ମୋର ଦୁଃଖ ହେଉଛି ଯେ ଗଣତନ୍ତ୍ରର ପଞ୍ଚଷଠୀ ବର୍ଷ ବିତିଗଲେ ମଧ୍ୟ ଆମେ କ୍ରମଶଃ ସାମନ୍ତବାଦୀ ଆଚାର ବିଚାର ଓ ମାନସିକତାକୁ ଗତି କରିଯାଉଛୁ । ବିଶେଷତଃ ଏହି ମାନସିକତାର ସୃଷ୍ଟି ଓ ପ୍ରସାର ପାଇଁ ରାଜନେତା ଓ ଉଚ୍ଚପଦାଧିକାରୀ ଦାୟୀ । ମୁଁ ଲକ୍ଷ୍ୟ କରୁଛି ଯେ ଅଧିକାରୀ ଓ ପୋଲିସ, ଶିଳ୍ପପତି ଓ ବ୍ୟବସାୟୀ ସେହି ମାନସିକତାର ଦାସ । ସମାଜବାଦ ଯେପରି ସ୍ୱପ୍ନ ହୋଇଯାଉଛି । ଲେଖକମାନଙ୍କ ଭିତରେ ସେହି ମାନସିକତା ଦେଖା ଦେଉଛି । ସ୍ୱାଧୀନତା ପୂର୍ବରୁ ଯେଉଁ ଔପନିବେଶିକ ଶାସନ ଶୋଷଣ ଚାଲୁଥିଲା ଓ ସେଥିରେ ଭାରତୀୟମାନେ ଯେପରି ବଶୀଭୂତ ହୋଇ ବିଳାସିତାକୁ ଜୀବନର ବେଦ କରି ନେଉଥିଲେ ଏବେ ମଧ୍ୟ ସେହି ଔପନିବେଶିକତା ନୂଆ ରୂପରେ ଆସ୍ଥାନ ଜମେଇ ଦେଇଛି । ଅତୀତର ସାମନ୍ତବାଦୀ ମନୋଭାବ ଯେମିତି ଆହୁରି କାୟା ବିସ୍ତାର କରିଯାଉଛି । ଲେଖକମାନେ ମଧ୍ୟ ଏହି ମନୋଭାବର ଶିକାର ହୋଇଯାଉଛନ୍ତି । ବଡ଼ ବଡ଼ ଶିଳ୍ପପତି ଓ କୁବେରମାନେ ମୋଟା ଅଙ୍କର ପୁରସ୍କାର ଦେଇ ଲେଖକମାନଙ୍କୁ ବଶୀଭୂତ କରି ରଖୁଛନ୍ତି ଓ ଲେଖକମାନେ ମଧ୍ୟ ସେହି ପୁରସ୍କାର ଓ ଉପାଧି ପାଇବା ପାଇଁ ପ୍ରତିଯୋଗିତା କରୁଛନ୍ତି । ଔପନିବେଶିକ ଓ ସାମନ୍ତବାଦୀ ପରିବେଶରେ ଯେଉଁ ପଦଲେହନ ଓ ତୋଷାମଦ କରିବାର ପରଂପରା ଥିଲା ତାହା ପୁଣି ଏ ଯୁଗରେ ପ୍ରଭାବ ବିସ୍ତାର କରୁଛି । ଏହା କିନ୍ତୁ ସାହିତ୍ୟ ପାଇଁ ଶୁଭ ଲକ୍ଷଣ ନୁହେଁ । ମୋ ଭିତରକୁ ବାରମ୍ବାର ଆସିଯାଉଛି ଋଷି-ଯୁଗର ରଚନାମାନଙ୍କ ଭିତରେ ଥିବା ଅହଂଦୃପ୍ତ ଓ ନିଜକୁ ଦାନୀ ତଥା ଶ୍ରେଷ୍ଠ ମନେକରୁଥିବା ରାଜାମାନଙ୍କ ପ୍ରତି ଋଷି-କବିଙ୍କର ଶାଣିତ ଉକ୍ତି ଓ ରାଜାମାନେ ବାରମ୍ବାର ସେମାନଙ୍କ ପାଦ ତଳେ ପଡୁଥିବାର

ଦୃଶ୍ୟ । ମନେପଡ଼ିଯାଉଛି ପୁରାଣମାନଙ୍କରେ ବର୍ଣ୍ଣିତ କାହାଣୀ ଭିତରେ ଥିବା ସମାଜ ଅଭିମୁଖୀ ବ୍ୟଞ୍ଜନା । କାହିଁ ଏବେ ସେ ଚିତ୍ର ସାହିତ୍ୟରେ ? ସାହିତ୍ୟ ଏବେ କ'ଣ ଅହଂର ଓଁକାର ହୋଇଯାଉ ନାହିଁ କି ? ଏହା କ'ଣ ମିତ୍ରଦୃଷ୍ଟି ବା ସମଦୃଷ୍ଟି ପ୍ରକାଶ କରିପାରୁଛି କି ? ଏହା ସତ୍ତ୍ୱେ ସାହିତ୍ୟ ଚାଲିଛି ଓ ଭବିଷ୍ୟତରେ ମଧ୍ୟ ଚାଲିବ । ବ୍ୟକ୍ତିଗତତାର ବନ୍ଧନ ଭିତରୁ ମୋହମୁକ୍ତ ହୋଇ ଗତି କରିବ । ସକଳ ଜାତିଗତ, ଧର୍ମଗତ ଭେଦକୁ ଦୂର କରି ଏକ ମାନବିକ ମହାଭାବକୁ ଆପଣେଇ ନେବ । ଏ ବିଶ୍ୱାସରେ ମୁଁ ଗତି କରୁଛି । ମୋର ଗୋଷ୍ଠୀ ନାହିଁ କି ସଂଗଠନ ନାହିଁ । ମୁଁ ଏକା, ଆସିଛି ଏକା । ଏକା ମଧ୍ୟ ଯିବି । ମଝିରେ ଖାଲି ଯାହା ସଂପର୍କର ସେତୁବନ୍ଧନ । ଏହି ସେତୁ ଦୃଢ଼ରୁ ଦୃଢ଼ତର ହେଉ– ସାନବଡ଼ ଉଚ୍ଚନୀଚ ସମସ୍ତଙ୍କ ଭିତରେ ଶ୍ରଦ୍ଧାର ବାତାବରଣ ସୃଷ୍ଟି କରୁ– ଏହାହିଁ ମୋର କାମନା ।

## ଶେଷକଥା

ଏ ପର୍ଯ୍ୟନ୍ତ ମୋ ଜୀବନର ନାନା କଥା କହିଆସିଲି । ଏବେ ମୁଁ ବୟସର ଭାରରେ ନଇଁପଡୁଛି । ନାନା ବ୍ୟାଧି ମାଡ଼ିଆସୁଛି । କିଏ ଅଟକେଇବ ? ଏହା ସତ୍ତ୍ୱେ ମୁଁ ଯାଉଛି ବାହାରକୁ, ସଭାସମିତିକୁ । ସ୍ତ୍ରୀ ଅଟକାଉଛି, ନ ଯିବାକୁ କହୁଛି; ମୁଁ କିନ୍ତୁ କାହାର ସ୍ନେହ ଶ୍ରଦ୍ଧାକୁ ଏଡ଼ି ଦେଇପାରୁ ନାହିଁ । ମୁଁ ଯାଉଛି ଓ ଭାବୁଛି ମୋ ଦି'ପଦ କଥା ଯଦି ଶୁଣିବାକୁ ଲୋକେ ଭଲ ପାଉଛନ୍ତି ମନା କରିବି କାହିଁକି ? ଆଜିକାଲିର ଲୋକଚରିତ୍ର ମୋତେ ବିଚଳିତ କରି ଦେଉଛି । ରାଜନେତାମାନେ ହୁଅନ୍ତୁ, ଅଧିକାରୀମାନେ ହୁଅନ୍ତୁ ବା ପୋଲିସ କର୍ମଚାରୀ ହୁଅନ୍ତୁ ଅଥବା ଲେଖକମାନେ ହୁଅନ୍ତୁ ସମସ୍ତେ ମୂଳତଃ ଲୋକ । ଶିକ୍ଷାଦୀକ୍ଷା ବା ସୁବିଧା ସୁଯୋଗ ପାଇ ହୁଏତ ଏମାନେ ଉପରକୁ ଉଠି ଯାଇଛନ୍ତି । ଏମାନେ ସମସ୍ତେ ହୋଇଯାଉଛନ୍ତି ଥିଲାବାଲା ବର୍ଗର ମଣିଷ । ଏଇମାନେ ସୁବିଧା ପାଇ ବଡ଼ ହୋଇଛନ୍ତି । ଅନ୍ୟ ଅର୍ଥରେ ବାବୁଶ୍ରେଣୀର ହୋଇଯାଇଛନ୍ତି । ଏଇମାନେ ଛଳନାପୂର୍ଣ୍ଣ ଦୃଷ୍ଟିରେ ତଳିଆବର୍ଗକୁ ଚାହାନ୍ତି । ଦୟା ଦୃଷ୍ଟି ପକାନ୍ତି । ଛତାଟିଏ, ସାଇକେଲଟିଏ, ଚାଉଳ ମୁଠାଏ ବା ଆଉ କ'ଣ ଦେଇ ବାହାବା ନିଅନ୍ତି । ଭାବନ୍ତି ସମାଜରେ ସମାନତା ଆସିଗଲା । ଏହା ଦ୍ୱାରା ଯେ କର୍ମ-ସଂସ୍କୃତି ହ୍ରାସ ପାଇଯାଉଛି ଏକଥା କେହି ବୁଝନ୍ତି ନାହିଁ । ଲେଖକମାନେ ସଂପ୍ରତି ଥିଲାବାଲା ବର୍ଗର । ବାହାରୁ ଆମଦାନୀ ସଂସ୍କୃତି ଓ ଜୀବନଚର୍ଯ୍ୟାକୁ ନେଇ ପରୀକ୍ଷା ନିରୀକ୍ଷା କରୁଛନ୍ତି । ପ୍ରେମ ନାମରେ ଜାନ୍ତବ ଯୌନଜିଜ୍ଞାସାକୁ ଗୁରୁତ୍ୱ ଦେଉଛନ୍ତି । ମୂଲ୍ୟବୋଧ ନୁହେଁ; ମୂଲ୍ୟ ଉପରେ ପ୍ରାଧାନ୍ୟ ଦେଉଛନ୍ତି । ସମାଜ ଚାଲିଛି

ତା’ ବାଟରେ । ଲେଖକ ଲେଖୁଛି ତା’ ବାଟରେ । ଲେଖକର ଯେମିତି ସମାଜ ପ୍ରତି, ମଣିଷ ପ୍ରତି ବା ରାଷ୍ଟ୍ର ପ୍ରତି ଦାୟବଦ୍ଧତା ରହୁ ନାହିଁ ।

ମୁଁ ଏସବୁ କଥା ଭାବେ ଓ ଭାବୁଛି । ମୋ ଲେଖା ଭିତରେ ଏସବୁକୁ ପ୍ରକାଶ କରୁଛି । ମୁଁ ଭଲ ପାଏ ମୋ ସମୟର ସମସ୍ତ ଲେଖକଙ୍କ ଲେଖାକୁ, ଭଲ ପାଏ ମଧ୍ୟ ପ୍ରାଚୀନ ଲେଖାକୁ । ଏବେ ମୁଁ ଅନେକ ସମୟରେ ପଢ଼ୁଛି ଉପନିଷଦ, ଗୀତା, ଭାଗବତକୁ । ସାରଳା ସାହିତ୍ୟ ମୋତେ ଅଭିଭୂତ କରୁଛି । ସନ୍ଥ ସାହିତ୍ୟର ମର୍ମ ଉଦ୍‌ଘାଟନ କରିବାରେ ଆନନ୍ଦ ପାଉଛି । ଅନେକ ମହାପୁରୁଷଙ୍କ ଜୀବନୀ ପଢ଼ୁଛି । ଯେତେବେଳେ ଯେଉଁ ଗ୍ରନ୍ଥଟି ପାଏ ମୁଁ ପଢ଼େ । ଶିଶୁ ସାହିତ୍ୟ ପଢ଼ିବାକୁ ମୋତେ ବହୁତ ଭଲ ଲାଗେ । ପ୍ରଫେସର ହୃଦାନନ୍ଦ ରାୟ ମୋର ଦୀକ୍ଷାଗୁରୁ । ତାଙ୍କର ଦର୍ଶନ ତତ୍ତ୍ୱମୂଳକ ଗ୍ରନ୍ଥ; ବିଶେଷତଃ ଶଙ୍କରାଚାର୍ଯ୍ୟଙ୍କ ଜୀବନୀ ଓ ଶଙ୍କର ଭାଷ୍ୟର ବ୍ୟାଖ୍ୟା ମୋତେ ଅନୁପ୍ରାଣିତ କରେ ।

ମୋ ପଢ଼ିବା ଓ ଲେଖିବା ବନ୍ଦ ହୋଇ ନାହିଁ । ତାହା ତା’ର ବାଟରେ ଯାଉଛି । କେତେ କେତେ ଜଣାଅଜଣା ଲେଖକ/ଲେଖିକା ମୋ ଘରକୁ ଆସନ୍ତି । ଅନେକ କିଛି ଆଲୋଚନା କରନ୍ତି । ଖୁବ୍ ଭଲ ଲାଗେ । କେତେ ମଧ୍ୟ ସେମାନଙ୍କ ପୁସ୍ତକର ମୁଖବନ୍ଧ ଲେଖିଦେବାକୁ ଅନୁରୋଧ କରନ୍ତି । ମନା କରିପାରେ ନାହିଁ । ଲେଖିଦିଏ । କିଏ ପୋଖତ କି କଞ୍ଚା ବିଚାର କରେ ନାହିଁ । ସମସ୍ତଙ୍କୁ ଉତ୍ସାହ ଦିଏ । ଏବେ ମୁଁ ସଭାସମିତିକୁ ଯାଉଛି । ନ ଯିବା ପାଇଁ ଯେତେ ଚିନ୍ତା କଲେ ବି କାହା କଥା ଭାଙ୍ଗି ନ ପାରି ଯାଉଛି । ଘରେ ରହିଥିଲାବେଳେ ମୋ ନାତିନାତୁଣୀଙ୍କ ସହିତ ବେଶ୍ କୌତୁକ କରେ । ସେମାନଙ୍କୁ ଗପ କହେ । ଆନନ୍ଦ ପାଏ । ମୋ ପୁଅଝିଅ ଙ୍କ୍ୱାଇଁ ସମସ୍ତେ ମୋ କଥା ବୁଝନ୍ତି । କେହି ମୋତେ କିଛି କହନ୍ତି ନାହିଁ । ମୋ ସମୁଦି ସମୁଦୁଣୀ ଖୁବ୍ ଭଲ ପାଆନ୍ତି । ଏବେ ମଧ୍ୟ ମୋ ଗାଁ ଲୋକେ ମୋତେ ଶ୍ରଦ୍ଧା ଜଣାନ୍ତି । ବେଳେବେଳେ ମୁଁ ମଧ୍ୟ ଯାଏ ଗାଁକୁ । ସାରା ଓଡ଼ିଶା ବୁଲିଛି, ଯାଇଛି କେତେ ସଭାସମିତିକୁ । ସବୁଠି ପାଇଛି ଅଫୁରନ୍ତ ସ୍ନେହ । ମୋ ସ୍ତ୍ରୀ ମୋତେ କହେ– ‘ଗପୁଡ଼ି ବୁଢ଼ା’ । କେହି ଆସିଲେ ମୁଁ ଗପେ । ସ୍ତ୍ରୀ ବିରକ୍ତ ହୁଏ । ସେ କହେ– ଆଉ କୁଆଡ଼େ ଯାଅ ନାହିଁ । ଘରେ ବସ । ବହୁତ ଗଲଣି । କ’ଣ ମିଳୁଛି ସେଥିରୁ ? ତମେ ଯାହାଙ୍କୁ ସବୁ ମଣିଷ କରିଛ ସେମାନେ କ’ଣ ତମ ମୁହଁକୁ ଚାହିଁଲେ ? ଓଲଟି ପଛରୁ ଛୁରୀ ମାରିଲେ । ତମେ ଜମା ମଣିଷଙ୍କୁ ଚିହ୍ନିପାରୁନା । ପ୍ରକୃତରେ ମୁଁ ମଣିଷକୁ ଚିହ୍ନିଛି କି ନାହିଁ ଜାଣେନା । ମୁଁ ଗୋଟିଏ ଭିନ୍ନ ମଣିଷ । କବିବର ରାଧାନାଥ ରାୟଙ୍କ ଭାଷାରେ– ‘ମୋ ଜୀବନ ଗଢ଼ା ଭିନ୍ନ ଉପାଦାନେ ?’ ମୁଁ ଚାଲିଛି ମୋ ବାଟରେ । ବାପାଙ୍କୁ ପିଲାଦିନେ ହରାଇବା ପରଠାରୁ କେତେ କେତେ ଅମଡ଼ା ବାଟରେ ମୁଁ ଚାଲିଆସିଛି । କେହି ମୋ ଉପରେ ବା ତଳେ ନ ଥିଲେ ମୋତେ ସାହାଯ୍ୟ କରିବାକୁ । ନିଜ ଗୋଡ଼ରେ

ମୁଁ ନିଜେ ଛିଡ଼ା ହୋଇଛି । ବଣା ହୋଇଛି । ପୁଣି ବାଟ ଖୋଜି ବାଟ ପାଇଛି । କୌଣସି ଆକାଂକ୍ଷା ମୋର ନାହିଁ । ଈଶ୍ୱରଙ୍କୁ ପ୍ରାର୍ଥନା ଯେତେବେଳେ ମୁଁ ଏ ମାଟି ଛାଡ଼ି ଯିବି, ସୁଖରେ ମୋତେ ତାଙ୍କ ପାଖକୁ ନେଇଯାଆନ୍ତୁ ଓ ମୋର ଅପୂର୍ଣ୍ଣ କାର୍ଯ୍ୟଗୁଡ଼ିକୁ ସମାପ୍ତ କରିବାକୁ ପ୍ରେରଣା ଦିଅନ୍ତୁ । ମୁଁ ଗୋଟିଏ ସ୍ନେହ ଓ ପ୍ରେମକାଙ୍ଗାଳ ମଣିଷଟିଏ । ଯେଉଁଠି ପାଏ ସେଇଠି ମୁଁ ବାନ୍ଧି ହୋଇଯାଏ । ତାହା ମଧ୍ୟ ହୋଇଯାଏ ମୋର ପ୍ରେରଣା । ପ୍ରଜ୍ଞାକୁ ମୁଁ ଉପାସନା କରେ । ଶୁଦ୍ଧପ୍ରଜ୍ଞା ମୋ ଚେତନାର ବାଣୀ ମନ୍ତ୍ର । ଆର୍ଯ୍ୟ ଚେତନା ମୋର ଉପାସ୍ୟ । ଇଂଜିନିୟର ପ୍ରିୟବ୍ରତ ଦାସଙ୍କ 'ବେଦ ମନୁଷ୍ୟ କୃତ କି' ଓ ଚାରିବେଦର ସଂହିତା ମୋତେ ତନ୍ମୟ କରେ । ତାଙ୍କର ନିଷ୍କପଟ ପ୍ରଜ୍ଞା ମୋତେ ମୁଗ୍ଧ କରେ । ମୋ ବଙ୍କାଟଙ୍କା କାହାଣୀର ଉପସଂହାର ବେଳକୁ ମୋ ସ୍ମୃତିପଟରେ ଅନେକ ଲୋକଙ୍କ କଥା ମନେ ପଡ଼ିଯାଉଛି । ମନେପଡୁଛନ୍ତି ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଭଞ୍ଜପ୍ରୀତି ଓ ଭିନ୍ନ ଦୃଷ୍ଟିକୋଣର ବକ୍ତବ୍ୟ, ମନେପଡୁଛନ୍ତି ପ୍ରଫେସର ଜୟକୃଷ୍ଣ ମିଶ୍ର, ରଜତ କର ଓ ହୃଦାନନ୍ଦ ରାୟଙ୍କର ଭଞ୍ଜସାହିତ୍ୟ ପ୍ରତି ଗଭୀର ଅନୁରାଗ । ଜୟକୃଷ୍ଣ ମିଶ୍ର ମୋର ଏମ୍.ଏ. ଶ୍ରେଣୀର ଶିକ୍ଷକ ଥିଲେ । ସେ ଅତ୍ୟନ୍ତ ସ୍ନେହୀ । ତାଙ୍କ ବସାକୁ ଗଲେ ସେ ଯେପରି ବିହ୍ୱଳ ହୋଇଯାଆନ୍ତି ତାହା ମୋର ମନେପଡୁଛି । ଅବସର ପରେ ସେ ରହିଲେ ମୋ ବସା ନିକଟବର୍ତ୍ତୀ ନିତ୍ୟାନନ୍ଦ ସାହୁଙ୍କର ଗୋଟିଏ ଭଡ଼ା ଘରେ । ଏହି ସମୟରେ ତାଙ୍କର ହେଲା ହୃଦ୍‌ଘାତ ଓ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲରେ ଚିକିତ୍ସିତ ହେଲେ । ମୁଁ ତ ତାଙ୍କ ପାଖକୁ ବାରମ୍ବାର ଯାଉଥାଏ । ସେଦିନ ତାଙ୍କର ଚେତନା ଫେରିବା ପରେ ସେ ଭଞ୍ଜ କବିତା ଗାଇବାକୁ ଲାଗିଲେ । ଡାକ୍ତର ତାଙ୍କୁ ମନା କଲେ । ଭଲ ହେଲା ପରେ ଅପର୍ଣ୍ଣାନଗର ବସାକୁ ଆସିଲେ । ସେ କ'ଣ ଭଡ଼ା ଦେଇପାରି ନ ଥିଲେ । ତେଣୁ ଶୀତରାତିରେ ନିତ୍ୟାନନ୍ଦବାବୁଙ୍କ ଲୋକେ ତାଙ୍କ ଜିନିଷପତ୍ର କାଢ଼ି ବାହାରେ ପକାଇ ଦେଲେ । ସକାଳୁ ସକାଳୁ ସେ ମୋ ବସାରେ ପହଞ୍ଚି ହସି ହସି ସେ କଥା କହିଲେ । ଆମେ ସାଙ୍ଗହୋଇ ନିତ୍ୟାନନ୍ଦବାବୁଙ୍କ ଶ୍ୱାଇଁ ଲୋକନାଥ ପାତ୍ରଙ୍କ ଘରକୁ ଗଲୁ । ତାଙ୍କୁ କହିବାରୁ ସେ କହିଲେ ଶ୍ୱଶୁରଙ୍କୁ ସେ କିଛି କହିବେ ନାହିଁ । କାରଣ ସେ ଅର୍ଥଦାସ ମଣିଷଟିଏ । ସେ ଦୁଇଶହ ଟଙ୍କା ସାର୍‌ଙ୍କୁ ଦେଇ ଅନ୍ୟ କେଉଁଠି ଘରଭଡ଼ା ନେବାକୁ କହିଲେ । ନିକଟରେ ଅନ୍ୟ ଏକ ଘର ଠିକ୍ କଲୁ ଓ ସାର୍ ସେଇଠି ରହିଲେ । ପ୍ରାୟ ସକାଳେ ସେ ମୋ ବସାକୁ ଆସନ୍ତି । ମୋତେ ଅନୁରୋଧ କରନ୍ତି ଚାହା କପେ ପିଇବେ ଓ ସିଗାରେଟ ଗୋଟିଏ ଟାଣିବା ପାଇଁ । ମୁଁ ଦିଏ । ମନା କରେ ମାତ୍ର ସେ କହନ୍ତି ଏବେ ମୁଁ ମରୁ ନାହିଁ । ମୋ 'ମାତୃମୁକ୍ତି ମୁକ୍ତାବଳୀ' ମହାକାବ୍ୟ ସରି ନାହିଁ । ସରିଲା ପରେ ମରିବି । ପ୍ରକୃତରେ ତାଙ୍କ କଥା ସତ୍ୟ ହେଲା । କାବ୍ୟ ଲେଖା ସରିଗଲା । ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ପାଖକୁ

ଯାଇ ଆଶୀର୍ବାଦ ଆଣିଲେ । କିଛି ଦିନ ପରେ ତାଙ୍କର ଦେହାନ୍ତ ହୋଇଗଲା । ଏବେ ମନେପଡୁଛି ତାଙ୍କ ସ୍ନେହଶ୍ରଦ୍ଧା ଓ ମହାକାବ୍ୟର ଶ୍ଳୋକ ଆବୃତ୍ତିର କଥା ।

ମୁଁ ଅନେକ ଲୋକଙ୍କଠାରୁ ପ୍ରେରଣା ପାଇଛି । ସବୁ ମୋର ସ୍ମୃତି ହୋଇ ରହିଛି । ମୁଁ ଅନେକଙ୍କ ପାଖରେ ଋଣୀ । ସେ ଋଣ ପରିଶୋଧ କରିବା ସମ୍ଭବ ନୁହେଁ । ତଥାପି ମୁଁ କୃତଜ୍ଞତା ପ୍ରକାଶ କରୁଛି ସମସ୍ତଙ୍କ ନିକଟରେ । ମୁଁ କୃତଜ୍ଞ ଇଂରାଜୀ ପ୍ରଫେସର ସର୍ବେଶ୍ୱର ଦାସଙ୍କ ସ୍ନେହ ଓ ଉତ୍ସାହ ପାଇଁ । ପ୍ରଫେସର ବିୟତ୍‌କେଶ ତ୍ରିପାଠୀଙ୍କ ପାଖରେ ମୁଁ ଇଂରାଜୀ ସାହିତ୍ୟ ପଢ଼ିଛି ଫକୀରମୋହନ କଲେଜରେ ଥିଲାବେଳେ । ମୋର ବନ୍ଧୁ କବି ଓ ଗାଳ୍ପିକ ଶୁଭେନ୍ଦୁ ମୋହନ ଦାସ ଓ ପ୍ରଣବ ଦାସଙ୍କ ପାଖରେ ମଧ୍ୟ ଋଣୀ । ଆଜି ସମସ୍ତଙ୍କୁ ସ୍ମରଣ କରୁଛି । ସମସ୍ତଙ୍କ ପ୍ରେରଣା ମୋତେ ଉଦ୍‌ବୁଦ୍ଧ କରିଛି । ମୋ ଜୀବନ ସେମିତି କିଛି ବୈଶିଷ୍ଟ୍ୟପୂର୍ଣ୍ଣ ନୁହେଁ । ଅତି ସାଧାରଣ ମୋର ଜୀବନ । ସଂଘର୍ଷ ମୋତେ ଛାଡ଼ି ନାହିଁ । ଗତି କରୁଛି ସଂଘର୍ଷ ଭିତରେ । ତେଣିକି ଈଶ୍ୱରଙ୍କ ଇଚ୍ଛା । ପରିଣତ ବୟସରେ ଈଶ୍ୱରାନୁରାଗ ମୋର ସୃଷ୍ଟି ହେଉଥିଲେ ମଧ୍ୟ ଆଚାର ଓ ବିଳାସସର୍ବସ୍ୱ ଧର୍ମ ମୋତେ ଆକର୍ଷଣ କରିପାରୁ ନାହିଁ । ମୋର ଇଚ୍ଛା ଓଡ଼ିଆ ଭାଷା ଓ ସାହିତ୍ୟ ମର୍ଯ୍ୟାଦା ବିସ୍ତାର କରୁ । ସକଳ କ୍ଷୁଦ୍ରତାରୁ ମୁକ୍ତ ହୋଇ ଲେଖକମାନେ ପରସ୍ପର ପ୍ରତି ସ୍ନେହ ଓ ଶ୍ରଦ୍ଧାରେ ବାନ୍ଧି ହୋଇଯାଆନ୍ତୁ– ଏହାହିଁ ମୋର କାମନା ।

●

## ସାକ୍ଷାତ୍‌କାର...

### ମାଇନର ସ୍କୁଲ ଶିକ୍ଷକରୁ
### ବିଶ୍ୱଭାରତୀର ପ୍ରଫେସର : ବୈଷ୍ଣବ ଚରଣ ସାମଲ

'ଅଭିଯାନ' ପତ୍ରିକା (୨୦୧୧)

ନିମ୍ନମୁଖୀ ଜଳସ୍ରୋତ ଓ ଦୃଢ଼ପ୍ରତିଜ୍ଞ ସାଧକର କେହି ପ୍ରତିରୋଧ କରିପାରନ୍ତି ନାହିଁ । ଯାହା ଘରେ ଭାଗବତ ଗାଦି ତା' ପୁଅ ଗଜମୂର୍ଖ । ପ୍ରକୃତରେ ଏହିଭଳି ପ୍ରବାଦର ବାସ୍ତବ ଚିତ୍ର ଆମ ସମାଜରେ ଲକ୍ଷଣୀୟ । ହୁଏତ ସେ ମା' ଶାରଳାଙ୍କୁ ମୁଣ୍ଡିଆ ମାରିଥିବେ, ମା' ସରସ୍ୱତୀଙ୍କୁ ପ୍ରାର୍ଥନା କରିଥିବେ, ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରିଥିବେ, ଏହା ତ କୋଟି କୋଟି ନରନାରୀ ଦିବାନିଶି କରିଥାନ୍ତି, କିନ୍ତୁ କିଏ ବରଦାନ ପାଏ ? କାହାକୁ ଦେବଦେବୀ ସହାୟ ହୁଅନ୍ତି ? ଏକମାତ୍ର ସେହି ସଫଳ ହୁଏ, ଯଶସ୍ୱୀ ହୁଏ, ଗୌରବମଣ୍ଡିତ ହୁଏ, ଯିଏ କର୍ମ-କର୍ତ୍ତବ୍ୟ ପଥରେ ଦୃଢ଼ପ୍ରତିଜ୍ଞ ସାଧକ । ଘରେ ଭାଗବତ ଗାଦି ନ ଥାଉ ପଛେ, ପୁସ୍ତକ କିଣିବାକୁ ଅର୍ଥ ନ ଥାଉ ପଛେ, ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସେ ।

ଯିଏ ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ୍ କରିଥିଲେ, ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ, ଅସ୍ପୃଶ୍ୟତା-ଦୁର୍ନୀତି-ଅନ୍ୟାୟ-ଅତ୍ୟାଚାର-ଶୋଷଣ-କଷଣ ବିରୋଧରେ ସ୍ୱର ଉତ୍ତୋଳନ କରି ସଂସ୍କାର ଓ ସାମ୍ୟବାଦର ଝଣ୍ଡା ଧରିଥିଲେ, ସେ ମହାନ୍ ବ୍ୟକ୍ତି କେନ୍ଦ୍ରାପଡ଼ା ଜିଲ୍ଲା ଅନ୍ତର୍ଗତ ଚାରିଗାଁର ସ୍ୱର୍ଗତ ଶ୍ରୀବସ୍ତ ସାମଲ । ସଦାସର୍ବଦା ଆୟୁର୍ବେଦୀୟ ଚେରମୂଳି ଉପରେ ବିଶ୍ୱାସ ରଖି ସାମୟିକ ରୋଗରୁ ଆରୋଗ୍ୟ ହେଉଥିଲେ ହେଁ ଏକଦା ଅସାବଧାନତା ଯୋଗୁଁ ତାଙ୍କର ଅକାଳ ବିୟୋଗ ଘଟିଥିଲା, ଯେତେବେଳେ ଜ୍ୟେଷ୍ଠପୁତ୍ର ଶ୍ରୀ ବୈଷ୍ଣବ ଚରଣ ସାମଲ ଚତୁର୍ଥ ଶ୍ରେଣୀରେ ଛାତ୍ର । କୈଶୋର ଅବସ୍ଥାରେ ଚାଷବାସ କରିବା, ଘରର ଦାୟିତ୍ୱ ମୁଣ୍ଡେଇ ପାଠ ପଢ଼ିବା ଏବଂ ଆର୍ଥିକ ଅନଟନ ସତ୍ତ୍ୱେ ମାଟ୍ରିକରେ କୃତିତ୍ୱ ସହକାରେ ପାସ୍ କରିବା କମ୍ ବଡ଼ ଆଶ୍ଚର୍ଯ୍ୟର କଥା ନୁହେଁ । ଆଶ୍ଚର୍ଯ୍ୟ ନୁହେଁ, ଆଶ୍ଚର୍ଯ୍ୟ ସେହିମାନଙ୍କ ପାଇଁ ହୁଏ ଯେଉଁମାନେ ଅକର୍ମା ଅଳସୁଆ । କିନ୍ତୁ ଯିଏ ଐକାନ୍ତିକ ନିଷ୍ଠା, ସାଧୁତା ଅବଲମ୍ବନ କରି ସତ୍‌ମାର୍ଗରେ ଚାଲୁଥାଏ, ସମୟକୁ ଅପଚୟ ନ କରି କର୍ମ

ଓ କର୍ତ୍ତବ୍ୟରେ ଅଗ୍ରସର ହେଉଥାଏ ତା' ପାଇଁ ଏହା କେବେ ଆଶ୍ଚର୍ଯ୍ୟର କଥା ନୁହେଁ । ସେଇଥିପାଇଁ ତ ମହାଶୟ ମାଟ୍ରିକ ପାସ୍ ପରେ ଗମୁ ମାଇନର ସ୍କୁଲରେ ଶିକ୍ଷକତା କରି ପରିବାର ସମ୍ଭାଳି ଏବଂ ନିଜେ ପାଠ ପଢ଼ି ପ୍ରମୁଖ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀର ପ୍ରଫେସର ଭାବରେ ଖ୍ୟାତି ଅର୍ଜନ କରିବା ସହିତ ସମଗ୍ର ଭାରତବର୍ଷରେ ଗୌରବମଣ୍ଡିତ ହେଲେ । ଏପରି ଜଣେ ମହାନ୍ ସାରସ୍ୱତ ଅଧୀଶ ତଥା ସାହିତ୍ୟ ସମ୍ରାଟ୍‌ଙ୍କଠାରୁ ନିଷ୍ଠା, ସାଧୁତା, ଏକାଗ୍ରତା ଓ ସମୟାନୁବର୍ତ୍ତିତାର ପରାମର୍ଶ ଓ ବାର୍ତ୍ତା ଗ୍ରହଣ କରି ଆଜିର ବିଶୃଙ୍ଖଳିତ, ଅକର୍ମା ଓ ଅଳସୁଆ ଗୋଷ୍ଠୀଙ୍କୁ ସନ୍ଦେଶ ପ୍ରଦାନ କରିବା ଲକ୍ଷ୍ୟରେ ଆମ୍ଭେ ସେଦିନ (ତା୩୧/ ୦୭/୨୦୧୧) ମହାଶୟଙ୍କ କଟକ ଚାଉଳିଆଗଞ୍ଜସ୍ଥିତ ବାସଭବନକୁ ଖୁବ୍ ଆଗ୍ରହରେ ସାକ୍ଷାତ୍ କରିବାକୁ ଯାଇଥିଲୁ ।

## ଆଳାପ-ଆଲୋଚନା

**ସଂପାଦକ, ଅଭିଯାନ :** ମହାଶୟ, ସାରସ୍ୱତ ପ୍ରଣାମ । ଆପଣ ଓଡ଼ିଆ ସାହିତ୍ୟର ଜଣେ ଦକ୍ଷ, ସମାଲୋଚକ । ସାହିତ୍ୟର ପ୍ରାୟ ସବୁ ବିଭାଗକୁ ସ୍ପର୍ଶ କରି ଯଶସ୍ୱୀ ହୋଇଛନ୍ତି । 'ଅଭିଯାନ' ତରଫରୁ ଆପଣଙ୍କୁ ବଧେଇ !

ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ ହେବା ପୂର୍ବରୁ ଆପଣ ଭିନ୍ନ ବୃତ୍ତିରେ ଥିଲେ । ଆପଣଙ୍କ କୈଶୋର ଓ ଆଦ୍ୟ ବୃତ୍ତିଗତ ଜୀବନ ସଂପର୍କରେ କିଛି କହିବେ କି ?

**ବୈଷ୍ଣବ ଚରଣ ସାମଲ :** ନମସ୍କାର ! ହଁ, ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ ଭାବରେ ମୁଁ ୧୯୬୬ ମସିହା ନଭେମ୍ବର ମାସ ୧୬ ତାରିଖରେ ପ୍ରଥମେ ବାଲେଶ୍ୱର ଫକୀରମୋହନ କଲେଜରେ ଯୋଗ ଦେଇଥିଲି । ଏହା ପୂର୍ବରୁ ମୁଁ ଅନ୍ୟ ବୃତ୍ତିରେ ଥିଲି । ୧୯୫୮ ମସିହାରେ ଇନ୍ଦୁପୁର ହାଇସ୍କୁଲରୁ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହେଲା ପରେ ମୁଁ ଉଚ୍ଚଶିକ୍ଷା ଲାଭ କରିପାରିଲି ନାହିଁ । କାରଣ ମୋର ବାପାଙ୍କର ତିରୋଧାନ ହୋଇଯାଇଥିଲା ୧୯୫୨ ମସିହାରେ ପ୍ରଥମ ସାଧାରଣ ନିର୍ବାଚନ ପରେପରେ । ସେତେବେଳକୁ ମୋତେ ମାତ୍ର ଏଗାର ବର୍ଷ ବୟସ । ଘରେ ମୋର ବୋଉ, ସାନଭାଇ ଓ ଭଉଣୀ । କେହି ଆଉ ଆମକୁ ସାହାଯ୍ୟ କରିବା ଭଳି ଲୋକ ନ ଥିଲେ । ଅପରପକ୍ଷରେ ବାପାଙ୍କ ମୃତ୍ୟୁର ସୁଯୋଗ ନେଇ କେତେକ ଖଳ ପ୍ରକୃତିର ଲୋକ ଆମକୁ ଅସୁବିଧାରେ ପକାଇବାକୁ ଚେଷ୍ଟା କଲେ, କାରଣ ମୋର ବାପା ଅସ୍ପୃଶ୍ୟତା ବିରୋଧରେ ଥିଲେ । ମାତ୍ର ଆମର କିଛି କେହି କରିପାରିଲେ ନାହିଁ । ମୋ ବୋଉର ନିର୍ଭୀକ ବ୍ୟକ୍ତିତ୍ୱ ଓ ପ୍ରଚଣ୍ଡ ସ୍ୱାଭିମାନବୋଧ ମୋ ଭିତରେ ପ୍ରେରଣା ଦେଲା । ମୋ ଗାଁ ଚାରିଗାଁରୁ ତିନି କିଲୋମିଟର ଦୂର ଇନ୍ଦୁପୁର ହାଇସ୍କୁଲକୁ ଚାଲି ଚାଲି ପଢ଼ିବାକୁ ଯାଏ । ଏଣେ ସକାଳେ ବିଲକୁ ଯାଏ, ଚାଷକାର୍ଯ୍ୟ ବୁଝେ ଓ ନିଜେ ମଧ୍ୟ ଚାଷକାର୍ଯ୍ୟ କରେ । ରବିବାର ଓ ଛୁଟିଦିନରେ ଚାଷକାର୍ଯ୍ୟ ଓ ଗୃହକାର୍ଯ୍ୟରେ ବ୍ୟସ୍ତ ରହେ । ଅଷ୍ଟମ

ଶ୍ରେଣୀରୁ ମୁଁ କବିତା ଲେଖିବାକୁ ଆରମ୍ଭ କରେ । ସେଦିନ ଛୋଟ ବାଳକର ମନ ଭିତରେ ଯେଉଁ ସାମାଜିକ ପ୍ରତିକ୍ରିୟା ଦେଖା ଦେଉଥିଲା, ତାହା ମୋ କବିତାରେ ପ୍ରକାଶ ପାଉଥିଲା । ଅଷ୍ଟମ ଶ୍ରେଣୀରୁ ଆରମ୍ଭ କରି ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଯେତେ ଆମର ଇଂରାଜୀ କବିତା ଓ ଗଳ୍ପ ପଢ଼ା ହେଉଥିଲା ସେ ସବୁର ଭାବକୁ ନେଇ ମୁଁ କବିତା ଲେଖୁଥିଲି; କାବ୍ୟ ମଧ୍ୟ ଲେଖୁଥିଲି । ହାଇସ୍କୁଲରେ ପଢ଼ିଲାବେଳେ ପ୍ରତି ଶନିବାର ଦିନ ତର୍କସଭା ହେଉଥିଲା । ସେଥିରେ ମୁଁ ଯୋଗ ଦେଇ ମୁଖ୍ୟତଃ ବିଷୟର ବିରୋଧରେ କହୁଥିଲି- ଏଇ ଯେମିତି ମୂର୍ତ୍ତିପୂଜା ରହିବା ଉଚିତ କି ନୁହେଁ, ରାଜନୀତିରେ ଛାତ୍ର ଭାଗ ନେବା ଅନୁଚିତ ଇତ୍ୟାଦି । ମାଟ୍ରିକ ପାସ୍ କଲା ପରେ ଗମୁ ମାଇନର ସ୍କୁଲରେ ଶିକ୍ଷକତା କଲି (୧୯୫୮-୬୦) । ସେଇଠି କବିତା ଲେଖିଲି, କାବ୍ୟ ଲେଖିଲି । ଶିକ୍ଷକତା ଛାଡ଼ି ସରକାରୀ ବୃତ୍ତିରେ ଟେଲିଫୋନ ଅପରେଟର ହେଲି (୧୯୬୦-୬୬) । ତୃପ୍ତି ପାଇଲି ନାହିଁ । ଖୋଜିଲି ମୋର ମାର୍ଗ କ'ଣ ? ମୋତେ ମାର୍ଗ ମିଳିଗଲା- ମୁଁ ଘରୋଇ ଭାବରେ ଆଇ.ଏ. ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲି (୧୯୬୧), ଖ୍ରୀଷ୍ଟ କଲେଜରେ ବି.ଏ. (ଅନର୍ସ) ପଢ଼ିଲି ଓ ପରେପରେ ରେଭେନ୍ସା କଲେଜରେ ଏମ୍.ଏ. ପଢ଼ିଲି ଓଡ଼ିଆରେ । ଅନର୍ସ ଓ ଏମ୍.ଏ.ରେ ପ୍ରଥମ ହୋଇଥିବାରୁ ଦୁଇଟି ସ୍ୱର୍ଣ୍ଣପଦକ ପାଇ ଫକୀରମୋହନ କଲେଜରେ ଅଧ୍ୟାପକ ହେଲି । ଅନର୍ସ ପଢୁଥିବା ସମୟରୁ ପ୍ରବନ୍ଧ ଲେଖିଲି । ଏମ୍.ଏ. ପଢୁଥିଲାବେଳେ ସମାଲୋଚନା ଲେଖିଲି । ୧୯୬୫ ମସିହାରେ ପୁଷ୍ପଗିରି ପରିଷଦ ଗଢ଼ା ହେଲା, ମୁଖପତ୍ର 'ପୁଷ୍ପଗିରି' ବାହାରିଲା । ସଂପାଦକ ଶ୍ରୀ କୃଷ୍ଣଚନ୍ଦ୍ର ଭୂୟାଁ । ରବିବାର ଦିନ ବୈଠକ ହୁଏ । ମୁଁ ପ୍ରବନ୍ଧ ଲେଖି ପଢ଼େ । ବୋଧହୁଏ ସେହିଠାରୁ ମୋର ସମାଲୋଚନା ଲେଖିବା ପାଇଁ ପ୍ରବଣତା ପ୍ରକାଶ ପାଇଥିଲା ।

**ପ୍ରଶ୍ନ : ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ ଭାବରେ ଆପଣ ସରକାରୀ କଲେଜ ଓ ଦୁଇଟି ପ୍ରମୁଖ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ କରିଛନ୍ତି । ବିଶ୍ୱବିଦ୍ୟାଳୟ ତା'ର ଭଲ ଅଧ୍ୟାପକମାନଙ୍କ ଦ୍ୱାରା ଗୌରବାନ୍ୱିତ ହୁଏ ଏବଂ ଅଧ୍ୟାପକମାନେ ବିଶ୍ୱବିଦ୍ୟାଳୟର ସୁନାମକୁ ନେଇ ଗର୍ବିତ ହୁଅନ୍ତି । ଆପଣ କେଉଁ ମହାବିଦ୍ୟାଳୟ/ବିଶ୍ୱବିଦ୍ୟାଳୟକୁ ଗୌରବମୟ କରିଥିଲେ ବା ନିଜେ ଗର୍ବିତ ହୋଇଥିଲେ ?**

**ଉତ୍ତର :** ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପକ ଭାବରେ ମୁଁ ପ୍ରଥମେ ବାଲେଶ୍ୱରର ଫକୀରମୋହନ କଲେଜରେ କାର୍ଯ୍ୟ କଲି । ଅଳ୍ପ ଦିନ ମଧ୍ୟରେ ମୋର ଲୋକପ୍ରିୟତା ବଢ଼ିଗଲା । ମୋତେ ପ୍ରାୟ ସମସ୍ତ ପ୍ରବୀଣ ଅଧ୍ୟାପକ ଭଲ ପାଉଥିଲେ । ବାଲେଶ୍ୱର ସହରରେ ଥିବା ଲେଖକମାନେ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ । ମଝିରେ ମଝିରେ ଲେଖକମାନେ ପାଠଚକ୍ରର ଆୟୋଜନ କରୁଥିଲେ । ମୁଁ ସେଥିରେ ଭାଗ ନେଉଥିଲି । ସେଇଠି ଥିଲାବେଳେ ବହୁ ପ୍ରବନ୍ଧ ଲେଖିଛି । ପ୍ରାୟୋଗିକ ସମାଲୋଚନା ଲେଖିଛି । ବ୍ରଜନାଥ ରଥ, ଚଣ୍ଡୀଚରଣ

କର, ଚନ୍ଦ୍ର କୁମାର ମହାନ୍ତି, ଶୁଭେନ୍ଦୁ ମୋହନ ଦାସ, ସତ୍ୟ ନାରାୟଣ ପ୍ରହରାଜ ନନ୍ଦ ପ୍ରମୁଖ କବି ଓ ଲେଖକମାନଙ୍କ ସହିତ ସଂପର୍କ ଗଢ଼ିଉଠିଥାଏ । ସେ ସମୟର ଅଖଣ୍ଡ ବାଲେଶ୍ୱରର ସମସ୍ତ କଲେଜ, ସ୍କୁଲ ଓ ସାଂସ୍କୃତିକ ଅନୁଷ୍ଠାନକୁ ଭାଷଣ ଦେବାକୁ ଯାଇଛି । ଏବେ ମଧ୍ୟ ସେଠିକାର ଛାତ୍ରମାନଙ୍କୁ କେଉଁଠି ଭେଟିଲେ ସେମାନଙ୍କର ସ୍ନେହ ଶ୍ରଦ୍ଧାକୁ ମୁଁ ଉପଲବ୍ଧି କରେ । ସେହି କଲେଜର ବିବିଧ ସମସ୍ୟା ସମାଧାନରେ ମୋର ଭୂମିକା ଗୌଣ ନ ଥିଲା । ଏହା ପରେ ମୁଁ ରେଭେନ୍ସା କଲେଜକୁ ଆସିଲି ଓ ଆଠବର୍ଷ କଟେଇଲି । ମୁଁ ଗର୍ବିତ ହୁଏ ଫକୀରମୋହନ କଲେଜ ଓ ରେଭେନ୍ସା କଲେଜକୁ ନେଇ । ରେଭେନ୍ସା କଲେଜରୁ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଗଲି । ମୁଁ ଭଲ ପାଏ ଛାତ୍ରଛାତ୍ରୀମାନଙ୍କୁ । ସେମାନଙ୍କ ସୁଖଦୁଃଖରେ ଭାଗୀ ହୁଏ । ସେମାନେ ମଧ୍ୟ ମୋ ପ୍ରତି ବେଶ୍ ଶ୍ରଦ୍ଧାଶୀଳ ଥାଆନ୍ତି । ସେଇଠି ଥିଲାବେଳେ ମୁଁ କ୍ଷୁଦ୍ରଗଳ୍ପ ଉପରେ ଗବେଷଣା କରି ଡି.ଲିଟ. ପାଇଲି । ଅନେକ ପୁସ୍ତକ ମଧ୍ୟ ପ୍ରକାଶ କଲି । ସାରା ଓଡ଼ିଶା ଓ ବାହାରେ ମଧ୍ୟ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନରେ ଭାଷଣ ଦେଲି । ମୁଁ ଉପଲବ୍ଧି କଲି ଯେ, ବିଶ୍ୱବିଦ୍ୟାଳୟମାନଙ୍କରେ ଭିନ୍ନ ଭିନ୍ନ ବିଭାଗରେ ଅଧ୍ୟାପକମାନେ କ୍ଷୁଦ୍ର କୋଠରି ଭିତରେ ଆବଦ୍ଧ ଥାଆନ୍ତି । ଗୋଟିଏ ଗୋଟିଏ ବିଭାଗରେ ବ୍ୟକ୍ତିଗତ ସ୍ୱାର୍ଥକୁ ନେଇ ସଂଘର୍ଷ ଦେଖାଦିଏ । ଓଡ଼ିଆ ବିଭାଗରେ ଏହା ଉତ୍କଟ ଆକାର ଧାରଣ କରିଥିଲା । ଯଥାସମ୍ଭବ ସମସ୍ୟାର ସମାଧାନ ପାଇଁ ମୁଁ ଉଦ୍ୟମ କରି ସଫଳ ମଧ୍ୟ ହୋଇଥିଲି । ଏହା ପରେ ମୁଁ ବିଶ୍ୱଭାରତୀ, ଶାନ୍ତିନିକେତନକୁ ପ୍ରଫେସର ହୋଇ ଗଲି । ସେଠି ଓଡ଼ିଆ ବିଭାଗକୁ ଗୌରବମୟ କରିବା ପାଇଁ ଚେଷ୍ଟା କରିଥିଲି । ବିବିଧ ସେମିନାର ଆୟୋଜନ କଲି । ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ସମାଜର ଭବ୍ୟ ମୁଖପତ୍ର ବାହାର କଲି ଓ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା ଶୀର୍ଷକରେ ଏକ ପୁସ୍ତକ ସଂକଳନ କଲି । ସେଠି ଥିଲାବେଳେ ମୁଁ ବାରମ୍ବାର ଇତିହାସ ବିଭାଗ ଓ ତିବ୍ବତୀୟ ବିଭାଗରେ ଆୟୋଜିତ ସେମିନାର ତଥା ଉଜ୍ଜୀବନ ପାଠ୍ୟକ୍ରମରେ ଯୋଗଦେଇ ମୋର ବକ୍ତବ୍ୟ ଦେଇଛି । ଅନ୍ୟ ବିଭାଗମାନଙ୍କରେ ଥିବା ବିଦ୍ୱାନ୍‌ମାନଙ୍କ ସଂପର୍କରେ ଆସି ମୁଁ ନିଜକୁ ଧନ୍ୟ ମନେକରିଛି । ମୋ ଦ୍ୱାରା କେଉଁ କଲେଜ ବା ବିଶ୍ୱବିଦ୍ୟାଳୟ ଗୌରବାନ୍ୱିତ ହୋଇଛି କି ନାହିଁ; ତାହା ମୁଁ ଜାଣେନା । ମୁଁ କିନ୍ତୁ ଯେଉଁଠି ଯେତେବେଳେ ରହିଛି ନିଜକୁ ଧନ୍ୟ ମନେକରିଛି । ସେହି ଅନୁଷ୍ଠାନକୁ ଭଲ ପାଇଛି ଓ ନିଜେ ଗର୍ବିତ ହୋଇଛି ଯେ, ମୁଁ ମୋ କର୍ତ୍ତବ୍ୟ ଠିକ୍ ଭାବରେ ପାଳନ କରିଛି ।

**ପ୍ରଶ୍ନ : ଦ୍ରୋଣାଚାର୍ଯ୍ୟ ଶିଷ୍ୟ ଏକଲବ୍ୟର ବୁଢ଼ା ଆଙ୍ଗୁଠିକୁ ଗୁରୁଦକ୍ଷିଣା ଭାବରେ ନେଇ ଗୁରୁ ପରଂପରାକୁ କଳଙ୍କିତ କରିଛନ୍ତି ଏବଂ ନିଜେ କଳଙ୍କିତ ହୋଇଛନ୍ତି । ସେହି ଦ୍ରୋଣାଚାର୍ଯ୍ୟ ମଧ୍ୟ ଅର୍ଜୁନ ପରି ଶିଷ୍ୟକୁ ପାଇ ନିଜେ ଧନ୍ୟ ହୋଇଛନ୍ତି । ଏହିପରି ଆପଣ ଅଧ୍ୟାପନା କାଳରେ କିଛି ଛାତ୍ରଛାତ୍ରୀଙ୍କ ପାଇଁ ଧନ୍ୟ ହୋଇଛନ୍ତି କି ?**

ଉତ୍ତର : ଗୁରୁ ଦ୍ରୋଣାଚାର୍ଯ୍ୟ ଶିଷ୍ୟ ଏକଲବ୍ୟର ଚୁଡ଼ା ଆଙ୍ଗୁଠି ଦକ୍ଷିଣାସ୍ୱରୂପ ନେଇ ନିଜେ କଳଙ୍କିତ ହୋଇଛନ୍ତି । ଅଥଚ ଏକଲବ୍ୟ ଏଥିପାଇଁ ଆଦୌ ଦୁଃଖ କରି ନାହିଁ, ବରଂ ଆନନ୍ଦ ପାଇଛି । ଅର୍ଜୁନ ତାଙ୍କର ପ୍ରିୟ ଶିଷ୍ୟ । ଅଥଚ ଅର୍ଜୁନ ହାତରେ ସେ ବିପର୍ଯ୍ୟସ୍ତ ହୋଇଅଛନ୍ତି । ସଦ୍‌ଗୁରୁ କୌଣସି କାଳେ କୌଣସି ଶିଷ୍ୟଠାରୁ ଫଳ ଆଶା କରନ୍ତି ନାହିଁ । ବରଂ ଛାତ୍ରର ଉନ୍ନତିରେ ଆନନ୍ଦିତ ହୁଅନ୍ତି । ମୋର ଅଧ୍ୟାପକ ଜୀବନରେ ବହୁ ଛାତ୍ରଛାତ୍ରୀଙ୍କୁ ଭେଟିଛି । ଅନେକ ସଂପ୍ରତି ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ । ଯେତେବେଳେ କେହି କେଉଁଠି ଦେଖା ହୋଇଯାଆନ୍ତି ସେତେବେଳେ ତାଙ୍କର ଭବ୍ୟ ବ୍ୟବହାର ମୋତେ ମୁଗ୍ଧ କରିଦିଏ । ଯେତେବେଳେ କୌଣସି ଛାତ୍ର ବା ଛାତ୍ରୀ ଦେଖାହେଲେ କୁହନ୍ତି ଯେ, ସେ ମୋର ଛାତ୍ର ବା ଛାତ୍ରୀ ଥିଲେ ମୋର ପ୍ରଶଂସା କରନ୍ତି, ମୁଁ ବିହ୍ୱଳ ହୋଇଯାଏ । ଭାବେ, ଯାହାହେଉ ମୋତେ ମନେ ରଖିଛନ୍ତି । ବହୁ ଛାତ୍ରଙ୍କ ପାଇଁ ମୁଁ ଧନ୍ୟ ହୋଇଛି । କାହାର ନାଁ ନେଉ ନାହିଁ; ସମସ୍ତେ ମୋର ଆପଣାର, ଶ୍ରଦ୍ଧାର ।

**ପ୍ରଶ୍ନ : ଆପଣ ଡି.ଲିଟ୍. ଡିଗ୍ରୀ ପାଇଁ 'ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ' ବିଷୟକୁ ଚୟନ କଲେ । କିନ୍ତୁ ପୂର୍ବରୁ କ୍ଷୁଦ୍ରଗଳ୍ପ ସଂପର୍କରେ ଏକ ପୁସ୍ତକ ଆପଣଙ୍କର ପ୍ରକାଶିତ ହୋଇଥିଲା । 'କ୍ଷୁଦ୍ର ଗଳ୍ପର ଇତିହାସ' ବିଷୟକୁ ଗବେଷଣାର ବିଷୟ ଭାବରେ ନେଇଥିଲେ ବି ଏହାକୁ ଆପଣ ପାଠକ ସମାଜକୁ ଉପହାର ଦେଲେ ନାହିଁ କାହିଁକି ? କ୍ଷୁଦ୍ରଗଳ୍ପ ସଂପର୍କିତ ଆଲୋଚନା ପୁସ୍ତକ ଏବଂ ଗବେଷଣା ବିଷୟ ସମାନ ଥିଲା ବୋଲି ନା' ଅନ୍ୟ କିଛି କାରଣ ରହିଛି ?**

ଉତ୍ତର : ମୁଁ 'ଓଡ଼ିଆ କ୍ଷୁଦ୍ରଗଳ୍ପ : ଏକ ଅଧ୍ୟୟନ' ଶୀର୍ଷକରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍. ଉପାଧି ପାଇଥିଲି । ଏହାକୁ ମୁଁ ଓଡ଼ିଆ ଗଳ୍ପର ଇତିହାସ ଶୀର୍ଷକରେ ଦୁଇ ଭାଗରେ ୧୯୯୨ ମସିହାରେ ପ୍ରକାଶ କରିଅଛି । ୧୯୫୦ ମସିହା ପରବର୍ତ୍ତୀ ଓଡ଼ିଆ ଗଳ୍ପ ସଂପର୍କରେ ତିନିଖଣ୍ଡ ପୁସ୍ତକ ପ୍ରକାଶ ଅପେକ୍ଷାରେ । ୧୯୭୪ ମସିହାରେ ପତ୍ରପତ୍ରିକାରେ ପ୍ରକାଶିତ ଓଡ଼ିଆ ଗଳ୍ପର ବିବିଧ ଭାବଭାବନା, ରୂପ ରୂପାନ୍ତର ସଂପର୍କରେ ପ୍ରବନ୍ଧଗୁଡ଼ିକୁ ନେଇ 'ଓଡ଼ିଆ ଗଳ୍ପ : ଗତି ଓ ପ୍ରକୃତି' ପୁସ୍ତକ ପ୍ରକାଶ ପାଇଥିଲା । ଏହାର ଦୁଇଟି ସଂସ୍କରଣ ପରେ ଆହୁରି କେତେକ ଲେଖାକୁ ନେଇ 'ଓଡ଼ିଆ ଗଳ୍ପ : ଉନ୍ମେଷ ଓ ଉତ୍ତରଣ' ପୁସ୍ତକ ଫ୍ରେଣ୍ଡସ୍ ପବ୍ଲିଶର୍ସ ପ୍ରକାଶ କରିଥିଲେ । ଏହାର ମଧ୍ୟ କେତୋଟି ସଂସ୍କରଣ ହେଲାଣି । ଏହା ବ୍ୟତୀତ 'କ୍ଷୁଦ୍ରଗଳ୍ପ : ସ୍ରଷ୍ଟା-ମାନସ' ୧୯୭୮ ମସିହାରେ ପ୍ରକାଶ ପାଇଥିଲା । ତେଣୁ ମୋର ସନ୍ଦର୍ଭ ଯେ ପ୍ରକାଶ ପାଇ ନାହିଁ, ନୁହେଁ । ତା'ର ନାମକରଣ ଭିନ୍ନ ହୋଇଯାଇଛି । ଏ କଥା ମୁଁ ସ୍ପଷ୍ଟ ଭାବରେ କହିବାକୁ ଚାହେଁ ଯେ, ଯେତେବେଳେ ଓଡ଼ିଆ ଗଳ୍ପ ସଂପର୍କରେ କୌଣସି ଆଲୋଚନା ନ ଥିଲା, ସେତେବେଳେ ପ୍ରଥମେ ମୁଁ ଆଲୋଚନା କରିଥିଲି । ସେହି ସମୟରେ

ମଧ୍ୟ ମୁଁ ଆଧୁନିକ କବିତାର ଭାବ-ଭାବନା, ରୂପ-ରୂପାନ୍ତର ସଂପର୍କରେ ବହୁ ଲେଖା ଲେଖିଥିଲି, ଯାହାକୁ ନେଇ ପରବର୍ତ୍ତୀ କାଳରେ ଅନେକ ସନ୍ଦର୍ଭ ପ୍ରସ୍ତୁତ କରାଯାଇଛି ।

**ପ୍ରଶ୍ନ : ଓଡ଼ିଆ ଗବେଷଣାର ତତ୍ତ୍ୱାବଧାରକ ଭାବରେ ଆପଣ ଅନେକ ସନ୍ଦର୍ଭ ପାଇଁ ତତ୍ତ୍ୱାବଧାନ କରିଛନ୍ତି । କହିବେ କି କେଉଁ ସନ୍ଦର୍ଭଟିର ତତ୍ତ୍ୱାବଧାନରେ ଆପଣ ବିଶେଷ ଆନନ୍ଦ ଅନୁଭବ କରିଛନ୍ତି ?**

ଉତ୍ତର : ଓଡ଼ିଆ ଭାଷା ଓ ସାହିତ୍ୟ ଗବେଷଣା କ୍ଷେତ୍ରରେ ମୁଁ ଦୀର୍ଘଦିନ ଧରି ତତ୍ତ୍ୱାବଧାରକ ଭାବରେ କାର୍ଯ୍ୟ କରିଆସିଛି ଓ ମୋ ଅଧୀନରେ ପଚାଶରୁ ଊର୍ଦ୍ଧ୍ୱ ପିଏଚ୍.ଡି. ଓ ଡି.ଲିଟ୍. ପାଇଛନ୍ତି । ମୁଁ କୌଣସି ସନ୍ଦର୍ଭକୁ ନିନ୍ଦା କରୁ ନାହିଁ । ତେବେ କେତେକ ସନ୍ଦର୍ଭ ମୋତେ ଆନନ୍ଦ ଦେଇଛି- ଏଇ ଯେମିତି 'ଆଧୁନିକ ଓଡ଼ିଆ କବିତାରେ ବିଭୁବୋଧ', 'ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ରାସ', 'ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଗଦ୍ୟସମ୍ଭାର', 'ଓଡ଼ିଆ ସନେଟ', 'ବଙ୍ଗଳା ଓ ଓଡ଼ିଶା ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ' ଇତ୍ୟାଦି ।

**ପ୍ରଶ୍ନ : ଆପଣ ଏକାଧାରରେ ଜଣେ ପ୍ରାବନ୍ଧିକ, ସମାଲୋଚକ, ଗାଳ୍ପିକ, ରମ୍ୟରଚକ, କବି, ଶିଶୁ ସାହିତ୍ୟିକ ଏବଂ ଆଧାତ୍ମିକ ପ୍ରବଚକ । ପ୍ରାୟ ଅଶି/ନବେ ଖଣ୍ଡ ପୁସ୍ତକର ପ୍ରଣେତା ଆପଣ । ଆମେ ଜାଣୁ ଆପଣ ସମାଲୋଚକ ଭାବରେ ବେଶି ଯଶସ୍ୱୀ । କିନ୍ତୁ ଆପଣ କେଉଁ ସାରସ୍ୱତ କୃତିରେ ବେଶି ଆନନ୍ଦ ଅନୁଭବ କରିଛନ୍ତି ?**

ଉତ୍ତର : ଏକାଧାରରେ ମୁଁ କବିତା ଲେଖିଛି, ଗଳ୍ପ ଲେଖିଛି, ପ୍ରବନ୍ଧ ଓ ରମ୍ୟରଚନା ଲେଖିଛି, ସମାଲୋଚନା ଲେଖିଛି, ଶିଶୁ ସାହିତ୍ୟ ଓ ଆଧାତ୍ମିକ ସାହିତ୍ୟ ଲେଖିଛି; ସଂପାଦନା କରିଛି ମଧ୍ୟ ଅନେକ । ଏସବୁ ଭିତରେ ମୁଁ ଖୁବ୍ ଭଲ ପାଏ ମୋର ରମ୍ୟରଚନାକୁ । ଏଯାବତ୍ ଆଠଟି ରମ୍ୟରଚନା ସଂକଳନ ପ୍ରକାଶ ପାଇଛି । ଏହାକୁ ଭଲ ପାଇବାର କାରଣ ମୋର ଯାହା ସମାଜ, ସଂସ୍କୃତି, ଧର୍ମ, ସାହିତ୍ୟ, ବ୍ୟକ୍ତିଚରିତ୍ର ଓ ରାଜନୀତି ସଂପର୍କରେ କହିବା କଥା ତାହାକୁ ମୁଁ ରମ୍ୟରଚନାମାନଙ୍କରେ ବୋଧହୁଏ ପ୍ରକାଶ କରିବାକୁ ସମର୍ଥ ହୋଇପାରିଛି । ସମାଲୋଚନା ମୋର ପ୍ରିୟ । ତେବେ ରମ୍ୟରଚନା ମୋର ଅଧିକ ପ୍ରିୟ, କାରଣ ଏହା ମୋତେ ଗଭୀର ଆନନ୍ଦ ଦିଏ ।

**ପ୍ରଶ୍ନ : ଆପଣ ଓଡ଼ିଆ ସାହିତ୍ୟର ଇତିହାସ ରଚନା କରିଛନ୍ତି, କିନ୍ତୁ ତାହାକୁ ପୂର୍ଣ୍ଣାଙ୍ଗ କରି ନାହାନ୍ତି, ଯାହା ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ସୀମିତ ରହିଛି । ଏ ଦିଗରେ ଆଗକୁ କିଛି ଯୋଜନା ରଖିଛନ୍ତି କି ?**

ଉତ୍ତର : ମୁଁ ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସ ରଚନା କରିଛି । ଏହା ମୋତେ ତୃପ୍ତି ଦେଲା ନାହିଁ । ତେଣୁ ଓଡ଼ିଆ ସାହିତ୍ୟର ଇତିହାସକୁ ମୁଁ ପାଞ୍ଚୋଟି ଭାଗରେ ପ୍ରକାଶ କରିବାକୁ ସଂକଳ୍ପ ନେଲି । ପ୍ରଥମ ଭାଗ ପ୍ରକାଶ ପାଇ ପାଠକୀୟ ଶ୍ରଦ୍ଧା ଅର୍ଜନ କରିଛି । ଏହି ଖଣ୍ଡରେ ଓଡ଼ିଶାର ଇତିହାସ, ଭାଷାର ଉଦ୍ଭବ ଓ ବିକାଶ, ଲୋକସାହିତ୍ୟ, ସିଦ୍ଧସାହିତ୍ୟ,

ପ୍ରାଚୀନ ଗଦ୍ୟସାହିତ୍ୟ, ସାରଳା ସାହିତ୍ୟ ସଂପର୍କରେ ବିସ୍ତୃତ ଆଲୋଚନା ରହିଅଛି । ଦ୍ୱିତୀୟ ଖଣ୍ଡଟି ପ୍ରକାଶ ପାଇବାକୁ ଯାଉଛି । ଏହା ହେଉଛି ଓଡ଼ିଶାର ସନ୍ଥ ଓ ଭକ୍ତି ସାହିତ୍ୟ । ପରେପରେ ଅନ୍ୟ ଖଣ୍ଡଗୁଡ଼ିକ ବାହାରିବ ।

**ପ୍ରଶ୍ନ : ଓଡ଼ିଆ ସାହିତ୍ୟର ଇତିହାସରେ ଆପଣ ସାରଳା ଦାସଙ୍କ ସାହିତ୍ୟ କୃତିଗୁଡ଼ିକ ଉପରେ କିଭଳି ଦୃଷ୍ଟି ନିକ୍ଷେପ କରିଛନ୍ତି ?**

ଉତ୍ତର : ଓଡ଼ିଆ ସାହିତ୍ୟର ଇତିହାସରେ ମାଟିର ମହାକବି ସାରଳାଦାସ ଏକ ଅଭୁଲା ନାମ । ତାଙ୍କ ପାଇଁ ଓ ତାଙ୍କର ସାରସ୍ୱତ କୃତି ପାଇଁ ଓଡ଼ିଆ ଜାତି ଗର୍ବିତ । ମହାଭାରତ, ଚଣ୍ଡୀପୁରାଣ, ବିଚିତ୍ର ରାମାୟଣ, ଭାରତ ହରିବଂଶ ଆଦି ତାଙ୍କର ରଚନାଗୁଡ଼ିକ ମୂଳ ସଂସ୍କୃତ ଗ୍ରନ୍ଥର ଅନୁସରଣରେ ରଚିତ ହୋଇଥିଲେ ମଧ୍ୟ ସେଥିରେ ଯେପରି ନୂତନ ନୂତନ ଗଳ୍ପ-ସଂଯୋଜନ କରି ଲୋକଚରିତ୍ରର ବିବିଧ ଦିଗକୁ ଦେଖାଇଛନ୍ତି, ସମାଜ ଓ ସଂସ୍କୃତିର ଅନ୍ତଃପୁରକୁ ପ୍ରକାଶ କରିଛନ୍ତି, ରାଜଧର୍ମ ସଂପର୍କରେ ସଚେତନତା ସୃଷ୍ଟି କରିଛନ୍ତି, ନାରୀ ଚରିତ୍ରର ରହସ୍ୟକୁ ଉଦ୍‌ଘାଟନ କରିଛନ୍ତି, ତାହା ତାଙ୍କର ଅଦ୍‌ଭୁତ ଭାବୟତ୍ରୀ ପ୍ରତିଭାର ପରିଚୟ ଦିଏ । ମନେହୁଏ ସେ ପ୍ରାଚୀନ ହୋଇ ମଧ୍ୟ ଆଧୁନିକ, ନିତ୍ୟନୂତନ । ତାଙ୍କ ସାହିତ୍ୟ ହୋଇଯାଇଛି ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଉପଜୀବ୍ୟ ମହାକାବ୍ୟ । ସାରଳା ସାହିତ୍ୟକୁ ମୁଁ ଶ୍ରଦ୍ଧାଶୀଳ ଭାବରେ ଦୃଷ୍ଟି ନିକ୍ଷେପ କରିଛି ଓ କହୁଛି ଯିଏ ସାରଳା ସାହିତ୍ୟକୁ ପଢ଼ି ନାହିଁ ସିଏ ଓଡ଼ିଆ ସାହିତ୍ୟକୁ ଜାଣି ନାହିଁ ।

**ପ୍ରଶ୍ନ : 'ପ୍ରାଚୀନ ଓଡ଼ିଆ ସାହିତ୍ୟ' (୧୯୮୭) ନାମରେ ଆପଣ ଏକ ଆଲୋଚନା ପୁସ୍ତକ ଲେଖିଛନ୍ତି । ସମସ୍ତେ କହୁଛନ୍ତି ସାରଳା ଦାସ ଓଡ଼ିଆ ସାହିତ୍ୟର ଆଦିସ୍ରଷ୍ଟା । ଆପଣ ଯଦି ଏଥିରେ ଏକମତ, ତେବେ ମୋର ଦୂରଦୃଷ୍ଟିରେ ସାରଳା ଦାସ ଏତେ ଚମତ୍କାର ଭାଷାଜ୍ଞାନ ପାଇଲେ କେଉଁଠୁ ମହାଭାରତ ପରି ଏକ ବିରାଟ ଗ୍ରନ୍ଥ ରଚନା କରିବାକୁ, ଯାହା ଅଧୁନା ବଡ଼ ବଡ଼ ସାହିତ୍ୟିକ ପାଇପାରୁ ନାହାନ୍ତି ।**

ଉତ୍ତର : 'ପ୍ରାଚୀନ ଓଡ଼ିଆ ସାହିତ୍ୟ' ନାମରେ ମୋର ଏକ ଗ୍ରନ୍ଥ ଅଛି । ଏହା ପ୍ରାଚୀନ ସାହିତ୍ୟ ସଂପର୍କରେ ଏକ ଭିନ୍ନ ଧରଣର ରଚନା । ସାରଳା ଦାସ ଓଡ଼ିଆ ସାହିତ୍ୟର ଆଦିସ୍ରଷ୍ଟା, ଓଡ଼ିଆ ଭାଷାର ପ୍ରଥମ ଶକ୍ତି ପରୀକ୍ଷକ । ତତ୍‌କାଳୀନ ଲୋକମୁଖର ଭାଷାକୁ ନେଇ ସେ ସାହିତ୍ୟିକ ମର୍ଯ୍ୟାଦା ଦେଲେ । କେବଳ ଭାଷା ନୁହେଁ, ଢଗଢମାଳି, ପ୍ରବାଦ, ପ୍ରବଚନ, ଲୋକକଥାକୁ ମଧ୍ୟ ସାହିତ୍ୟରେ ମିଶାଇଦେଲେ । ସାରଳା ଦାସ ମାଟିର ମହାକବି । କୃଷକ କୁଳରେ ତାଙ୍କର ଜନ୍ମ । ତେଣୁ ସେ ମିଶିଛନ୍ତି ଜନପଦର ସାଧାରଣ ମଣିଷମାନଙ୍କ ସହିତ । ସେ ମଧ୍ୟ କିଛିକାଳ କପିଳେନ୍ଦ୍ରଦେବଙ୍କ ସେନାବାହିନୀରେ କାର୍ଯ୍ୟ କରିଛନ୍ତି । ତେଣୁ ସେ ମାଟି-ମଣିଷକୁ ଓ ମାଟି-ମଣିଷର ଭାଷାକୁ ସମ୍ମାନ ଜଣାଇ ସାହିତ୍ୟ ଲେଖିଛନ୍ତି । ଭାଷା-ଜ୍ଞାନ ତାଙ୍କର ସ୍ୱତଃ । ମାଟି, ମଣିଷ ଓ ଭାଷା ପ୍ରତି ଆନ୍ତରିକ ଶ୍ରଦ୍ଧା ହିଁ ତାଙ୍କୁ ପୂର୍ଣ୍ଣ

ସାହିତ୍ୟିକ କରିଛି ଓ ସ୍ୱତଃ ତାଙ୍କ ଭିତରେ ବର୍ଣ୍ଣନାନୁସାରୀ ଭାଷା ଆତ୍ମପ୍ରକାଶ କରିଛି । ତାଙ୍କ ଭିତରେ ସମଗ୍ର ଓଡ଼ିଶା, ଓଡ଼ିଶାର ଜନସାଧାରଣ ଓ ଓଡ଼ିଆ ଭାଷା ପ୍ରତି ଯେଉଁ ଅଙ୍ଗୀକାରବଦ୍ଧତା ଥିଲା, ଯେଉଁ ପରିପୂର୍ଣ୍ଣ ଶ୍ରଦ୍ଧା ଥିଲା, ତାହାହିଁ ତାଙ୍କୁ ଭାଷାର କଳା-କୋଣାର୍କ ସୃଷ୍ଟି କରିବାକୁ ପ୍ରେରଣା ଦେଲା । ଆଜି ସେଇ ଶ୍ରଦ୍ଧାର ଅଭାବ ଘଟିଯାଉଛି । ପ୍ରତ୍ୟେକ ଚାହିଁଛନ୍ତି ଧାରକରା ଶବ୍ଦକୁ ନେଇ ସାହିତ୍ୟ ଲେଖିବାକୁ । ବାହାରର ଭାଷା ସେମାନଙ୍କୁ ମୋହଗ୍ରସ୍ତ କରିଦେଉଛି । ତେଣୁ ଅଧୁନା ସାହିତ୍ୟିକମାନଙ୍କର ଭାଷା ସ୍ୱାଭାବିକ ନ ହୋଇ କୃତ୍ରିମ ହୋଇଯାଉଛି । ଯେଉଁ କେତେଜଣ କବି ବା ଔପନ୍ୟାସିକ, ଗାଳ୍ପିକ ଭାଷା ପ୍ରୟୋଗରେ ସ୍ୱାଭାବିକ ହେଉଛନ୍ତି ସେମାନେ ମଧ୍ୟ ସଫଳତା ଅର୍ଜନ ଯେ ନ କରୁଛନ୍ତି; ନୁହେଁ । ସାରଳା ଦାସଙ୍କର ନିଷ୍ଠା ଥିଲା, ଶ୍ରଦ୍ଧା ଥିଲା, ଧୈର୍ଯ୍ୟ ଥିଲା; ନ ଥିଲା ମୋହଗ୍ରସ୍ତତା ବା କିଛି ପାଇବାର ଅଭିଳାଷ । ତେଣୁ ସେ ହେଲେ ସଫଳ । ସଂପ୍ରତି ତ ମୋହଗ୍ରସ୍ତତା ଓ ପାଇବାର ଲାଳସା ଆକାଶସ୍ପର୍ଶୀ । କିପରି ସାହିତ୍ୟ ମାଟିକୁ ଧରିପାରିବ ?

**ପ୍ରଶ୍ନ : ସାରଳା ମହାଭାରତ ମହାକାବ୍ୟରେ ରହିଛି ଆମ ଦେଶ ଓ ସମାଜର ସାଂପ୍ରତିକ, ସାମାଜିକ, ଆର୍ଥନୀତିକ, ଭୌଗୋଳିକ, ଐତିହାସିକ, ରାଜନୀତିକ ଚିତ୍ର ଓ ଆଧ୍ୟାତ୍ମିକ, ସାଂସ୍କୃତିକ ବିଭବ । ଏହି ସବୁ ଦିଗଗୁଡ଼ିକରୁ ଆପଣ କେଉଁ ଦିଗ ପ୍ରତି ବେଶି ଆକୃଷ୍ଟ ଏବଂ ଜନଗଣ ମଧ୍ୟ ତଦ୍ରୂପ ଆକୃଷ୍ଟ ବୋଲି ଆପଣ ଭାବିପାରୁଥିବେ ?**

**ଉତ୍ତର :** 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ'- ଏହି ଉକ୍ତିରୁ ଜଣାଯାଏ ଯେ, ଯାହା ମହାଭାରତରେ ନାହିଁ ତାହା ମଧ୍ୟ ଭାରତବର୍ଷରେ ନାହିଁ । ସାରଳା ଦାସଙ୍କ ମହାଭାରତରେ ଆମ ଦେଶ ଓ ସମାଜର ନାନା କଥା ରହିଛି । ସାମାଜିକ, ରାଜନୀତିକ, ସାଂସ୍କୃତିକ, ଐତିହାସିକ, ଆଧ୍ୟାତ୍ମିକ ଚିତ୍ର ରହିଛି । ସବୁ ଦିଗ ଆକର୍ଷଣୀୟ । କେଉଁଟା ଆକର୍ଷଣୀୟ ନୁହେଁ ? ଭାରଦା ଉପାଖ୍ୟାନ କ'ଣ ଏବେ ପ୍ରଯୁଜ୍ୟ ନୁହେଁ ? ଆଜିର ସଭ୍ୟ ଓ ଅଭିଜାତ ସମାଜରେ ଭାରଦାମାନଙ୍କର କ'ଣ ଅଭାବ ଅଛି ? ଚଣ୍ଡୀପୁରାଣର ଅମ୍ବିକା ଚଣ୍ଡାଳ କାହାଣୀ କ'ଣ ଏବେ ଏକ ସାମାଜିକ ଆହ୍ୱାନ ନୁହେଁ ? ମହାଭାରତର ଭୀମ ଓ କୁବେର ପ୍ରସଙ୍ଗ କ'ଣ ଏବର କ୍ଷମତାଧରଙ୍କ ପ୍ରତି ଏକ ଚେତାବନୀ ନୁହେଁ ? ଶରଶଯ୍ୟାରେ ଭୀଷ୍ମଙ୍କର ଯୁଧିଷ୍ଠିରଙ୍କୁ ରାଜଧର୍ମ ସଂପର୍କରେ ଉପଦେଶ କ'ଣ ପ୍ରାସଙ୍ଗିକତା ହରାଇ ଦେଇଛି ? ଏଇପରି ତ ଅନେକ । ତେଣୁ ସାରଳା ମହାଭାରତର ପ୍ରତ୍ୟେକ ପ୍ରସଙ୍ଗ ଆକର୍ଷଣୀୟ ଓ ଚିନ୍ତାଦ୍ୟୋତକ । ମୁଁ ସାରଳା ସାହିତ୍ୟର ସାମଗ୍ରିକ ପ୍ରସଙ୍ଗ ପ୍ରତି ଶ୍ରଦ୍ଧାଶୀଳ । ପ୍ରତ୍ୟେକ ମୋ ଭିତରେ ନୂତନ ନୂତନ ଭାବନା ସୃଷ୍ଟି କରେ ।

**ପ୍ରଶ୍ନ : ସାରଳା ସାହିତ୍ୟର ବାସ୍ତବ ମୂଲ୍ୟାଙ୍କନ ହୋଇପାରିଛି ବୋଲି ମୋର ମନେହୁଏନା । ତେଣୁ ଆପଣ ଏବଂ ଆପଣଙ୍କ ପରି ଅନ୍ୟ ବଡ଼ପଣ୍ଡାମାନେ ଦାୟୀ ତଥା ସମାଲୋଚନାର ଶରବ୍ୟ । ମୋର ଏହି ଉକ୍ତି ପ୍ରତି ଆପଣଙ୍କର ବକ୍ତବ୍ୟ କ'ଣ ?**

ଉତ୍ତର : ସାରଳା ସାହିତ୍ୟର ବାସ୍ତବ ମୂଲ୍ୟାୟନ ହୋଇ ନାହିଁ ବୋଲି ଆପଣଙ୍କର ମନେ୍‌ହେଉଛି । ମୋତେ ତଥା ଅନ୍ୟମାନଙ୍କୁ ଆପଣ ଦାୟୀ କରିଛନ୍ତି । ଆପଣଙ୍କର ଏହି ଉକ୍ତି ପ୍ରତି ମୁଁ ଆଦୌ ଏକମତ ନୁହେଁ । ଗୋପୀନାଥ ନନ୍ଦ ଓ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ବହୁ ବିଦ୍ୱାନ୍ ସାରଳା ସାହିତ୍ୟ ସଂପର୍କରେ ବିବିଧ ଦୃଷ୍ଟିରୁ ଆଲୋଚନା କରି ଆସିଛନ୍ତି । ପ୍ରତ୍ୟେକ ଆଲୋଚନା ନିଜ ନିଜ ଦୃଷ୍ଟିରେ ଋଦ୍ଧିମନ୍ତ । ଆଉ ଯେ ନୂତନ ଦୃଷ୍ଟିକୋଣ ନେଇ ସାରଳା ସାହିତ୍ୟ ଆଲୋଚିତ ହେବ ନାହିଁ; ଏହା ମଧ୍ୟ ନୁହେଁ । କୌଣସି ସାହିତ୍ୟର ଆଲୋଚନା ସର୍ବଶେଷ ନୁହେଁ । ସାହିତ୍ୟର ବାସ୍ତବ ମୂଲ୍ୟାଙ୍କନ କହିଲେ ଆପଣ କ'ଣ ବୁଝନ୍ତି ? ତାହାର କ'ଣ ନାନ୍ଦନିକ ମୂଲ୍ୟାଙ୍କନ ହେବା ଉଚିତ ନୁହେଁ ? ନାନ୍ଦନିକ ମୂଲ୍ୟାଙ୍କନକୁ ଛାଡ଼ି କେବଳ ବାସ୍ତବ ମୂଲ୍ୟାଙ୍କନ ହେଲେ କ'ଣ ଠିକ୍ ହେବ ? ପୁନଶ୍ଚ ଆଦର୍ଶବାଦୀ ଆଲୋଚନାକୁ କ'ଣ ଛାଡ଼ିଦେଇ ହେବ ? ସାହିତ୍ୟର ଆଲୋଚନା ସମସ୍ତ ଦିଗକୁ ନିଏ, ଯାହା ସଂପୃକ୍ତ ସାହିତ୍ୟ ଭିତରେ ବଳିଷ୍ଠତାକୁ ନିଆରା କରି ଦେଖାଇଦିଏ । ତେଣୁ ଯେଉଁମାନେ କହନ୍ତି ଓଡ଼ିଆରେ ସମାଲୋଚନା ନାହିଁ ବା ଯାହା ଅଛି ତାହା ବାସ୍ତବବାଦୀ ସମାଲୋଚନା ନୁହେଁ; ସେଥିରେ ମୁଁ ଏକମତ ନୁହେଁ । ଏହା ସତ୍ୟ ଯେ, ଆମ ସମାଲୋଚନାର ନିଜସ୍ୱ ଧରା ଓ ଧାରା ନାହିଁ । ପାଶ୍ଚାତ୍ୟ ବା ପ୍ରତୀଚ୍ୟ ସମାଲୋଚନାର ଏକ ବିକୃତ ରୂପ । ତାହା ସତ୍ତ୍ୱେ ଯେ ଓଡ଼ିଆ ସମାଲୋଚନା କିଛି କରି ନାହିଁ; ତାହା ଠିକ୍ ନୁହେଁ ।

**ପ୍ରଶ୍ନ : କିଛି ନାସ୍ତିକ ମୁଷ୍ଟିମେୟ ସମାଲୋଚକ କହନ୍ତି 'ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ' ସାରଳା ଦାସଙ୍କ କୃତି ନୁହେଁ । ଏହାର କାରଣ କ'ଣ ଏବଂ ଆପଣ ଏଥିରେ ଏକମତ ନା ଦ୍ୱିମତ ?**

ଉତ୍ତର : କିଛି ସମାଲୋଚକ 'ବିଲଙ୍କା ରାମାୟଣ'କୁ ସାରଳା ଦାସଙ୍କର ନୁହେଁ ବୋଲି କହୁଛନ୍ତି । ଡକ୍ଟର କୃଷ୍ଣଚରଣ ସାହୁ ଏହି ମତର ପୃଷ୍ଠପୋଷକ, ଡକ୍ଟର ସ୍ନେହଲତା ପଟ୍ଟନାୟକ ତାଙ୍କର 'ବିଲଙ୍କା ରାମାୟଣ'ର ଶୁଦ୍ଧ ସଂପାଦନାରେ ମଧ୍ୟ ଏହି ମତ ଦେଇଅଛନ୍ତି । ବିଲଙ୍କା ରାମାୟଣର କଥାବସ୍ତୁ ଓ ବର୍ଣ୍ଣନା ପ୍ରସଙ୍ଗରୁ ଦେଖାଯାଏ ଯେ, ବଳରାମ ଦାସଙ୍କ ଜଗମୋହନ ରାମାୟଣରେ ବର୍ଣ୍ଣିତ ପ୍ରସଙ୍ଗର କେତେକ ସାମଞ୍ଜସ୍ୟ ଅଛି । ଏହାକୁ ଧରି କେତେକ କହନ୍ତି ଯେ, ବିଲଙ୍କା ରାମାୟଣ ସାରଳା ଦାସଙ୍କର ନୁହେଁ । ଏହା ଯେ ଅଭ୍ରାନ୍ତ ସତ୍ୟ, ତାହା ମଧ୍ୟ ନୁହେଁ । ବଳରାମ କାହିଁକି ସାରଳାଙ୍କ ଦ୍ୱାରା ପ୍ରଭାବିତ ହୋଇ ନ ଥିବେ ? ତେବେ କେତେକ ଘଟଣା ବିଲଙ୍କା ରାମାୟଣରେ ଅଛି ଯାହା ପଞ୍ଚଦଶ ଶତାବ୍ଦୀର ସାରଳାଙ୍କ ସମୟର ନୁହେଁ । ତେଣୁ ବିଲଙ୍କା ରାମାୟଣର ପିତୃତ୍ୱ ସଂପର୍କରେ ସନ୍ଦେହ ସୃଷ୍ଟି ହୁଏ । ତଥାପି ଏ ସଂପର୍କରେ ସ୍ଥିର ସିଦ୍ଧାନ୍ତ ନ ହେଲା ପର୍ଯ୍ୟନ୍ତ ଏହା ସାରଳା ଦାସଙ୍କର ବୋଲି ମାନିବାକୁ ହେବ ।

'ଚଣ୍ଡୀପୁରାଣ'କୁ ଯେଉଁମାନେ ସାରଳା ଦାସଙ୍କର ନୁହେଁ ବୋଲି କହୁଛନ୍ତି ତାହା ଆଦୌ ଠିକ୍ ନୁହେଁ । ଚଣ୍ଡୀପୁରାଣ ସାରଳା ଦାସଙ୍କର ପ୍ରଥମ ସୃଷ୍ଟି । ଏହିପରି ସିଦ୍ଧେଶ୍ୱର

ଦାସଙ୍କ ନାମରେ ପ୍ରଚଳିତ 'ବିଚିତ୍ର ରାମାୟଣ' ମଧ ସାରଳା ଦାସଙ୍କର । ଏହାକୁ ମଧ କେତେକ ମାନିବାକୁ ପ୍ରସ୍ତୁତ ନୁହନ୍ତି । ମୁଁ ମୋର ଓଡ଼ିଆ ସାହିତ୍ୟର ଇତିହାସରେ ଏସବୁ ଗ୍ରନ୍ଥକୁ ସାରଳା ଦାସଙ୍କର ବୋଲି କହିଅଛି ।

**ପ୍ରଶ୍ନ : ସାରଳା ଦାସଙ୍କ ସାମସମୟିକ ସମକକ୍ଷ ଏବଂ ଉପେନ୍ଦ୍ର ଭଞ୍ଜଙ୍କ ସାମସମୟିକ ସମକକ୍ଷ କବି ସାରା ପୃଥିବୀର କୌଣସି ଭାଷା–ସାହିତ୍ୟରେ ନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆପଣ ଜଣେ ବିଶିଷ୍ଟ ସମାଲୋଚକ ଭାବରେ ବିଶ୍ୱବାସୀଙ୍କର ଆଖି ଖୋଲିଛନ୍ତି କି ? ନା ଖାଲି ନିଜେ ଅଶୀ/ନବେ ଖଣ୍ଡ ବହି ଲେଖି ପକାଇଛନ୍ତି !**

**ଉତ୍ତର :** ସାରଳା ଦାସଙ୍କ ସାମସମୟିକ ସମକକ୍ଷ କବି କେହି ନାହାନ୍ତି, ସେହିପରି ଉପେନ୍ଦ୍ର ଭଞ୍ଜଙ୍କର ସମକକ୍ଷ କବି ମଧ ନାହାନ୍ତି ବୋଲି ଆପଣଙ୍କର ମତ । ଆପଣଙ୍କ ମତ ଆପଣଙ୍କ ପାଖରେ ଥାଉ । ଆପଣ ମଧ ଦର୍ଶାଇ ଦିଅନ୍ତୁ ଯେ, ଏପରି କବି ଆଉ ନୋହିଲା, ନୋହିବ । ତେବେ କିଏ କେତେ ଖଣ୍ଡ ବହି ଲେଖିଲା ବା ନାହିଁ ସେଥିରେ ଆପଣଙ୍କର ବ୍ୟସ୍ତ ହେବାର କ'ଣ ଅଛି ? ଆମ ଓଡ଼ିଶାରେ କିଛି ଉପେନ୍ଦ୍ରପନ୍ଥୀ ଅଛନ୍ତି ଯେଉଁମାନେ ତାଙ୍କ ଛାନ୍ଦ ବୋଲି ସଭାସମିତିରେ କହନ୍ତି ଯେ ଉପେନ୍ଦ୍ର ଭଞ୍ଜ ନୋବେଲ ପ୍ରାଇଜ ପାଇବା କଥା । ମୁଁ ସାରଳା ଦାସଙ୍କୁ ଭଲ ପାଏ, ଉପେନ୍ଦ୍ର ଭଞ୍ଜଙ୍କୁ ମଧ ଭଲ ପାଏ । ଉଭୟଙ୍କ ସଂପର୍କରେ ମୁଁ ଅନେକ ଲେଖା ଲେଖିଛି । ବୋଧହୁଏ ଆପଣ ପଢ଼ି ନାହାନ୍ତି । ଉପେନ୍ଦ୍ରଙ୍କ ଜୀବନ ଦୃଷ୍ଟି, ନାନ୍ଦନିକ ଦୃଷ୍ଟି, ସଂସ୍କୃତି ଦୃଷ୍ଟି, ଜାତୀୟ ଭାବନା ଇତ୍ୟାଦି ସଂପର୍କରେ ଲେଖିଛି । କ'ଣ ନେଇ ତାଙ୍କୁ ବିଶ୍ୱସାହିତ୍ୟିକଙ୍କ ସହିତ ତୁଳନା କରି ତାଙ୍କର ବୈଶିଷ୍ଟ୍ୟ ଦେଖାଇବା ଓ କହିବା ଯେ ଉପେନ୍ଦ୍ର ବିଶ୍ୱକବି ଏବଂ ସବୁ କବିଙ୍କଠାରୁ ଶ୍ରେଷ୍ଠ ? କ'ଣ ଆପଣ ଭାବୁଛନ୍ତି ଅଳଙ୍କାର ? ଶବ୍ଦ–ବନ୍ଧ ? ନାୟକ ନାୟିକାଙ୍କ ସଂଭୋଗ–ଶୃଙ୍ଗାର ? ଅସଲ କଥା–ଜୀବନ–ଦୃଷ୍ଟି, ସମାଜ–ମନସ୍କତା, ମାନବ–ମନସ୍କତା । ଆପଣ ଉପେନ୍ଦ୍ରଙ୍କୁ ପଢ଼ନ୍ତୁ ଓ କାହା ସହିତ ତୁଳନା କରିବେ କରନ୍ତୁ । ସେଇପରି ସାରଳା ଦାସଙ୍କ ପରି କବି ତାଙ୍କ ସମକାଳରେ ନ ଥିଲେ । ହଁ, ଓଡ଼ିଶାରେ ନ ଥିଲେ, ଭାରତରେ ନ ଥିଲେ । ତେବେ ଇଂରାଜୀ ସାହିତ୍ୟରେ ତ ଆସିଗଲେଣି । ମିଲ୍‌ଟନଙ୍କୁ କ'ଣ ଅସ୍ୱୀକାର କରିବା ? ସେକ୍‌ସପିୟରଙ୍କୁ କ'ଣ ଉଡ଼େଇ ଦେବା ? ସାରଳାଙ୍କ ଠିକ୍ ପୂର୍ବରୁ ଦାନ୍ତେଙ୍କ ଡିଭାଇନ କମେଡ଼ିକୁ କ'ଣ ଏଡ଼େଇଦେବା ? ନା, ସେସବୁ ସେମାନଙ୍କର ଜଳବାୟୁକୁ ନେଇ ବଢ଼ିଆ । ସାରଳା ଦାସ ଆମ ଜଳବାୟୁକୁ ନେଇ ବଢ଼ିଆ । କୌଣସି ସମାଲୋଚକ ବିଶ୍ୱବାସୀଙ୍କ ଆଖି ଖୋଲିବା ପାଇଁ ଲେଖେ ନାହିଁ । ସେ ଲେଖେ ସେହି ସାହିତ୍ୟକୁ ଭଲ ପାଉଛି ବୋଲି । ବିଶ୍ୱବାସୀ ଯଦି ତାକୁ ପଢ଼ନ୍ତେ ତେବେ ଜାଣିପାରନ୍ତେ । ତେବେ ସେମାନେ ପଢ଼ନ୍ତି ନାହିଁ, ଆମେ କିନ୍ତୁ ପଢୁ । ତଥାପି ଡକ୍ଟର ଜନ୍ ବୋଲଟନ୍ ତାଙ୍କ ଆଲୋଚନାରେ ସ୍ୱୀକାର କରିଛନ୍ତି ସାରଳା ଦାସଙ୍କୁ ।

**ପ୍ରଶ୍ନ : ଆଜିକାଲି ଗଳ୍ପଗୁଡ଼ିକ ସଂସ୍କାରଧର୍ମୀ ନ ହୋଇ ମନୋରଂଜନଧର୍ମୀ ଆଡ଼କୁ ମୁହାଁଇଛି ଯାହା ସାହିତ୍ୟର ପରିପନ୍ଥୀ । ଏହାର ତର୍ଜମା ଆପଣ କିନ୍ତୁ କରି ନାହାନ୍ତି । ଏବେ କିଛି କହିବେ କି ?**

**ଉତ୍ତର :** 'ଆଜିର ଗଳ୍ପଗୁଡ଼ିକ ସଂସ୍କାରଧର୍ମୀ ନ ହୋଇ ମନୋରଂଜନଧର୍ମୀ ଆଡ଼କୁ ମୁହାଁଇଛି, ଯାହା ସାହିତ୍ୟର ପରିପନ୍ଥୀ'– ଏହାର ଅର୍ଥ କ'ଣ ? ଏ ସଂପର୍କରେ ମୁଁ କିଛି ତର୍ଜମା କରି ନାହିଁ– ସତରେ ଆପଣ ମୋ ଗଳ୍ପ ସଂପର୍କିତ ସମସ୍ତ ଲେଖା ପଢ଼ିଛନ୍ତି କି ? ବୋଧହୁଏ ନୁହେଁ । ନ ହେଲେ ଏପରି ପ୍ରଶ୍ନ କରି ନ ଥାନ୍ତେ । ସଂସ୍କାରଧର୍ମୀ ଗଳ୍ପ ଲେଖା ହେଉଥିଲା ଫକୀରମୋହନ ଯୁଗରେ । ଏବେ ତାହାର ଆବଶ୍ୟକତା ନାହିଁ । ହେଲେ ତାହା ପ୍ରଚାରଧର୍ମୀ ହୋଇଯିବ । ମନୋରଂଜନଧର୍ମିତା ଗଳ୍ପର ଦୁର୍ଲକ୍ଷଣ ନୁହେଁ । ଏହା ତ ଗଳ୍ପର ପ୍ରଥମ ଲକ୍ଷ୍ୟ । ତା'ପରେ ଆସେ ସମାଜ କଥା, ସଂସ୍କୃତି କଥା, ମନଗହନର କଥା, ଇମିତି କେତେ କ'ଣ । ନାନ୍ଦନିକତା ନ ଥିଲେ କେଉଁ ଗଳ୍ପ ବା କବିତା ପ୍ରଭାବଶାଳୀ ହେବ ? ଆଜିର ଗଳ୍ପ ଆଉ ବହିଃ ବାସ୍ତବତାର ଗଳ୍ପ ନୁହେଁ; ଅନ୍ତଃସତ୍ତାର ଗଳ୍ପ । ଏହା ମଧ୍ୟ ଜୀବନ–ଆଳଙ୍କ ନୁହେଁ; ଜୀବନ ଜୀଇଁବାର ଗଳ୍ପ । ମୁଁ ଯେ ଗଳ୍ପ ସଂପର୍କରେ ଏ ବିଷୟରେ କିଛି ଲେଖି ନାହିଁ କେମିତି ଜାଣିଲେ ? ଖୋଜନ୍ତୁ, ପଢ଼ନ୍ତୁ ଓ ତା'ପରେ କୁହନ୍ତୁ । ମୁଁ ତ ବାରମ୍ବାର କହିଛି ଓ ଲେଖିଛି ଗଳ୍ପରେ ମାଟି–ମନସ୍କତା ଓ ମାନବ–ମନସ୍କତା ନ ରହିଲେ ତାହା ଶୈଳୀରେ ଯେତେ ଚମତ୍କାରିତା ସୃଷ୍ଟି କଲେ ମଧ୍ୟ ଗଳ୍ପ ଭାବରେ ସାର୍ଥକ ନୁହେଁ । ମନେ ରଖିବାକୁ ହେବ ଯେ ଗଳ୍ପ ହେଉ ବା କବିତା, ନାଟକ ଯାହା ହେଉ, ସବୁର ମୂଳ ଲକ୍ଷ୍ୟ ସୌନ୍ଦର୍ଯ୍ୟବୋଧ । ଏହା ମନୋରଂଜନ କରେ; ମାତ୍ର ସେଇଠି ସାହିତ୍ୟ ଅଟକିଯାଏ ନାହିଁ । ସମାଜକୁ, ଜୀବନକୁ, ସଂସ୍କୃତିକୁ ଆପଣାର ଅଙ୍ଗୀଭୂତ କରିନିଏ । ସମାଜର ଦୁଷ୍ଟବ୍ରଣମାନଙ୍କ ପ୍ରତି ତର୍ଜନୀ ନିର୍ଦ୍ଦେଶ କରେ ।

**ପ୍ରଶ୍ନ : ଓଡ଼ିଶା ସାହିତ୍ୟ ଏକାଡେମୀରେ ବାସ୍ତବ ପ୍ରତିଭା ପୂଜା ଅପେକ୍ଷା ପ୍ରିୟାପ୍ରୀତି ତୋଷଣ ଅଧିକ । ଏଥିପାଇଁ ବୁଦ୍ଧିଜୀବୀମାନେ ମୁରୁକିହସା ମାରନ୍ତି । ଏପରି 'ମୁରୁକିହସା' ବିଦ୍ରୂପର ସଂକେତ, କିନ୍ତୁ ବିଦ୍ରୋହ ନୁହେଁ । ଆପଣଙ୍କ ମତରେ ଏହାର ସମାଧାନର ବାଟ କ'ଣ ?**

**ଉତ୍ତର :** ଓଡ଼ିଶା ସାହିତ୍ୟ ଏକାଡେମୀ ବା କେନ୍ଦ୍ର ସାହିତ୍ୟ ଏକାଡେମୀ ଅଥବା ବ୍ୟକ୍ତିଗତ ପୁରସ୍କାର ଦାନ ସଂସ୍ଥା ସଂପର୍କରେ ମୋର କିଛି କହିବାର ନାହିଁ । ତାହାର କାରଣ ଲେଖକ ଲେଖେ ନାହିଁ କ'ଣ କିଛି ମୋଟା ଅଙ୍କର ପୁରସ୍କାର ପାଇବା ପାଇଁ । ଏହା ଆମ ଓଡ଼ିଶାରେ କେବେ ନ ଥିଲା । ଏଇ କେତେ ବର୍ଷ ହେଲା ପୁରସ୍କାର ପ୍ରଦାୟୀ ସଂସ୍ଥାମାନ ଛତୁ ଫୁଟିଲା ପରି ବଢ଼ିଉଠୁଛି । ଆପଣ ଜାଣନ୍ତି କି ଏସବୁ ଅନୁଷ୍ଠାନର ନେପଥ୍ୟ କାହାଣୀ ? ଯଦି

ଜାଣିଥାନ୍ତି ମୋର ବିନୀତ ନିବେଦନ ଏଥିରେ ମୁଣ୍ଡ ଖେଳାନ୍ତୁ ନାହିଁ । ଏଇ ଲେଖକ କେତେକ ଅନୁଷ୍ଠାନର ଜୁରି ଥିଲା ଓ ସେ ଜାଣିଛି ପୁରସ୍କାର ପ୍ରଦାନର କାହାଣୀ । ଓଡ଼ିଶା ସାହିତ୍ୟ ଏକାଡେମୀ ହେଉ ବା କେନ୍ଦ୍ର ସାହିତ୍ୟ ଏକାଡେମୀ ହେଉ– ସେସବୁ ଅନୁଷ୍ଠାନରେ ଓଡ଼ିଆ ଲେଖକ ପାଇଁ ବାହାରର କେହି ନ ଥାନ୍ତି । ସମସ୍ତେ ଥାଆନ୍ତି ଓଡ଼ିଶାର । ଯେଉଁମାନେ ସଦସ୍ୟ ହୁଅନ୍ତି ବା କର୍ତ୍ତା ହୁଅନ୍ତି ସେମାନେ କ'ଣ ଯୋଗ୍ୟତା ବଳରେ ହୁଅନ୍ତି ? କେହି ନା କେହି ପ୍ରଭାବଶାଳୀ ବ୍ୟକ୍ତି ସେମାନଙ୍କ ନାମ ଦିଅନ୍ତି । ସେମାନେ ଦେଖନ୍ତି ପୁରସ୍କାର କାହାକୁ ଦେବେ, ଗୋଟିଏ ସମ୍ଭାବ୍ୟ ତାଲିକା କରନ୍ତି ଓ ପ୍ରିୟ ବା ବନ୍ଧୁ ଲେଖକଙ୍କୁ ଦେବା ପାଇଁ ସେହି ଅନୁସାରେ ଜୁରି ଠିକ୍ କରନ୍ତି ଓ ଦିଅନ୍ତି । ଅପରପକ୍ଷରେ ବ୍ୟକ୍ତିଗତ ସଂସ୍ଥାର କର୍ତ୍ତାମାନେ ଯାହାକୁ ଦେବା କଥା ଠିକ୍ କରି ନେଇ କିଛି ଲେଖକଙ୍କ ଦ୍ୱାରା ସୁପାରିସ କରାଇ ନିଅନ୍ତି । ଯିଏ ପାଏ ସିଏ କୃତକୃତ୍ୟ ହୁଏ ଓ ଯିଏ ଦିଏ ସିଏ ମଧ୍ୟ କୃତକୃତ୍ୟ ହୁଏ । ସଂପ୍ରତି କେତେକ ଶିଳ୍ପପତି ଓ ଧନୀବ୍ୟକ୍ତି ଏପରି କୌଶଳ କରି ନିଜେ ଧନ୍ୟ ହୋଇଯାଉଛନ୍ତି ଓ ଲେଖକମାନେ ସେମାନଙ୍କ ପଦଲେହନ କରି ମଧ୍ୟ କୃତକୃତ୍ୟ ହେଉଛନ୍ତି । ଏହା ଗୋଟିଏ ସାହିତ୍ୟ ପାଇଁ ଶୁଭଲକ୍ଷଣ ନୁହେଁ । ଲେଖକ ବଞ୍ଚେ ତା'ର ସ୍ୱାଭିମାନକୁ ନେଇ । ସେଇ ଟିକକ ଚାଲିଗଲେ ଆଉ କ'ଣ ରହିଲା ? ଆପଣ ବିଚାର କରନ୍ତୁ । ଏପରି ସମସ୍ୟା ଦେଖାଦେଇଛି ଯେ ତାହାକୁ ସମାଧାନ କରିବାର ବାଟ ଦିଶୁ ନାହିଁ ।

**ପ୍ରଶ୍ନ : ଓଡ଼ିଆ ଭାଷା–ସାହିତ୍ୟର ସୁରକ୍ଷା ନିମନ୍ତେ ବେସରକାରୀ ସଂସ୍ଥା କୁମ୍ଭୀରକାନ୍ଦଣା କାନ୍ଦନ୍ତି, ସରକାରୀ ସଂସ୍ଥା ଅର୍ଥକୁ ବାଟମାରଣା କରନ୍ତି ଏବଂ ବଡ଼ପଣ୍ଡାମାନେ ଆଖି ମାରନ୍ତି । ସବୁ ଦେଖି ଜାଣି ମଧ୍ୟ ପ୍ରଶାସନ ନୀରବ । ଏ ବାବଦରେ ଆପଣଙ୍କ ସୁଚିନ୍ତିତ ମତ କ'ଣ ?**

ଉତ୍ତର : ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା ନିମନ୍ତେ ସରକାରୀ ସଂସ୍ଥାର ଦାୟିତ୍ୱ ଅଧିକ । ଅଥଚ ସେହି ଦାୟିତ୍ୱ କିଏ ପାଳନ କରୁଛି କି ? ସେହି ସଂସ୍ଥାରେ ଯେଉଁ ନେତା–ମନ୍ତ୍ରୀ ବା ପଦସ୍ଥ ଅଧିକାରୀମାନେ ଥାଆନ୍ତି ସେମାନେ କ'ଣ କିଛି ବୁଝନ୍ତି ? ଏଇ ଯେମିତି ଓଡ଼ିଆ ଭାଷା ଦିନକୁ ଦିନ ମରି ମରି ଯାଉଛି । ସରକାର କ'ଣ କରୁଛି ? କେବଳ ଧର୍ମକୁ ଆଖିଠାର ପରି କେତେଟା କମିଟି କରି ଦେଉଛନ୍ତି । ଏପରି ସଂସ୍ଥାରେ ସରକାରୀ ଅର୍ଥର ବାଟମାରଣ ହୁଏ । ତା'ର କାରଣ ଭାଷା ଓ ସାହିତ୍ୟ ପ୍ରତି ଅଙ୍ଗୀକାରବଦ୍ଧତା ନାହିଁ । ସବୁ କାଳେ ବଡ଼ପଣ୍ଡାମାନେ ଦାୟିତ୍ୱ ନିଅନ୍ତି । ସେମାନଙ୍କ ବିଚାରରେ ସେମାନଙ୍କଠାରୁ ଆଉ କେହି ବଡ଼ ନାହାନ୍ତି । ପ୍ରିୟାପ୍ରୀତି ହୋଇଯାଇଛି ମୁଖ୍ୟ । ତେଣୁ ଭାଷାକୁ ବା ସାହିତ୍ୟକୁ ପ୍ରୋତ୍ସାହନ ଦେବ କିଏ ? ବେସରକାରୀ ସଂସ୍ଥାଗୁଡ଼ିକ ନିଜ ନିଜର ବାହାବା ଓ ପ୍ରତିଷ୍ଠା ପାଇଁ ବ୍ୟସ୍ତ । ଏପରି ଅବସ୍ଥାରେ କିଏ କ'ଣ କରିବ ? ଏଥିପାଇଁ ପାଟିତୁଣ୍ଡ କଲେ ହେବ ନାହିଁ, ହେବ

ଭାଷା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା ଓ ସ୍ୱାଭିମାନଦ୍ୱାରା । ସଂଘବଦ୍ଧ ଭାବରେ ଉଦ୍ୟମ ହେଲେ ହୁଏତ ବର୍ତ୍ତମାନ ଅବସ୍ଥାରୁ ନିସ୍ତାର ମିଳିପାରେ, ଯେମିତି ହେଉଛି ଆସାମରେ, ବଙ୍ଗଳାରେ, କେରଳରେ ବା ମହାରାଷ୍ଟ୍ରରେ ।

**ପ୍ରଶ୍ନ : ଶାନ୍ତିନିକେତନର ଅଧ୍ୟାପକ ଡ. ମନୋରଂଜନ ପ୍ରଧାନଙ୍କ ସଂପାଦନାରେ ପ୍ରକାଶିତ 'ବୈଷ୍ଣବାୟନ' ଆଲୋଚନା ଗ୍ରନ୍ଥରେ ପ୍ରାୟ ୩୧ ଜଣ ପ୍ରବୀଣ ଅଧ୍ୟାପକ ଆପଣଙ୍କର ପ୍ରତିଭା ତଥା ଗୁଣ କୀର୍ତ୍ତନ କରିଛନ୍ତି । ଏଥିରେ ଆପଣ ସନ୍ତୁଷ୍ଟ ନା ଆଉ କିଛି ବାକି ରହିଯାଇଛି ?**

**ଉତ୍ତର :** ଶାନ୍ତିନିକେତନ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଅବସର ନେଲାବେଳେ ଶ୍ରଦ୍ଧେୟ ଡକ୍ଟର ମନୋରଂଜନ ପ୍ରଧାନ ମୋ ସଂପର୍କରେ ଏକ ପୁସ୍ତକ 'ବୈଷ୍ଣବାୟନ' ସଂକଳନ କରିଥିଲେ । ଏହା ଥିଲା ତାଙ୍କର ମୋ ପ୍ରତି ଗଭୀର ଶ୍ରଦ୍ଧା ନିବେଦନ । କାହାଠାରୁ ସେ ଲେଖା ଆଣିଲେ ବା ନାହିଁ ତାହା ଥିଲା ତାଙ୍କର ସ୍ୱାଧିକାର ପ୍ରସଙ୍ଗ । ସେ ସଂପର୍କରେ ମୋର କିଛି କହିବାର ନ ଥିଲା । ମୋର ବ୍ୟକ୍ତିତ୍ୱ ଓ ସାରସ୍ୱତ କୃତି ସଂପର୍କରେ କିଛି ଲୋକ ସେହି ପୁସ୍ତକରେ ଲେଖିଛନ୍ତି । ହୁଏତ ଆହୁରି କିଛି ଲେଖାଯାଇପାରିଥାଆନ୍ତା । ଏହି ପୁସ୍ତକ ମୋତେ ଯେ ସନ୍ତୁଷ୍ଟ ନ କରିଛି, ନୁହେଁ । ତେବେ କୌଣସି ପୁସ୍ତକ କୌଣସି ବ୍ୟକ୍ତି ବା ଲେଖକଙ୍କ ସଂପର୍କରେ ସର୍ବଶେଷ ଆଲେଖ୍ୟ ନୁହେଁ । ଭବିଷ୍ୟତରେ ଅନ୍ୟମାନେ ହୁଏତ ଲେଖିପାରନ୍ତି ବା ନାହିଁ । ଏଥିପାଇଁ ଚିନ୍ତା କ'ଣ ? ମୁଁ ଭାବେ ଯେତେବେଳେ ଯାହା ହେଉଛି ତାହା ସ୍ୱାଗତଯୋଗ୍ୟ ଓ ସେତିକିରେ ତୁଷ୍ଟ ରହିବା ଉଚିତ ।

**ପ୍ରଶ୍ନ : ଦୀର୍ଘ ସାତ ବର୍ଷ ଧରି ଏହି ଅଭିଯାନ ପତ୍ରିକାରେ ସ୍ୱାଗତିକା ପତିଙ୍କ ଦ୍ୱାରା 'ଚଣ୍ଡାଶୋକରୁ ଧର୍ମାଶୋକ ମହାମିଥ୍ୟା' ପ୍ରସଙ୍ଗ ପ୍ରକାଶିତ ହେଉଅଛି । ଏ ସଂପର୍କରେ ଆପଣଙ୍କର ମତାମତ କ'ଣ ?**

**ଉତ୍ତର :** ଦୀର୍ଘ ସାତ ବର୍ଷ ଧରି ସ୍ୱାଗତିକା ପତିଙ୍କର 'ଅଭିଯାନ' ପତ୍ରିକାରେ 'ଚଣ୍ଡାଶୋକରୁ ଧର୍ମାଶୋକ : ମହାମିଥ୍ୟା' ଶୀର୍ଷକ ପ୍ରବନ୍ଧ ପ୍ରକାଶ ପାଇଆସୁଛି । କେତେକ ସଂଖ୍ୟା ମୁଁ ପଢ଼ିଛି । ମୋତେ ଭଲ ଲାଗିଛି ତାଙ୍କର ତାର୍କିକ ଦୃଷ୍ଟିଭଙ୍ଗୀ, ଅଶୋକଙ୍କ ସଂପର୍କରେ ପ୍ରକୃତ ତଥ୍ୟ ଓ ସତ୍ୟକୁ ପ୍ରକାଶ କରିବାର ସାହସିକତା, ଇତିହାସ ନାମରେ ଇତିହାସକୁ ବିକୃତ କରୁଥିବା କେତେକ ତଥାକଥିତ ଐତିହାସିକଙ୍କ ଉପରେ କଟୁ ମନ୍ତବ୍ୟ । ମୋର ସ୍ପଷ୍ଟ ଧାରଣା ଓ ଯାହା ମୁଁ ମୋର କେତେକ ରମ୍ୟରଚନାରେ ତଥା ବକ୍ତବ୍ୟରେ କହିଆସିଛି ଯେ, ଅଶୋକ ହୁଏତ ଆଉ କାହା ପାଇଁ ଧର୍ମାଶୋକ ହୋଇପାରନ୍ତି ମାତ୍ର ମୋ ପାଇଁ ତଥା ମୋ ଜାତି ପାଇଁ ସେ ଆଦୌ ଧର୍ମାଶୋକ ନୁହନ୍ତି, ଚଣ୍ଡାଶୋକ । ତାଙ୍କର ଧଉଳି ଶିଳାଲେଖରେ କଳିଙ୍ଗ ପାଇଁ ସହାନୁଭୂତି ବା ଉଦାରତା ନାହିଁ, ଅଛି ନିଜକୁ ମହାନ୍ ବୋଲି ପ୍ରଚାର କରାଇବାର

ମାନସିକତା । ଲେଖିକା ଶ୍ରୀମତୀ ପତି ବେଶ୍ ସୁଚିନ୍ତିତ ଭାବରେ ଅଶୋକଙ୍କୁ ଜଣେ କୌଶଳୀ ସିଂହାସନୀ ମଣିଷ ଭାବରେ ଉପସ୍ଥାପନ କରଛନ୍ତି । ତାଙ୍କର ଶିଳାଲେଖକୁ ସୈତାନ ଶିଳା ଭାବରେ ଯେପରି ଉଲ୍ଲେଖ କରି ଖଣ୍ଡଗିରିର ଖାରବେଳ ହାତୀଗୁମ୍ଫା ଶିଳାଲେଖକୁ ସୁବର୍ଣ୍ଣ ଶିଳା ଭାବରେ ମାନ୍ୟତା ଦେଇଛନ୍ତି ତାହା ପ୍ରଶଂସନୀୟ । ଧର୍ମକୁ ରାଜନୀତି ଭିତରେ ମିଶାଇ ଅଶୋକ ଯେପରି ଧର୍ମ-ରାଜନୀତିର ଭିତ୍ତି ପକାଇଥିଲେ ତାହା ପ୍ରତି ମଧ୍ୟ ସେ ତିର୍ଯ୍ୟକ୍ ଦୃଷ୍ଟିପାତ କରି ଆଧୁନିକ ଯୁଗରେ ତାହା କିପରି କେତେକଙ୍କର ଆଦର୍ଶ ହୋଇଛି ତାହାକୁ ମଧ୍ୟ ସୂଚାଇ ଦେଇଛନ୍ତି । 'ଅଭିଯାନ' ପତ୍ରିକା ଏପରି ଏକ ଲେଖା ଧାରାବାହିକ ଭାବରେ ପ୍ରକାଶ କରି ଧନ୍ୟବାଦାର୍ହ ।

**ପ୍ରଶ୍ନ : କୋଲକାତାରୁ ପ୍ରକାଶିତ 'ଅଭିଯାନ' ଓଡ଼ିଆ ସାହିତ୍ୟ ପତ୍ରିକାରେ ଆପଣ ଜଣେ ସାମୟିକ ଲେଖକ ଓ ପାଠକ । ଓଡ଼ିଶା ବାହାରେ ଓଡ଼ିଆ ଭାଷା-ସାହିତ୍ୟ ଓ କଳା-ସଂସ୍କୃତିର ପ୍ରଚାର ପ୍ରସାର ଓ ବିକାଶ ଦିଗରେ 'ଅଭିଯାନ'ର ଭୂମିକା କେତେଦୂର ଫଳପ୍ରଦ ବୋଲି ଆପଣ ହୃଦୟଙ୍ଗମ କରୁଛନ୍ତି ?**

**ଉତ୍ତର :** କଲିକତାରୁ 'ଅଭିଯାନ' ପତ୍ରିକା ନିୟମିତ ଭାବରେ ପ୍ରକାଶ ପାଇଆସୁଅଛି । ଏହି ପତ୍ରିକାରେ ମୁଁ ସାମୟିକ ଭାବରେ ଲେଖେ । ଏହାର ସଂପାଦକ ଶମ୍ଭୁନାଥ ଦାସ । ସେ ଜଣେ ଉଦ୍‌ଯୋଗୀ ପୁରୁଷ କେବଳ ନୁହନ୍ତି; ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଅଙ୍ଗୀକାରବଦ୍ଧ ଲେଖକ ଓ ସଂପାଦକ । ଓଡ଼ିଶା ବାହାରେ କଲିକତାରେ ଓଡ଼ିଆମାନଙ୍କୁ ନିଜର ଭାଷା, ସଂସ୍କୃତି ଓ ସାହିତ୍ୟ ସଂପର୍କରେ ପ୍ରେରଣା ଦେବା ପାଇଁ ଏହି ପତ୍ରିକା ସଂକଳ୍ପବଦ୍ଧ । ଏକଦା କଲିକତାରୁ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି କେତେ ଓଡ଼ିଆ ପତ୍ରିକା ପ୍ରକାଶ ପାଇଆସୁଥିଲା । ଏବେ ସବୁ ପ୍ରାୟ ବନ୍ଦ ହୋଇଗଲାଣି । ଏବେ କିଛି ପତ୍ରିକା ପ୍ରକାଶ ପାଉଥିଲେ ହେଁ ଧାରାବାହିକତା ରକ୍ଷା କରିପାରୁ ନାହିଁ । କିନ୍ତୁ 'ଅଭିଯାନ' ତା'ର ଅଭିଯାନ ବଜାୟ ରଖିଛି । ବାହାରେ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଚାର ଓ ପ୍ରସାରରେ ଉଦ୍ୟମ ଅବ୍ୟାହତ ରଖିଛି । ତାହାର ଏହି ଭୂମିକା ଅବ୍ୟାହତ ରହୁ- ଏତିକି ମୋର ଈଶ୍ୱରଙ୍କ ପାଖରେ କାମନା ।

**ସଂ:ଅ :** ଖୁବ୍ ଧନ୍ୟବାଦ ସାର୍ ! ବାସ୍ତବିକ୍ ଆମ୍ଭଙ୍କୁ ଏବଂ ଅଭିଯାନର ପାଠକ/ପାଠିକାମାନଙ୍କୁ କିଛି ସାରସ୍ୱତ ପ୍ରଶ୍ନର ଯଥାର୍ଥ ଉତ୍ତର ପ୍ରଦାନ କରିଥିବାରୁ ମୁଁ କୃତଜ୍ଞତା ଜ୍ଞାପନ କରୁଛି । ଆପଣଙ୍କର ଶତାଧିକ ସାରସ୍ୱତ ଗ୍ରନ୍ଥ କାଳଜୟୀ ହେଉ ଏବଂ ଆପଣ ଦୀର୍ଘଜୀବୀ ଓ ଯଶସ୍ୱୀ ହୁଅନ୍ତୁ ଏହାହିଁ ଆମର ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା । □

# ସୁଲେଖକ, ବିଶିଷ୍ଟ ଶିକ୍ଷାବିତ୍, ଉଦାରଚେତା ମଣିଷ ପ୍ରଫେସର ବୈଷ୍ଣବ ଚରଣ ସାମଲ

'ବର୍ତ୍ତିକା' ପୂଜା ସଂଖ୍ୟା (୨୦୧୨)

ଓଡ଼ିଆ ସାହିତ୍ୟର ଜଣାଶୁଣା ଲେଖକ, ବିଶିଷ୍ଟ ଶିକ୍ଷାବିତ୍, ମାନବିକ ମୂଲ୍ୟବୋଧରେ ବିଶ୍ୱାସ ରଖୁଥିବା ମଣିଷ ଭାବରେ ପ୍ରଫେସର ବୈଷ୍ଣବ ଚରଣ ସାମଲ ଓଡ଼ିଶାରେ ସୁପରିଚିତ । ଜୀବନର ନାନା ଘାତ-ପ୍ରତିଘାତ, ଆହ୍ୱାନ-ପ୍ରତିଆହ୍ୱାନ, ଉତ୍ଥାନ-ପତନ ଭିତରେ ତାଙ୍କ ଜୀବନ ଅତିବାହିତ ହୋଇଥିଲେ ମଧ୍ୟ ଆପଣାକୁ ସେ ଉତ୍ସର୍ଗ କରିଛନ୍ତି ସାହିତ୍ୟ ପାଇଁ । ଏଥିସହିତ ସମାଜ ସେବା କ୍ଷେତ୍ରରେ ତାହାଙ୍କ ଭୂମିକା କିଛି କମ୍ ନୁହେଁ । ଏପରି ଜଣେ ଶିଷ୍ଟ ମଣିଷ ହେଉଛନ୍ତି ପ୍ରଫେସର ବୈଷ୍ଣବ ଚରଣ ସାମଲ, ଯାହାଙ୍କ ଜନ୍ମ ୧୯୩୯ ମସିହା ଫେବୃୟାରୀ ୨୭ ତାରିଖ । ସେ ଏକାଧାରରେ ଜଣେ ପ୍ରାବନ୍ଧିକ, ସମାଲୋଚକ, ରମ୍ୟରଚନା ଲେଖକ, ଗାଳ୍ପିକ, କବି, ଶିଶୁ ଓ କିଶୋର ସାହିତ୍ୟ ଲେଖକ । ଏଥିସହିତ ସେ ହେଉଛନ୍ତି ଜଣେ ଅନର୍ଗଳ ବକ୍ତା । ସେ ୧୯୬୬ ମସିହାରେ ଅଧ୍ୟାପକ ଭାବେ ସରକାରୀ କଲେଜରେ ଯୋଗ ଦେଇ ଶେଷରେ ଶାନ୍ତିନିକେତନରୁ ୨୦୦୪ ମସିହାରେ ସେବା ନିବୃତ୍ତ ହୋଇଛନ୍ତି । ତାହାଙ୍କ ତତ୍ତ୍ୱାବଧାନରେ ପଚାଶରୁ ଉର୍ଦ୍ଧ୍ୱ ଗବେଷକ ପିଏଚ.ଡି. ଓ ଡି.ଲିଟ୍. ଡିଗ୍ରୀ ଲାଭ କରିଛନ୍ତି । ତାଙ୍କର ରଚନାବଳୀ ମଧ୍ୟରେ ଗଳ୍ପଗ୍ରନ୍ଥ- 'ଶେଷ ଶୃଙ୍ଗାର', 'ଏକା ଏକା ନକ୍ଷତ୍ର', କବିତାଗ୍ରନ୍ଥ- 'ସମୟର ଲିପି', 'ଅନ୍ୟ ଏକ ପୃଥିବୀ', 'ପୁନଶ୍ଚ ମଣିଷ', 'ଆଲୋକିତ ଅନ୍ଧକାର', 'ଏକାକୀ ଈଶ୍ୱର', ଧର୍ମ ସାହିତ୍ୟ- 'ଭକ୍ତକଥା ଭକ୍ତଚରିତ', 'ବଟକଥା ଓ ଅନନ୍ତ ତତ୍ତ୍ୱ', ସଂପାଦନା- 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ : ଭୂମି ଓ ଭୂମିକା', 'ଓଡ଼ିଆ ଯାତ୍ରା ଓ ଲୋକନାଟ୍ୟ ପରଂପରା', 'ଗଙ୍ଗା ଗଙ୍ଗୋତ୍ରୀ', 'ସଂଗ୍ରାମ ଜ୍ୟୋତି', 'ମଣିଦାସ ରଚନାବଳୀ ଓ ଆଲୋଚନା', 'ସନ୍ଥକବି ବାହୁଡ଼ା ଦାସ ରଚନାବଳୀ ଓ ଆଲୋଚନା', 'ଗଣକବି ଗୋପାଳ ଦାସ ଗ୍ରନ୍ଥାବଳୀ', 'ମହାପୁରୁଷ ହାଡ଼ିଦାସ ଗ୍ରନ୍ଥାବଳୀ', 'ନନ୍ଦିକଶୋର ଗ୍ରନ୍ଥାବଳୀ', 'ପ୍ରେମଭକ୍ତି ବ୍ରହ୍ମଗୀତା', 'ସ୍ତୁତି ଚିନ୍ତାମଣି', 'ଚିନ୍ମୟ ଗୀତା', ଶିଶୁ ଓ କିଶୋର ସାହିତ୍ୟ- 'ବସି ଖାଇଲେ ନଈବାଲି ସରେ', 'ବୈକୁଣ୍ଠ ସମାନ ଆହା ଅଟେ ସେହି ଘର', 'ଆମ ଜୀବଜଗତ'; ପ୍ରବନ୍ଧ ଓ ରମ୍ୟରଚନା- 'ଆଜ ଦେଖିଲିରେ', 'ନାରୀର ମୁହଁ', 'ଇଛନ୍ତି ଦାମ୍ଭିକେ', 'କହିବାକୁ ଲାଜ', 'ସଂଜୟ ଉବାଚ', 'ରଙ୍ଗସଭା',

'ଗୋପଦାଣ୍ଡ ଓ ଅନ୍ୟାନ୍ୟ ପ୍ରବନ୍ଧ'; ସାହିତ୍ୟ ସମାଲୋଚନା– 'କଳା, ସଂସ୍କୃତି ଓ ସାହିତ୍ୟ', 'ଓଡ଼ିଆ ଗଳ୍ପ– ଗତି ଓ ପ୍ରକୃତି', 'କ୍ଷୁଦ୍ରଗଳ୍ପ ସ୍ରଷ୍ଟା ମାନସ', 'ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ', 'ଓଡ଼ିଆ ଗଳ୍ପ : ଉନ୍ମେଷ ଉତ୍ତରଣ', 'ସାହିତ୍ୟ–ସମ୍ବାଦ', 'ଦୃଷ୍ଟି ଓ ଦିଗନ୍ତ', 'ସମାଲୋଚନା : ପାଞ୍ଚଜନ୍ୟ', 'ସମାଲୋଚନା : ମଧୁପର୍କ', 'ସମାଲୋଚନା : 'ସ୍ୱର ଓ ସ୍ୱାକ୍ଷର', 'ଗଣକବି : ସାହିତ୍ୟ ସମୀକ୍ଷା', 'ସାହିତ୍ୟ କଥନୀ', 'ପ୍ରାଚୀନ ଓଡ଼ିଆ ସାହିତ୍ୟ', 'ଓଡ଼ିଆ କବିତାର ଧରା ଓ ଧାରା', 'ଭିନ୍ନ ଇଲାକା ଭିନ୍ନ ଦୃଷ୍ଟି' ଆଦି ପ୍ରଧାନ ।

ଏପରି ଜଣେ ବିଶିଷ୍ଟ ସାରସ୍ୱତ ସାଧକଙ୍କ ସହିତ 'ବର୍ତ୍ତିକା'ର ପୂଜାସଂଖ୍ୟା ସକାଶେ ଏଇ ସାକ୍ଷାତ୍‌କାର...

**ପ୍ରଶ୍ନ : ଆପଣ ପ୍ରଥମେ କିପରି ଲେଖିଲେ ଓ କାହା ପ୍ରେରଣାରେ ଲେଖିଲେ ?**

**ଉତ୍ତର :** ଲେଖା; ତାହା କବିତା ହେଉ, ଗଳ୍ପ ହେଉ ବା ଯାହା ହେଉନା କାହିଁକି, ଜଣେ ଲେଖେ ତା'ର ଅନ୍ତଃପ୍ରେରଣାରେ । ଅନ୍ୟ କାହାଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ଲେଖିଲେ ତାହା ଲେଖକଙ୍କର ଅନ୍ତରର ସ୍ୱତଃ ଉଚ୍ଚାରଣ ହୁଏ ନାହିଁ ।

ପ୍ରଥମେ ଯେତେବେଳେ ମୁଁ ଲେଖିଲି ସେତେବେଳେ ମୁଁ ଅଷ୍ଟମ ଶ୍ରେଣୀରେ ପଢୁଥାଏ ଓ ସେହି ସମୟରେ ମାନଗୋବିନ୍ଦ ସାହୁ ନାମକ ଜନୈକ ଶିକ୍ଷକ ଇଂରାଜୀ ପଢ଼ାଉଥାନ୍ତି । 'ସାବିତ୍ରୀ' ବିଷୟଟି ପଢ଼ା ସରିବା ପରେ ମୁଁ ସ୍ୱତଃ ବଙ୍ଗଳାଶ୍ରୀ ରାଗରେ କାବ୍ୟଟିଏ ଲେଖିଲି । ଏହା ଯଦିଓ ସେହି ଲେଖାର ପ୍ରେରଣା ତଥାପି ଭାରତୀୟ ପରଂପରାର ଜଣେ ତ୍ୟାଗମୟୀ, ପ୍ରେମମୟୀ ଓ ପତିବ୍ରତା ନାରୀର ମହିମା, ଯାହା ମୋ ଭିତରେ ସୁପ୍ତ ଅବସ୍ଥାରେ ଥିଲା, ତାହା ମୋତେ ହୁଏତ ଅନୁପ୍ରେରିତ କଲା ମାତ୍ର ମୋ ଅନ୍ତର୍ବୃତ୍ତିର ତାହା ହେଲା ସ୍ୱତଃ ପ୍ରକାଶ । ପରେପରେ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପଠିତ ଇଂରାଜୀ କବିତାଗୁଡ଼ିକର ଭାବାନୁବାଦ କଲି ଓ ଅନ୍ୟାନ୍ୟ କେତେକ କବିତା ଲେଖିଲି । ସେ କାଳର ଅର୍ଥାତ୍ ପଚାଶ ଦଶନ୍ଧି ବେଳକୁ ସମାଜର ଛୁଆଁଅଛୁଆଁ, ରାଜନୀତି ନାମରେ ଉପଭୋଗ ତୃଷ୍ଣା ଓ ବ୍ୟକ୍ତି–ସ୍ୱାର୍ଥର ଉନ୍ମେଷ, ଗାଁରେ ନୂଆ ଟାଉଟରମାନଙ୍କର କାରସାଦି ଇତ୍ୟାଦି ମୋ ଭିତରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କଲା ତାହାକୁ ନେଇ ମୁଁ କବିତା ଲେଖିଲି । ପିଲାଦିନରୁ ବାପାଙ୍କୁ ହରାଇ ମୁଁ ଚାଷକାର୍ଯ୍ୟ ଓ ଗୃହକାର୍ଯ୍ୟ ସହିତ ପାଠ ପଢୁଥିଲି । ମୋ ଜୀବନ ସଂଘର୍ଷମୟ । ପରେ ଟେଲିଫୋନ ଅପରେଟରରୁ ଅଧ୍ୟାପକ ହେବା, କଲେଜରେ ପ୍ରବନ୍ଧ ଓ କବିତା ଲେଖିବା ଓ ଅଧ୍ୟାପକ ହେବା, ପରେ ସମାଲୋଚନାକୁ ଗୁରୁତ୍ୱ ଦେବା ଓ ନିଜସ୍ୱ ଶୈଳୀ ଓ ଧାରାକୁ ପ୍ରବର୍ତ୍ତନ କରିବାକୁ ଶ୍ରେୟ ମନେକଲି ।

**ପ୍ରଶ୍ନ : ଆପଣ କାହିଁକି ଲେଖନ୍ତି ?**

**ଉତ୍ତର :** ହଁ ଲେଖେ, ମୋତେ ଲେଖା ମାଡ଼େ ବୋଲି ନୁହେଁ । ଅବଶ୍ୟ କବିତା ବା ଗଳ୍ପ ଲେଖିଲାବେଳେ ଗୋଟିଏ ଗୋଟିଏ ବିଶେଷ ମୁହୂର୍ତ୍ତରେ ଯେଉଁ ଭାବଟିଏ ଆସିଯାଏ ତାକୁ

ଲେଖିଦିଏ । ସମାଲୋଚନା ଲେଖିଲାବେଳେ ଅନେକ କିଛି ପଢ଼ିବାକୁ ହୁଏ । ସମାଲୋଚ୍ୟ ବିଷୟ ବା ଲେଖକ ସଂପର୍କରେ ମୁଁ ଚିନ୍ତା କରେ ପ୍ରଥମେ । ମଣିଷ, ସମାଜ, ସଂସ୍କୃତି ଓ ପ୍ରକୃତିକୁ ମୋ ମାନସପଟରେ ପ୍ରମୁଖ କରିନେଇ ସମାଲୋଚ୍ୟ ବିଷୟକୁ ବିଶ୍ଳେଷଣ କରେ । ରମ୍ୟରଚନା ବା ପ୍ରବନ୍ଧ ଲେଖିଲା ବେଳେ ଯେଉଁ ସମସ୍ୟା ମୋତେ ତୀବ୍ର ଭାବରେ ଆନ୍ଦୋଳିତ କରେ ତାହାକୁ ପ୍ରାଧାନ୍ୟ ଦିଏ । ମୁଁ ଅନୁଭବ କରେ ମୋର ଯାହା କହିବାର କଥା, ମୁଁ ରମ୍ୟରଚନା ବା ପ୍ରବନ୍ଧରେ କହିପାରୁଛି । ତେଣୁ ମୋତେ ଏହା ଭଲ ଲାଗେ । ମୁଁ ଲେଖେ ନାହିଁ ମୋର ବ୍ୟକ୍ତିଗତ ଆନନ୍ଦ ପାଇଁ, ନିଜକୁ ଅହଂପ୍ରବଣ କରି ବାହାଦୁରି ନେବା ପାଇଁ । ମୁଁ ଲେଖେ ସମାଜ ଓ ମଣିଷ ପାଇଁ, ବିସ୍ମୃତ ହୋଇଯାଉଥିବା ଆମ ସଂସ୍କୃତି, ଐତିହ୍ୟ, ପରଂପରାର ପୁନଃ ଉନ୍ମେଷ ପାଇଁ, ପାଶ୍ଚାତ୍ୟ ମୋହରୁ ମୁକ୍ତ ହୋଇ ମୋ ପରଂପରା ପ୍ରତି ଶ୍ରଦ୍ଧାଶୀଳ ହେବା ପାଇଁ । ମୁଁ ଭାବେ ସଚ୍ଚା ଲେଖକଟିଏ ହିଁ ବଞ୍ଚିରହେ ଓ ସମାଜ-ମଣିଷମାନଙ୍କୁ କାଳେ କାଳେ ପ୍ରେରଣା ଦେଉଥାଏ । ଅହଂଦୃପ୍ତ, ଜ୍ଞାନପିଣ୍ଡିତ ବ୍ୟକ୍ତିଟି ହୁଏତ କିଛି କାଳପାଇଁ ହଟଚମଟ କରେ ମାତ୍ର ତାହା ସବୁ କାଳ ପାଇଁ ନୁହେଁ । ଶ୍ରଦ୍ଧାଶୀଳ ହୃଦୟବାନ୍ ମଣିଷଟି କୌଣସି ପ୍ରଚାର ଭିତରେ ନ ଥାଇ ଲେଖେ- ମଣିଷ ପାଇଁ, ସମାଜ ପାଇଁ ଓ ମଣିଷର ଉତ୍ତୋଳନ ପାଇଁ । ତେଣୁ ମୁଁ ଲେଖେ ଯାହା ଯେମିତି ମଣିଷମାନଙ୍କୁ ଦେଖୁଛି, ଅନୁଭବୁଛି ତାହାକୁ ରୂପ ଦିଏ, କ୍ଷୁଦ୍ର ସଂକୀର୍ଣ୍ଣତା ଓ ଅହଙ୍କାରରୁ ମୁକ୍ତ ହୋଇ ରାଷ୍ଟ୍ର ଓ ସମାଜର ଉତ୍ତୋଳନ ପାଇଁ ଲେଖେ । ଲେଖେ ମଧ୍ୟ ଶ୍ରଦ୍ଧାଶୀଳ ହେବା ପାଇଁ । ମୂଲ୍ୟ ନୁହେଁ, ମୂଲ୍ୟବୋଧ ପାଇଁ ମୁଁ ଲେଖେ ।

**ପ୍ରଶ୍ନ : ଆପଣ ଏକାଧାରରେ ଜଣେ କବି, ଗାଳ୍ପିକ, ଶିଶୁସାହିତ୍ୟ ଲେଖକ, ରମ୍ୟରଚନା ଲେଖକ ଓ ସାହିତ୍ୟ ସମାଲୋଚକ- କିନ୍ତୁ ଆପଣ ସାହିତ୍ୟ-ସମାଲୋଚକ ଭାବେ ବିଖ୍ୟାତ । ଆପଣ ସମାଲୋଚନା କହିଲେ କ'ଣ ବୁଝନ୍ତି ?**

**ଉତ୍ତର :** ହଁ, ପ୍ରଥମେ ମୁଁ କବିତା ଲେଖୁଥିଲି ଓ ପରେ ମଧ୍ୟ ଲେଖିଛି ଓ ଏବେ ମଧ୍ୟ ଲେଖୁଛି । ଛ'ଖଣ୍ଡ କବିତା ବହି ମୋର ବାହାରିଛି । ସେହିପରି ଗଳ୍ପ ଲେଖିଛି, ପ୍ରବନ୍ଧ ଓ ରମ୍ୟରଚନା ଲେଖିଛି, ଶିଶୁସାହିତ୍ୟ ମଧ୍ୟ ଲେଖିଛି, ଅନେକ ମଧ୍ୟ ସଂପାଦନା କରିଛି । କେବେ ମୁଁ ଜଣେ କବି ବା ଗାଳ୍ପିକ ଭାବରେ ନିଜର ଅହଙ୍କାର ପ୍ରକାଶ କରି ନାହିଁ । ରମ୍ୟରଚନା ଲେଖିଲି ସତୁରୀ ଦଶନ୍ଧିରୁ ଗଭୀର ମାନସିକ ପ୍ରତିକ୍ରିୟାରୁ । ସାତ/ଆଠ ଖଣ୍ଡ ରମ୍ୟରଚନା ପୁସ୍ତକ ମଧ୍ୟ ବାହାରିଛି । ମାତ୍ର ମୁଁ ୧୯୬୮ ମସିହାରୁ ସମାଲୋଚନା ଲେଖିଲି । ଆଧୁନିକ କବିତା ଓ ଗଳ୍ପ ସଂପର୍କିତ ବିଭିନ୍ନ ଦୃଷ୍ଟିକୋଣରୁ ଲେଖିଲି- ଏଇ ଯେମିତି ଆଧୁନିକ କବିତାରେ ମୃତ୍ୟୁବୋଧ, ବିଭୁବୋଧ, ଜୀବନ-ଜିଜ୍ଞାସା, ପ୍ରକୃତି, ସମାଜଦୃଷ୍ଟି, ନାରୀ, ଦୀର୍ଘକବିତା, ପ୍ରଗତିବାଦୀ ଚେତନା ଇତ୍ୟାଦି । ପରେ ଏସବୁକୁ ନେଇ କେତେ ଗବେଷଣା ହୋଇଛି । ମୁଁ ଆନନ୍ଦିତ ଯେ ଏସବୁ ମୁଁ ପ୍ରଥମେ ଆରମ୍ଭ କରିଥିଲି । ସେହିପରି ଗଳ୍ପ,

ଉପନ୍ୟାସରେ ଓ ନାଟକରେ ମଧ୍ୟ ନୂତନ ନୂତନ ଦୃଷ୍ଟିକୋଣକୁ ନେଇ ଲେଖିଲି । ପ୍ରାଚୀନ ସାହିତ୍ୟ, ସଂସ୍କୃତ ସାହିତ୍ୟ, ମଧ୍ୟଯୁଗୀୟ କାବ୍ୟସାହିତ୍ୟ ଇତ୍ୟାଦି ସଂପର୍କରେ ମଧ୍ୟ ସମାଲୋଚନା ଲେଖିଲି । ନିରବଚ୍ଛିନ୍ନ ଭାବରେ ସମାଲୋଚନା ଲେଖିବାରୁ ମୋତେ ପାଠକେ ସମାଲୋଚକ ବୋଲି କହିଲେ । ଜୀବନସାରା ନାନା ବିଷୟରେ ସମାଲୋଚନା ଲେଖିଛି, ମାତ୍ର ସେସବୁ ମଧ୍ୟରୁ ଅନେକ ରହିଛି, ଯାହା ପୁସ୍ତକ ଆକାରରେ ପ୍ରକାଶ ପାଇ ନାହିଁ । ସମାଲୋଚନା କହିଲେ ମୁଁ ବୁଝେ- ସମାଲୋଚନା ମଧ୍ୟ ଏକ ସର୍ଜନଶୀଳ କଳା । ସର୍ଜନଶୀଳତା ଭିତରେ ନ ଥିଲେ ଜଣେ ଠିକଣା ସମାଲୋଚକ ହୋଇପାରେନା । ସମାଲୋଚନାର ଲକ୍ଷ୍ୟ କାହାରିକୁ ନିନ୍ଦା କରିବା ନୁହେଁ; ବରଂ କୃତିଗୁଡ଼ିକର ନିଷ୍ପକ୍ଷ ବିଚାର କରିବା । ପ୍ରଶଂସ୍ୟ ବିଷୟର ପ୍ରଶଂସା କଲେ କ୍ଷତି ନାହିଁ । ତ୍ରୁଟି କେବଳ ଦେଖାଇଦେଲେ ଯେ ଜଣେ ବଡ଼ ସମାଲୋଚକ ହୋଇଯିବ ତାହା ନୁହେଁ; ଗୁଣ ମଧ୍ୟ ଦେଖାଇବାକୁ ହେବ । ସମାଲୋଚକ ଜଣେ ଦାୟିତ୍ୱବାନ୍ ଶିଳ୍ପୀ । ସମାଜ, ମଣିଷ, ସଂସ୍କୃତି, ଇତିହାସ, ଜୀବନ, ଧର୍ମ, ରାଜନୀତି ଇତ୍ୟାଦି ସଂପର୍କରେ ସଚେତନ ହେଲେହେଁ ଜଣେ ଯଥାର୍ଥ ସମାଲୋଚକ ହୁଏ । ମଧୁମକ୍ଷିକାର ଦୃଷ୍ଟି ଓ ରୁଚିବୋଧ ହିଁ ସମାଲୋଚିତ ସାହିତ୍ୟରୁ ଗୁଣ ବା ମଧୁ ଆହରଣ କରେ, ନର୍ଦ୍ଦମା-ମାଛି କେବଳ ଦୋଷକୁ ବା ଦୁର୍ଗୁଣକୁ ଆହରଣ କରେ । ତେଣୁ ସମାଲୋଚକ କହିଲେ ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ବୀକ୍ଷା ବା ଈକ୍ଷଣ ଓ ସମାଜ ଏବଂ ସାହିତ୍ୟ ପ୍ରତି ଏକ ଦିଗ୍‌ଦର୍ଶନ ।

**ପ୍ରଶ୍ନ : ଆପଣଙ୍କ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ ସମାଲୋଚନା ସାହିତ୍ୟର ସ୍ୱରୂପ କିପରି ?**

ଉତ୍ତର : ମୋ ଦୃଷ୍ଟିରେ ସାଂପ୍ରତିକ ଓଡ଼ିଆ ସମାଲୋଚନା ଏ ପର୍ଯ୍ୟନ୍ତ ଆପଣାର ସ୍ୱାୟତ୍ତ ଭୂମିଟିଏ ନିର୍ମାଣ କରିପାରି ନାହିଁ । ଯାହା ହୋଇଛି ବା ହେଉଛି ତାହା ପାଶ୍ଚାତ୍ୟ ବା ଇଉରୋ ମଡେଲ ଆଧାରିତ । ଆମ ସାହିତ୍ୟକୁ ଆଲୋଚନା କଲାବେଳେ କେତେକ ପାଶ୍ଚାତ୍ୟ ଲେଖକ, ସମାଲୋଚକ ଓ ଦାର୍ଶନିକଙ୍କ ମତକୁ ଉଦ୍ଧାର କରି ଆମ ସମାଲୋଚନାକୁ ଭାରାକ୍ରାନ୍ତ କରି ଦିଆଯାଉଛି । ମନେହୁଏ ଆମ ସମାଲୋଚକେ ଯେମିତି ଭାବୁଛନ୍ତି ଯେ ଆମର କିଛି ନାହିଁ ବା ନ ଥିଲା । ଏପରି ମନୋଭାବ ଆମ ସମାଲୋଚନାର ବିକାଶ ପାଇଁ ଶୁଭଙ୍କର ନୁହେଁ ।

ଆମେ ଲକ୍ଷ୍ୟ କରୁ ଯେ ବିଂଶ ଶତାବ୍ଦୀ ଆରମ୍ଭରେ ସମାଲୋଚନାରେ ଗୋପୀନାଥ ନନ୍ଦ, ଶ୍ୟାମସୁନ୍ଦର ରାଜଗୁରୁ, ମୃତ୍ୟୁଞ୍ଜୟ ରଥ, ଆର୍ତ୍ତବଲ୍ଲଭ ମହାନ୍ତି, ନୀଳକଣ୍ଠ ଦାସ ପ୍ରମୁଖ ଯେଉଁ ଧାରାଟିଏ ସୃଷ୍ଟି କରିଥିଲେ ତାହା ଏ ମାଟିର ସ୍ୱାୟତ୍ତ 'ମାନ'ଟିଏ ରକ୍ଷା କରିଥିଲା; ମାତ୍ର ସ୍ୱାଧୀନତା ପରଠାରୁ ତାହା ଆଉ ରହିଲା ନାହିଁ । ସାଂପ୍ରତିକ ସମୟରେ ବିଭିନ୍ନ ଦୃଷ୍ଟିକୋଣରୁ ସମାଲୋଚନା ଲେଖାଯାଇଛି । ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ସଂପର୍କରେ ଯାହା ଲେଖାଯାଇଛି, ତାହା କେବଳ ଅତିପଲ୍ଲବନ ଓ 'ଆହା', 'ଓହୋ'

ଭିତରେ ଆବଦ୍ଧ । ସାମାଜିକ, ସାଂସ୍କୃତିକ ଓ ଜୀବନ ଭିତ୍ତିରେ ଆଲୋଚନା ନାହିଁ । ଭ୍ରାନ୍ତ ଜାତୀୟତାବୋଧ ମଧ୍ୟ ତାଦୃଶ ସମାଲୋଚନାକୁ ବିଭ୍ରାନ୍ତ କରିଦେଇଛି । ଉପନ୍ୟାସ, ନାଟକ, ପ୍ରବନ୍ଧ, କବିତା ଇତ୍ୟାଦି କ୍ଷେତ୍ରରେ ବହୁ ସମାଲୋଚନା ପ୍ରକାଶ ପାଇଛି । ଏହା ଭିତରେ ଲକ୍ଷ୍ୟ କରିହୁଏ ଗୋଟାଏ ସଂକୀର୍ଣ୍ଣ ଜାତିଗତ, ପଦପଦବୀଗତ, ରାଜନେତା ଓ ପଦସ୍ଥ ପ୍ରଶାସକଙ୍କଠାରୁ କିଛି ପାଇବାର ମନୋଭାବ ଓ ଅଭିଳାଷ । ଏହା ସୁସ୍ଥ ସମାଲୋଚନା ନୁହେଁ । ଏହା ସତ୍ତ୍ୱେ ଯେ ସାଂପ୍ରତିକ ସମାଲୋଚନାରେ କିଛି ନାହିଁ; ନୁହେଁ । ସମାଜତାତ୍ତ୍ୱିକ ସମାଲୋଚନା, ଶୈଳୀତାତ୍ତ୍ୱିକ ସମାଲୋଚନା, ଭବିଷ୍ୟବାଦୀ ସମାଲୋଚନା, ନାନ୍ଦନିକ ସମାଲୋଚନା, ତୁଳନାତ୍ମକ ସମାଲୋଚନା ଇତ୍ୟାଦି ଲେଖାହୋଇଛି । ମାତ୍ର ତାହା ପର୍ଯ୍ୟାପ୍ତ ନୁହେଁ । ସାଂପ୍ରତିକ ସମାଲୋଚନା ବସ୍ତୁତଃ ମାର୍ଗ ନିର୍ଦ୍ଦେଶ କରିପାରୁ ନାହିଁ ।

**ପ୍ରଶ୍ନ : ଆପଣ ଓଡ଼ିଆ ସମାଲୋଚନା ସାହିତ୍ୟର କେଉଁ ଲେଖକଙ୍କୁ ଶ୍ରେଷ୍ଠ ସାହିତ୍ୟ ଆଲୋଚକର ଗୌରବ ଦେବେ ?**

**ଉତ୍ତର :** ଓଡ଼ିଆ ସମାଲୋଚନା ସାହିତ୍ୟରେ ମୁଁ ଗୌରବ ପ୍ରଦାନ କରେ ଗୋପୀନାଥ ନନ୍ଦ, ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ମାୟାଧର ମାନସିଂହଙ୍କୁ । ସମାଜବାଦୀ ଆଲୋଚକ ଭାବରେ ମୁଁ ଗୁରୁତ୍ୱ ଦିଏ ପ୍ରାଣନାଥ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକଙ୍କୁ । ସ୍ୱାଧୀନତା ପରବର୍ତ୍ତୀ କାଳରେ ନିରୋଳା ସମାଲୋଚକ ଭାବରେ ଡକ୍ଟର ନଟବର ସାମନ୍ତରାୟଙ୍କ ନାମ ପ୍ରଣିଧାନଯୋଗ୍ୟ । ଐତିହାସିକ ସମାଲୋଚନାର ସେ ହିଁ ମୁଖ୍ୟ ପ୍ରବର୍ତ୍ତକ । ଡକ୍ଟର ଦାଶରଥି ଦାସ, ସୌରୀନ୍ଦ୍ର ବାରିକ ଓ ଡକ୍ଟର ନିତ୍ୟାନନ୍ଦ ଶତପଥୀ ସମାଲୋଚନା କ୍ଷେତ୍ରରେ ବେଶ୍ ଖ୍ୟାତି ଅର୍ଜନ କରିଛନ୍ତି । କିଛି ସମାଲୋଚକ ଏକଦେଶଦର୍ଶୀ ଓ ଆପଣାର ମତକୁ ଆରୋପ କରିଥାନ୍ତି । ତେବେ ଏଯାବତ୍ ନଟବର ସାମନ୍ତରାୟ ହିଁ ସମାଲୋଚନା କ୍ଷେତ୍ରରେ ସର୍ବାଗ୍ରେ ବିଦ୍ୟମାନ । ତେବେ ଗୁଣାତ୍ମକ ଓ ଭାବାତ୍ମକ ସମାଲୋଚନାରେ ଡକ୍ଟର ମାୟାଧର ମାନସିଂହ ନମସ୍ୟ ।

**ପ୍ରଶ୍ନ : ଓଡ଼ିଶାରେ ସାହିତ୍ୟ ସମୀକ୍ଷକମାନଙ୍କୁ କେତେକ ସର୍ଜନଶୀଳ ଲେଖକର ଗୌରବ ଦେବାକୁ ବିମୁଖ– ଏ ସଂପର୍କରେ ଆପଣଙ୍କ ପ୍ରତିକ୍ରିୟା କ'ଣ ?**

**ଉତ୍ତର :** ସାହିତ୍ୟ ସମୀକ୍ଷକଙ୍କୁ ସର୍ଜନଶୀଳ ଲେଖକର ମର୍ଯ୍ୟାଦା ଦେବା ସର୍ବଦୌ ବାଞ୍ଛନୀୟ । କାରଣ ଜଣେ ସମୀକ୍ଷକର ଅନ୍ତଃସତ୍ତାରେ ଥାଏ ସର୍ଜନଶୀଳତା । ଏହାରି ବଳରେ ସେ ସମାଲୋଚିତ ପୁସ୍ତକ ବା ଲେଖକର ଅନ୍ତଃସ୍ଥଳରେ ପ୍ରବେଶ କରେ ଓ ଆପଣାର ଅନ୍ତର୍ନିହିତ ସର୍ଜନ-ସତ୍ତା ସହିତ ସମାଲୋଚିତ ଲେଖକ ବା ସାହିତ୍ୟର ସର୍ଜନ-ସତ୍ତାକୁ ମିଳାଇ ବିଚାର-ବିମର୍ଶ କରେ । ତେଣୁ ସମାଲୋଚକକୁ ବା ସମୀକ୍ଷକକୁ ସର୍ଜନଶୀଳ ଲେଖକର ଗୌରବ ଦେବାରେ କୌଣସି ଅସୁବିଧା ନାହିଁ ।

**ପ୍ରଶ୍ନ :** ଯେପରି ବଙ୍ଗୀୟମାନେ କବିଗୁରୁ ରବୀନ୍ଦ୍ରନାଥ ଓ ସ୍ୱାମୀ ବିବେକାନନ୍ଦଙ୍କୁ ନେଇ ଗର୍ବ କରନ୍ତି– ଓଡ଼ିଆମାନେ କ'ଣ ନେଇ ଗର୍ବ କରିବେ ?

**ଉତ୍ତର :** ବଙ୍ଗୀୟମାନେ ସ୍ୱାମୀ ବିବେକାନନ୍ଦ ଓ କବିଗୁରୁ ରବୀନ୍ଦ୍ରନାଥଙ୍କୁ ନେଇ ଗର୍ବ କରନ୍ତି । ଏହି ଦୁଇଜଣ ସେମାନଙ୍କ ଜାତୀୟ ସ୍ୱାଭିମାନର ପ୍ରତୀକ । ଓଡ଼ିଆମାନଙ୍କର କୌଣସି ଜାତୀୟ ସ୍ୱାଭିମାନ ଅଛି ବୋଲି ମୁଁ ଭାବୁ ନାହିଁ । ତଥାପି ଓଡ଼ିଆମାନେ ପ୍ରାଚୀନ କାଳର ରାଜାଙ୍କ ଭିତରେ ଖାରବେଳ ଓ କପିଳେନ୍ଦ୍ର ଦେବଙ୍କୁ ନେଇ ଗର୍ବ କରନ୍ତି । କବି ଓ ଲେଖକ ଭାବରେ ସାରଳା ଦାସ ଓ ଜଗନ୍ନାଥ ଦାସଙ୍କୁ ନେଇ ଗର୍ବ କରନ୍ତି । ଆଧୁନିକ ଯୁଗରେ କୁଳବୃଦ୍ଧ ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କୁ ନେଇ ଗର୍ବିତ । କାରଣ ଏପରି ଦୁଇଜଣ ବ୍ୟକ୍ତି ସେ କାଳରେ ଭାରତବର୍ଷରେ ମଧ ବିରଳ । ସାହିତ୍ୟିକ ଭାବରେ ଫକୀରମୋହନ ସେନାପତିଙ୍କୁ ନେଇ ଗର୍ବ କରନ୍ତି । ଆହୁରି କେତେଜଣ ଲେଖକଙ୍କୁ ନେଇ ଗର୍ବ କରିବାର ଅଛି; ମାତ୍ର ତାହା କହିବା ନିରାପଦ ନୁହେଁ ।

**ପ୍ରଶ୍ନ :** ଓଡ଼ିଆରେ ଲେଖାଲେଖିକୁ ବୃତ୍ତି କରି ବଞ୍ଚି ହେବ କି ?

**ଉତ୍ତର :** ଓଡ଼ିଶା ଏକ ବିଚିତ୍ର ରାଜ୍ୟ– ଏଠି ନା ଅଛି ଭାଷା ପ୍ରୀତି, ନା ଅଛି ସାହିତ୍ୟ ପ୍ରୀତି । ବଙ୍ଗଳା, ହିନ୍ଦୀ, ମରାଠୀ ଆଦି ଭାଷାରେ ସାହିତ୍ୟ ଲେଖି ଅନେକ ଲୋକ ଜୀବନ ବଞ୍ଚିପାରୁଛନ୍ତି । ମାତ୍ର ଓଡ଼ିଶାରେ ତାହା ସମ୍ଭବ ନୁହେଁ । ଏବେ ଯେଉଁ ଅବସ୍ଥା ସୃଷ୍ଟି ହୋଇଛି ନିରୋଳା ସାହିତ୍ୟକୁ ନେଇ କେହି ତିଷ୍ଠିପାରିବ ନାହିଁ । କାରଣ ଏଠି ପାଠକ ନାହାନ୍ତି, ପୁସ୍ତକ ପ୍ରକାଶନ ପାଇଁ ପ୍ରକାଶକ ଇଚ୍ଛୁକ ନୁହେଁ । ଲେଖକ ମଧ ଟଙ୍କା ପାଏ ନାହିଁ । ତେଣୁ ସଂପ୍ରତି ସାହିତ୍ୟ ଲେଖି ଓ ଅନ୍ୟ କୌଣସି ବୃତ୍ତି ନ କରି ଜୀବିକା ନିର୍ବାହ କରିବା ସମ୍ଭବ ନୁହେଁ ।

**ପ୍ରଶ୍ନ : କ୍ଷମତା, ପ୍ରତିପତ୍ତି, ଅର୍ଥବଳ ଥିଲେ ଓଡ଼ିଶାରେ ଲେଖକ ହେବା ସହଜ– ଏ ସଂପର୍କରେ ଆପଣ କି ପ୍ରତିକ୍ରିୟା ଦେବେ ?**

**ଉତ୍ତର :** ଓଡ଼ିଶାରେ ହିଁ କ୍ଷମତା, ପ୍ରତିପତ୍ତି ଓ ଅର୍ଥବଳ ଯୋଗୁଁ ଅସାହିତ୍ୟିକ ସାହିତ୍ୟିକ ହୋଇଯାଆନ୍ତି । ଆମେ ଲକ୍ଷ୍ୟ କରିଛୁ ଯେ ସିଂହାସନ ମଣ୍ଡନ କରିଥିବା କିଛି ଲେଖକ ନିଜର ପ୍ରତିପତ୍ତି ବଳରେ ବଡ଼ ଲେଖକ ହୋଇଛନ୍ତି । ସେମାନଙ୍କଠାରୁ କିଛି ସୁବିଧା ପାଇବା ପାଇଁ ପ୍ରକାଶକମାନେ ସେମାନଙ୍କ ପୁସ୍ତକ ଛାପନ୍ତି । ଯାହାର ଅର୍ଥବଳ ଅଛି, ସେ ମଧ ନିଜର ପୁସ୍ତକ ଛାପିଦେଉଛି । ତେଣୁ କ୍ଷମତା, ପ୍ରତିପତ୍ତି ଓ ଅର୍ଥବଳ ଦ୍ୱାରା ଲେଖକ ହେବା ସହଜ ଓ ସୁଗମ ହୋଇଅଛି । ଯଦିଓ ସର୍ବଭାରତୀୟ ସ୍ତରରେ ଜ୍ଞାନପୀଠ, ସରସ୍ୱତୀ, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଓଡ଼ିଶାର ଲେଖକମାନେ ପାଉଛନ୍ତି ତାହା ମଧ ମୁଷ୍ଟିମେୟ କେତେକଙ୍କୁ ଛାଡ଼ିଦେଲେ ଅଧିକାଂଶ ଯୋଗାଡ଼ଯନ୍ତ୍ର ଓ ଲବିକୁ ଶ୍ରେୟ କରି ପାଉଛନ୍ତି । ସର୍ବତ୍ର ସେହି କ୍ଷମତା, ଅର୍ଥବଳ ଓ ପ୍ରତିପତ୍ତି କାମ କରୁଥିବା ଲକ୍ଷ୍ୟ କରାଯାଏ ।

**ପ୍ରଶ୍ନ : ସର୍ବଭାରତୀୟ ସ୍ତରରେ ଓଡ଼ିଆ ସାହିତ୍ୟର ସ୍ଥିତି କିପରି ?**

ଉତ୍ତର : ସର୍ବଭାରତୀୟ ସ୍ତରରେ ଓଡ଼ିଆ ସାହିତ୍ୟର ସ୍ଥିତି ସଂପ୍ରତି ଆଶାଜନକ ମନେହେଉଛି । ଦେଖାଯାଉଛି ଯେ ଅନ୍ୟାନ୍ୟ ରାଜ୍ୟର ଲେଖକଙ୍କଠାରୁ ଓଡ଼ିଆ ଭାଷାର ଲେଖକ କୌଣସି ଗୁଣରେ ନ୍ୟୂନ ନୁହନ୍ତି । ତେବେ ଯେଉଁମାନଙ୍କର କ୍ଷମତା, ପ୍ରତିପତ୍ତି ଓ ଅର୍ଥବଳ ଅଛି ସେମାନଙ୍କ ଲେଖା ଅନୁବାଦ ମାଧ୍ୟମରେ ସର୍ବଭାରତୀୟ ସ୍ତରକୁ ଆସୁଛି । ତେବେ ମନୋଜ ଦାସଙ୍କ ପରି ଲେଖକ ନିଆରା ଓ ସେ ସଂପୂର୍ଣ୍ଣ ଆପଣାର ପ୍ରଜ୍ଞା, ପ୍ରତିଭା ଓ ଯୋଗ୍ୟତା ବଳରେ ସର୍ବଭାରତୀୟ ସ୍ତରରେ ମାନ୍ୟତା ପାଇଅଛନ୍ତି । ସେ ଯେପରି ଭାବରେ ଭାରତୀୟ ମାନସିକତା ଓ ଉତ୍କଳୀୟ ମାନସିକତାକୁ ବ୍ୟକ୍ତ କରି ଆନ୍ତର୍ଜାତିକ ଖ୍ୟାତି ଲାଭ କରିଛନ୍ତି ବାସ୍ତବିକ୍ ଅନନ୍ୟ । ତେବେ ସର୍ବଭାରତୀୟ ସ୍ତରରେ ଜୟନ୍ତ ମହାପାତ୍ର, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ପ୍ରତିଭା ରାୟ ପ୍ରମୁଖଙ୍କ ସହିତ ଗୋପୀନାଥ ମହାନ୍ତି, କିଶୋରୀ ଚରଣ ଦାସ, ଶାନ୍ତନୁ ଆଚାର୍ଯ୍ୟ ଓ ମନୋରଂଜନ ଦାସ ପ୍ରମୁଖ ଯେ ସ୍ୱୀକୃତି ଲାଭ କରିଛନ୍ତି; ସନ୍ଦେହ ନାହିଁ । ତଥାପି ମନେହୁଏ ଆମ ଲେଖକମାନେ ନିଜ ନିଜ ଲେଖାକୁ ଅନୁବାଦ କରିବା କରାଇ ଯେପରି ଖ୍ୟାତି ପାଇଁ ମୋହଗ୍ରସ୍ତ ହେଉଛନ୍ତି, ତାହା ଅନ୍ୟମାନଙ୍କର ଦୟା-ଦୃଷ୍ଟି ପାଇବା ପାଇଁ ମୁଖ୍ୟତଃ ଉଦ୍ଦିଷ୍ଟ ବୋଲି ମନେହୁଏ ।

**ପ୍ରଶ୍ନ : ସାଂପ୍ରତିକ କାଳରେ ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥା କିପରି ଚାଲିଛି ?**

ଉତ୍ତର : ଓଡ଼ିଶାରେ ସଂପ୍ରତି ଶିକ୍ଷା ବ୍ୟବସ୍ଥା କ୍ରମଶଃ ତଳକୁ ତଳକୁ ଗତି କରିଯାଉଛି । ଗାଟ ଚୁକ୍ତି ଫଳରେ ଶିକ୍ଷା ମଧ୍ୟ ଗୋଟିଏ ପଦାର୍ଥ ହୋଇଯାଇଥିବାରୁ ମୂଲ୍ୟବୋଧଭିତ୍ତିକ ଶିକ୍ଷା ଆଉ ନାହିଁ । ପ୍ରାଥମିକ ଶିକ୍ଷା ଉପରେ ଗୁରୁତ୍ୱ ଦିଆଯାଉଛି ବୋଲି ପ୍ରଚାର ଚାଲିଛି; ମାତ୍ର ତାହା ଯେ ରାଜନେତା ଏବଂ ପ୍ରଶାସକଙ୍କ ହାତରେ ସଖୀ କଣ୍ଢେଇ ପାଲଟି ଯାଇଛି, ଏକଥା କହିଲେ ସତ୍ୟର ଅପଳାପ ହେବ ନାହିଁ । ଅନୁରୂପ ମଧ୍ୟ ମାଧ୍ୟମିକ ଶିକ୍ଷା । କଲେଜ ଶିକ୍ଷା ସଂପୂର୍ଣ୍ଣ ଭୁଶୁଡ଼ି ପଡ଼ିଛି । ଓଡ଼ିଶାର ସମସ୍ତ କଲେଜରେ ଓ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ମରୁଡ଼ି ପଡ଼ିଛି । ସରକାର ମନେକରୁଛନ୍ତି ଶିକ୍ଷା ଗୋଟିଏ ଅର୍ଥକରୀ ବ୍ୟବସ୍ଥା ନୁହେଁ । ତେଣୁ ରାଜନେତା ଓ ପ୍ରଶାସନ ଶିକ୍ଷାକୁ ଅବହେଳା କରିଦେଉଛନ୍ତି । ଅପରପକ୍ଷରେ ଏଇ କୋଡ଼ିଏ ବର୍ଷ ଭିତରେ ସାରା ଓଡ଼ିଶାରେ ବହୁ ଇଂଜିନିୟରିଂ କଲେଜ ସହିତ ଅନ୍ୟାନ୍ୟ ଟେକ୍ନୋଲୋଜିକାଲ ଶିକ୍ଷାନୁଷ୍ଠାନ ଗଢ଼ିଉଠିଛି । ଏହା ଯେପରି ଗୋଟିଏ ନୂତନ ବୁର୍ଜୁଆ ଶ୍ରେଣୀ ସୃଷ୍ଟି କରିବା ପାଇଁ ତତ୍ପର । ଶିକ୍ଷାନୁଷ୍ଠାନ ଏବେ ଘରୋଇକରଣ ହୋଇଯାଉଛି । ବ୍ୟାବସାୟିକ ଭିତ୍ତିରେ ଶିକ୍ଷାନୁଷ୍ଠାନ ଚାଲିଛି । ଏବେ ମନେହେଉଛି ଶିକ୍ଷା ବ୍ୟବସ୍ଥା ଯେପରି ହୋଇଯାଇଛି ଛେଉଣ୍ଡ ପିଲା । ଏହି ଅବସ୍ଥା ଯଦି ଲାଗିରହେ ତେବେ ଭବିଷ୍ୟତରେ ଶିକ୍ଷାବ୍ୟବସ୍ଥା ଯେ ଅନ୍ଧକାରମୟ ହୋଇଯିବ; ସନ୍ଦେହ ନାହିଁ । ଆମ ଜାତୀୟ ଐତିହ୍ୟ, ପରଂପରା ଓ ସଂସ୍କୃତିକୁ ନେଇ ଶିକ୍ଷା ବ୍ୟବସ୍ଥା ପରିଚାଳିତ ନ ହୋଇ ପ୍ରତୀଚ୍ୟ ମାନସିକତା

ଓ ମୋହଗ୍ରସ୍ତତା ତଥା ଭ୍ରାନ୍ତ ରାଜନୀତିକ ଦୃଷ୍ଟିକୋଣ ଯୋଗୁଁ ସଂପ୍ରତି ଶିକ୍ଷା ବ୍ୟବସ୍ଥା ଅନ୍ଧକାର ମଧ୍ୟକୁ ଗତି କରିଯାଉଛି ।

**ପ୍ରଶ୍ନ : ଓଡ଼ିଶାରେ ଏବେ ବହୁ ବୈଷୟିକ ଶିକ୍ଷାନୁଷ୍ଠାନ ଗଢ଼ିଉଠିଛି– ଏବେ କାହିଁକି ହଜାର ହଜାର ସଂଖ୍ୟାରେ ସିଟ୍ ଓଡ଼ିଶାର ଇଂଜିନିୟରିଂ କଲେଜରେ ଖାଲି ପଡୁଛି ?**

ଉତ୍ତର : ଏଇ କୋଡ଼ିଏ/ପଚିଶ ବର୍ଷ ଭିତରେ ସାରା ଓଡ଼ିଶାରେ ବୈଷୟିକ ଶିକ୍ଷାନୁଷ୍ଠାନ କେତେକ ଧନୀ ବ୍ୟକ୍ତିଙ୍କ ପୁଞ୍ଜି ଲଗାଣରେ ଗଢ଼ି ଉଠିଛି ଓ ସରକାର ସେମାନଙ୍କୁ ପ୍ରୋତ୍ସାହନ ଦେଉଅଛନ୍ତି । ସେମାନେ ଲକ୍ଷ ଲକ୍ଷ ଟଙ୍କା ଡୋନେସନ ନେଇ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦେଉଛନ୍ତି । ସେମାନେ ବଡ଼ଲୋକ ହେଉଛନ୍ତି, କୁବେର ପାଲଟୁଛନ୍ତି । ଶିକ୍ଷା ପାଇସାରିଲା ପରେ ଆଉ ଅନେକେ ଚାକିରି ପାଉ ନାହାନ୍ତି । ଏସବୁ ବୈଷୟିକ ଶିକ୍ଷାର ଲକ୍ଷ୍ୟ ଚାକିରି, ବିଭିନ୍ନ କଂପାନୀ ଅଧୀନରେ ନିଯୁକ୍ତି ପାଇ ଆର୍ଥିକ ସଙ୍ଗତି ବଢ଼ାଇବା । ଏବେ କିନ୍ତୁ ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନ ଆଦି ଦେଶରେ କଂପାନୀମାନଙ୍କରେ ଆଉ ନିଯୁକ୍ତିର ସୁଯୋଗ ନାହିଁ । ଭାରତରେ ତଥା ଓଡ଼ିଶାରେ ମଧ୍ୟ ସୁଯୋଗ ନାହିଁ । ଏପରି ଅବସ୍ଥାରେ ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ହଜାର ହଜାର ସଂଖ୍ୟାରେ ସିଟ୍ ଖାଲି ପଡୁଛି । ସୁନାମିରିଗ ପଛରେ ଗୋଡ଼ାଇବାର ମୋହ କମିଯାଉଛି । ମନେହୁଏ ଆଗାମୀ କୋଡ଼ିଏ/ପଚିଶ ବର୍ଷ ଭିତରେ ଏସବୁ ଶିକ୍ଷାନୁଷ୍ଠାନର ଅବସ୍ଥା ଶୋଚନୀୟ ହୋଇଯିବାର ସମ୍ଭାବନା ରହିଛି । ସରକାରୀ ସ୍ତରରେ କୌଣସି ବିଧିବଦ୍ଧ ଯୋଜନା ନ ଥିବାରୁ ଏପରି ଅବସ୍ଥା ସୃଷ୍ଟି ହେବାକୁ ଯାଉଛି ।

**ପ୍ରଶ୍ନ : ସରକାରୀ ସ୍ତରରେ ଓଡ଼ିଆ ଭାଷା ପ୍ରାଶାସନିକ ସ୍ତରରେ ପ୍ରଚଳନ ହେବାର ସ୍ପଷ୍ଟ ନିର୍ଦ୍ଦେଶ ଥିଲେ ସୁଦ୍ଧା ଏହା କାହିଁକି ଯଥାଯଥ ରୂପେ ଓଡ଼ିଶାର ପ୍ରଶାସନିକ ସ୍ତରରେ କାର୍ଯ୍ୟକାରୀ ହୋଇପାରୁ ନାହିଁ ?**

ଉତ୍ତର : ସରକାରୀ ସ୍ତରରେ ଓଡ଼ିଆ ଭାଷାକୁ ପ୍ରାଶାସନିକ ସ୍ତରରେ ପ୍ରଚଳନ କରାଯିବାପାଇଁ ବାରମ୍ବାର ଉଦ୍ୟମ ହୋଇଆସିଅଛି । ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଏ ଦିଗରେ ପ୍ରଥମେ ଉଦ୍ୟମ କରିଥିଲେ । ପରେ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ପଦକ୍ଷେପ ନେଲେ । ମାତ୍ର ଦେଖାଗଲା ଯେ ପ୍ରଶାସକମାନେ ଏଥିପ୍ରତି ଆଗ୍ରହ ପ୍ରକାଶ କଲେ ନାହିଁ ଓ ରାଜନୀତିକ ଇଚ୍ଛାଶକ୍ତି ମଧ୍ୟ କୋହଳ ହୋଇଗଲା । ଇଂରାଜୀ ଭାଷାକୁ ଏତେ ଗୁରୁତ୍ୱ ଦିଆଗଲା ଯେ ଓଡ଼ିଆ ଭାଷା ସଂପୂର୍ଣ୍ଣ ଅବହେଳିତ ହୋଇଯାଉଛି । ନେତାମାନେ ଇଂରାଜୀରେ କହିବାକୁ ଶ୍ରେୟ ମନେ କରୁଛନ୍ତି । ଆଦୌ ଓଡ଼ିଆ ନ ଜାଣି ମଧ୍ୟ ଓଡ଼ିଶାର ନେତୃତ୍ୱ ନେଉଛନ୍ତି । ଏସବୁ ଓଡ଼ିଆ ଜାତି ପାଇଁ ଦୁର୍ଭାଗ୍ୟ । ଆଜି ଟି.ଭି. ଠାରୁ ଆରମ୍ଭ କରି ସବୁ କ୍ଷେତ୍ରରେ ଓଡ଼ିଆ ଭାଷା ସହିତ ବିକୃତ ଇଂରାଜୀ ଶବ୍ଦ ଲଗାଇ ଯେପରି କୁହାଯାଉଛି ତାହା ଆମ ଜାତୀୟ ବିକୃତିର ପରିଚୟ ଦିଏ । ଯେତେ ଦିନ ପର୍ଯ୍ୟନ୍ତ ଦୃଢ଼ ରାଜନୀତିକ ଇଚ୍ଛାଶକ୍ତି ସୃଷ୍ଟି ହୋଇ ନାହିଁ ସେତେ ଦିନ ପର୍ଯ୍ୟନ୍ତ ଓଡ଼ିଆ ଭାଷା ସରକାରୀ ଭାଷା ହୋଇପାରିବ ନାହିଁ ।

କେବଳ ନିର୍ଦ୍ଦେଶ ଦେଇଦେଲେ ଓଡ଼ିଆ ଭାଷା ସରକାରୀ ସ୍ତରରେ ପ୍ରଚଳିତ ହେବ ନାହିଁ; ଦରକାର ଜନସଚେତନତା, ବୁଦ୍ଧିଜୀବୀମାନଙ୍କର ଆନ୍ତରିକ ଶ୍ରଦ୍ଧା, ପ୍ରାଶାସନିକ ଅନୁରାଗ ଓ ରାଜନୀତିକ ଇଚ୍ଛାଶକ୍ତି ।

**ପ୍ରଶ୍ନ : ଓଡ଼ିଆ ଭାଷା ପ୍ରତିଷ୍ଠାନ ସଂପର୍କରେ ଆପଣ କି ପ୍ରତିକ୍ରିୟା ଦେବେ ?**

**ଉତ୍ତର :** ଓଡ଼ିଆ ଭାଷା ପ୍ରତିଷ୍ଠାନ ଓଡ଼ିଆ ଭାଷା, ସଂସ୍କୃତି ଓ ସାହିତ୍ୟର ବିକାଶ ପାଇଁ ଅଭିପ୍ରେତ । ବିଶେଷତଃ ସମଗ୍ର ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରଚଳିତ ଆଞ୍ଚଳିକ ଭାଷାର ସଂଗ୍ରହ, ସଂକଳନ ଓ ସେସବୁର ସାହିତ୍ୟରେ ପ୍ରୟୋଗ କରିବାର ଦାୟିତ୍ୱ ଭାଷା ପ୍ରତିଷ୍ଠାନର । ଏହା ନ କରି କେବଳ ପଦପଦବୀ ସୃଷ୍ଟି କରିଦେଲେ ଉଦ୍ଦେଶ୍ୟ ସଫଳ ହେବ ନାହିଁ । ସବୁ କ୍ଷେତ୍ରରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଭାଷା ପ୍ରତିଷ୍ଠାନ ମଧ୍ୟ ଦୃଢ଼ ପଦକ୍ଷେପ ନେବା ଉଚିତ । ଅନୁଷ୍ଠାନ କରିଦେଲେ କେବଳ ହୁଏ ନାହିଁ; ଏଥିପାଇଁ ଆବଶ୍ୟକ ଗଭୀର ଶ୍ରଦ୍ଧା ଓ ଅଙ୍ଗୀକାରବଦ୍ଧତା । ଏବେ ନୁହେଁ; ପୂର୍ବରୁ ମଧ୍ୟ ଲକ୍ଷ୍ୟ କରାଯାଉଛି ଭାଷା ପ୍ରତିଷ୍ଠାନର ଅବକ୍ଷୟ ଓ ନିଷ୍କ୍ରିୟ ଅବସ୍ଥା । ସଂପ୍ରତି ଏହି ନିଷ୍କ୍ରିୟ ଅବସ୍ଥାରୁ ଉକ୍ତ ଅନୁଷ୍ଠାନକୁ ସକ୍ରିୟ କରିବାକୁ ଯେଉଁ କ୍ଷୀଣ ଉଦ୍ୟମ ଚାଲିଛି, ତାହା ଆହୁରି ପ୍ରସାରିତ ହେବା ବିଧେୟ । ଗୋଟିଏ ସ୍ଥାନରେ ବସି ଏହି କାର୍ଯ୍ୟ ହୁଏ ନାହିଁ, ବିଭିନ୍ନ ସ୍ଥାନକୁ ଯାଇ ସମସ୍ତଙ୍କର ସହଯୋଗ ନେବା ଓ ଓଡ଼ିଆ ଭାଷା ପ୍ରତି ଶ୍ରଦ୍ଧା ସୃଷ୍ଟି କରିବା ଆବଶ୍ୟକ ।

**ପ୍ରଶ୍ନ : ଆପଣ ସରକାରୀ କଲେଜ, ଉତ୍କଳ ବିଶ୍ୱବିଦ୍ୟାଳୟ, ବିଶ୍ୱଭାରତୀ–ଶାନ୍ତିନିକେତନରେ କାର୍ଯ୍ୟ କରିଛନ୍ତି– କେଉଁଠାରେ ଆପଣ ସର୍ବାଧିକ ବୃତ୍ତିଗତ ସନ୍ତୋଷ ଲାଭ କରିଛନ୍ତି ?**

**ଉତ୍ତର :** ମୁଁ ପ୍ରଥମେ ବାଲେଶ୍ୱରର ସରକାରୀ କଲେଜ ଫକୀରମୋହନ ମହା–ବିଦ୍ୟାଳୟରେ ଅଧ୍ୟାପନା କଲି ଓ ସେଠାରେ ସାଢ଼େ ତିନିବର୍ଷ ରହଣି ଭିତରେ ସାରା ଜିଲ୍ଲାର ଶ୍ରଦ୍ଧା ଅନୁଭବ କଲି । ସେହି କଲେଜ ହିଁ ମୋ ଭିତରେ ପ୍ରେରଣା ସୃଷ୍ଟି କଲା କିଛି ପଢ଼ିବା, ଲେଖିବା ଓ ଭାଷଣ ଦେବାପାଇଁ । ଏହା ପରେ ରେଭେନ୍ସା କଲେଜରେ ଆଠବର୍ଷ ଅଧ୍ୟାପନା କଲି ଓ ଅଧ୍ୟାପକ/ଛାତ୍ର ସମାଜର ଶ୍ରଦ୍ଧାଭାଜନ ହେଲି । ଏହି ସମୟରେ ବିଭିନ୍ନ ପତ୍ରପତ୍ରିକାରେ ମୋର ଲେଖା ବାହାରିବା ସହିତ କେତେଖଣ୍ଡ ପୁସ୍ତକ ମଧ୍ୟ ପ୍ରକାଶ ପାଇଲା । ତତ୍‌ପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲି । ଏଠି ମଧ୍ୟ ପ୍ରିୟଭାଜନ ହେଲି; ମାତ୍ର ଅନୁଭବ କଲି କ୍ଷୁଦ୍ରତା ଓ ସଂକୀର୍ଣ୍ଣମନସ୍କତା । ତଥାପି ମୁଁ ମୋର କର୍ତ୍ତବ୍ୟ ସଂପାଦନରେ ସତତ ବ୍ରତୀ ଥିଲି । ବିଶ୍ୱଭାରତୀରେ ସାତବର୍ଷ କଟାଇଲି ଓ ସେଠାରେ ଓଡ଼ିଆ ବିଭାଗର କ୍ଷୁଦ୍ରମନସ୍କତାକୁ ଅନୁଭବ କଲି । ମାତ୍ର ତାହା ଏକ ଆନ୍ତର୍ଜାତିକ କ୍ଷେତ୍ରର ବିଦ୍ୱାନ୍‌ମାନଙ୍କର ମିଳନଭୂମି ହୋଇଥିବାରୁ ମୁଁ ବହୁ ବିଦ୍ୱାନ୍‌ଙ୍କ ସଂପର୍କରେ ଆସି ମୋର ଜିଜ୍ଞାସାକୁ ଶାଣିତ ଓ ସୁତୀବ୍ର କଲି । ତେଣୁ ଫକୀରମୋହନ କଲେଜରେ ମୋର ଭିତ୍ତି ସ୍ଥାପନ କରି ରେଭେନ୍ସା କଲେଜରେ

ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ମୋର ଜ୍ଞାନର ବିକାଶ କରିବାକୁ ଚେଷ୍ଟା କଲି । ବିଶ୍ୱଭାରତୀରେ ଥିଲାବେଳେ ମୁଁ ବୃତ୍ତିଗତ ସନ୍ତୋଷ ଲାଭ କଲି । ଉତ୍କଳ ବିଶ୍ୱବିଦ୍ୟାଳୟରେ ହିଁ ମୋର ସର୍ବୋତ୍ତମ ବୃତ୍ତିଗତ ସନ୍ତୋଷ ହୋଇଥିଲା ।

**ପ୍ରଶ୍ନ : ଆପଣ ଅବଶିଷ୍ଟ ଜୀବନ କିପରି ବିତାଇବାକୁ ଚାହାନ୍ତି ?**

**ଉତ୍ତର :** ଏବେ ମୁଁ ୭୩ ବର୍ଷ ବୟସରେ ଉପନୀତ । ଡାଇବେଟିସ୍ ରୋଗରେ ପୀଡ଼ିତ । ଶାରୀରିକ ଭାବରେ ଦୁର୍ବଳ ହୋଇଯାଉଛି । ତେବେ ମନୋବଳ ଦୃଢ଼ ଅଛି । ଅନେକ ଲେଖା ରହିଛି । ସେ ସବୁକୁ ସଂକଳନ କରିବାକୁ ଇଚ୍ଛା । ମୋର ପୁଅମାନେ ଘରର ଦାୟିତ୍ୱ ବୁଝୁଛନ୍ତି । ମୋ ସ୍ତ୍ରୀ ମଧ ବୁଝୁଛି । କେବେ ମୁଁ ଘରକଥା ବୁଝେ ନାହିଁ । ଅବଶିଷ୍ଟ ଜୀବନ ଲେଖାଲେଖି ଭିତରେ ବିତାଇବାକୁ ଚାହୁଁଛି । କେତେ ପରିମାଣରେ ସଫଳ ହେବି ତାହା ଭଗବାନ୍‌ଙ୍କ ହାତରେ ଛାଡ଼ି ଦେଉଛି ।

**ପ୍ରଶ୍ନ : ଆପଣଙ୍କ ଜୀବନ ସଂଘର୍ଷମୟ । କିପରି ପ୍ରତିକୂଳ ପରିସ୍ଥିତିରେ ମଣିଷ ପରି ମଣିଷ ହୋଇ ବଞ୍ଚିବାକୁ ହୁଏ, ସେ ସଂପର୍କରେ କିଛି କହିବେ କି ?**

**ଉତ୍ତର :** ମୋ ଜୀବନ ସଂଘର୍ଷମୟ । ଚତୁର୍ଥ ଶ୍ରେଣୀରେ ପଢୁଥିଲାବେଳେ ୧୯୫୧/୫୨ ମସିହାରେ ମୋ ବାପା ମରିଗଲେ । ସେ ଥିଲେ ସ୍ୱାଧୀନତା ସଂଗ୍ରାମୀ, ସର୍ବତ୍ୟାଗୀ ଓ ହରିଜନ ଆନ୍ଦୋଳନର ସକ୍ରିୟ କର୍ମୀ । ପିଲାଦିନରୁ ବାପାଙ୍କୁ ହରାଇ ଅନାଥ ହେଲି । ଚାଷ କରିବା, ଗାଈ ରଖିବା ସହିତ ପାଠ ପଢ଼ିଲି । ମାଟ୍ରିକ୍ ପାସ୍ ପରେ ମାଇନର ସ୍କୁଲରେ ଶିକ୍ଷକ ହେଲି ଓ ପରେପରେ ଟେଲିଫୋନ ଅପରେଟର ହୋଇ ପାଠ ପଢ଼ି ଏମ୍.ଏ. ପାସ୍ କରି ଅଧାପକ ହେଲି । ପଦେ ପଦେ ମୁଁ ସଂଘର୍ଷର ସମ୍ମୁଖୀନ ହୋଇଛି । ନିଜକୁ ନିଜେ ମୁଁ ଗଢ଼ିଛି । କୌଣସି ବନ୍ଧୁ ବା ଅନ୍ୟ କେହି ସାହାଯ୍ୟ କରି ନାହାନ୍ତି । ମୁଁ ଜାଣେ ସଂଘର୍ଷ ହିଁ ଜୀବନ । ସଂଘର୍ଷ ଶିକ୍ଷା ଦିଏ ଜୀବନରେ ଆଗେଇଯିବା ପାଇଁ । ସଂଘର୍ଷ ବା ସଂକଟକୁ ଡରିଗଲେ ମଣିଷ ଦୁର୍ବଳ ହୋଇଯାଏ । ଚାକିରି କ୍ଷେତ୍ରରେ, ବିଶେଷତଃ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ମୁଁ ଅନେକ ସଂକଟର ସମ୍ମୁଖୀନ ହୋଇଛି । କିନ୍ତୁ ସବୁ କ୍ଷେତ୍ରରେ ମୁଁ ସଂକଟକୁ ଏଡ଼ି ଦେଇଛି । ଏବେ ଯେ ସଂଘର୍ଷ ନାହିଁ; ନୁହେଁ । ଅନେକ ବନ୍ଧୁ ବାହାରକୁ ମିତ୍ରତା ଦେଖାଇ ଭିତରେ ଚେର କାଟନ୍ତି । ଏଥିରେ ବିଚଳିତ ହେବା ଉଚିତ ନୁହେଁ । ଏହା ହେଲେ ଜଣେ ଜୀବନ ପଥରେ ଆଗେଇପାରିବ ନାହିଁ ।

**ପ୍ରଶ୍ନ : ଓଡ଼ିଶାର ବିକାଶ ପାଇଁ ଆପଣ କି ସ୍ୱପ୍ନ ଦେଖନ୍ତି ?**

**ଉତ୍ତର :** ଓଡ଼ିଶାର ବିକାଶ ପାଇଁ ସର୍ବାଦୌ ଦରକାର ଦୃଢ଼ ଇଚ୍ଛାଶକ୍ତି ଥିବା ଓ ନିର୍ମଳ ଭାବମୂର୍ତ୍ତି ଥିବା ରାଜନୀତି ଓ ରାଜନେତା । ବ୍ୟକ୍ତିଗତ କ୍ଷମତା–ତୃଷ୍ଣା ଓ ଉପଭୋଗ ଲାଳସାରୁ ମୁକ୍ତ ହୋଇ ଜାତୀୟ ଭାବନା ଜାଗ୍ରତ ହେବା ଦରକାର । ଓଡ଼ିଶାର ବିକାଶ କରିବାକୁ ହେଲେ ଯେଉଁ ଆଞ୍ଚଳିକ ମନୋଭାବ ସୃଷ୍ଟି ହେଉଛି, ତାହାକୁ ଦୂର କରି ଗୋଟିଏ ଜାତୀୟ

ମହାସ୍ରୋତରେ ମିଶାଇବାକୁ ହେବ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ କରିବାକୁ ହେବ । ଶିକ୍ଷାର ଉନ୍ନତି ଓ ବିକାଶ ପାଇଁ ଆନ୍ତରିକ ଉଦ୍ୟମ କରିବାକୁ ହେବ । ସାହିତ୍ୟ ଗୋଟିଏ ଜାତିର ପରିଚିତି ହୋଇଥିବାରୁ ଓଡ଼ିଆ ସାହିତ୍ୟକୁ କ୍ଷମତା ବ୍ୟୂହରୁ ମୁକ୍ତ କରି ପ୍ରସାରିତ କରିବାକୁ ହେବ । କୃଷିର ଉନ୍ନତି ମଧ୍ୟ ବିଧେୟ । ଦୁଇଟଙ୍କା ଚାଉଳ, ଇନ୍ଦିରା ଆବାସ ବା ସଂରକ୍ଷଣ ନୀତି ଗୋଟିଏ ମହାଜାତିର ସାମୂହିକ ମଙ୍ଗଳ କରେ ନାହିଁ । ସମସ୍ତଙ୍କ ଭିତରେ ସ୍ୱାଭିମାନ, ସ୍ୱାବଲମ୍ବନଶୀଳତା, ଆର୍ଥନୀତିକ ସ୍ୱଚ୍ଛଳତା ଓ ସର୍ବୋପରି ନୈତିକ ଭାବାଦର୍ଶର ବିକାଶ କରିବାକୁ ହେବ । ମୁଁ ଏହି ସ୍ୱପ୍ନ ଦେଖୁଛି ଓ ଆଶା କରୁଛି ଭବିଷ୍ୟତ ଓଡ଼ିଶା ମୋହଗ୍ରସ୍ତତାରୁ ମୁକ୍ତ ହୋଇ ବିକଶିତ ହେବ ।

**ପ୍ରଶ୍ନ : କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ଦିଆଯାଇଥିବା ୨୦୧୧ ଓଡ଼ିଆ ସାହିତ୍ୟ ପୁରସ୍କାରକୁ ନେଇ କାହିଁକି ଏପରି ଅରୁଚିକର ବିତର୍କ ଓ ମୋକଦ୍ଦମା ହେଲା– ଏ ସଂପର୍କରେ ଆପଣ କି ପ୍ରତିକ୍ରିୟା ଦେବେ ?**

**ଉତ୍ତର :** ଏହା ଏକ ବିବଦମାନ ବିଷୟ । କିଏ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲା ବା ନ ପାଇଲା ସେଥିରେ ମୋର କିଛି କହିବାର ନାହିଁ । କାରଣ ମୁଁ ଜାଣିଛି ଏହି ପୁରସ୍କାର ପ୍ରାୟ ଅଧିକାଂଶ ଯୋଗ୍ୟତାରେ ପାଆନ୍ତି ନାହିଁ; ପ୍ରିୟାପ୍ରୀତି, ଲବି ଓ ସଦସ୍ୟମାନଙ୍କର ତଥା ଆବାହକ ବା ସଂଯୋଜକଙ୍କ ଦ୍ୱାରା ଦିଆଯାଇଥାଏ । ଅତୀତରେ ଯେଉଁମାନେ ପାଇଛନ୍ତି ସେମାନେ ସମସ୍ତେ କ'ଣ ଯୋଗ୍ୟ ? ସେତେବେଳେ ଆଉ କ'ଣ ସେମାନଙ୍କଠାରୁ ଯୋଗ୍ୟ ନ ଥିଲେ ? ତେଣୁ ୨୦୧୧ ମସିହା କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରକୁ ନେଇ ବାଦବିବାଦ ନ ହେବା ଉଚିତ ।

**ପ୍ରଶ୍ନ : ଓଡ଼ିଶାରେ ପ୍ରଚୁର ଖଣିଜ ସଂପଦ, ଜଳ ସଂପଦ, ଜଙ୍ଗଲ ସଂପଦ ଥିବା ସତ୍ତ୍ୱେ ଓଡ଼ିଶା କାହିଁକି ସର୍ବଭାରତୀୟ ସ୍ତରରେ ଏକ ଦରିଦ୍ର ରାଜ୍ୟ ରୂପେ ପରିଚିତ ?**

**ଉତ୍ତର :** ଓଡ଼ିଶାରେ ପ୍ରଚୁର ଖଣିଜ ସଂପଦ, ଜଳ ସଂପଦ ଓ ଜଙ୍ଗଲ ସଂପଦ ଅଛି । ଏସବୁର ଠିକ୍ ବିନିଯୋଗ ହୋଇପାରୁ ନାହିଁ । କିଛି ଉପଭୋଗୀ ଓ ଆତ୍ମମ୍ଭରୀ ରାଜନେତା ଏବଂ ପ୍ରଶାସକ ଆପଣା ଆପଣାର ସ୍ୱାର୍ଥକୁ ଏତେ ଗୁରୁତ୍ୱ ଦେଉଛନ୍ତି ଯେ ଉପରୋକ୍ତ ପ୍ରାକୃତିକ ସଂପଦର ଯଥାର୍ଥ ବିନିଯୋଗ ହୋଇପାରୁ ନାହିଁ । ଅନେକ କ୍ଷେତ୍ରରେ ଖଣିଜ ପଦାର୍ଥ ବାଟମାରଣା ହେଉଛି । ବିଦେଶୀ କଂପାନୀ ବା ବ୍ୟକ୍ତିବିଶେଷଙ୍କ ହାତରେ ଆମର ଖଣିଜ ପଦାର୍ଥକୁ ଟେକି ଦେଇ ଶିଳ୍ପ ପ୍ରତିଷ୍ଠା କରିଦେଲେ ଓଡ଼ିଶାର ବିକାଶ ହେବ ନାହିଁ । ଶିଳ୍ପ ପରେ ଶିଳ୍ପ ପ୍ରତିଷ୍ଠା କରି କୃଷି ଜମି, ନଦୀର ଜଳ ଓ ଜଙ୍ଗଲକୁ ନଷ୍ଟ କରିଦେଲେ ଓଡ଼ିଶା ଧନୀ ହୋଇଯିବ ନାହିଁ; ବରଂ ଅଚିରେ ଦରିଦ୍ର ହୋଇଯିବ । ଏବେ ସେହି ଦରିଦ୍ର ହେବାର ପ୍ରକ୍ରିୟା ଆରମ୍ଭ ହୋଇଛି ।

**ପ୍ରଶ୍ନ : ଅନେକ ଓଡ଼ିଆ ଶିକ୍ଷିତ ହେଲେ ଗାଁ ଓ ମା'କୁ ଭୁଲିଯାଆନ୍ତି– ଏ ସଂପର୍କରେ ଆପଣ କ'ଣ କହିବେ ?**

ଉତ୍ତର : ହଁ, ଏଇଟା ନିରାଟ ସତ କଥା । ଓଡ଼ିଆ ଲୋକେ ଉଚ୍ଚଶିକ୍ଷା ପାଇ ସହରରେ ଚାକିରି କଲେ, ବାହାର ଦେଶକୁ ବୃତ୍ତି ପାଇଁ ଗଲେ ବା ରାଜନୀତି ଅଥବା ବାଣିଜ୍ୟ ବ୍ୟବସାୟ କଲେ, ନିଜର ଜନ୍ମମାଟି ଗାଁ ଓ ମା'କୁ ଭୁଲିଯାଆନ୍ତି । ଅର୍ଥବାଦ ସେମାନଙ୍କୁ ବ୍ୟକ୍ତିମୁଖୀ କରିଦିଏ । ଏପରି ମଣିଷ ନିଜର ଭାଇ ବିରାଦରକୁ ମଧ୍ୟ ଭୁଲିଯାଏ । ଗୋଟାଏ ଭ୍ରାନ୍ତ ଆଭିଜାତ୍ୟବୋଧ ସେମାନଙ୍କୁ ବଶୀଭୂତ କରିଦିଏ । ଏପରି ମନୋଭାବ ଗୋଟାଏ ସଂସ୍କୃତିସଂପନ୍ନ ମହାଜାତି ପାଇଁ ଶୁଭଙ୍କର ନୁହେଁ ।

**ପ୍ରଶ୍ନ : ଆପଣ କ'ଣ ଖାଇବାକୁ ଭଲ ପାଆନ୍ତି ?**

ଉତ୍ତର : ମୋର ଖାଇବାରେ ସେପରି କିଛି ସ୍ୱତନ୍ତ୍ର ରୁଚି ନାହିଁ । ଯାହା ଯେତେବେଳେ ମିଳେ ମୋତେ ଭଲ ଲାଗେ । ଖାଇବାରେ ମୁଁ ଅବଧୂତପନ୍ଥୀ । କେହି କ'ଣ ଆଦରରେ ଦେଲେ ମୁଁ ଆନନ୍ଦରେ ଖାଇଦିଏ । ଭଲମନ୍ଦ ବାରେ ନାହିଁ । ମାଂସ ବା ଅଣ୍ଡାର ମୁଁ ଆଦୌ ପ୍ରିୟ ନୁହେଁ । ଶାଗସବ୍‌ଜି ମୋତେ ଭଲ ଲାଗେ । ବିଳାସପୂର୍ଣ୍ଣ ଖାଦ୍ୟର ମୁଁ ପରିପନ୍ଥୀ ।

**ପ୍ରଶ୍ନ : ଯୁବ ଲେଖକଙ୍କ ଉଦ୍ଦେଶ୍ୟରେ ଆପଣ କ'ଣ କହିବେ ?**

ଉତ୍ତର : ଯୁବ ଲେଖକମାନେ ମୋ ଜାତିର ଭବିଷ୍ୟତ । ଅନେକ ଯୁବ ଲେଖକଙ୍କ ପ୍ରତିଭା ମୋତେ ବିମୋହିତ କରେ । ସେମାନଙ୍କୁ ମୁଁ କି ଉପଦେଶ ଦେବି ? ଏତିକି କହିବି କ'ଣ କିଛି ହେବା ପାଇଁ ବା ପାଇବା ପାଇଁ କାହାରିକୁ ତୋଷାମଦ ନ କରନ୍ତୁ । ନିଜ ଗୋଡ଼ରେ ଛିଡ଼ା ହୁଅନ୍ତୁ । ସ୍ୱାଭିମାନ ହରାନ୍ତୁ ନାହିଁ । ନିଜେ ଲେଖନ୍ତୁ । ମାଟି ଓ ମଣିଷକୁ ଗୁରୁତ୍ୱ ଦିଅନ୍ତୁ । ପ୍ରତୀଚ୍ୟମନସ୍କତାରୁ ମୁକ୍ତ ହୋଇ ପ୍ରାଚ୍ୟମନସ୍କ ହୁଅନ୍ତୁ । ଗଭୀର ଭାବରେ ସମସ୍ୟାକୁ ଅନୁଧ୍ୟାନ କରନ୍ତୁ । ଅଯଥା ବୌଦ୍ଧିକ ହଟଚମଟ କରନ୍ତୁ ନାହିଁ । ସେମାନେ ମନେରଖିବା ଉଚିତ ଯେ, ଅର୍ଥବାଦ ସବୁଦିନେ ରହିବ ନାହିଁ, ସିଂହାସନ ରହିବ ନାହିଁ, ରାଜନୀତି ବି ବଦଳିଯିବ; ରହିବ କେବଳ ସାହିତ୍ୟ । ଯେମିତି ଆଜି ମଧ୍ୟ ବ୍ୟାସ, ବାଲ୍ମୀକି, କାଳିଦାସ ଅଛନ୍ତି, ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଏପରିକି ଫକୀରମୋହନ, ଗଙ୍ଗାଧର, ରାଧାନାଥ ରାୟ ଅଛନ୍ତି । ସାହିତ୍ୟ ହିଁ ବାଟ ଦେଖାଏ, ଆଲୋକ ଦେଖାଏ । ଏତିକି ଯୁବ ଲେଖକମାନେ ମନେରଖିବା ଉଚିତ ।

**ପ୍ରଶ୍ନ : ଯାଜପୁରର ଦଶରଥପୁରରୁ ବାହାରୁଥିବା 'ବର୍ତ୍ତିକା' ପତ୍ରିକା ପାଇଁ ଆପଣ କି ବାର୍ତ୍ତା ଦେବେ ?**

ଉତ୍ତର : 'ବର୍ତ୍ତିକା' ଦୀର୍ଘ ପଚିଶ ବର୍ଷ ହେଲା ନିୟମିତ ପ୍ରକାଶ ପାଇଆସୁଛି । ଅନ୍ୟାନ୍ୟ ଅନେକ ପତ୍ରିକା ମଧ୍ୟରେ ଏହାର ଭୂମିକା ସ୍ୱତନ୍ତ୍ର । ଏହି ପତ୍ରିକା ଆନୁକୂଲ୍ୟରେ ଦଶରଥପୁର ଠାରେ ଗଢ଼ିଉଠିଛି ଭବ୍ୟ ସଂସ୍କୃତି ଭବନ । ଏଠାରେ ପଣ୍ଡିତ ଗୋଦାବରୀଶ ମିଶ୍ର ସ୍ମାରକ

ସଦ୍‌ଗ୍ରନ୍ଥଗାର ପ୍ରତିଷ୍ଠା ଲାଭ କରିଛି । ଗ୍ରାମାଞ୍ଚଳରେ ଏପରି ଏକ ସଂସ୍କୃତି ଭବନ ଓ ଗ୍ରନ୍ଥାଗାର ବାସ୍ତବିକ୍ ଯେକୌଣସି ସଂସ୍କୃତିସଂପନ୍ନ ବ୍ୟକ୍ତିଙ୍କୁ ବିସ୍ମିତ କରେ । ବର୍ତ୍ତିକା ଉପାଦେୟ ଲେଖାରେ ଋଦ୍ଧିମନ୍ତ । ଏହା ମଧ୍ୟ ଶ୍ରଦ୍ଧା ଓ ଅନୁରାଗର ବାଣୀମୂର୍ତ୍ତ ଅଭିବ୍ୟକ୍ତି । 'ବର୍ତ୍ତିକା' ଠିକ୍ ଚାଲିଛି ଓ ଆହୁରି ଭବିଷ୍ୟତକୁ ସଙ୍କେତ ଦେଲା ଭଳି ଲେଖା ଏଥିରେ ପ୍ରକାଶ ପାଉ- ଏହାହିଁ ମୋର କାମନା ।

*ଉପସ୍ଥାପନା ଓ ପ୍ରସ୍ତୁତି :*

ପ୍ରଫେସର ବାଉରୀବନ୍ଧୁ କର, ଡକ୍ଟର ନବକିଶୋର ମିଶ୍ର



ପିତାଙ୍କ ସହ ବଡ଼ପୁଅ– ଅମିତାଭ, ବଡ଼ବୋହୂ– ସୁଶ୍ରୀ(ପିଙ୍କି)
ବଡ଼ନାତୁଣୀ ପ୍ରଜ୍ଞା, ସାନ ନାତୁଣୀ– ଅନନ୍ୟା



ମଝିଆ ପୁଅ– ଜ୍ୟୋତିରଂଜନ, ମଝିଆ ବୋହୂ– ରଶ୍ମୀତା,
ବଡ଼ ନାତି– ପୁପୁନ ଓ ସାନ ନାତି ଆଶୁ



ବାପା ବୋଉଙ୍କ ସହିତ ସାନପୁଅ- ସ୍ମତିରଂଜନ (ଟିଟୁ)
ସାନବୋହୂ- ମୋନାଲିସା (ମାମୁନୀ)



ବଡ଼ଭାଇଁ- ବିଜୟ କୁମାର ସାମଲ, ବଡ଼ଝିଅ- ମଂଜୁଶ୍ରୀ
ବଡ଼ ନାତି- ସିଦ୍ଧାର୍ଥ ସତ୍ୟବ୍ରତ ଓ ସାନ ନାତି- ସୁମନ ସତ୍ୟରଂଜନ



ମଝିଆ ଭ୍ରାଇଁ ଗୋପାଳ ଚନ୍ଦ୍ର ରାଉତ, ମଝିଆ ଝିଅ ଜୟଶ୍ରୀ (ମାମି)
ନାତି– ମାଧବ, ନାତୁଣୀ– ଗୀତା ଓ ସାନ ନାତି– କୁନି



ସାନଭ୍ରାଇଁ– ନିକୁଂଜ ବିହାରୀ ରାଉତ, ସାନଝିଅ– ଇତିଶ୍ରୀ ଓ ନାତି– ତୁହିନାଂଶୁ



ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର
ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ରାମେଶ୍ୱର ଠାକୁର ପ୍ରଦାନ କରୁଛନ୍ତି



କଟକ ବେତାର କେନ୍ଦ୍ର, ହୀରକ ଜୟନ୍ତୀ ଉତ୍ସବରେ
ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ସମ୍ମାନ ପ୍ରଦାନ କରୁଛନ୍ତି ।



କେନ୍ଦ୍ରାପଡ଼ା ରତ୍ନ
ଉପାଧି ପ୍ରଦାନ
ଉତ୍ସବରେ ସାଂସଦ
ଶ୍ରୀଯୁକ୍ତ ମୋହନ ଜେନା
ଓ ବିଧାୟକ ଶ୍ରୀଯୁକ୍ତ
ପ୍ରଭାତ ରଂଜନ ବିଶ୍ୱାଳ



**ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର**

**ଭୁବନେଶ୍ୱର – ସୂଚନା ଭବନ**



କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ

**ଦୀନବନ୍ଧୁ ସାହୁ ସ୍ମୃତି ସମ୍ମାନ-୨୦୧୧**

**ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସାମଲ**

ସମ୍ମାନନୀୟେଷୁ

ମହାଭାଗ ।

ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ବିଶ୍ୱସ୍ତ ସ୍ରଷ୍ଟା ଓ ପ୍ରବୀଣ ସମାଲୋଚକ ଭାବରେ ଆପଣ ରାଜ୍ୟ ଓ ରାଜ୍ୟ ବାହାରେ ସୁପ୍ରତିଷ୍ଠିତ । କବିତା ଆପଣଙ୍କ ପ୍ରେରଣାର ବାଙ୍ମୟ ଅଭିବ୍ୟକ୍ତି, ଗଳ୍ପ ଆପଣଙ୍କ ସୃଜନୀର ଦୀପ୍ତ ସ୍ୱାକ୍ଷରରେ ଉଦ୍ଭାସିତ । ମାଟି, ମଣିଷ ଓ ସଂସ୍କୃତି ପ୍ରତି ଗଭୀର ଅନୁରାଗ ଆପଣଙ୍କ ସାରସ୍ୱତ ଦୃଷ୍ଟିକୁ କେବଳ ସଂପ୍ରସାରିତ କରିନାହିଁ, ସମାଲୋଚକର ଅନ୍ତର୍ଦୃଷ୍ଟି କ୍ରମେ ବିଶ୍ୱଦୃଷ୍ଟିରେ ହୋଇଛି ପରିଣତ । ସ୍ୱାଭିମାନୀ ମଣିଷର କମନୀୟ ବ୍ୟକ୍ତିତ୍ୱ ଆପଣଙ୍କ ବ୍ୟକ୍ତିସତ୍ତାର ବୈଶିଷ୍ଟ୍ୟ, ତପସ୍ୱୀର ଭାବଗମ୍ଭୀର ଅଭିବ୍ୟକ୍ତି ଆପଣଙ୍କର ଜୀବନାଦର୍ଶର ପ୍ରକାଶ, ଛଳନାହୀନ ଅକପଟ ଜୀବନଶୈଳୀ ଆପଣଙ୍କୁ ଦେଇଛି ମହୋଦଧିର ବିଶାଳତା ଆଉ ଜୀବନ ଓ ଜଗତ ପ୍ରତି ବିମୁଗ୍ଧ ଦୃଷ୍ଟି ଆପଣଙ୍କୁ କରିଛି ବାଗ୍ମୀ ଓ ସାଧକ ।

ହେ ମହାନ୍ ତପସ୍ୱୀ ।

ଏବେ ଶତେକ ଅଙ୍କ ସ୍ପର୍ଶ କରିବାକୁ ଯାଉଛି ଆପଣଙ୍କ ସାରସ୍ୱତ ସୃଷ୍ଟିର ବିପୁଳ ସମ୍ଭାର । ସମାଲୋଚନା, ରମ୍ୟ ରଚନା, କବିତା, ଗଳ୍ପ, ପ୍ରବନ୍ଧ, ସଂପାଦନା, ସମୀକ୍ଷା, ଧର୍ମାଲୋଚନା, ଶିଶୁ ଓ କିଶୋର ସାହିତ୍ୟ ବହନ କରିଛି ଆପଣଙ୍କ ସୃଜନଶୀଳତାର ପରିଚୟ । ସେଥିପାଇଁ ଆପଣ ଲାଭ କରିଛନ୍ତି ରାଜ୍ୟର ବହୁ ଅନୁଷ୍ଠାନର ସ୍ୱୀକୃତି । କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର, ଉତ୍କଳ ସାହିତ୍ୟ ସମାଜ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରରେ ଆପଣ ହୋଇଛନ୍ତି ସମ୍ମାନିତ । "କେନ୍ଦ୍ରାପଡ଼ା ରତ୍ନ" ଉପାଧିରେ ବିଭୂଷିତ ହେବା ସହିତ ଆକାଶବାଣୀ, କଟକର ହୀରକ ଜୟନ୍ତୀରେ ଲାଭ କରିଛନ୍ତି 'ବାଗ୍ମୀ' ଉପାଧି ।

ହେ ଭୂମିପୁତ୍ର ।

କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ ଆଜି ତା'ର ୫୩ତମ ପ୍ରତିଷ୍ଠା ଦିବସରେ ଆପଣଙ୍କର ଅନନ୍ୟ ସାଧନା ପାଇଁ ଦୀନବନ୍ଧୁ ସାହୁ ସ୍ମୃତି ସମ୍ମାନ-୨୦୧୧ ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେ କରୁଛି । ଆପଣଙ୍କ ଦୀର୍ଘ ନିରାମୟ ଜୀବନ ପାଇଁ ଶ୍ରୀ ଶ୍ରୀ ବଳଦେବଜୀଉଙ୍କ ପାଦପଦ୍ମରେ ଆମର ବିନମ୍ର ପ୍ରାର୍ଥନା ।

*ଆପଣଙ୍କର ବିନୟାବନତ*
କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ ପରିବାର

**ଦୀନବଂଧୁ ସାହୁ ସ୍ମୃତି ସମ୍ମାନ ଓ ପୁରସ୍କାର**
**କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ**




କେନ୍ଦ୍ରାପଡ଼ା ରତ୍ନ

ଧନୁର୍ଜୟ ଚାରିଟେବୁଲ୍ ଟ୍ରଷ୍ଟ, କେନ୍ଦ୍ରାପଡ଼ା




ସାହିତ୍ୟ ରତ୍ନ ଉପାଧି ପ୍ରଦାନ

ସ୍ୱାଗତିକା, ରଜନ ଜୟନ୍ତୀ ଉତ୍ସବ : ଶତାବ୍ଦୀ ଭବନ, କଟକ




ପ୍ରଜ୍ଞା ଭାରତୀ ସମ୍ମାନ
ଅଚ୍ୟୁତ ମହୋତ୍ସବ, ବ୍ରହ୍ମ କ୍ଷେତ୍ର, କଟକ



# ସ୍ୱାଗତିକା

## ରଜତଜୟନ୍ତୀ ସାରସ୍ୱତ ଶିଶିର ସମାରୋହ - ୨୦୧୨

ସାହିତ୍ୟ ସଂଧାନର ହେ ଆଗ୍ନେୟ କୌମାର୍ଯ୍ୟ !
ସାରସ୍ୱତ ପରଂପରାର ହେ ସିଦ୍ଧାନ୍ତ ପୁରୁଷ !
ଧ୍ୱାନ୍ତ-ଚେତକ ସାହିତ୍ୟରଥୀ
ପ୍ରଫେସର୍ ଡକ୍ଟର୍ ବୈଷ୍ଣବଚରଣ ସାମଲ
ଐଶ୍ୱର୍ଯ୍ୟଭାଜନେଷୁ ।

ସୌଷ୍ଠବ ହିଁ ଜୀବନ, ପୁଣି ଜୀବନର ଉତ୍କର୍ଷ ।
ସର୍ବକାଳେ ଶିଳ୍ପ-ସଂଧାନହିଁ ଆପଣଙ୍କ ସାଧନକ୍ରିୟାର ଅଙ୍ଗୀଭୂତ ହୋଇଆସିଛି । କୌଣସି ଇନ୍ଦ୍ରିୟଗୋଚର disurnible ସ୍ଥିତିକୁ ଇନ୍ଦ୍ରିୟାତୀତ imperceptible ସ୍ଥିତିକୁ ରୂପାନ୍ତରକରିବାରେ ଆପଣଙ୍କ ପ୍ରଜ୍ଞାବୋଧିନୀ ଚିନ୍ତନଧାରା ଆପଣଙ୍କୁ ସଂଶୋଧନ କରିଆସିଛି । ପ୍ରକାଶିତ କରିଛି ଆପଣଙ୍କ ଅନ୍ତଃକରଣର ସାରସ୍ୱତ ଅନୁଭବକୁ, ଅନୁଭୂତିକୁ ଓ ଭାବନିଷ୍ଠ ଆଧାନକୁ ।

ଆପାତମଧୁର ଭାଷ୍ୟଦୀପ୍ତ ସାହିତ୍ୟ-ଉପରେ ସମୀକ୍ଷଣ ଲାଗି ତର୍କର ପରିପୂର୍ଣ୍ଣ ଓ ପୂର୍ଣ୍ଣମାଧୁର୍ଯ୍ୟ ଆନୟନ ପରିପ୍ରେକ୍ଷୀରେ ସାହିତ୍ୟର ଆଭୂମ ସୀମାନ୍ତକୁ ଛୁଇଁବାର ଏକନିଷ୍ଠତାରେ ନିଜକୁ ସର୍ବଦା ନିୟୋଜିତ କରିନେବାକୁ ପଡ଼ିଛି ଆପଣଙ୍କୁ । ସଂରଚନା-ସର୍ଜନା ଭାଙ୍ଗର ସଂଭାବରେ ଆପଣ ଯେତିକି ଋଦ୍ଧ, ଆନମ୍ର ଓ ବିଚାରବନ୍ତଭାବେ ବିବେଚିତ, ସ୍ୱୀୟ ଚେତନାରେ ସ୍ୱଭାବତ ଆପଣ ସାରସ୍ୱତ ସମୀକ୍ଷଣ-ଆକାଶରେ ସେତିକି ମୁକ୍ତ ଓ ପ୍ରେରଣାଦୀପ୍ତ । ଏଣୁ ସମୁଜ୍ଜ୍ୱଳ ଏକ ମୁକ୍ତ ବିହଙ୍ଗମ ରୂପେ ସ୍ୱତଃ ପରିଚିତ ହୋଇଯାଆନ୍ତି ଆପଣ ।

ଆପଣଙ୍କ ସାରସ୍ୱତ ସୃଷ୍ଟି-ସମ୍ଭାର ଆମ ବାଣୀ-ଭଣ୍ଡାରକୁ ପରିପୂର୍ଣ୍ଣ କରିଛି, ବିଶେଷତଃ ବିରଳ ସମୀକ୍ଷା-ଧନରେ । ଶତାଧିକ ଗ୍ରନ୍ଥ ମଧ୍ୟରୁ ମୁଖ୍ୟକୃତିଗୁଡ଼ିକ ହେଉଛି : କଳା ସଂସ୍କୃତି ଓ ସାହିତ୍ୟ, ଦୃଷ୍ଟି ଓ ଚିନ୍ତନ, ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଆ ସ୍ମୃତ୍ୟଙ୍କର ଇତିହାସ, ସମାଲୋଚନା : ସ୍ୱର ଓ ସ୍ୱାକ୍ଷର, ଓଡ଼ିଆ ଭାବ୍ୟକବିତାର ଧାରା ଓ ଧାରା, ପ୍ରାଚୀନ ଓଡ଼ିଆ ସାହିତ୍ୟ, ଆଜ ଦେଖିଲେ, ସମୟର ଲିପି (କବିତା) ଇତ୍ୟାଦି..... ଏଇ ସମ୍ଭାବନାମୟ ଉର୍ଜସ୍ୱଳ ସୃଷ୍ଟିରାଜି ମଧ୍ୟରେ ଆପଣ ସାହିତ୍ୟ-ଚିନ୍ତନଙ୍କର ଅଦ୍ଭୁତ ସଂଧାନ ଦେଇଛନ୍ତି, ଯାହାର ସୁଗଭୀର ପ୍ରଭାବ ଚିର ସ୍ୱୀକାର୍ଯ୍ୟ ।

ଏଥିପାଇଁ ଆପଣ ଲାଭକରିଛନ୍ତି ଅନେକ ସମ୍ମାନ : ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର, ଉତ୍କଳସାହିତ୍ୟ ସମାଜ ପୁରସ୍କାର, ଗବେଷଣା ପରିଷଦ ପୁରସ୍କାର, ବିଷୁବମିଳନ ଝଙ୍କାର ପୁରସ୍କାର, ଦୀନକୃଷ୍ଣ ଦାସ ସାରସ୍ୱତ ପୁରସ୍କାର, ନିଖିଳ ଉତ୍କଳ ଦାସ୍ତୀ ପୁରସ୍କାର ସହିତ କେନ୍ଦ୍ରାପଡ଼ା ରତ୍ନ, ସାହିତ୍ୟ ସ୍ୱୟମ୍ଭୂ, କଟକ ବେତାର କେନ୍ଦ୍ର ହୀରକ ଜୟନ୍ତୀ ସମ୍ମାନ, ସାରଳା ସଂସଦ ମାୟାଧର ମାନସିଂହ ସମ୍ମାନ, ଶିକ୍ଷକ ଗୌରବ ଆଦି ନିରୁପାଧି ସମ୍ମାନରେ ଆପଣ ଭୂଷିତ ହୋଇଛନ୍ତି ।

ଏଣୁ ଏହି ସୌରଭ-ସ୍ନିଗ୍ଧ ଉର୍ଶୋଜ୍ଜ୍ୱଳ ସାରସ୍ୱତ ରଜତଜୟନ୍ତୀ ଶିଶିର ସମାରୋହରେ ସାହିତ୍ୟିକ ଅଭିନିବେଶର ସ୍ୱୀକୃତି ସ୍ୱରୂପ ଆଜିର ଏ ମାହେନ୍ଦ୍ର କ୍ଷଣରେ ସ୍ୱାଗତିକା ଆପଣଙ୍କୁ 'ସାହିତ୍ୟ ରତ୍ନ' Gem of Literatur[e] ସମ୍ମାନରେ ବିଭୂଷିତକରି ଆପଣାକୁ ଉଦ୍ଦୀପ୍ତ ମଣୁଛି ।

27/12/12

| ସଭାପତି | ଉପଦେଷ୍ଟା | କାର୍ଯ୍ୟକାରୀ ସଭାପତି | ମୁଖ୍ୟ ଅତିଥି | ପ୍ରତିଷ୍ଠାତା ସଂପାଦକ |
| --- | --- | --- | --- | --- |
| ଡ. [illegible] | [illegible] | ଶ୍ରୀ [illegible] | ଡ. [illegible] | ଶ୍ରୀ [illegible] |

[illegible]

ସ୍ୱାଗତିକା ସାହିତ୍ୟ ରତ୍ନ ସମ୍ମାନ
ରଜତ ଜୟନ୍ତୀ, ଶିଶିର ସମାରୋହ



ଗଣକବି ସାହିତ୍ୟ ସଂସଦର ବସନ୍ତୋତ୍ସବ ଓ ସାରସ୍ୱତ ସମ୍ମାନ ସମାରୋହ

୨୦୦୫-୦୬

ଶତାବ୍ଦୀ ଭବନ, କଟକ

ଡଃ/ଶ୍ରୀ/ଶ୍ରୀମତୀ ବୈଷ୍ଣବ ଚରଣ ସାମଲ.......

ଆପଣ ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ ଗବେଷକ, ସମାଲୋଚକ ଓ ସୃଜନଶୀଳ ସ୍ରଷ୍ଟା ଭାବରେ ସୁପ୍ରତିଷ୍ଠିତ । ଗଣକବି ବୈଷ୍ଣବ ପାଣିଙ୍କ ସାହିତ୍ୟ ପ୍ରତି ଆପଣଙ୍କ ଅନୁରାଗ ନିବିଡ଼ । ଆପଣଙ୍କ ସାରସ୍ୱତ ପ୍ରତିଭାକୁ ସମ୍ମାନ ଜଣାଇ ଆମ ଅନୁଷ୍ଠାନ ପକ୍ଷରୁ ଆପଣଙ୍କୁ ସମ୍ମାନିତ କରାଯିବା ସହ ଆପଣଙ୍କ ଦୀର୍ଘ ନିରାମୟ ଜୀବନ କାମନା କରୁଅଛୁ ।

॥ ଇତି ॥

ଆପଣଙ୍କର ଗୁଣମୁଗ୍ଧ

ତା ୨୫.୦୩.୨୦୦୬ରିଖ<br>ଚାୟାଁପାଳ, ମାହାଙ୍ଗା,<br>କଟକ-୭୫୪ ୨୦୪

ଗଣକବି ସାହିତ୍ୟ ସଂସଦ<br>ବାସନ୍ତୀ ସାଂସ୍କୃତିକ ଅନୁଷ୍ଠାନ ଓ<br>ବାସନ୍ତୀ ଯୁବ ସଂସଦର କର୍ମକର୍ତ୍ତାବୃନ୍ଦ

**ଗଣକବି ସାହିତ୍ୟ ସମ୍ମାନ**

**ଚାୟାଁପାଳ, ମାହାଙ୍ଗା**




ପଦ୍ମଭୂଷଣ ଗୋପୀନାଥ ମହାନ୍ତି ସାହିତ୍ୟ ସମ୍ମାନ
ସୂଚନା ଭବନ, ଭୁବନେଶ୍ୱର




ପଣ୍ଡିତ ଗୋଦାବରୀଶ ସମ୍ମାନ

ଭୁବନେଶ୍ୱର


ଦୀନକୃଷ୍ଣ ସ୍ମୃତି-ପରିଷଦ

ମୁଣ୍ଡତୁଣିଆ ଜଳେଶ୍ୱର

ଭକ୍ତ କବି ଦୀନକୃଷ୍ଣ ସମ୍ମାନ

ପ୍ରଫେସର ବୈଷ୍ଣବ ଚରଣ ସାମଲ

ମହୋଦୟ.. ମାନନୀୟେଷୁ

ମହାଶୟ

ଆପଣ ସମକାଳୀନ ଓଡିଆ ଭାଷା-ସାହିତ୍ୟ ଓ ସଂସ୍କୃତିର ଅନ୍ୟତମ ମୂର୍ଦ୍ଧନ୍ୟ ବିଶେଷଜ୍ଞ ଓ ନିର୍ଭୁଲ ମାର୍ଗଦର୍ଶକ। ଏକାଧାରରେ ଜଣେ ବାଗ୍ମୀ, ଛାତ୍ରବତ୍ସଳ, ସୁଦକ୍ଷ ଅଧ୍ୟାପକ, ଅଗ୍ରଗଣ୍ୟ 'ସାହିତ୍ୟ ସ୍ରଷ୍ଟା, ସମୀକ୍ଷକ, ଗବେଷକ ଏବଂ ଗବେଷଣାଦିଗଦର୍ଶକ ଭାବେ ଆପଣଙ୍କ ପ୍ରଜ୍ଞାପ୍ରୋଜ୍ଜ୍ୱଳ ବ୍ୟକ୍ତିତ୍ୱ ବହୁ ରଙ୍ଗ ବିଭାରେ ବିଭୂଷିତ। ବିଶେଷତଃ ଆପଣଙ୍କ ସାର୍ବଜନୀନ ସଂପ୍ରୀତି, ସଂପର୍କ, ମମତା, ସହୃଦୟତା, ଉଦାର ମାନବିକତା, ନିଷ୍କପଟତା ଏବଂ ସମସ୍ତଙ୍କୁ ଆପଣେଇ ନେବାର ବ୍ୟକ୍ତିତ୍ୱ ଯୋଗୁଁ ଆପଣ ଜ୍ୟେଷ୍ଠ-କନିଷ୍ଠ ସଭିଙ୍କ ହୃଦୟରେ ଶ୍ରଦ୍ଧାଭିଷିକ୍ତ ଆସନରେ ଆସୀନ। ଆକଳନହୀନ ଆପଣଙ୍କର ସୁବିସ୍ତୃତ ସୃଜନର ପରିଧି ପ୍ରାଚୀନରୁ ଆଧୁନିକ ସାହିତ୍ୟ ଯାଏଁ ସର୍ବତ୍ର ପରିବ୍ୟାପ୍ତ। ସାଧନାର ଶିଖର ଛୁଇଁଥିବା ଅନନ୍ୟ ଆରୋହୀ ଆପଣ, ଅନ୍ୟ ଅନେକଙ୍କୁ ଉପରକୁ ଉଠିବାର କଳା କୌଶଳ ଶିଖେଇବା ପାଇଁ ସତତ ଚେଷ୍ଟିତ, ସଦାବ୍ୟଗ୍ର ଓ କୁଣ୍ଠାମୁକ୍ତ।

ଓଡିଆ ଭାଷା ସାହିତ୍ୟରେ ଜଣେ କ୍ରାନ୍ତିଦର୍ଶୀ ସମାଲୋଚକ ଓ ଗବେଷକ ଭାବରେ ଆପଣ ଯେତିକି ବରଣୀୟ, ଜଣେ ସଚ୍ଚୋଟ, ନିରହଙ୍କାର, ସାଧାସିଧା ମଣିଷ ଭାବରେ ତତୋଧିକ ଅନୁକରଣୀୟ।

ଲକ୍ଷ୍ୟପଥରେ ପ୍ରାୟ ପ୍ରତିଟି କ୍ଷେତ୍ରରେ ବିଜୟୀ ହୋଇଥିବା ସାରସ୍ୱତ ସଂଯାତ୍ରୀ ଆପଣଙ୍କ ପ୍ରଜ୍ଞା ଓ ଆକଳନହୀନ ପ୍ରତିଭାକୁ ସମ୍ମାନ ଜଣାଇ ଦୀନକୃଷ୍ଣ ସ୍ମୃତି ପରିଷଦ, ଜଳେଶ୍ୱର ପକ୍ଷରୁ ଜଳେଶ୍ୱର ରୋଟାରୀ କ୍ଲବ୍ ସହଯୋଗରେ ଆଜିର ଏହି ଷଡ ବିଂଶତିତମ ସମାବର୍ତ୍ତନ ଉତ୍ସବରେ ଆପଣଙ୍କୁ ଭକ୍ତକବି ଦୀନକୃଷ୍ଣ ପୁରସ୍କାର ପ୍ରଦାନ ପୂର୍ବକ ଆପଣଙ୍କର ନିରାମୟ ସାଧନାପୁଷ୍ଟ ଜୀବନ ସ୍ରୋତ କାମନା କରୁଛୁ।

ସଭାପତି ମୁଖ୍ୟଅତିଥି ସଂପାଦକ

ଭକ୍ତକବି ଦୀନକୃଷ୍ଣ ସମ୍ମାନ

ଜଳେଶ୍ୱର



ଆକାଶବାଣୀ ଅବସର ବିନୋଦନ କେନ୍ଦ୍ର

ଆକାଶବାଣୀ କଟକ

# ହୀରକ ଜୟନ୍ତୀ

୧୯୪୮-୨୦୦୭

# ମାନପତ୍ର

**କୀର୍ତ୍ତିମାନ କଥାକାର, ସ୍ମରଣୀୟ ସମାଲୋଚକ, କର୍ମଶୀଳ କବି, ଗରୀୟାନ୍ ଗବେଷକ ଏବଂ ଅନୁରାଗୀ ଆଲୋଚକ ଶ୍ରୀଯୁକ୍ତ ବୈଷ୍ଣବ ଚରଣ ସାମଲ ମହୋଦୟ.**

ମହାଶୟ,

କଳ୍ପନା, ବୁଦ୍ଧି, ଗବେଷଣା, ଶୈଳୀ ଓ ଭାଷାବିନ୍ୟାସର ଅପୂର୍ବ ସମନ୍ୱୟରେ ଆପଣ ସୃଷ୍ଟି କରିଛନ୍ତି ଅନେକ ସମାଲୋଚନା, ରମ୍ୟରଚନା, କବିତା, ଗଳ୍ପ ଏବଂ ଶିଶୁ ସାହିତ୍ୟ । ମନନ ପ୍ରସୂତ ବିପୁଳ ଅଭିଜ୍ଞତା ଏବଂ ମୌଳିକ ଚେତନା ଆପଣଙ୍କ ସୃଜନର ସୀମାରେଖାକୁ ବ୍ୟାପ୍ତ କରିବା ସହ ପ୍ରଦାନ କରିଛି ସଫଳତାର ଜୟମାଲ୍ୟ । ଆପଣ ଅନେକ ଦିନରୁ ଆକାଶବାଣୀ, କଟକ ସହିତ ଜଡ଼ିତ ଅଛନ୍ତି ଆଲୋଚକ, ଗାଳ୍ପିକ ଏବଂ କବି ଭାବରେ । ଅନୁଭବସିଦ୍ଧ କଥା ଆଉ ସରଳ ଶବ୍ଦ ସଂଯୋଜନା ଆପଣଙ୍କୁ ନିକଟତର କରିଛି ଶ୍ରୋତାମାନଙ୍କ ସହ ।

ହେ ବରେଣ୍ୟ ସାରସ୍ୱତ ସାଧକ ! ଆକାଶବାଣୀ, କଟକର ସ୍ୱନକ୍ଷତ୍ର ଦିବସ ତଥା ହୀରକ ଜୟନ୍ତୀର ସମାପନୀ ସମାରୋହ ଅବସରରେ ଆମେ ଆପଣଙ୍କୁ ସମ୍ମାନ ଜଣାଇବା ସହ ନିରାପଦ ଜୀବନ ଏବଂ ସୁଖମୟ ଭବିଷ୍ୟତ କାମନା କରୁଛୁ ।

ଆକାଶବାଣୀ ପରିବାର ପକ୍ଷରୁ

କେନ୍ଦ୍ର ନିର୍ଦ୍ଦେଶକ ତଥା ସଭାପତି

ଆକାଶବାଣୀ ଅବସର ବିନୋଦନ କେନ୍ଦ୍ର

ଆକାଶବାଣୀ କଟକ

କଟକ

୨୮.୦୧.୨୦୦୮

ହୀରକ ଜୟନ୍ତୀ ସମ୍ମାନ

ଆକାଶବାଣୀ, କଟକ

ଗୋପୀନାଥ ମହାନ୍ତି ସାହିତ୍ୟ ସମ୍ମାନ - ୨୦୧୩

# ନର୍ମଦା ଚ୍ୟାରିଟେବଲ ଟ୍ରଷ୍ଟ

ଭୁବନେଶ୍ୱର, ଓଡ଼ିଶା



## ଡକ୍ଟର ବୈଷ୍ଣବ ଚରଣ ସାମଲ

ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଫେସର

ହେ ମହାଶୟ !

ଓଡ଼ିଶାର କେନ୍ଦ୍ରାପଡ଼ା ଜିଲ୍ଲାର ଗରିଗାଁ ଭଳି ଏକ ନିପଟ ମଫସଲରେ ଜନ୍ମଗ୍ରହଣ କରି ଆପଣ ନିଜର ଅସାମାନ୍ୟ ମେଧା ଏବଂ ଶାଣିତ ପ୍ରତିଭା ବଳରେ ବିଶ୍ୱଭାରତୀ, ଶାନ୍ତିନିକେତନର ପ୍ରଫେସର ପଦବୀରେ ଅବସ୍ଥାପିତ ହୋଇ ଓଡ଼ିଆ ସାହିତ୍ୟକୁ ମହିମାମଣ୍ଡିତ ଓ ପରିପୁଷ୍ଟ କରିବାର ଚେଷ୍ଟା ସମସ୍ତ ଉତ୍କଳୀୟଙ୍କ ପାଇଁ ଏହା ନିଃସନ୍ଦେହରେ ଗର୍ବ ଏବଂ **ଗୌରବର ବିଷୟ।** ଆପଣଙ୍କ ପ୍ରଜ୍ଞା-ପାଟବର ସାଦର ସ୍ୱୀକୃତି ସ୍ୱରୂପ ଆପଣଙ୍କୁ ୨୦୧୩ ମସିହାର **"ଗୋପୀନାଥ ମହାନ୍ତି ସାହିତ୍ୟ ସମ୍ମାନ"**ରେ ସମ୍ମାନିତ କରି ଆମେ ଆଜି ଅତ୍ୟନ୍ତ ଆନନ୍ଦିତ।

ହେ ମହୋଦୟ !

**ଆପଣଙ୍କ ଜ୍ଞାନ-ଗଙ୍ଗାର ପବିତ୍ର ଧାରା କେବଳ ଉତ୍କଳ ବା ବଙ୍ଗଦେଶକୁ ନୁହେଁ, ବରଂ ସମଗ୍ର ଭାରତବର୍ଷକୁ ପାବିତ ଓ ପ୍ଲାବିତ କରୁଛି । ଆପଣ ସମାଲୋଚନା ସାହିତ୍ୟ, ରମ୍ୟରଚନା, ପ୍ରବନ୍ଧ, କବିତା, ଗଳ୍ପ, ସମ୍ପାଦନା, ଶିଶୁସାହିତ୍ୟ ଓ ଧର୍ମସାହିତ୍ୟ ସୃଷ୍ଟିର ଏକ ଅବିନେଶ୍ୱର ସ୍ରଷ୍ଟା ଯାହା ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛି।**

**ଆପଣଙ୍କ ଜ୍ଞାନ-ଯଜ୍ଞର ପାବନ ପ୍ରଭାବ ସମସ୍ତ ସଂସାରକୁ ପ୍ରଭାବିତ କରୁ ଆଜିର ଏ ମାହେନ୍ଦ୍ର ମୁହୂର୍ତ୍ତରେ ଏହାହିଁ କାମନା।**

**ଆପଣଙ୍କ ପ୍ରଜ୍ଞାମୁଗ୍ଧ।**

ଆବାହକ

ଭୁବନେଶ୍ୱର ଠାରେ ନର୍ମଦା ଚାରିଟେବଲ ଟ୍ରଷ୍ଟ ଦ୍ୱାରା ପ୍ରଦତ୍ତ
ଗୋପୀନାଥ ମହାନ୍ତି ସାହିତ୍ୟ ସମ୍ମାନ-୨୦୧୩ ଉପଲକ୍ଷେ ମାନପତ୍ର



ପତିତପାବନ ସାହିତ୍ୟ ସଂସଦ

କଣ୍ଡେଇ, ଦେବଗଡ଼

ସମ୍ମାନନୀୟ ଡଃ ବୈଷ୍ଣବ ଚରଣ ସାମଲ,
ଶାନ୍ତିବିହାର, ଅପର୍ଣ୍ଣା ନଗର, କଟକ ଉଦାରହୃଦୟେଷୁ

ମହାଶୟ,

ସୁନାମଧନ୍ୟ ପ୍ରଫେସର, ଲବ୍ଧପ୍ରତିଷ୍ଠ ସାରସ୍ୱତ ସାଧକ, ଦୂରଦୃଷ୍ଟି ସଂପନ୍ନ ଗବେଷକ ଓ ଲୋକପ୍ରିୟ ବାଗ୍ମୀ ଭାବରେ ଓଡ଼ିଶାର ଭାଷା, ସାହିତ୍ୟ, ଧର୍ମ ଓ ସଂସ୍କୃତିକୁ ଆପଣଙ୍କର ଅବଦାନ ଉଲ୍ଲେଖନୀୟ। ଓଡ଼ିଆ ଭାଷା ସାହିତ୍ୟର କବିତା, ଗଳ୍ପ, ରମ୍ୟରଚନା ଓ ପ୍ରବନ୍ଧ ସମାଲୋଚନା ପ୍ରଭୃତି ବିଭାଗରେ ଆପଣ ଅଶୀରୁ ଊର୍ଦ୍ଧ୍ୱ ଗ୍ରନ୍ଥ ରଚନା ତଥା ସଂପାଦନା କରି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି। ଫକୀର ମୋହନ ମହାବିଦ୍ୟାଳୟ, ରେଭେନ୍ସା ମହାବିଦ୍ୟାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀ, ଶାନ୍ତିନିକେତନରେ ଆପଣ ଜଣେ ଆଦର୍ଶ, ଜ୍ଞାନୀ ଓ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ କୃତୀତ୍ୱ ଅର୍ଜନ କରିଛନ୍ତି। ଆପଣଙ୍କ ତତ୍ତ୍ୱାବଧାନ ଓ ଦିଗ୍‌ଦର୍ଶନରେ ଷାଠିଏରୁ ଊର୍ଦ୍ଧ୍ୱ ଗବେଷକ ଓ ଗବେଷିକା ଉପାଧ୍ୟୁତ୍ତର ଗବେଷଣା ସନ୍ଦର୍ଭ ରଚନା ପୂର୍ବକ ଡି.ଲିଟ୍ ଉପାଧି ପ୍ରାପ୍ତ ହୋଇଛନ୍ତି। ରାଜ୍ୟସ୍ତରୀୟ, ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଶତାଧିକ ଆଲୋଚନା ଚକ୍ରରେ ଅଂଶଗ୍ରହଣ କରି ଉଲ୍ଲେଖଯୋଗ୍ୟ ପାରଦର୍ଶିତା ପ୍ରଦର୍ଶନ କରିପାରିଛନ୍ତି। ସାରସ୍ୱତ ସାଧନା ନିମିତ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ, ଉତ୍କଳ ସାହିତ୍ୟ ସମାଜ, ବିଷୁବମିଳନ, ସହକାର, ଏଷଣା ସମେତ ବହୁ ପ୍ରତିଷ୍ଠିତ ଅନୁଷ୍ଠାନ ଆପଣଙ୍କୁ ସମ୍ମାନୀତ ଓ ପୁରସ୍କୃତ କରି ଗୌରବାନ୍ୱିତ କରିଛନ୍ତି।

ପତିତପାବନ ସାହିତ୍ୟ ସଂସଦର ତୃତୀୟ ବାର୍ଷିକ ମହୋତ୍ସବ ୨୦୦୯ ଅବସରରେ ଆପଣଙ୍କୁ **ରାଜ୍ୟସ୍ତରୀୟ ବାମଣ୍ଡା ସାରସ୍ୱତ ସମ୍ମାନ** ପ୍ରଦାନ ପୂର୍ବକ ଆପଣଙ୍କର ଦୀର୍ଘ ସାଧନାମୟ ଜୀବନ କାମନା କରୁଛି।

| ସଭାପତି | ମୁଖ୍ୟ ଅତିଥି | ସମ୍ପାଦକ |
|---|---|---|

ତା.୦୪.୧୦.୨୦୦୯ ରିଖ

## ରାଜ୍ୟସ୍ତରୀୟ ବାମଣ୍ଡା ସାରସ୍ୱତ ସମ୍ମାନ

ଦେବଗଡ଼




**ସଦାଶିବ ମିଶ୍ର ସ୍ମୃତି ସମ୍ମାନ**

**ଉତ୍କଳ ପାଠକ ସଂସଦ, କଟକ**

# ସାରଳା ସାହିତ୍ୟ ସଂସଦ

## ମାନସିଂହ ସମ୍ମାନ – ୨୦୧୨

ପ୍ରଖ୍ୟାତ ସାହିତ୍ୟ ସମାଲୋଚକ ପ୍ରଫେସର ଡଃ ବୈଷ୍ଣବ ଚରଣ ସାମଲ ମାନନୀୟେଷୁ !

ମହାଶୟ,

ସାଂପ୍ରତିକ ଓଡ଼ିଆ ସାହିତ୍ୟ ଆକାଶରେ ଆପଣ ଜଣେ ଉଜ୍ଜ୍ୱଳ ନକ୍ଷତ୍ର । ସମାଲୋଚନା, ପ୍ରବନ୍ଧ, ଲଳିତ ନିବନ୍ଧ, ଗଳ୍ପ, କବିତା, ଶିଶୁ ସାହିତ୍ୟ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାବରେ ସାଧନା କରି ସିଦ୍ଧି ଲାଭ କରିଥିବା ସାଧକ ଆପଣ । ଦୀର୍ଘ ଚାରି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ଆପଣଙ୍କ ଲେଖନୀ ନିସୃତ – ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ, ଓଡ଼ିଆ ଗଳ୍ପ ଉନ୍ମେଷ ଓ ଉତ୍ତରଣ, ଓଡ଼ିଆ କାବ୍ୟ କବିତାର ଧରା ଓ ଧାରା, ସ୍ୱର ଓ ସ୍ୱାକ୍ଷର, ଗଣକବି ସାହିତ୍ୟ ସମୀକ୍ଷା, ଭିନ୍ନ ଦୃଷ୍ଟି ଭିନ୍ନ ଇଲାକା, ପ୍ରଭୃତି ଗ୍ରନ୍ଥ ଆପଣଙ୍କ ସୃଜନୀ ପ୍ରତିଭାର ବଳିଷ୍ଠ ସ୍ୱାକ୍ଷର । ଆପଣଙ୍କ ପ୍ରବନ୍ଧ ଓ ସମାଲୋଚନାର ଶୈଳୀ ସ୍ୱତନ୍ତ୍ର ଓ ଅଭିନବ । ଶାଣିତ ଓ ନିର୍ଭୀକ ବିଚାର ଧାରାର ଆଲୋଚନା ପାଇଁ ଆମ ସାହିତ୍ୟର ଶ୍ରେଷ୍ଠ ସମାଲୋଚକ ଭାବେ ସମ୍ମାନିତ ଆପଣ । ଆପଣ ଜଣେ ବିଶିଷ୍ଟ ସ୍ତମ୍ଭକାର ଓ ପ୍ରଚଣ୍ଡ ବାଗ୍ମୀ । ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ଆପଣଙ୍କ ପ୍ରଜ୍ଞା ଓ ପାଣ୍ଡିତ୍ୟ ଅସାଧାରଣ । ବିଶ୍ୱଭାରତୀ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ସାହିତ୍ୟ ବିଭାଗର ମୁଖ୍ୟ ପଦ ମଣ୍ଡନ କରି ନିଜର ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ଆପଣ । ସର୍ବୋପରି ଜଣେ ସ୍ନେହୀ, ବରଦୀ ଓ ଆଦର୍ଶ ଛାତ୍ର ବତ୍ସଳ ଅଧ୍ୟାପକ ଭାବରେ ସହୁରି ମୁଖରେ ଆପଣଙ୍କର ଅଜସ୍ର ପ୍ରଶଂସା ।

*ହେ ବରେଣ୍ୟ ସାରସ୍ୱତ ସ୍ରଷ୍ଟା !*

ଆପଣଙ୍କ ଜୀବନବ୍ୟାପୀ ସାଧନାର ସ୍ୱୀକୃତି ସ୍ୱରୂପ ଏହି ଶୁଭ ଲଗ୍ନରେ ଆମେ ଆପଣଙ୍କୁ ପ୍ରଖ୍ୟାତ ସାରସ୍ୱତ ସ୍ରଷ୍ଟା ଡକ୍ଟର ମାୟାଧର ମାନସିଂହଙ୍କ ସ୍ମୃତିରେ ଅର୍ପିତ ମର୍ଯ୍ୟାଦାଜନକ 'ମାନସିଂହ ସମ୍ମାନ'ରେ ବିମଣ୍ଡିତ କରିବା ସହିତ ଆପଣଙ୍କ ଚଲାପଥ କୁସୁମିତ ହେଉ, ଏହାହିଁ ବାଗ୍‌ଦେବୀ ଶାରଳାଙ୍କ ପାଦପଦ୍ମରେ ପ୍ରାର୍ଥନା କରୁଛୁ ।

ସାରଳା ଭବନ, କଟକ<br>
ତା ୧୧-୧୧-୨୦୧୨ରିଖ

ଇତି<br>
ଆପଣଙ୍କର ଗୁଣମୁଗ୍ଧ<br>
ସାରଳା ସାହିତ୍ୟ ସଂସଦ

ସଭାପତି

ପ୍ରତିଷ୍ଠାତା

ମାନସିଂହ ସମ୍ମାନ

ସାରଳା ସାହିତ୍ୟ ସଂସଦ, କଟକ




ଜନସୁଧା ସାରସ୍ୱତ ସମ୍ବର୍ଦ୍ଧନା – ୨୦୧୨

# ପୁରାତନ ଛାତ୍ର ସଂସଦ , ଇନ୍ଦୁପୁର ଉଚ୍ଚ ବିଦ୍ୟାଳୟ ।

ଇନ୍ଦୁପୁର, କେନ୍ଦ୍ରାପଡା

## ମାନପତ୍ର



**ପ୍ରଫେସର ବୈଷ୍ଣବଚରଣ ସାମଲ**

ତାଳିଗାଁ, ଇନ୍ଦୁପୁର, କେନ୍ଦ୍ରାପଡା

ମାନନୀୟେଷୁ,

ଇନ୍ଦୁପୁର ଉଚ୍ଚବିଦ୍ୟାଳୟର ପୁରାତନ ଛାତ୍ରମାନଙ୍କ ମଧ୍ୟରୁ ଆପଣ ଜଣେ ବର୍ଷୀୟାନ ବିଦ୍ୱାଣି । ଆପଣଙ୍କ ଛାତ୍ର ଓ ଅଧ୍ୟାପକ ଚାକିରୀ ଜୀବନର ବିଚିତ୍ର ବର୍ଣ୍ଣା ଅନୁଭୂତିରେ ଓଡିଆଭାଷା ଓ ସାହିତ୍ୟ ବହୁଭାବରେ ବିମଣ୍ଡିତ ଓ ବିକଶିତ । ଓଡିଆ ଭାଷାସାହିତ୍ୟ ର ଅଧ୍ୟାପକ ଓ ପ୍ରାଧ୍ୟାପକ ଭାବରେ ଆପଣଙ୍କ ଜୀବନଜିଜ୍ଞାସା ଓ ସାମାଜିକ ସମୀକ୍ଷା ଯେଉଁ ତାତ୍ତ୍ୱିକ ବିଭବରେ ବିମୋହିତ ହେଉଥିଲା ତାହାର ପ୍ରାୟୋଗିକ ପରୀକ୍ଷା ଫକୀର ମୋହନ ମହାବିଦ୍ୟାଳୟ, ରେଭେନ୍ସା ମହାବିଦ୍ୟାଳୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ତଥା ବିଶ୍ୱଭାରତୀ ବିଶ୍ୱ ବିଦ୍ୟାଳୟ ଶାନ୍ତିନିକେତନରେ ପ୍ରମାଣିତ- ଏହା ଆପଣଙ୍କ ତ୍ୟାଗନିଷ୍ଠ ବ୍ୟକ୍ତିତ୍ୱର ଅନ୍ୟତମ ବୈଶିଷ୍ଟ୍ୟ ।

ହେ ସାରସ୍ୱତ ସାର୍ଥକ ସାରଥୀ ..........ନିରଳସ ଜୀବନର ସ୍ୱର୍ଣ୍ଣିମ ଅଧ୍ୟାୟରେ ଆପଣ ପ୍ରବନ୍ଧ, ଗଳ୍ପ, କବିତା ତଥା ସମାଲୋଚନା କ୍ଷେତ୍ରରେ ଲେଖନୀ ଚାଳନା କରି ଶ୍ରୀ ଓ ସମୃଦ୍ଧିର ଅଧିକାରୀ ହୋଇଛନ୍ତି । ସେହି ଅମର କୃତିପାଇଁ ଆପଣ ସମ୍ବର୍ଦ୍ଧିତ ହୋଇଛନ୍ତି-"ଓଡିଆ ସାହିତ୍ୟ ଏକାଡେମୀ ,ଉତ୍କଳ ସାହିତ୍ୟ ସମାଜ , ଗବେଷଣା ପରିଷଦ , ଦୀନକୃଷ୍ଣ ସାହିତ୍ୟ ପରିଷଦ ଓ ଚିନ୍ତାମଣି ମହାନ୍ତି ସାହିତ୍ୟ ପରିଷଦ ଦ୍ୱାରା । ଜୀବନ ବ୍ୟାପୀ ସାଧନା ଓ ନିଷ୍ଠା ଆପଣଙ୍କୁ ମହିମା ବିମଣ୍ଡିତ କରିଛି " କେନ୍ଦ୍ରାପଡା ରତ୍ନ" ଓ " ସାହିତ୍ୟ ସ୍ୱୟମ୍ଭୁ" ଉପାଧି ପ୍ରଦାନ କରି । ଉଭୟ ରାଜ୍ୟ ଓ କେନ୍ଦ୍ର ସାହିତ୍ୟ ଏକାଡେମୀ , ଜ୍ଞାନପୀଠ, ସରସ୍ୱତୀ ସମ୍ମାନପ୍ରଦାନ ଚୟନ କମିଟିର ସଦସ୍ୟ ଭାବେ ଆପଣଙ୍କ ଦୀର୍ଘବର୍ଷର ସଂପୃକ୍ତି ଏକ ଉଲ୍ଲେଖନୀୟ ଇତିବୃତ ।

ହେ ଦରଦୀ ବନ୍ଧୁ...............ଦିଗହରା ମଣିଷର ଆକୁଳ ଆର୍ତିଅବା ସର୍ବହରା ମଣିଷ ର ସନ୍ତାପିତ ଶୋକକୁ ଆପଣ ନୀଳକଣ୍ଠପରି ଆପଣେଇ ନେଇ ଆଶ୍ୱାସନା ଦିଅନ୍ତି ପ୍ରତି ପ୍ରଭାତର " ଆଜିର ଅନୁଚିନ୍ତା" ରେ (ଆକାଶ ବାଣୀ ,କଟକ) । ସଂଜୟ ଉବାଚ, ଇଛନ୍ତି ଦାମ୍ଭିକେ, କହିବାକୁ ଲାଜ ଆଦି - ଆଜିର ସମାଜ ସଜାଡିବାକୁ ଗୋଟିଏ ଗୋଟିଏ ସାର୍ଥକ ପ୍ରୟାସ । ଗଣକବି ଗୋପାଳଦାସ ଗ୍ରନ୍ଥାବଳୀ, ମହାପୁରୁଷ ହାଡିଦାସ ଗ୍ରନ୍ଥାବଳୀ, ମହାପୁରୁଷ ବାହୁଡାଦାସ ରଚନାବଳୀ ଓ ପଲ୍ଲୀ କବିନନ୍ଦକିଶୋର ଗ୍ରନ୍ଥାବଳୀ ର ସଫଳ ସଂପାଦନା କାଳେ କାଳେ ଆପଣଙ୍କ ଅବିସ୍ମରଣୀୟ ଇସ୍ତାହାର ହୋଇରହିବ ।

ଆଜିର ଏହି ପବିତ୍ର ଦିବସରେ ଆପଣଙ୍କ ଅବଶିଷ୍ଟ ଜୀବନ ସୁଖମୟ ହେଉ ଏବଂ ଆପଣଙ୍କ ମୁକ୍ତ ବିଚାରଧାରାରେ ଆମ୍ଭେ ମାନେ ଆହୁରି ସ୍ୱପ୍ନମୟ ହେଉ- ଏହାହିଁ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ନିକଟରେ କାମନା ।

*ଆପଣଙ୍କ ଗୁଣ ମୁଗ୍ଧ*

ପୁରାତନ ଛାତ୍ର ସଂସଦ
ଇନ୍ଦୁପୁର ଉଚ୍ଚବିଦ୍ୟାଳୟ
ଇନ୍ଦୁପୁର, କେନ୍ଦ୍ରାପଡା

ଶ୍ରମିକ ଦିବସ
ତା୧/୦୫/୨୦୧୨ରିଖ

**ପୁରାତନ ଛାତ୍ର ସଂସଦ ସମ୍ମାନ**

**ଇନ୍ଦୁପୁର, କେନ୍ଦ୍ରାପଡ଼ା**




**ଶିକ୍ଷକ ଗୌରବ ସମ୍ମାନ**

**ଫକୀର ମୋହନ ମହାବିଦ୍ୟାଳୟ**

## ରାଧାନାଥ ପାଠାଗାର, ସୋର, ବାଲେଶ୍ୱର



**କବିବର ରାଧାନାଥ ସମ୍ମାନ - ୨୦୦୪**

ପ୍ରଫେସର ବୈଷ୍ଣବ ଚରଣ ସାମଲ, ମହୋଦୟ....!!

ଶ୍ରୀମନ୍ ମହାଶୟ,

ଆଧୁନିକ ସାହିତ୍ୟର ଜଣେ ଶାନ୍ତଧର୍ମୀ ବିଶ୍ଳେଷକ ଭାବେ ଆପଣଙ୍କ ସାରସ୍ୱତ ସଚେଳ ତପସ୍ୟା ଅନନ୍ୟ । ବୁଦ୍ଧିଦୀପ୍ତ ଅନ୍ତର୍ଦୃଷ୍ଟି, ସାବଲୀଳ ଭାଷା ଓ ଭାବର ଉଦାର ସମନ୍ୱୟ ଆପଣଙ୍କ ପ୍ରକାଶ ଶୈଳୀର ସ୍ୱକୀୟ ବୈଶିଷ୍ଟ୍ୟ । ଉଭୟ କାବ୍ୟ ଓ ଗଦ୍ୟସାହିତ୍ୟର ଜଣେ ମୌଳିକ ସ୍ରଷ୍ଟା ତଥା ବଳିଷ୍ଠ ସମୀକ୍ଷକ ଭାବେ ଆପଣଙ୍କ ଅନନ୍ୟ ଅବଦାନ ଆମ ସାହିତ୍ୟର ସମ୍ଭ୍ରାନ୍ତ ବିଭବ ।

ସଂସ୍କାରଧର୍ମୀ [illegible] ଅଧ୍ୟାତ୍ମ, ସଂସ୍କୃତି ଏବଂ ରାଷ୍ଟ୍ରଚେତନାର ବିଶ୍ଳେଷଣୀ ଜୀବନ [illegible] ଆପଣଙ୍କୁ କେବଳ ସାମ୍ପ୍ରତିକ କାଳର ଜଣେ କୀର୍ତ୍ତିମାନ ସାହିତ୍ୟିକ ଭାବେ ନୁହେଁ, [illegible] ଆର୍ଷ ପରମ୍ପରାର ଜଣେ ତପୋନିଷ୍ଠ ସାଧକର କାନ୍ତୋଜ୍ଜ୍ୱଳ ଗୌରବ ମଧ୍ୟ ପ୍ରଦାନ କରିଛି ।

ମହାତ୍ମନ୍,

ଆଧୁନିକ ଓଡ଼ିଆ ଭାଷା ସାହିତ୍ୟର ଅନ୍ୟତମ ପ୍ରାଣ ପ୍ରତିଷ୍ଠାତା [illegible] ରାଧାନାଥଙ୍କ ୯୬ତମ ଶ୍ରାଦ୍ଧ ବାର୍ଷିକୀ ପାଳନ ଅବସରରେ ଆପଣଙ୍କୁ "କବିବର ରାଧାନାଥ ସମ୍ମାନ -୨୦୦୪", [illegible] ବିଭୂଷିତ କରି ଆମେ ଗର୍ବିତ ।

ପରମ କାରୁଣିକ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା, ଓଡ଼ିଆ ଭାଷା ସାହିତ୍ୟର ଚେତିକ ଉତ୍ତରଣରେ ଆପଣଙ୍କ ସମର୍ପିତ ଜୀବନ ସାଧନା ଅକ୍ଷୟ ଆୟୁଷ ଲାଭ କରୁ ।

ଜୟ ରାଧାନାଥ, ଜୟ ଓଡ଼ିଆ ଭାଷା, ଜୟ ଜଗନ୍ନାଥ ।

| ଚୈତ୍ର ପୂର୍ଣ୍ଣିମା | ଗୁଣମୁଗ୍ଧ |
| --- | --- |
| ଅପ୍ରେଲ ୫, ୨୦୦୪ | ରାଧାନାଥ ପାଠାଗାରର ସଦସ୍ୟ ବୃନ୍ଦ, ସୋର |

**କବିବର ରାଧାନାଥ ସମ୍ମାନ**

**ସୋର**




ରାଧାନାଥ ପାଠାଗାର, ସୋର ପ୍ରଦତ୍ତ ଫଳକ



Rajiv Gandhi Forum, Orissa

Rajiv Gandhi Foundation, New Delhi

Rajiv Gandhi Sadbhawana Award - 2008

*Certified that Prof.Dr. Baishnab Charan Samal, Eminent Oriya Writer has been awarded the* ***State level Rajiv Gandhi Sadbhawana Award - 2008*** *for* ***Lifetime Achievement in Oriya Literature*** *of the year 2008 on 21st May 2008 at Jaydev Bhawan, Bhubaneswar, on the occasion of 17th Death Anniversary of Bharat Ratna Rajiv Gandhi.*

Muralidhar Chandrakant Bhandare
His Excellency Hon'ble Governor of Orissa
Chief Guest

Chief Speaker

Guest of Honour

Dr. Ratnakar Pandey
Chief Advisor, RGF

Niranjan Patnaik
Chairman, RGF

Suresh Ku. Routray
Working Chairman, RGF

Bijoy Kumar Routray
Chief Organiser-Cum-General Secretary, RGF

ରାଜୀବ ଗାନ୍ଧୀ ସଦ୍‌ଭାବନା ସମ୍ମାନ

ଭୁବନେଶ୍ୱର

# ଶ୍ରୀ ଶ୍ରୀଜଗନ୍ନାଥ ସେବା ସଂସ୍ଥା

ସୁନାବେଡ଼ା-୭୬୩ ୦୦୨, ଜି-କୋରାପୁଟ



## ମାନପତ୍ର

## ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସାମଲ

ଦିବ୍ୟଚିରେଷୁ,

ଆପଣ ଜଣେ ବାଗ୍ମୀ, କବି, ସମାଲୋଚକ, ପ୍ରାବନ୍ଧିକ, ରମ୍ୟରଚକ, ଗବେଷକ ତଥା ଶିକ୍ଷାବିତ୍ ଭାବେ ଚିର ବନ୍ଦନୀୟ ଓ ପ୍ରଶଂସନୀୟ । ଜଣେ କ୍ରାନ୍ତିଦର୍ଶୀ ସମାଲୋଚକ ଭାବରେ ଆପଣଙ୍କ ସୁଖ୍ୟାତି ଓଡ଼ିଆ ସାହିତ୍ୟରେ ସର୍ବବିଦିତ । ମାଟି, ମଣିଷ ଓ ସଂସ୍କୃତି ପ୍ରତି ରହିଛି ଆପଣଙ୍କର ଉଦାର ମମତା । ପ୍ରାଚୀନ ସାହିତ୍ୟ ଠାରୁ ଆରମ୍ଭ କରି ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ଆପଣଙ୍କ ସମାଲୋଚନା ପରିବ୍ୟାପ୍ତ । **କଳା ସଂସ୍କୃତି ଓ ସାହିତ୍ୟ, ଓଡ଼ିଆ ଗଳ୍ପର ଗତି ଓ ପ୍ରକୃତି, ଦୃଷ୍ଟି ଓ ଦିଗନ୍ତ, ଗଣକବି ସାହିତ୍ୟ ସମୀକ୍ଷା, ପ୍ରାଚୀନ ଓଡ଼ିଆ ସାହିତ୍ୟ, ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ** ଆଦି ଆପଣ ଅଶୀରୁ ଉର୍ଦ୍ଧ୍ୱ ପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟରେ ନିଜର ଏକ ସତନ୍ତ୍ର ସରଣୀ ସୃଷ୍ଟି କରିଛନ୍ତି । ଜଣେ ସୁବକ୍ତା ତଥା ଜଗନ୍ନାଥଙ୍କ ଚିନ୍ତା ଓ ଚେତନାର ଉଦ୍‌ଘୋଷକ ଭାବେ ସମଗ୍ର ରାଜ୍ୟରେ ଆପଣଙ୍କର ଆଦର ସର୍ବବିଦିତ ।

ଆପଣଙ୍କ ବହୁମୁଖୀ ପ୍ରତିଭାକୁ ସମ୍ମାନ ଜଣାଇ ଶ୍ରୀ ଶ୍ରୀଜଗନ୍ନାଥ ସେବାସଂସ୍ଥା, ସୁନାବେଡ଼ା ଆପଣଙ୍କୁ ସମ୍ମାନିତ କରି ପ୍ରତିଭା ପୂଜାର ଜୟଗାନ କରୁଛି ।

ଓଡ଼ିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ଆପଣଙ୍କୁ ଦୀର୍ଘ, ନୀରୋଗ ଓ ସାଧନାମୟ ଜୀବନ ପ୍ରଦାନ କରନ୍ତୁ, ଆପଣ ମହାକାଳଜୟୀ ହୁଅନ୍ତୁ, ଏହାହିଁ ପ୍ରାର୍ଥନା । ଜୟ ଜଗନ୍ନାଥ ।

ଡ଼ଃ ତ୍ରିଲୋଚନ ସାହୁ
ସଭାପତି
ଶ୍ରୀ ଶ୍ରୀଜଗନ୍ନାଥ ସେବା ସଂସ୍ଥା
ସୁନାବେଡ଼ା

ଶ୍ରୀ କୁଞ୍ଜନିଧି ବେହେରା
ସମ୍ପାଦକ
ଶ୍ରୀ ଶ୍ରୀଜଗନ୍ନାଥ ସେବା ସଂସ୍ଥା
ସୁନାବେଡ଼ା

ପ୍ରତିଭା ପୂଜା ସମ୍ମାନ
ଶ୍ରୀ ଶ୍ରୀଜଗନ୍ନାଥ ସେବା ସଂସ୍ଥା
ସୁନାବେଡ଼ା, କୋରାପୁଟ

## ତ୍ରୟୋଦଶ ଭଦ୍ରକ ପୁସ୍ତକ ମେଳା-୨୦୧୩

# କାନ୍ତକବି ସାହିତ୍ୟ ସମ୍ମାନ



ବରେଣ୍ୟ ବାଣୀପୁତ୍ର,

## ପ୍ରଫେସର ଡ. ବୈଷ୍ଣବ ଚରଣ ସାମଲଙ୍କ

କରକମଳେଷୁ ।

**ହେ ମହାନୁଭବର ମହୋଦଧି !**

କବିତାର କଲ୍ଲୋଳ ତପୋବନରେ ଗୁଂଜରିତ ଆପଣଙ୍କ ନୀରବ ଓଁକାର 'ପୁନଶ୍ଚ ମଣିଷ' ପାଇଁ 'ଅନ୍ୟ ଏକ ପୃଥିବୀ'କୁ ଆବାହନ କରେ 'ଏକାକୀ ଈଶ୍ୱର' 'ଏକା ଏକା ନକ୍ଷତ୍ର'ଟିଏ ହୋଇ 'ଆଲୋକିତ ଅନ୍ଧକାର'ରୁ ଅପ୍ରତିହତ ଜୟଯାତ୍ରା 'ଶେଷଶୃଙ୍ଗାର'କୁ କମନୀୟ କଥା ମାଧୁର୍ଯ୍ୟରେ ମୋହିତ ହେବାକୁ । ସୃଜନଶୀଳତାର ମହାଦ୍ରୁମ ହୋଇ ରମ୍ୟ ରଚନାର ପୁଷ୍ପ ପରାଗ ବୁଣି 'ଆଜ ଦେଖିଲିରେ' ଠାରୁ 'ମାରାମୋୟା'ର ରମଣୀୟ ସ୍ଥାପତ୍ୟ ଆପଣଙ୍କ ଅନତିକ୍ରମଣୀୟ ପ୍ରଜ୍ଞାର ସ୍ମାରକୀ ।

**ହେ ବାଗ୍ମି ! ମନସ୍ୱି! ସରସ୍ୱତି!**

ସୃଜନର ଶ୍ୟାମଳ ପୃଥିବୀ ଲଂଘି ସଂପାଦନା, ସଂକଳନ, ଆଲୋଚନା, ସମାଲୋଚନାର ବିସ୍ତୃତ ବକ୍ଷରେ ଓଡ଼ିଶାର କଳା, ସଂସ୍କୃତି, ସାହିତ୍ୟ ପାଇଁ ଆପଣ ଯେଉଁ ତ୍ୟାଗ, ନିଷ୍ଠା, ସାଧନା ଓ ସତ୍ ଆଗ୍ରହର ସମାଖ୍ୟା ଗ୍ରନ୍ଥ ସୃଷ୍ଟି କରିଛନ୍ତି, ତାହା ଓଡ଼ିଆ ସାରସ୍ୱତ ଜଗତରେ ଆପଣଙ୍କ ମହର୍ଷିପଣର ସ୍ୱର୍ଣ୍ଣାଭ ସ୍ୱାକ୍ଷର ।

**ହେ ପ୍ରିୟତମ ପ୍ରଜ୍ଞା ପୁରୁଷ !**

କୋମଳ କବିପଣ, ଛଳଛଳ କଥା କାରିଗରୀ ଦୂରଦୃଷ୍ଟି ସଂପନ୍ନ ରମ୍ୟ ରଚନା, ଚିନ୍ତାଶୀଳ ସମୀକ୍ଷଣ, ବୌଦ୍ଧିକ ସମାଲୋଚନା ଗ୍ରନ୍ଥ ଏବଂ ତ୍ରିଂଶବର୍ଷାଧିକ ନିଷ୍ଠାପର ଅଧ୍ୟାପନା ଓ ଛାତ୍ର ବତ୍ସଳତା ଆପଣଙ୍କ ବ୍ୟକ୍ତିତ୍ୱର ଅଖଣ୍ଡ ଅଭିଧାନ ।

ଆଜି ଭଦ୍ରକ ପୁସ୍ତକମେଳା କମିଟି ଆପଣଙ୍କ ବ୍ୟକ୍ତିତ୍ୱ, ଚଳଚଞ୍ଚଳ ଲେଖନୀ ଓ ଦୀର୍ଘ ସାରସ୍ୱତ ସାଧନାକୁ ପ୍ରଣାମ ଜଣାଇ କାନ୍ତକବି ସାହିତ୍ୟ ସମ୍ମାନରେ ବିଭୂଷିତ କରାଇ ନିଜକୁ ଧନ୍ୟ ମନେ କରିବା ସହିତ ଈଶ୍ୱରଙ୍କ ନିକଟରେ ଆପଣଙ୍କ ଜୀବନର ସୁଦୀର୍ଘ ନିରାମୟତା କାମନା କରୁଅଛି । ଜୟ ଜଗନ୍ନାଥ ।

ସଭାପତି | ପୁସ୍ତକମେଳା | ସଂପାଦକ
--- | --- | ---

**କାନ୍ତକବି ସାହିତ୍ୟ ସମ୍ମାନ**

**ଭଦ୍ରକ**

ପ୍ରଫେସର ବୈଷ୍ଣବ ଚରଣ ସାମଲ ଓଡ଼ିଆ ସାହିତ୍ୟ
ପରିମଣ୍ଡଳରେ ଜଣେ ଅଗ୍ରଗଣ୍ୟ ସ୍ରଷ୍ଟା ।
ଉତ୍କଳ ବିଶ୍ୱବିଦ୍ୟାଳୟ ଠାରୁ ବିଶ୍ୱଭାରତୀ ପର୍ଯ୍ୟନ୍ତ
ଜଣେ କୃତବିଦ୍ୟ ଅଧ୍ୟାପକ ଓ ଗବେଷକ ଭାବରେ
ତାଙ୍କର ପ୍ରଜ୍ଞାଶୀଳ ପଦଯାତ୍ରା ସୃଷ୍ଟି କରିଛି
ଉର୍ବର ସାହିତ୍ୟ ଓ ତରୁଣ ପ୍ରତିଭା ।
ସର୍ଜନଶୀଳତା ସହ ସମାଜ-ସଂସ୍କୃତି-ଧର୍ମବୋଧର
ସମାନୁପାତିକ ଅଧ୍ୟୟନ ମାଧ୍ୟମରେ
ତାଙ୍କ ଜୀବନ ବହୁ ଘଟଣାବହୁଳ ଓ ସର୍ଶକାତର ।
ଶ୍ରେଣୀକକ୍ଷ ଠାରୁ ସଭାକକ୍ଷ ଓ ମୁକ୍ତମଂଚର ଶ୍ରୋତାଙ୍କୁ
ବିମୁଗ୍ଧ ବ୍ୟାକୁଳ କରିବାରେ ତାଙ୍କର ପ୍ରତିଭା ସର୍ବବିଦିତ ।
ସେ ଗପରୁ ଆରଂଭ କରି ଲମ୍ବିଯାଇଛନ୍ତି
କବିତାର ଷଠିଘର ପର୍ଯ୍ୟନ୍ତ ।
ରମ୍ୟରଚନାର ରସାଳ ବ୍ୟଞ୍ଜନା ଭିତରୁ କେନ୍ଦ୍ରୀଭୂତ
ହୋଇଛନ୍ତି ଏଷଣା-ଗବେଷଣା-ସଂପାନ ଓ
ସମାଲୋଚନାରେ ।
ଏହି ବିଦଗ୍ଧ ସାହିତ୍ୟିକ, ସୁଦକ୍ଷ ଶିକ୍ଷକ,
ଶ୍ରୋତାବିଧୂର ବକ୍ତା ଓ ପ୍ରତିବଦ୍ଧ ସାହିତ୍ୟ ଗବେଷକଙ୍କ
ବହୁବର୍ଣ୍ଣି ସୃଜନ ବ୍ୟକ୍ତିତ୍ୱ -
"**ଜଣେ ବଣା ବାଟୋଇର କାହାଣୀ**" ।

ISBN 93-82360-73-5